# ମାଣ୍ଡୁକ୍ୟ ଉପନିଷଦ୍

## (ଗୌଡପାଦଙ୍କ କାରିକା ସହିତ)

MĀṆḌŪKYAUPANIṢAD



ସ୍ୱାମୀ ଚିନ୍ମୟାନନ୍ଦ

# ମାଣ୍ଡୁକ୍ୟ ଉପନିଷଦ୍

ସ୍ୱାମୀ ଚିନ୍ମୟାନନ୍ଦ




ସେଣ୍ଟ୍ରାଲ ଚିନ୍ମୟ ମିଶନ ଟ୍ରଷ୍ଟ

# ସୂଚୀପତ୍ର

# ଗୁରୁଙ୍କ ବାର୍ତ୍ତା

*(୧୯୫୩ ମସିହାରେ ହୋଇଥିବା ଜ୍ଞାନଯଜ୍ଞ ସମୟରେ ଉତ୍ତରକାଶୀ (ହିମାଳୟ)ର ପୂଜ୍ୟପାଦ ସ୍ୱାମୀ ତପୋବନଜୀ ମହାରାଜଙ୍କ ପାଖରୁ ମିଳିଥିବା ଆର୍ଶୀବାଦ ଏବଂ ପ୍ରୋତ୍ସାହନର ଦିବ୍ୟ ବାର୍ତ୍ତା ନିମ୍ନରେ ପ୍ରଦତ୍ତ କରାଯାଉଛି। ସ୍ୱାମୀ ଚିନ୍ମୟାନନ୍ଦ ତାଙ୍କରି ପାଦ ତଳେ ଶାସ୍ତ୍ରଜ୍ଞାନ ଲାଭ କରିଥିଲେ - ସମ୍ପାଦକ)*

ବ୍ରହ୍ମ ହିଁ ଏକମାତ୍ର ସତ୍ୟ। ଅନ୍ୟ କିଛି ସତ୍ୟ ନୁହେଁ। ଚିର ଜାଜ୍ଜ୍ୱଲ୍ୟମାନ ସୂର୍ଯ୍ୟ, ଚନ୍ଦ୍ର ଏବଂ ନକ୍ଷତ୍ରମାନଙ୍କୁ ଧାରଣା କରିଥିବା ବିଶ୍ୱବ୍ରହ୍ମାଣ୍ଡ ହେଉଛି ଏକ ସ୍ୱପ୍ନ - ଗୋଟିଏ ଦୀର୍ଘ ସ୍ୱପ୍ନ । ଜାଗ୍ରତ ଅବସ୍ଥାରେ ବୋଧଗମ୍ୟ ହେଉଥିବା ଏହି ଶାଶ୍ୱତ ବିଶ୍ୱ ଗୋଟିଏ ସ୍ୱପ୍ନହୋଇ ପାରିବ କିପରି ? ପ୍ରଖ୍ୟାତ ଦ୍ରଷ୍ଟା ଏବଂ ଆଚାର୍ଯ୍ୟ ଶ୍ରୀ ଗୌଡ଼ପାଦ ମହାନ ମାଣ୍ଡୁକ୍ୟ କାରିକାରେ ଏହି ପ୍ରଶ୍ନର ଉତ୍ତର ଦେବାକୁ ଚେଷ୍ଟା କରିଛନ୍ତି । ଏହି ବିଶ୍ୱ ସ୍ୱପ୍ନ ବ୍ୟତୀତ ଅନ୍ୟ କିଛି ନୁହେଁ ବୋଲି କାରିକା ସ୍ପଷ୍ଟ ରୂପେ ବ୍ୟାଖ୍ୟା କରିଛି ଏବଂ ବିଭିନ୍ନ ଉଦାହରଣ ସହିତ ପ୍ରମାଣ କରିଛି।

ଏହି ବିଶ୍ୱ ସ୍ୱପ୍ନ ହେଉ ବା ସତ୍ୟ ହେଉ, ସେ ବିଷୟରେ ଚିନ୍ତା କରି ସମୟ ନଷ୍ଟ କରିବାରେ ଆମର କି ଲାଭ ହେବ ? ଏହି ସମସ୍ୟା ବିଷୟରେ ଚିନ୍ତା କଲେ ଆମେ ଏହି ସିଦ୍ଧାନ୍ତରେ ଉପନୀତ ହେବା ଯେ ଜଗତ ଏବଂ ଜାଗତିକ ବିଷୟ ସତ୍ୟ ନୁହେଁ, କ୍ଷଣିକ; ଏବଂ ଏପରି କ୍ଷଣିକ ଜାଗତିକ ବିଷୟ ଆମକୁ ଶାଶ୍ୱତ ଆନନ୍ଦ ଦେଇ ପାରିବ ନାହିଁ। ବ୍ରହ୍ମ ହିଁ ହେଉଛନ୍ତି ଶାଶ୍ୱତ ଆନନ୍ଦ, ସ୍ୱପ୍ନ ପରି ଏହି କ୍ଷଣିକ ଜଗତ ନୁହେଁ। ତାହାହେଲେ ଆମେ ସେହି ଶାଶ୍ୱତ, ଆନନ୍ଦମୟ ବ୍ରହ୍ମଙ୍କୁ ଅନୁଭବ କରିବାର ଏବଂ ଅବିନଶ୍ୱର, ଅକ୍ଷୟ ଆନନ୍ଦରେ ପ୍ରତିଷ୍ଠିତ ହେବାର ଚେଷ୍ଟା କରିବା । ବଙ୍କାଟଙ୍କା ରାସ୍ତାରେ ନନେଇ ତାର ଗତିପଥ ପରି ସିଧାସଳଖ ରାସ୍ତାରେ ଗୌଡ଼ପାଦ ଆମକୁ ସେହି ଚିରନ୍ତନ ଆନନ୍ଦ, ଶାଶ୍ୱତ ବ୍ରହ୍ମଙ୍କ ପାଖକୁ ନେଇ ଯାଉଛନ୍ତି। ତାହା ହିଁ ହେଉଛି ଏହି ବିସ୍ମୟଜନକ ଶାସ୍ତ୍ର କାରିକାର ମହାନତା ଏବଂ ବିଶେଷତ୍ୱ।

ଆଧୁନିକ ଶିକ୍ଷା ଲାଭ କରିଥିବା ଆଧୁନିକ ସନ୍ନ୍ୟାସୀ ସ୍ୱାମୀ ଚିନ୍ମୟାନନ୍ଦଙ୍କ ମୁହଁରୁ କାରିକା ସମ୍ବନ୍ଧରେ ପ୍ରବଚନର ସୁଯୋଗ ପାଇବା ଆମ ରାଜଧାନୀ ନଗରର ଇଂରାଜୀ

ଶିକ୍ଷାପ୍ରାପ୍ତ ଲୋକଙ୍କର ପରମ ସୌଭାଗ୍ୟ । ପୁରୁଣା କାଳର ସଂସ୍କୃତ ପଣ୍ଡିତଙ୍କ ପରି ପ୍ରାଚୀନ ପନ୍ଥାରେ ନ ବୁଝାଇ ଆଧୁନିକ ଏବଂ ବିଜ୍ଞାନସମ୍ମତ ଉପାୟରେ ସେ ଆପଣମାନଙ୍କୁ ଏହି ଶାସ୍ତ୍ରର ବିଷୟବସ୍ତୁ ବୁଝାଇବେ ବୋଲି ମୋର ବିଶ୍ୱାସ ।

ଏହି ଭାଷଣ ଶୁଣି ଆପଣମାନେ ଅଜାତବାଦ ହୁଏତ ବୁଝି ପାରିବେ। କେବଳ ତୁରୀୟ ବ୍ରହ୍ମ ହିଁ ସତ୍ୟ ଏବଂ ଅନ୍ୟ ତିନି ଅବସ୍ଥାର ଜଗତ ପ୍ରକୃତରେ ସୃଷ୍ଟି ହୋଇ ନଥିବାରୁ ଏକ ଦୀର୍ଘ ସ୍ୱପ୍ନ ବୋଲି ବୌଦ୍ଧିକ ସ୍ତରରେ ଦୃଢ ବିଶ୍ୱାସ ହେବାର ଆପଣମାନେ ଅନୁଭବ କରି ପାରନ୍ତି। କିନ୍ତୁ 'ମୁଁ ତୂରୀୟ ବ୍ରହ୍ମ' ଭାବରେ ସତ୍ୟଙ୍କର ଅନୁଭବ କରିବା ଏବଂ ଏଥିରେ ପ୍ରତିଷ୍ଠିତ ହେବା, ବେଦାନ୍ତର ଶିକ୍ଷାଗତ ହୃଦ୍‌ବୋଧ ଅପେକ୍ଷା ବହୁତ ଗମ୍ଭୀର କଥା ।

ତେଣୁ, ଭଗବାନଙ୍କୁ ଅବହେଳା କର ନାହିଁ । ଭଗବାନଙ୍କ କୃପାରୁ ହିଁ କେବଳ ତାଙ୍କର ସ୍ୱରୂପ, ତୂରୀୟ ଅବସ୍ଥା ଅନୁଭବ କରିହେବ। ଭଗବାନଙ୍କ ପ୍ରତି ଭକ୍ତି ଏବଂ ପ୍ରେମର ଅଭ୍ୟାସ କର । ତାଙ୍କର ନାମ ଜପ କର । ତାଙ୍କର ମହିମାର ପ୍ରଶଂସା କର ଏବଂ ତାଙ୍କର ମହାନତାର ଧ୍ୟାନ କର । ତାଙ୍କର ପୂଜା କରୁଥିବା ପରି ସମସ୍ତ କାର୍ଯ୍ୟ କର। ସମୟକ୍ରମେ, ଏପରି ଅଭ୍ୟାସ ଦ୍ୱାରା ଏହି ଅଶୁଦ୍ଧ ଏବଂ ଅସ୍ଥିର ମନ ଶୁଦ୍ଧତା ଏବଂ ଏକାଗ୍ରତା ଲାଭ କଲେ ଶାଶ୍ୱତ, ଆନନ୍ଦମୟ ତୂରିୟ ବ୍ରହ୍ମଙ୍କର ଅନୁଭୂତି ଲାଭ କରି ତାଙ୍କର ସାକ୍ଷାତ୍ ଅନୁଭବ ପାଇଁ ତୁମେ ସମର୍ଥ ହୋଇ ପାରିବ ।

ବୋଧହୁଏ ଏହି କଥାକୁ ମନରେ ରଖି ଅଜାତବାଦ ବିଷୟରେ ପ୍ରବଚନ ଦେଉଥିବାବେଳେ ଏକ ମୁଖ୍ୟ ବିଷୟ ଭାବରେ ଯଜ୍ଞଶାଳାରେ ଇଷ୍ଟ ଦେବତାଙ୍କର ଅଖଣ୍ଡ କୀର୍ତ୍ତନ ମଧ୍ୟ କରାଯାଇଥାଏ ।

ଶ୍ରୀ ସ୍ୱାମୀ ଚିନ୍ମୟାନନ୍ଦଙ୍କ ଦ୍ୱାରା କରା ଯାଉଥିବା ଜ୍ଞାନଯଜ୍ଞ ଅନୁଷ୍ଠାନ ଦ୍ୱାରା ଦିଲ୍ଲୀର ଲୋକମାନେ ବହୁଳ ଭାବରେ ଲାଭାନ୍ୱିତ ହେବେ ବୋଲି ମୋର ଆଶା। ଜ୍ଞାନଯଜ୍ଞର ସଫଳ ପରିସମାପ୍ତି ଏବଂ ଏଥିରୁ ଲାଭ କରିଥିବା ଜ୍ଞାନର ସଫଳ ପ୍ରୟୋଗ ପାଇଁ ଭଗବାନ ତୁମମାନଙ୍କୁ ଆଶୀର୍ବାଦ କରନ୍ତୁ ।

ପ୍ରେମ ଏବଂ ଶୁଭେଚ୍ଛାର ସହ ।

ଉତ୍ତର କାଶୀ

୨୬ ଅକ୍ଟୋବର, ୧୯୫୩ —ସ୍ୱାମୀ ତପୋବନ

# ମୁଖବନ୍ଧ

ଉପନିଷଦ୍‌ରେ ବେଦର ସାର ତତ୍ତ୍ୱ ନିହିତ । ଏହା ହିନ୍ଦୁମାନଙ୍କର ପବିତ୍ର ଧର୍ମଗ୍ରନ୍ଥ। କେବଳ ଭାଷା ଓ ବ୍ୟାକରଣ ଜ୍ଞାନ ସାହାଯ୍ୟରେ ଉପନିଷଦ୍ ଅଧ୍ୟୟନ କରାଯାଇ ପାରିବ ନାହିଁ। ଏହା ଏକ ବିଜ୍ଞାନ । ଏହାର ବାସ୍ତବ ଅର୍ଥର ଅବଧାରଣା ଗୁରୁଙ୍କ ପାଦ ତଳେ ବସି କରିବାକୁ ହେବ । ଏହି ଶବ୍ଦଟି ତାହା ହିଁ ସୂଚନା ଦିଏ ।

ବେଦାନ୍ତର ଆକ୍ଷରିକ ଅର୍ଥରୁ ଜଣାପଡ଼େ ଯେ ଉପନିଷଦ୍ ବୋଲି କୁହା ଯାଉଥିବା ବେଦର ଦାର୍ଶନିକ ଅଂଶ ଏଥିରେ ରହିଛି । ଏପର୍ଯ୍ୟନ୍ତ ୨୮୦ଟି ଉପନିଷଦ୍ ମିଳିଛି। ସେମାନଙ୍କ ମଧ୍ୟରୁ ୧୦୮ଟି ପ୍ରାମାଣିକ ଭାବରେ ସ୍ୱୀକାର କରାଯାଇଛି । ଶ୍ରୀ ଶଙ୍କର, ରାମାନୁଜ ଏବଂ ମାଧବାଚାର୍ଯ୍ୟଙ୍କ ପରି ବିଦ୍ୱାନଙ୍କ ଦ୍ୱାରା ସେଗୁଡ଼ିକ ମଧ୍ୟରୁ ୧୦ଟି ଉପରେ ଭାଷ୍ୟ ଲେଖା ଯାଇଛି । ଏମାନଙ୍କୁ 'ମୁଖ୍ୟ' ଶ୍ରେଣୀଭୁକ୍ତ କରାଯାଏ ।

ଅନ୍ୟ ଉପନିଷଦ୍‌ମାନଙ୍କୁ 'ଗୌଣ' ଭାବରେ ଧରାଯାଏ – ସେଥିରେ ଥିବା ବିଷୟବସ୍ତୁ ପାଇଁ ନୁହେଁ – କିମ୍ବା ସେଥିରେ ଭାବନାର ଗଭୀରତା ନାହିଁ ବା ବ୍ୟାଖ୍ୟାରେ ପୂର୍ଣ୍ଣତା ନାହିଁ ବୋଲି ନୁହେଁ; ବରଂ ମହାନ ଆଚାର୍ଯ୍ୟମାନଙ୍କ ପାଖରୁ ଭାଷ୍ୟ ମିଳୁ ନଥିବା ଯୋଗୁଁ । ପାଞ୍ଚ ବା ଛଅଟି ମୁଖ୍ୟ ଉପନିଷଦ୍ ଉପରେ ମହାନ ଗୁରୁମାନଙ୍କର ବିଶଦ ଭାଷ୍ୟର ସମ୍ପୂର୍ଣ୍ଣ ଅଧ୍ୟୟନ ପରେ ହିଁ ନୂତନ ଦୀକ୍ଷିତ ମାନଙ୍କୁ ଏହି 'ଗୌଣ' ଉପନିଷଦ୍‌ର ଅଧ୍ୟୟନ ପାଇଁ କୁହାଯାଇଥାଏ। ଏହିପରି ଭାବରେ 'ମୁଖ୍ୟ' ଉପନିଷଦ୍‌ର ଅଧ୍ୟୟନର ଫଳ ସ୍ୱରୂପ ଶିଷ୍ୟମାନେ ଯେଉଁ ଜ୍ଞାନଲାଭ କରି ଥାଆନ୍ତି, ତା ତୁଳନାରେ ଏହା ଗୌଣ, ଏବଂ ଏହି ଗୌଣ ଉପନିଷଦ୍‌ର ମନନ କରିବା ଦ୍ୱାରା ସେହି ଜ୍ଞାନର ପରିମାର୍ଜନ ହୁଏ ।

ଦ୍ରଷ୍ଟା ମଣ୍ଡୁକଙ୍କ ନାମରୁ ମାଣ୍ଡୁକ୍ୟ ଉପନିଷଦ୍‌ର ନାମ ଆସିଛି । ଏହା ଅଥର୍ବ ବେଦରେ ରହିଛି । ମୁଖ୍ୟ ଉପନିଷଦ୍‌ମାନଙ୍କ ମଧ୍ୟରେ ଏହା କ୍ଷୁଦ୍ରତମ – ଏଥିରେ ମାତ୍ର ବାରଗୋଟି ମନ୍ତ୍ର ଅଛି । କିନ୍ତୁ ଏହା ଆମ ବୈଦିକ ଶିକ୍ଷାର ସାରତତ୍ତ୍ୱ ପ୍ରଦାନ କରେ ।

ଜାଗ୍ରତ, ସ୍ୱପ୍ନ ଏବଂ ସୁଷୁପ୍ତି – ମଣିଷ ଚେତନାର ଏହି ତିନୋଟି ଅବସ୍ଥାର ସମଗ୍ର ପରିସରର ଏହା ବିଶ୍ଳେଷଣ କରେ । ଏହି ତିନୋଟି ଅବସ୍ଥା ସମସ୍ତଙ୍କ ପାଇଁ

ସାଧାରଣ । ନିର୍ବିକଳ୍ପ ସତ୍ୟ ଅଦ୍ୱୈତ ଏବଂ ନିର୍ଗୁଣ ବୋଲି ଏହା ସ୍ପଷ୍ଟଭାବେ ପ୍ରତିପାଦିତ କରେ ।

ଅଦ୍ୱିତୀୟ ଉପାୟରେ ଏହା ସତ୍ୟଙ୍କର ନିକଟବର୍ତ୍ତୀ ହୋଇଛି । ଏଥିରେ 'ଓଁ' – ଏହି ଏକାକ୍ଷରର ପ୍ରତୀକ ଉପରେ ଧ୍ୟାନ ନିବେଶ କରିବା କଥା । ଓଁ ରେ ଅ,ଉ,ମ – ଏହି ତିନୋଟି ଅକ୍ଷର ଅଛି । ଏହା ଏଥିରେ ଥିବା ଦାର୍ଶନିକତାର ସବିଶେଷ ବର୍ଣ୍ଣନା କରିଛି । ମୁକ୍ତିକୋପନିଷଦ୍ ଅନୁସାରେ ପ୍ରାମାଣିକଭାବେ ଗ୍ରହଣ କରାଯାଇଥିବା ୧୦୮ଟି ଉପନିଷଦ୍‌ର ଏହା ସାର-ସଂଗ୍ରହ ।

ଶ୍ରୀ ଶଙ୍କରାଚାର୍ଯ୍ୟଙ୍କର ଦୀକ୍ଷାଗୁରୁ ଗୌଡ଼ପାଦ ଏହି ଉପନିଷଦ୍ ଉପରେ କାରିକାଟିଏ ଲେଖିଛନ୍ତି । ସଂସ୍କୃତରେ ଏହା ଅନବଦ୍ୟ ଦାର୍ଶନିକ କୃତି । ଏହି ଉପନିଷଦ୍‌ର ପଶ୍ଚାତପଟରେ ଥିବା ଚିନ୍ତନର ଅଦ୍ୱିତୀୟ ଧାରା ପ୍ରତି ଏହା ହେଉଛି ଅର୍ନ୍ତଦୃଷ୍ଟି ।

ପରମଗୁରୁଙ୍କର ଏହି କାରିକା ଉପରେ ଶ୍ରୀ ଶଙ୍କର ଭାଷ୍ୟ ଲେଖିଛନ୍ତି । ସେଥିରୁ ଏହାର ପ୍ରାଧାନ୍ୟ କଳ୍ପନା କରି ହେବ ।

କାରିକାର ଚାରୋଟି ଅଧ୍ୟାୟ ମଧ୍ୟରୁ ପ୍ରଥମଟି ହେଉଛି ଆଗମ ପ୍ରକରଣ । ଜାଗ୍ରତ, ସ୍ୱପ୍ନ ଏବଂ ସୁଷୁପ୍ତି – ଏହି ତିନି ଅବସ୍ଥାରେ 'ଚେତନାର ଅଖଣ୍ଡତା' ଏହା ପ୍ରତିପାଦନ କରେ । ଦ୍ୱିତୀୟ ଅଧ୍ୟାୟ ବୈତଥ୍ୟ ପ୍ରକରଣରେ ଦ୍ୱୈତ ଜଗତର ଅସତ୍ୟତାର ବ୍ୟାଖ୍ୟା କରାଯାଇଛି । ଜାଗ୍ରତ ଅବସ୍ଥାର ଅନୁଭୂତି ଏବଂ ସ୍ୱପ୍ନାବସ୍ଥାର ଅନୁଭୂତି ଏକାପରି ବୋଲି ଗୌଡ଼ପାଦ ଜୋର ଦେଇ କହିଛନ୍ତି । ଉଭୟ ଅବସ୍ଥାରେ ଯେଉଁ ବିଷୟର ଅନୁଭୂତି ମିଳେ, ତାହା ବ୍ୟକ୍ତିର ବହିଃସ୍ଥୀକରଣ, ଆହୁରି ମଧ୍ୟ ଜାଗ୍ରତ ଅବସ୍ଥାର ପାଣି ଜାଗ୍ରତ ଅବସ୍ଥାର ତୃଷା ନିବାରଣ କରିବା ପରି ସ୍ୱପ୍ନାବସ୍ଥାର ପାଣି ସ୍ୱପ୍ନାବସ୍ଥାର ତୃଷା ନିବାରଣ କରେ; ଏହିପରି ଭାବରେ ଜାଗତିକ ବିଷୟ ମଧ୍ୟ ଏସବୁ ଅବସ୍ଥାରେ କୌଣସି ଭାବରେ ଭିନ୍ନ ନୁହନ୍ତି ବୋଲି ସେ କହିଛନ୍ତି । ଉଚ୍ଚତମ ପରମ ଉପଲବ୍ଧି ଦୃଷ୍ଟିରୁ ଆତ୍ମାଙ୍କ ପାଇଁ ମୃତ୍ୟୁ, ଜନ୍ମ, ବନ୍ଧନ ଏବଂ ମୁକ୍ତି ନାହିଁ ବୋଲି ଗୌଡ଼ପାଦ ଦୃଢତାର ସହିତ କହିଛନ୍ତି ।

ଅଦ୍ୱୈତ ପ୍ରକରଣ ନାମକ ତୃତୀୟ ଅଧ୍ୟାୟରେ କୁହାଯାଇଛି ଯେକୌଣସି ପ୍ରକୃତ ପରିବର୍ତ୍ତନ ମଧ୍ୟ ଦେଇ ନ ଯାଇ (ଅବିକାରୀ ଭାବରେ) ଏକ ହିଁ ନିଜକୁ ଅନେକରେ ପ୍ରକାଶ କରନ୍ତି । ଏହି କଥାକୁ ଜୋର ଦେବା ପାଇଁ ସେ ଆକାଶର ଉଦାହରଣ ଦେଇଛନ୍ତି । ଆକାଶ ବିଭିନ୍ନ ଅବସ୍ଥାରେ ବିଭକ୍ତ ହୋଇ ବିଭିନ୍ନ ନାମରେ ନାମିତ ହୋଇଥାଏ । କିନ୍ତୁ ବାସ୍ତବରେ ଘଟାକାଶ ମହାକାଶ ଅପେକ୍ଷା ଭିନ୍ନ ନୁହେଁ । ସେହିପରି ଜୀବ ନିର୍ବିକଳ୍ପ

ଆତ୍ମାଙ୍କଠାରୁ ଭିନ୍ନ ନୁହେଁ । ପ୍ରତ୍ୟେକଟି ପରିବର୍ତ୍ତନ କେବଳ କାଳ୍ପନିକ । ଆତ୍ମାନୁଭୂତି ଲାଭ କରିଥିବା ବ୍ୟକ୍ତି ପାଇଁ ସବୁ ବିଷୟ କେବଳ ଆତ୍ମା ହିଁ ।

ଚତୁର୍ଥ ଅଧ୍ୟାୟ ଅଲାତଶାନ୍ତି ପ୍ରକରଣ ନାମରେ ପରିଚିତ । ଏଥିରେ ଭଗବାନ ହେଉଛନ୍ତି ସ୍ରଷ୍ଟା – ଏହି ଧାରଣାର ଅସ୍ୱୀକାର କରି ଅଜାତ-ବାଦ ତଥ୍ୟର ସ୍ପଷ୍ଟ ପ୍ରକାଶ କରା ଯାଇଛି । ଜଣେ ଯାଦୁକର କୁହୁକ ଦେଖାଇବା ପରି ଭଗବାନ ନିଜକୁ ଜଗତ ଭାବରେ ରୂପାନ୍ତରିତ କରିଛନ୍ତି । ଆତ୍ମ-ଭ୍ରାନ୍ତି ଯୋଗୁଁ ହିଁ ଦ୍ୱୈତ ଜଗତ ଦୃଶ୍ୟ ହୋଇଥାଏ । ଆତ୍ମାନୁଭୂତି ଲାଭ କରିବା ପର୍ଯ୍ୟନ୍ତ, ନିଜେ ଅସତ୍ୟ ଭଗବାନ ବା ସ୍ରଷ୍ଟା, ବ୍ୟକ୍ତିର ପ୍ରଚେଷ୍ଟାରେ ଗୋଟିଏ ଆଲମ୍ବନ ପରି ସାହାଯ୍ୟ କରି ଥାଆନ୍ତି । ଥରେ ସତ୍ୟାନୁଭୂତି ହେଲେ, ସେ ସବୁ ହୁଏତ ସେହିପରି ରହିଥିବ, କିନ୍ତୁ ସେସବୁକୁ ସତ୍ୟ ବୋଲି ଜଣେ ବିଚାର କରିବ ନାହିଁ ଏବଂ ତେଣୁ , ସେସବୁ ପ୍ରତି ଆସକ୍ତ ହେବ ନାହିଁ । ଆସକ୍ତି ହିଁ ବନ୍ଧନ କରାଏ ।

ପୂଜନୀୟ ସ୍ୱାମୀ ଚିନ୍ମୟାନନ୍ଦଙ୍କୁ ଭକ୍ତିର ସହିତ ଆମେ ପୂଜ୍ୟ ଗୁରୁଦେବ ବୋଲି ଉଲ୍ଲେଖ କରୁ । ତାଙ୍କ ଦ୍ୱାରା ପ୍ରଦତ୍ତ ମୌଳିକ ଭାଷ୍ୟର ଓଡିଆ ଅନୁବାଦ ପ୍ରକାଶ କରି ଆମେ ଧନ୍ୟ ହୋଇଛୁ । ତାଙ୍କର ପବିତ୍ର ପାଦତଳେ ଏହା ଆମର ବିନମ୍ର ସମର୍ପଣ । ତତ୍‌ସହିତ ସମାଜର ମଙ୍ଗଳ ପାଇଁ ଶାସ୍ତ୍ରୀୟ ଚିନ୍ତାର ପ୍ରକାଶନ ପରି କାର୍ଯ୍ୟକଳାପର ସମସ୍ତ କ୍ଷେତ୍ରରେ ତାଙ୍କର କାର୍ଯ୍ୟ ଆଗେଇ ନେବା ପାଇଁ ତାଙ୍କର କଥା ଓ ଦିଗ୍ ଦର୍ଶନ ଆମକୁ ଅନୁପ୍ରାଣିତ କରୁ ବୋଲି ଆମର ପ୍ରାର୍ଥନା ।

**ପ୍ରକାଶକ**

# ଶାନ୍ତି ପାଠ

ଗୋଟିଏ ପ୍ରାର୍ଥନା ବିନା କୌଣସି ଉପନିଷଦ୍‌ର ଆରମ୍ଭ ହୁଏ ନାହିଁ । ଏହି ପ୍ରାର୍ଥନାକୁ ଶାନ୍ତି ପାଠ କୁହାଯାଏ । ଉଭୟ ଗୁରୁ ଏବଂ ଶିଷ୍ୟ ଶାନ୍ତିପାଠ କରିବାକୁ ଜୋର ଦେବା ଏକ ପ୍ରଚଳିତ କାର୍ଯ୍ୟ ଧାରା । ବେଦାନ୍ତ ଭକ୍ତିମାର୍ଗର ପରିପନ୍ଥୀ ବୋଲି କୁହା ଯାଉଥିବା ମିଥ୍ୟାର ଏହା ଉତ୍ତର । ଅତି ଉଚ୍ଚସ୍ତରର ଦ୍ରଷ୍ଟାମାନେ ମହାନ ସାଧକମାନଙ୍କୁ ଶୁଦ୍ଧ ବେଦାନ୍ତର ପ୍ରବଚନ ଦେବାବେଳେ, ଗୁରୁ ଏବଂ ଶିଷ୍ୟଙ୍କ ଦ୍ୱାରା କରାଯାଉଥିବା ଗୋଟିଏ ସାର୍ବଜନୀନ ପ୍ରାର୍ଥନାରୁ ପ୍ରବଚନ ଆରମ୍ଭ କରୁଥିଲେ ।

କିନ୍ତୁ ଏହି ପ୍ରାର୍ଥନା ହେଉଛି ଏକ ଆବାହନ । ଭକ୍ତମାନଙ୍କର ଅସହାୟ ଭାଗ୍ୟର ବିଧାତା କୌଣସି ଉପଯୋଗୀ ମହାନ ଶକ୍ତି ପାଖକୁ ବ୍ୟକ୍ତିଗତ ଲାଭ ପାଇଁ ଏହା ଏକ ନମ୍ର, ନିରୀହ ଏବଂ ଅସାମର୍ଥ୍ୟ ନିବେଦନ ନୁହେଁ ।

ସର୍ବଶକ୍ତିମାନ ଦେବତାଙ୍କ ଗହଣରେ ଦାନ ଗ୍ରହଣ କରିବା ଭାବରେ ଏହା କରାଯାଏ ନାହିଁ । ଅନ୍ୟ ପକ୍ଷରେ, ଯଥାର୍ଥ ଅର୍ଥରେ ପ୍ରାର୍ଥନା ହେଉଛି ଏକ ମାନସିକ ପୂର୍ଣ୍ଣାଙ୍ଗକରଣ ଜରିଆରେ ଆମ ଭିତରେ ଥିବା ପ୍ରବଳ ସମ୍ଭାବନାକୁ ଆବାହନ କରିବାର ପ୍ରଚେଷ୍ଟା । ଦିଲ୍ଲୀ ବେତାର କେନ୍ଦ୍ର ସହିତ ପୂର୍ଣ୍ଣାଙ୍ଗ ଭାବରେ ଲୟ ସ୍ଥାପନ କରିବାର ମାନେ ନୁହେଁ, ମୋ ରେଡିଓ ସେଟ୍ ସେହି କେନ୍ଦ୍ରଠାରୁ ଭିକ୍ଷା ଚାହିଁଛି । ଅଲ୍ ଇଣ୍ଡିଆ ରେଡିଓର ଦିଲ୍ଲୀ କେନ୍ଦ୍ର ମୋ ବୈଠକ ଘରର ପରିବେଶରେ ତା ସଙ୍ଗୀତର ପ୍ରବେଶ ନିଷେଧ କରିପାରିବ ନାହିଁ । ସେହିପରି ଦିବ୍ୟ ଆବାହନର ଧାରା ମାଧ୍ୟମରେ ଆମେ ପରମାତ୍ମାଙ୍କ ସହିତ ଲୟ ରଖିଲେ, ସେ ଆମକୁ ଅଗ୍ରାହ୍ୟ କରି ପାରିବେ ନାହିଁ । ଆବାହନ ହେଉଛି ମସ୍ତିଷ୍କର ଦାବୀ, ପ୍ରାର୍ଥନା ହୃଦୟର ବିନୀତ ନିବେଦନ ।

**ଓଁ ଭଦ୍ରଂ କର୍ଣ୍ଣେଭିଃ ଶୃଣୁୟାମ ଦେବାଃ ଭଦ୍ରଂ ପଶ୍ୟେମାକ୍ଷଭିର୍ୟଜତ୍ରାଃ ।**
**ସ୍ଥିରୈରଙ୍ଗୈସ୍ତୁଷ୍ଟୁବାଂ ସସ୍ତନୂଭିଃ ବ୍ୟଶେମ ଦେବହିତଂ ୟଦାୟୁଃ ॥**
**ସ୍ୱସ୍ତି ନ ଇନ୍ଦ୍ରୋ ବୃଦ୍ଧଶ୍ରବାଃ ସ୍ୱସ୍ତି ନଃ ପୂଷା ବିଶ୍ୱବେଦାଃ ।**
**ସ୍ୱସ୍ତି ନସ୍ତାର୍କ୍ଷ୍ୟୋ ଅରିଷ୍ଟନେମିଃ ସ୍ୱସ୍ତି ନୋ ବୃହସ୍ପତର୍ଦଧାତୁ ॥**
**ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ॥**

ଭଦ୍ରଂ = ଯାହା ଶୁଭ (ଅର୍ଥାତ୍ ଶାସ୍ତ୍ରବାକ୍ୟ ଇତ୍ୟାଦି), କର୍ଣ୍ଣେଭିଃ = କାନ ଦ୍ୱାରା; ଶୃଣୁୟାମ = ଆମେ ଶୁଣୁ; ଦେବାଃ = ହେ ଦେବତାମାନେ ! (କିମ୍ବା ପୂଜ୍ୟ) ଭଦ୍ରଂ = ଯାହା ଶୁଭ; ପଶ୍ୟେମ = ଆମେ ଦେଖୁଁ; ଅକ୍ଷଭିଃ = ଆଖି ଦ୍ୱାରା; ୟଜତ୍ରା = ହେ ପୂଜା ପାଉଥିବା (ପୂଜ୍ୟ); ସ୍ଥିରୈଃ = ସୁସ୍ଥ, ପୂର୍ଣ୍ଣାଙ୍ଗ (ଆକ୍ଷରିକ ଅର୍ଥରେ ଦୃଢ); ଅଙ୍ଗୈଃ = ଅଙ୍ଗ ଦ୍ୱାରା; ତୁଷ୍ଟୁବାଂ ସଃ = (ତାଙ୍କୁ) ପ୍ରାର୍ଥନା କରି ଆମେ ଜୀବନଧାରଣ କରୁ, ତନୂଭିଃ = ଶରୀର ଦ୍ୱାରା, ବ୍ୟଶେମ = ଆମର ହେଉ, ଦେବ-ହିତମ୍ = ଦେବତାମାନଙ୍କ ମଙ୍ଗଳ ପାଇଁ, ୟତ୍ ଆୟୁଃ = (ଆକ୍ଷରିକ ଅର୍ଥରେଃ ଯାହାହେଲେ ବି) ସମଗ୍ର ଜୀବନ କାଳ, ସ୍ୱସ୍ତି = ଆଶୀର୍ବାଣୀ (ସମୃଦ୍ଧି), ନଃ = ଆମ ପାଇଁ; ଇନ୍ଦ୍ରଃ = ଇନ୍ଦ୍ର; ବୃଦ୍ଧ-ଶ୍ରବାଃ = ପ୍ରାଚୀନ ଏବଂ ପ୍ରସିଦ୍ଧ; ସ୍ୱସ୍ତି = ଆର୍ଶୀବାଣୀ; ନଃ = ଆମକୁ; ପୂଷା = ପୂଷନ (ଆକ୍ଷରିକ ଅର୍ଥ, ଯିଏ ଜଗତର ପୋଷଣ କରନ୍ତି, ଅର୍ଥାତ୍ ସୂର୍ଯ୍ୟ); ବିଶ୍ୱବେଦାଃ = ସର୍ବଜ୍ଞ; ସ୍ୱସ୍ତି = ଆଶୀର୍ବାଣୀ; ନଃ = ଆମକୁ; ତାର୍କ୍ଷଃ = ଆକାଶୀୟ ପକ୍ଷୀ, ଅର୍ଥାତ୍ ବାୟୁ; ଅରିଷ୍ଟନେମିଃ = (ଆମକୁ) ଯିଏ ଅନିଷ୍ଟରୁ ରକ୍ଷା କରନ୍ତି; ସ୍ୱସ୍ତି = ଆଶୀର୍ବାଣୀ; ନଃ = ଆମକୁ; ବୃହସ୍ପତିଃ = ବୃହସ୍ପତି, ପ୍ରାର୍ଥନାର ଦେବ (ଆମର ଆଧ୍ୟାତ୍ମିକ ଧନର ରକ୍ଷାକର୍ତ୍ତା); ଦଧାତୁ = (ସେ) ଦିଅନ୍ତୁ ।

ଓଁ = ପରଂବ୍ରହ୍ମଙ୍କର ପ୍ରତୀକ; ଶାନ୍ତି = ଶାନ୍ତି ହେଉ; ଶାନ୍ତିଃ = ଶାନ୍ତି ହେଉ; ଶାନ୍ତିଃ = ଶାନ୍ତି ହେଉ ।

*ଦେବତାଗଣ ! କର୍ଣ୍ଣ ଦ୍ୱାରା ଆମର (ସବୁବେଳେ) ଭଦ୍ର କଥା ଶୁଣିବା ହେଉ । ହେ ପୂଜ୍ୟମାନେ ! ଚକ୍ଷୁ ଦ୍ୱାରା ଆମର (ସବୁବେଳେ) ଶୁଭ ଦର୍ଶନ ହେଉ, ଆମେ ସୁସ୍ଥ ରହି (ତାଙ୍କୁ) ସ୍ତୁତି ଗାନ(ପ୍ରାର୍ଥନା) କରି ସମଗ୍ର ଜୀବନକାଳ ବିତାଉ । ପ୍ରାଚୀନ ଏବଂ ପ୍ରସିଦ୍ଧ ଇନ୍ଦ୍ର, ସର୍ବଜ୍ଞ ପୂଷାନ୍(ସୂର୍ଯ୍ୟ), ସମସ୍ତ ଅନିଷ୍ଟରୁ ଆମକୁ ରକ୍ଷା କରୁଥିବା ଦ୍ରୁତ ବେଗବାନ ଦେବ(ବାୟୁ) ଏବଂ ଆମର ଆଧ୍ୟାତ୍ମିକ ସମ୍ପତ୍ତିର ରକ୍ଷକ ବୃହସ୍ପତି – ଆଶୀର୍ବାଦ କରନ୍ତୁ (ଶାସ୍ତ୍ର ବୁଝିବା ପାଇଁ ବୌଦ୍ଧିକ ଶକ୍ତି ଏବଂ ଶିକ୍ଷାର ଅନୁସରଣ କରିବା ପାଇଁ ନିର୍ଭୀକ ହୃଦୟ ଦେଇ) ।*

ଓଁ ଶାନ୍ତି ! ଶାନ୍ତି !! ଶାନ୍ତି !!!

## ଶାନ୍ତିପାଠ

ଉଭୟ ଗୁରୁ ଏବଂ ଶିଷ୍ୟ ଏକାଠି ଶାନ୍ତିପାଠ ନ କରି କୌଣସି ଉପନିଷଦ୍‌ର ଅଧ୍ୟୟନ ଆରମ୍ଭ ହୁଏ ନାହିଁ । ବର୍ତ୍ତମାନର ସଂଶୟବାଦର ଯୁଗରେ ଜୀବନରେ ପ୍ରାର୍ଥନାର ଶକ୍ତି ଏବଂ ସାମର୍ଥ୍ୟର ଆବଶ୍ୟକତା ଏବଂ କାର୍ଯ୍ୟକାରିତା କ'ଣ ଦରକାର ବୋଲି ଶିକ୍ଷିତ-ନିରକ୍ଷରମାନେ ବିସ୍ମୟ ପ୍ରକାଶ କରିବେ ।

ଆମେ କେବଳ ବ୍ୟର୍ଥ ଭୟାଳୁ, ସର୍ବଦା ଦୀର୍ଘନିଶ୍ୱାସ ପକାଉଥିବା ସସୀମ ଜୀବ ନୋହୁଁ । ଆମ ଭିତରେ ଥିବା ବ୍ୟକ୍ତିତ୍ୱ ପରମ ଭାବେ ସର୍ବଶକ୍ତିମାନ୍, ସର୍ବଜ୍ଞ, ନିର୍ଭୀକ, ଅସୀମ, ସର୍ବଆନନ୍ଦମୟ ଏବଂ ଦେବୋପମ । ପ୍ରାର୍ଥନା ମାଧ୍ୟମରେ ପରମ ପୂର୍ଣ୍ଣାଙ୍ଗଙ୍କ ସହିତ ଆମେ ଲୟ ସ୍ଥାପନ କରୁ ଏବଂ ତାଦ୍ୱାରା ଉଭୟ ମନ ଏବଂ ବୁଦ୍ଧିର ପୂର୍ଣ୍ଣାଙ୍ଗତାର ଆହ୍ୱାନ କରୁ ।

ଉପନିଷଦ୍ ଅଧ୍ୟୟନର ଠିକ ପୂର୍ବରୁ, ଏହିପରି ଭାବରେ ଗୁରୁ ଏବଂ ଶିଷ୍ୟ ସର୍ବଜ୍ଞ ଈଶ୍ୱରତତ୍ତ୍ୱଙ୍କର ପୂର୍ଣ୍ଣ ଶକ୍ତି ପାଖରେ ନିଜକୁ ସଂପୂର୍ଣ୍ଣ ସମର୍ପଣ କରି, ନିଜ ଭିତରେ ଥିବା ସର୍ବୋତ୍ତମର ପ୍ରକାଶ ହେବା ପାଇଁ ଆବାହନ କରି ପ୍ରାର୍ଥନା କରନ୍ତି ।

ଶାନ୍ତିପାଠର ପ୍ରତ୍ୟେକଟି ଶବ୍ଦ ହେଉଛି ଆମ ଭିତରେ ଥିବା କଳୁଷିତ ଅପରାଧୀ ସ୍ୱଭାବର ଘୋଷଣା ପତ୍ର । ପ୍ରାର୍ଥନା ମାଧ୍ୟମରେ ଆମେ ଭଗବାନଙ୍କୁ ଆମର ଓକିଲ, ଦଲାଲ, ଡାକ୍ତର ଏପରିକି ହତ୍ୟା ଅଭିପ୍ରାୟର ସାହାଯ୍ୟକାରୀ ଭାବରେ ନିଯୁକ୍ତି କରିବାକୁ ଆରମ୍ଭ କରିଛୁ। ଏହା ଉପାୟ ବା ପଦ୍ଧତିର ଦୋଷ ନୁହେଁ । ଜଣେ ଖରାପ ଲୋକ ଶତ୍ରୁମନୋଭାବପନ୍ନ ମୁହୂର୍ତ୍ତରେ ଯଦି ତାର ମା'କୁ ହତ୍ୟା କରେ, ସେଥିପାଇଁ ଖଣ୍ଡାଟି ଗୋଟିଏ ନିଷ୍ଠୁର ଅସ୍ତ୍ର ବୋଲି କହିହେବ ନାହିଁ । ସେହିପରି ପ୍ରାର୍ଥନାର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ହେଉଛି ଆଶୀର୍ବାଦ, କିନ୍ତୁ ଆମେମାନେ ହିଁ ଏହାକୁ ହୀନ ଉଦ୍ଦେଶ୍ୟରେ ବ୍ୟବହାର କରି ପ୍ରାର୍ଥନାର ବିଧାନକୁ ଦୂଷିତ କରୁ ।

ଉପନିଷଦ୍‌ର ମହାନ ଋଷିମାନେ କୌଣସି କାମନା ବିଷୟରେ ଜାଣି ନ ଥିଲେ । ଯେଉଁ ବିଷୟ ଜଗତ ସମ୍ବନ୍ଧରେ ଅନୁସନ୍ଧାନ କରି ଏହା ଅନ୍ତଃସାରହୀନ ଏବଂ ଦୁଃଖରେ ଛନ୍ଦି ହୋଇ ଥିବାର ଆବିଷ୍କାର କରିଥିଲେ, ତା' ସମ୍ବନ୍ଧରେ ମଧ୍ୟ ଜାଣି ନଥିଲେ । ସମଗ୍ର ଜୀବଜଗତର ସାଂସ୍କୃତିକ ଅଭ୍ୟୁତ୍‌ଥାନ ପାଇଁ ହିଁ କେବଳ ସେମାନେ ପ୍ରାର୍ଥନା କରୁଥିଲେ। ସବୁ ଉପନିଷଦ୍‌ରେ ଶାନ୍ତିପାଠର ଶବ୍ଦରେ ବୈଦିକ ଯୁଗର ଏହି ଜାତୀୟ ଚରିତ୍ରର ଛାପ ରହିଛି । ଉଭୟ ଗୁରୁ ଏବଂ ଶିଷ୍ୟ ଆଧ୍ୟାତ୍ମିକ ଜୀବନ ସମ୍ବନ୍ଧରେ ଶୁଭ ବ୍ୟତୀତ ଅନ୍ୟ କିଛି ନ ଦେଖିବାକୁ ବା ନ ଶୁଣିବାକୁ ନିଷ୍ପାପର ଭାବରେ ଚାହୁଁଥିଲେ ଏବଂ ପ୍ରାର୍ଥନା

କରୁଥିଲେ । ମନର ଦେବରାଜ୍ୟରେ ସଇତାନ ଯେଉଁ ରାଜପଥ ଦେଇ ପ୍ରବେଶ କରେ, ତାହା ହେଉଛି  ଚକ୍ଷୁ ଏବଂ କର୍ଣ୍ଣ ଇନ୍ଦ୍ରିୟ । ମଣିଷର ମାନସିକ ଆତ୍ମହତ୍ୟା ପାଇଁ ଅନ୍ୟାନ୍ୟ ଇନ୍ଦ୍ରିୟ ବିଷୟ ଏତେ ସିଧାସଳଖ ଭାବରେ ଆସି ପାରନ୍ତି ନାହିଁ । ଉଭୟ ଖରାପ ଦୃଶ୍ୟ ଏବଂ ଅଭିପ୍ରାୟର ଗୁଞ୍ଜରଣ - ସିଧାସଳଖ ଭାବେ ସେମାନଙ୍କ (ଅର୍ଥାତ୍ ଚକ୍ଷୁ ଓ କର୍ଣ୍ଣ) ସମକ୍ଷରେ ସମସ୍ତ ମହାନତାକୁ ଓଳେଇ ନିଅନ୍ତି ଏବଂ ତା'ପରେ ଆମ ହୃଦୟରେ ଥିବା ଆଧ୍ୟାତ୍ମିକ ପ୍ରାସାଦକୁ କଳଙ୍କିତ କରି ଦିଅନ୍ତି । ତେଣୁ କେବଳ ଶୁଦ୍ଧ ଏବଂ ଉତ୍ତମ ବ୍ୟତୀତ ଅନ୍ୟ କିଛି ନ ଦେଖିବାକୁ ଏବଂ ନ ଶୁଣିବାକୁ ବୈଦିକ ଦ୍ରଷ୍ଟାମାନଙ୍କର ଏହି ମହାନ୍ ପ୍ରାର୍ଥନା ।

ବୈଦିକ ଗୁରୁମାନଙ୍କର ଏହି ପ୍ରାର୍ଥନାରେ ଆମେ ହିନ୍ଦୁମାନଙ୍କର 'ଦାସ କ୍ୟାପିଟାଲ୍'* ଦେଖିବାକୁ ପାଉ । ସମାଜର ବା ଗୋଷ୍ଠୀର ପ୍ରତ୍ୟେକ ସଦସ୍ୟ ଗଭୀର ଏବଂ ନିଷ୍ପାପର ଭାବରେ କେବଳ ଶୁଭ ଦେଖିବାପାଇଁ ପ୍ରାର୍ଥନା କଲେ ଏବଂ ସେଥିପାଇଁ କାମ କଲେ, ସଂସ୍କୃତିର ସେହି ଯୁଗରେ ସେହି ଦେଶରେ ଜେଲର ଆବଶ୍ୟକତା ରହିବ ନାହିଁ, ବସ୍ତି ରହିବ ନାହିଁ, ଦାରିଦ୍ର୍ୟ କଳ୍ପନାତୀତ ହୋଇଯିବ, ରୋଗ ଏକ ବ୍ୟତିକ୍ରମ ମାତ୍ର ହୋଇଯିବ। ଜଗତରେ ଏପରି ଏକ ପୂର୍ଣ୍ଣାଙ୍ଗ ଆଧ୍ୟାତ୍ମିକ ସାମ୍ୟବାଦ କେବେ ବି ସମ୍ଭବ ହୋଇ ପାରିବ କି ବୋଲି ଚାକ୍ଷୁସ କରିବାକୁ ବର୍ତ୍ତମାନର ଘଟଣାବଳୀରେ ଆମେ ହୁଏତ ଅସଫଳ ହେବା, ହତାଶ ହୋଇପଡ଼ିବା । କିନ୍ତୁ ପୁରାତନ ଯୁଗର ଋଷିମାନଙ୍କର ଏହା ହିଁ ଲକ୍ଷ୍ୟ ଥିବାର ମନେ ହୁଏ ।  ତାଙ୍କର କଳ୍ପନାକୁ ସେମାନେ ସେ ସମୟରେ କିପରି ପୂର୍ଣ୍ଣାଙ୍ଗତାରେ ପରିଣତ କରିଥିଲେ, ପ୍ରାର୍ଥନା ତାହା ସ୍ପଷ୍ଟଭାବେ ସୂଚାଇ ଦିଏ ।

ପୁନଶ୍ଚ, ସେମାନେ କେବଳ ସମ୍ପୂର୍ଣ୍ଣ ବୈରାଗ୍ୟର ଜୀବନଯାପନ କରୁଥିଲେ ଏବଂ ସାର୍ବଜନୀନ ପ୍ରେମ ନୀତିରେ କାମ କରୁ ନ ଥିଲେ, ବରଂ ବାସ୍ତବ ଅର୍ଥରେ ପୂର୍ଣ୍ଣାଙ୍ଗ ସେହି ପିଢି ଶାରୀରିକ ଏବଂ ବୈଷୟିକ ଜଗତର ଆବଶ୍ୟକତା ପାଇଁ କଦାପି ଆଖି ବୁଜି ଦେଇ ନ ଥିଲେ। ଜୀବନ ସମ୍ବନ୍ଧରେ ତାଙ୍କର କୌଣସି ଅଭିଯୋଗ ନ ଥିଲା। ତାଙ୍କର ସମଗ୍ର ଜୀବନକାଳକୁ ପରିପୂର୍ଣ୍ଣ ସ୍ୱାସ୍ଥ୍ୟ ଏବଂ ଶକ୍ତିରେ ବିତାଇବା ପାଇଁ ଜଗତର ନାଥ ଆଶୀର୍ବାଦ କରନ୍ତୁ ବୋଲି କାମନା କରିବାର ଏହି ପ୍ରାର୍ଥନାରୁ ସ୍ପଷ୍ଟ ହୁଏ ।

---

* 'ଦାସ୍ କ୍ୟାପିଟାଲ୍' ସମାଜବାଦର ଏକ ବିଶିଷ୍ଟ ଗ୍ରନ୍ଥ। ଏହାକୁ କାର୍ଲ ମାର୍କ୍ସ ରଚନା କରିଥିଲେ।

ଇନ୍ଦ୍ର, ବାୟୁ ଏବଂ ସୂର୍ଯ୍ୟଙ୍କୁ ଋଷିମାନଙ୍କର ଆବାହନ ମନେ ପକାଇ ଦିଏ ଯେ, ରାମ, କୃଷ୍ଣ ଏବଂ ଅନ୍ୟାନ୍ୟ ପୌରାଣିକ ଦେବତାମାନେ ହେଉଛନ୍ତି ଅନେକ ପରବର୍ତ୍ତି ସମୟର। ପୌରାଣିକ ଯୁଗରେ ଏହି ଦେବତାମାନଙ୍କୁ ଗ୍ରହଣ କରା ଯାଇଛି। ବୈଦିକ ଯୁଗରେ ଗୁରୁମାନେ କେବଳ ପାଞ୍ଚୋଟି  ମହା ତତ୍ତ୍ୱ ଏବଂ ସେହି ପ୍ରକାରର ଅନ୍ୟାନ୍ୟ ପରିପ୍ରକାଶକୁ ଦେବତା ଭାବରେ ଜାଣିଥିଲେ। ଉଭୟ ଗୁରୁ ଏବଂ ଶିଷ୍ୟଙ୍କ ଦ୍ୱାରା ଏଠାରେ ସେମାନଙ୍କ ଆବାହନ କରା ଯାଇଛି।

ଶାନ୍ତିକୁ ତିନି ଥର ଆବାହନ ନ କରି କୌଣସି ଶାନ୍ତିପାଠ ଶେଷ ହୁଏ ନାହିଁ। ଆଚାର୍ଯ୍ୟମାନେ ବ୍ୟାଖ୍ୟା କରିଛନ୍ତି ଯେ ତିନିଥର ଆବୃତ୍ତି କରିବା ହେଲା – ତିନୋଟି ଶକ୍ତିକୁ ସମ୍ବୋଧନ କରିବା– ଏହି  ତିନି ଶ୍ରେଣୀରେ ଶାସ୍ତ୍ରାଧ୍ୟାୟନର ସମସ୍ତ ବାଧାବିଘ୍ନକୁ ଶ୍ରେଣୀବଦ୍ଧ କରାଯାଇପାରିବ, ଏମାନେ ହେଲେ ଆଧିଦୈବିକ – ଯଥା ବିଜୁଳି, ଘଡଘଡି ଇତ୍ୟାଦି ପରି ଦୈବୀକୃତ; ଆଧିଭୌତିକ – ଯେପରିକି ଅଗ୍ନି, ବନ୍ୟା, ଭୂସ୍ଖଳନ ଇତ୍ୟାଦି; ପରି ସଂଘଟଣ; କିମ୍ବା ଆଧ୍ୟାତ୍ମିକ – ଯେପରିକି, ନିଷ୍କ୍ରିୟତା, ବିଶ୍ୱାସର ଅଭାବ, ନିଷ୍ଠାର ଅଭାବ ଏବଂ ଆମ ନିଜର ନକରାତ୍ମକତାରୁ ସୃଷ୍ଟି ହେଉଥିବା ଏପରି ଆହୁରି ଅନେକ କିଛି ବିଷୟାଦି ।

ଆମେ ମଧ୍ୟ ପ୍ରତିଦିନ ଶାନ୍ତିପାଠ କରି ପ୍ରବଚନ ଆରମ୍ଭ କରିବା ଏବଂ ସମବେତ ଭାବରେ ତିନି ଥର ଶାନ୍ତି ଉଚ୍ଚାରଣ କରିବାବେଳେ ଅଧ୍ୟୟନ ପାଇଁ ଆମର ସାମୂହିକ ପ୍ରଚେଷ୍ଟା ଏହି ତିନୋଟି ଶକ୍ତି ଦ୍ୱାରା ବିଘ୍ନିତ ନ ହେଉ ବୋଲି ନିଷ୍ଠାପର ଭାବରେ ପ୍ରାର୍ଥନା କରିବା ।

# ଉପକ୍ରମଣିକା

ବିଲୀନର ଦିବ୍ୟ ଉପାୟରେ ଅହଂକାରକୁ ସମ୍ପୂର୍ଣ୍ଣ ନିରାକରଣ କରି ଉପନିଷଦୀୟ ଦ୍ରଷ୍ଟାମାନେ ସତ୍ୟର ପ୍ରାସାଦରେ ପହଞ୍ଚି ନିଜେ ତା'ର ମାଲିକ ଭାବରେ ପୁନରାବିଷ୍କାର କରିବାକୁ ସେଠାରେ ପ୍ରବେଶ କରନ୍ତି । ସେହି ପୂର୍ଣ୍ଣାଙ୍ଗତାର ରାଜ୍ୟ ହିଁ ପ୍ରକୃତରେ ହେଉଛି ଅଫେରନ୍ତା ଜଗତ । ତେବେ ବି ସେମାନଙ୍କ ମଧ୍ୟରେ ଏପରି କେତେକ ବିରଳ ପକ୍ଷୀ ଅଛନ୍ତି, ତାଙ୍କର ଜାତିର ଅନ୍ୟମାନଙ୍କୁ ସତ୍ୟଙ୍କ ପାଖକୁ ଆଗେଇନେବା ପାଇଁ, ମାର୍ଗ ଦର୍ଶାଇବା ପାଇଁ ଏବଂ ଉତ୍ସାହିତ କରିବା ପାଇଁ ପୁଣି ଉଡ଼ିକରି ଫେରି ଆସିଛନ୍ତି । ଆର ପାରିର ପ୍ରାକୃତିକ ଅବସ୍ଥା ଏବଂ ଯେଉଁ ମୁଖ୍ୟ ମାର୍ଗ ଦ୍ୱାରା ଜଣେ ସେଠି ପହଞ୍ଚି ପାରିବ, ତାହା ପ୍ରକାଶ କରିବା ପାଇଁ ସେମାନେ ଚେଷ୍ଟା କରିଛନ୍ତି । ଏପରି ଦିବ୍ୟ ପ୍ରେରଣା ଏବଂ ପ୍ରେରଣାମୟ ମୁହୂର୍ତ୍ତରେ ଋଷିମାନେ ସେମାନଙ୍କର ମହାନ କୃତି ଉପନିଷଦ୍‌ରେ ନିଜର ନାମୋଲ୍ଲେଖ କରିବାକୁ ଭୁଲି ଯାଇଛନ୍ତି । ଏହିପରି ଭାବରେ ଉପନିଷଦ୍ ଗ୍ରନ୍ଥରେ ଦର୍ଶନ ସମ୍ବନ୍ଧରେ ଅତୁଳନୀୟ ସାହିତ୍ୟ ଦେଖାଯାଏ । ଏମାନଙ୍କର ପ୍ରଣେତା ଆମର ଅଜ୍ଞାତ। ଆମେ କେବଳ ଏତିକି ଜାଣୁ ଯେ, ଜ୍ଞାନର ଏହି ତେଜସ୍ୱୀ ଶବ୍ଦ ପଛରେ ଏପରି ଏକ ବ୍ୟକ୍ତିତ୍ୱ ରହିଛି, ଯିଏ କି ଏପରି ପୁଙ୍ଖାନୁପୁଙ୍ଖ ଭାବରେ ବର୍ଣ୍ଣନା କରିଥିବା ବିଷୟର ଆତ୍ମିକ(ବ୍ୟକ୍ତିକ) ଅନୁଭୂତିର ଆନନ୍ଦରେ ମତ୍ତ ହୋଇ ଯାଇଛନ୍ତି।

ଆମେ ଖଣ୍ଡେ ଭାବପୂର୍ଣ୍ଣ ଚିଠି ବା ସନ୍ତୋଷଜନକ ନୋଟ ଲେଖିଲେ ଅନ୍ୟମାନଙ୍କୁ ଦେଖାଇ ଏହା ଏକ ସୃଜନାତ୍ମକ କଳା ବୋଲି ଆନନ୍ଦରେ ଆତ୍ମହରା ନ ହୋଇ ରହିପାରୁ ନାହିଁ । ଏପରି ସୃଜନାତ୍ମକ କଳାକାରମାନେ ସାଂସାରିକ ବୁଦ୍ଧି ସମ୍ପନ୍ନ ଏବଂ ଶଗଡ଼ଗୁଳାରେ ଯାଉଥିବା ଲୋକଙ୍କ ପାଇଁ ଗୋଟିଏ ଉତ୍ପାତ ଏବଂ ବୋଝ ପରି । ତା'ର ସୃଷ୍ଟିକୁ ଉପଭୋଗ କରିବା ପାଇଁ ତା'ର ପାରାଭାଡ଼ି କୋଠରୀକୁ ଯିବା ପାଇଁ ସେ କଳାକାର ତୁମ ପାଦ ଧରି ନେବ । ଜଣେ ସଂଗୀତଜ୍ଞ ପାଗଳ ହୋଇଯାଇ ତୁମକୁ ରେଳଗାଡ଼ି ଧରିବାକୁ ଦେବ ନାହିଁ, ଲେଖକଟିଏ ତୁମ ବେକରେ ଓହଳି ତାର ମୋଟା ମୋଟା ପାଣ୍ଡୁଲିପି ଶୁଣିବା ପାଇଁ ତୁମକୁ ବାଧ୍ୟ କରିବ । ଜଣେ ଆର୍କିମିଡିସ ନିଜର ଉଲଗ୍ନ ଅବସ୍ଥା କଥା ଭୁଲିଯାଇ 'ଇଉରେକ୍କା' ବୋଲି ପାଟିକରି ନଗର ରାସ୍ତାରେ ଦଉଡ଼ିବ । ମୁହୂର୍ତ୍ତକ ପାଇଁ ନିଜର

ନିମ୍ନ ପରିଚ୍ଛିନ୍ନତା ସହିତ ତାଦାତ୍ମ୍ୟରୁ ମୁହୂର୍ତ୍ତକ ପାଇଁ ଉପରକୁ ଉଠି ନିର୍ବିକଳ୍ପଙ୍କର ଜ୍ଞାନର ଝଲକାଏ ମାତ୍ର ଲାଭ କରିବାର ଏହା ହେଉଛି ଉଦାହରଣ । ଏପରି କୌଣସି ପ୍ରକୃତ କବି, କଳାକାର, ସଙ୍ଗୀତଜ୍ଞ ବା ବୈଜ୍ଞାନିକ ନାହାଁନ୍ତି ଯିଏ ନିଜକୁ ବିସ୍ମୟକର କୃତିର ପ୍ରଣେତା ବୋଲି ଦାବୀ କରିବେ ନାହିଁ । ଜୀବଭାବର ସଂପୂର୍ଣ୍ଣ ବିନାଶ ହେଲେ ସୃଜନାତ୍ମକ କଳା ସର୍ବୋତ୍ତମ ହୋଇଥାଏ ।

ଅହଂଭାବର ଅତୀତ ସତ୍ୟର ଅନୁଭୂତିରେ ପ୍ରତିଷ୍ଠିତ ହୋଇ ନିଜକୁ ଉପନିଷଦ୍‌ର ସ୍ରଷ୍ଟା ଭାବେ ଦାବୀ କରିପାରି ନାହାନ୍ତି । ନିଜର ସର୍ବୋତ୍ତମ କୃତିରେ ମଧ୍ୟ ସେମାନେ ଜଣାଇବାକୁ ଚାହୁଁଥିବା ବିଷୟର ପ୍ରକୃତ ମହିମା, ମହାନତା, ପୂର୍ଣ୍ଣାଙ୍ଗତା ଏବଂ ପରିପୂର୍ଣ୍ଣତା ପ୍ରକାଶ କରିପାରି ନାହାନ୍ତି ବୋଲି ସେମାନେ ଅନୁଭବ କରିଛନ୍ତି । ସସୀମ ଶବ୍ଦ ମାଧ୍ୟମରେ ଅସୀମଙ୍କର ଧାରଣା କରିହେବ ନାହିଁ ବା ଜ୍ଞାପନ କରି ହେବ ନାହିଁ । ଭଗବାନଙ୍କୁ ବ୍ୟାଖ୍ୟା କରିବା ମାନେ ତାଙ୍କୁ ଅବଜ୍ଞା କରିବା ।

ପୁନଶ୍ଚ, ୟୁରୋପର ଦର୍ଶନ ଏବଂ ଦର୍ଶନଗ୍ରନ୍ଥମାନଙ୍କ ପରି ଭାରତରେ ଉପନିଷଦ୍ ଧନୀ ହେବାର ପଣ୍ୟଦ୍ରବ୍ୟ ବା କରତାଳି ପାଇବାର ସାଧନ ନୁହେଁ । ପାଶ୍ଚାତ୍ୟ ଦେଶ ପାଇଁ ଦର୍ଶନ ହେଉଛି ଆତ୍ମ-ତୋଷଣ ଏବଂ ଆତ୍ମ-ସନ୍ତୋଷର ଅନ୍ୟତମ ମାର୍ଗ; ପ୍ରାଚ୍ୟ ଦେଶରେ ଋଷି ଏବଂ ତାଙ୍କର ପ୍ରକୃତ ଦାୟାଦଙ୍କ ପାଇଁ ଦର୍ଶନ ହେଉଛି ଆତ୍ମ-ସମ୍ମାନ ଏବଂ ଆତ୍ମ-ସନ୍ତୋଷ । ତେଣୁ ସେମାନେ ପର୍ଦ୍ଦା ପଛରେ ରହିବାକୁ ଠିକ୍ କରିଥିଲେ ଏବଂ ଯେଉଁ ଜ୍ଞାନ ଲାଭ କରି ତାକୁ ପ୍ରକାଶ କଲେ, ତାହା ତାଙ୍କର ନୁହେଁ ବୋଲି ଯଥାର୍ଥରେ ଅନୁଭବ କରିଥିଲେ। ତାଙ୍କ ବ୍ୟତୀତ ଅନ୍ୟ କେହି କହୁଥିବା ପରି ଅନ୍ତର ଭିତରୁ ସେମାନେ ମନ୍ତ୍ର ସବୁ ଶୁଣି ପାରୁଥିଲେ କେବଳ । ଶ୍ରୁତି ଶବ୍ଦର ଅର୍ଥ ହେଲା, 'ଯାହା ଶୁଣାଯାଏ' ।

ଗୁରୁଙ୍କ ଦ୍ୱାରା ନିର୍ଦ୍ଦେଶିତ ସତ୍ୟର ଆତ୍ମିକ ଅନୁଭୂତି ଲାଭ କଲା ପରେ ଶିଷ୍ୟ ନିଜେ ଗୁରୁ ହୋଇଯାଏ ଏବଂ ନିଜ ପାଖକୁ ଆସୁଥିବା ସାଧକମାନଙ୍କୁ ସେ ଅନୁଭୂତିର ଅବସ୍ଥା ବର୍ଣ୍ଣନା କଲାବେଳେ, ପ୍ରକାଶ କଲାବେଳେ ଏହାର ଶ୍ରେୟ କଦାପି ଦାବୀ କରନ୍ତି ନାହିଁ, ବରଂ ଗୁରୁଙ୍କୁ ଶ୍ରେୟ ଦିଅନ୍ତି, ଏହିପରି ଭାବରେ ଆମର ଶାସ୍ତ୍ରୀୟ ଗ୍ରନ୍ଥସବୁ ବର୍ତ୍ତମାନ ପର୍ଯ୍ୟନ୍ତ ସେମାନଙ୍କର ଶୁଦ୍ଧତା ଏବଂ ପବିତ୍ରତା ରକ୍ଷା କରିପାରିଛନ୍ତି ଏବଂ ଗୁରୁ-ଶିଷ୍ୟ ପରମ୍ପରା ରକ୍ଷା କରି ଆମ ପାଖକୁ ଆସିଛନ୍ତି । ମନ ଏବଂ ବୁଦ୍ଧିର ସ୍ତରରୁ ଯାହା ଘୋଷଣା କରାଯାଏ, ତାହା ଶାଶ୍ୱତ ବେଦର ଅଂଶ ବୋଲି ଆମେ ଗ୍ରହଣ କରିବାକୁ ଯିବା ନାହିଁ।

ସେପରି କଲେ ପାଶ୍ଚାତ୍ୟ ଦେଶର ଦର୍ଶନ ପରି ଆମର ଦର୍ଶନ ମଧ୍ୟ ପ୍ରତ୍ୟେକ ପନ୍ଦର ବର୍ଷରେ ବଦଳିଯିବ ।

ୟୁରୋପରେ ଆମେ ଦେଖିବାକୁ ପାଉ ଯେ, ଯେଉଁ ବୈଷୟିକ ମୂଲ୍ୟରେ ଜୀବନଯାପନ କରାଯାଉଥାଏ, ଜାତୀୟ ଜୀବନର ପ୍ରତ୍ୟେକ ପରିବର୍ତ୍ତନ ରୂପାନ୍ତରଣ ସହିତ, ପ୍ରତ୍ୟେକ ଯୁଦ୍ଧ ସହିତ, ପ୍ରତ୍ୟେକ ବିପ୍ଳବ ସହିତ ତା'ର ସମ୍ପୂର୍ଣ୍ଣ ପୁର୍ନବ୍ୟବସ୍ଥା ହୋଇଥାଏ ଏବଂ ପରିଣାମସ୍ୱରୂପ ଜୀବନ ପ୍ରତି ସେମାନଙ୍କର ମନ ଏବଂ ବୁଦ୍ଧିର ଦୃଷ୍ଟିକୋଣରେ ପରିବର୍ତ୍ତନ ହୋଇଥାଏ । ପ୍ରତ୍ୟେକ ବିକ୍ଷୋଭ ସହିତ, ପ୍ଲାଟୋଙ୍କଠାରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ ଆମେ ନାନା ପ୍ରକାରର ପରିବର୍ତ୍ତନଶୀଳ ଦର୍ଶନ ଗ୍ରନ୍ଥ ଦେଖିବାକୁ ପାଉ । କିନ୍ତୁ ଭାରତରେ, ଶାଶ୍ୱତ ବେଦ ଏବଂ ଉପନିଷଦୀୟ ସତ୍ୟ, ପବିତ୍ର ଗଙ୍ଗାର ପୁଷ୍ପିତ ଉପତ୍ୟକାରେ ଶିକ୍ଷା ଦିଆଯାଉଥିବାବେଳେ ଯେପରି ସତ୍ୟ ଥିଲା, ବର୍ତ୍ତମାନ ମଧ୍ୟ ସେହିପରି ରହିଛି ।

ବୈଜ୍ଞାନିକ ଅଭିବୃଦ୍ଧି, ସାମ୍ପ୍ରଦାୟିକ ସଚେତନଶୀଳତା, ରାଜନୈତିକ ଚେତନା କିମ୍ବା ଆର୍ନ୍ତଜାତୀୟ ପରିସ୍ଥିତି ଆମର ବାହ୍ୟ ଏବଂ ଅନ୍ତରର ବିଷୟ ଓ ଭାବନା ଜଗତକୁ ବିଶୃଙ୍ଖଳିତ କରିପାରନ୍ତି । କିନ୍ତୁ ସୁଷୁପ୍ତିର ଅଭିଜ୍ଞତା ସବୁ ସମୟରେ ସେହି ଏକାପରି ବୋଲି ତୁମେ ସ୍ୱୀକାର କରିବ । ଜଗତରେ ବାହ୍ୟ ବ୍ୟବସ୍ଥା ଏବଂ ପରିଣାମତଃ ପଦାର୍ଥମାନଙ୍କର ମନୋବୈଜ୍ଞାନିକ ଏବଂ ବୌଦ୍ଧିକ ହିସାବନିକାଶ ସହିତ ଆମେ ହୁଏତ ପ୍ରଗତି କରିଛୁ ଏବଂ ପୂରାପୂରି ବଦଳି ଯାଇଛୁ, କିନ୍ତୁ ସ୍ୱପ୍ନାବସ୍ଥାର ଅନୁଭୁତି କୌଣସି ସମୟରେ ଅଲଗା ନୁହେଁ । ସେହିପରି ମଧ୍ୟ, ଉପନିଷଦ୍‌ରେ ଈଶ୍ୱରତ୍ୱର ଶାଶ୍ୱତ ଅନୁଭୂତିର ଲକ୍ଷ୍ୟ ଶିକ୍ଷା ଦିଆ ଯାଇଛି । ଆମର ସ୍ଥୂଳ ଜୀବନରେ ବାହ୍ୟ ରୂପରେ ଯାହା ପରିବର୍ତ୍ତନ ହେଲେ ମଧ୍ୟ ସତ୍ୟ ଅପରିବର୍ତ୍ତନୀୟ ଏବଂ ଅଟଳ ।

ଶାସ୍ତ୍ରର ଅଧ୍ୟୟନ ଆରମ୍ଭ କରିବା ପୂର୍ବରୁ ଉପନିଷଦ୍‌ର ଗଠନ, ଏବଂ କାରିକା ସମ୍ବନ୍ଧରେ ଟିକିଏ ଅନୁସନ୍ଧାନ କରିବା ।

ବେଦର ସଂଖ୍ୟା ଚାରୋଟି, ଋକ୍‌ବେଦ, ଯର୍ଜୁବେଦ, ସାମବେଦ ଏବଂ ଅଥର୍ବ ବେଦ । ପ୍ରତ୍ୟେକ ବେଦରେ ତିନୋଟି ବିଭାଗ ଅଛି, ପ୍ରାଥମିକ ଅଂଶକୁ ମନ୍ତ୍ର, ମଧ୍ୟଭାଗକୁ ବ୍ରାହ୍ମଣ ଏବଂ ଶେଷ ଭାଗକୁ ଉପନିଷଦ୍ ବା ଆରଣ୍ୟକ କୁହାଯାଏ । ମନ୍ତ୍ରରେ ମୁଖ୍ୟତଃ ରହିଛି ପ୍ରକୃତି ଏବଂ ଜଗତର ଶକ୍ତିର ମହିମା । ସେ ଯୁଗର ମହାନ ଆର୍ଯ୍ୟମାନେ ପ୍ରକୃତିର ପରାକ୍ରମଶାଳୀ, ଭୟଙ୍କର ଓ ଅନମନୀୟ ନାମ-ରୂପ ଚିହ୍ନି ପାରିଥିବାର ଆମେ

ସ୍ପଷ୍ଟତଃ ଦେଖିପାରୁ । ଯାଗ ଯଜ୍ଞ କଲାବେଳେ ଯେଉଁ ସବୁ ବିଧିବିଧାନ ଆଚରଣ କରିବା କଥା, ବ୍ରାହ୍ମଣ ଅଂଶରେ ତାହା ପୁଙ୍ଖାନୁପୁଙ୍ଖ ଭାବେ ଦିଆଯାଇଛି । ଯେଉଁ ଏକମାତ୍ର ସତ୍ୟ ବିବିଧ ପ୍ରାକୃତିକ ଜଗତ ପାଇଁ ଅଧିଷ୍ଠାନ ଏବଂ ସାଧକମାନେ କିପରି ସତ୍ୟାନୁଭୂତି ଲାଭ କରିପାରିବେ, ଆରଣ୍ୟକ ହେଉଛି ତା'ର ଶୁଦ୍ଧ, ଦାର୍ଶନିକ ଆଲୋଚନା ।

ଏପର୍ଯ୍ୟନ୍ତ ୧୮୩ଟି ଉପନିଷଦ୍‌ର ଆବିଷ୍କାର କରାଯାଇଛି । ଏମାନଙ୍କ ମଧ୍ୟରୁ ୧୨୫ଟିକୁ ଶାସ୍ତ୍ରାନୁବର୍ତ୍ତୀ ଭାବରେ ଗ୍ରହଣ କରାଯାଇଛି । ସେମାନଙ୍କ ମଧ୍ୟରୁ ଦଶଟି ଏପରି ବିଶେଷ ଭାବରେ ମୁଖ୍ୟ ଯେ, ବର୍ତ୍ତମାନ ସମୟର ମହାନ ଦାର୍ଶନିକମାନେ ସେମାନଙ୍କର ବିସ୍ତୃତି ଏବଂ ବିଶଦ୍ ଭାଷ୍ୟ ଲେଖିଛନ୍ତି । ଏହି ଦଶଟି ଉପନିଷଦ୍‌ମାନଙ୍କ ମଧ୍ୟରୁ ମାଣ୍ଡୁକ୍ୟ ଉପନିଷଦକୁ ଅତି ମହନୀୟ ସ୍ଥାନ ଦିଆଯାଇଛି ।

ମାଣ୍ଡୁକ୍ୟ ଉପନିଷଦ୍‌ରେ ମାତ୍ର ବାରଗୋଟି ମନ୍ତ୍ର ରହିଛି । ଏହା ଏତେ ସଂକ୍ଷିପ୍ତ ଯେ, ଯଥେଷ୍ଟ ବ୍ୟାଖ୍ୟା ବିନା ଏହାର ସମଗ୍ର ଅର୍ଥ ବୁଝିବା ଶିଷ୍ୟମାନଙ୍କ ପାଇଁ ବହୁତ କଷ୍ଟସାଧ୍ୟ । ତେଣୁ, ଶ୍ରୀ ଶଙ୍କରଙ୍କର ମହାନ ଗୁରୁ ଶ୍ରୀଗୌଡ଼ପାଦ ଏହି ଉପନିଷଦ୍ ସମ୍ବନ୍ଧରେ କାରିକାଟିଏ ଲେଖିଛନ୍ତି ଏବଂ କାରିକା ବିନା ମାଣ୍ଡୁକ୍ୟ ଉପନିଷଦ୍‌ର ଅଧ୍ୟୟନ ପୂର୍ଣ୍ଣ ହେଲା ବୋଲି କେହି ଭାବିବା ଉଚିତ୍ ନୁହଁ ।

କାରିକା, ସାଧାରଣ ଅର୍ଥରେ ଏକ ଭାଗ୍ୟ ନୁହେଁ, କାରିକା ହେଲା ସ୍ମରଣାର୍ଥକ କେତେକ ପଦ୍ୟ – କୌଣସି ନିର୍ଦ୍ଦିଷ୍ଟ ସିଦ୍ଧାନ୍ତ (ମୂଳତତ୍ତ୍ୱ) ବା ବିଷୟର ଦିଗକୁ ଶିଷ୍ୟମାନେ ମନେ ରଖିବା ପାଇଁ, ବିଶଦ ଭାବରେ ଏହାର ବ୍ୟାଖ୍ୟା କରି ଛନ୍ଦୋବଦ୍ଧ ଭାବରେ ଲେଖା ପଦ୍ୟ । ସହଜରେ ମନେ ରଖିବା ଉଦ୍ଦେଶ୍ୟରେ ମନ୍ତ୍ର ଏବଂ ସୂତ୍ର ମଧ୍ୟ ଲେଖା ଯାଇଥାଏ, କିନ୍ତୁ ମନ୍ତ୍ର ସାଧାରଣତଃ ଗଦ୍ୟ ହୋଇଥାଏ, ଏଥିରେ ସଙ୍କୋଚନ(ଅଳ୍ପ ଶବ୍ଦରେ ଅର୍ଥ ପ୍ରକାଶ କରିବା) ଏତେ ବେଶୀ ଯେ, ଅନେକ ସମୟରେ ସଂକ୍ଷିପ୍ତତାର ବେଦୀରେ ଲେଖକ କେତେକ ଶବ୍ଦ ଛାଡ଼ିଯାଇ ଥାଆନ୍ତି, ଏପରିକି ଶବ୍ଦ-ବିନ୍ୟାସରେ ମଧ୍ୟ । କାରିକା ହେଉଛି ଏତେ ସଂକ୍ଷିପ୍ତ ନ ହୋଇଥିବା ପଦ୍ୟ । ପୁନଶ୍ଚ, କାରିକା କୌଣସି ପ୍ରଣାଳୀର କେବଳ ଗୋଟିଏ ଦିଗ ବା ସ୍ତର-ବିଶେଷର ବ୍ୟାଖ୍ୟା କରୁଥିବାବେଳେ ସୂତ୍ର ଏହି ପୂରାଟିର ବ୍ୟାଖ୍ୟା କରେ ।

ଉପନିଷଦ୍‌ର ଶିରୋନାମା ବିଷୟବସ୍ତୁ ବା ଲେଖକଙ୍କ ସମ୍ବନ୍ଧରେ କିଛି ସୂଚନା ଦିଏ ନାହିଁ, ଯଦିଓ ଆମେ ନିଜର କୌତୂହଳ ଚରିତାର୍ଥ କରିବା ପାଇଁ ସେମାନଙ୍କ ମଧ୍ୟରୁ ଅନେକଙ୍କଠାରୁ ଆମେ କିଛି ଅର୍ଥ ଖୋଜିବାର ଚେଷ୍ଟା କରିଛୁ । ବାସ୍ତବରେ ଅନେକ

ଉପନିଷଦ୍‌ର ପ୍ରଥମ ଶବ୍ଦରୁ ହିଁ ସେମାନଙ୍କର ନାମକରଣ କରାଯାଇଛି (ଉଦାହରଣ ସ୍ୱରୂପ, ଈଶାବାସ୍ୟ ଏବଂ କେନ ଇତ୍ୟାଦି) । କୌଣସି ରଚନାତ୍ମକ କଳାର ଏକ ଅନୁପମ କାର୍ଯ୍ୟକୁ ପ୍ରଣେତା ନିଜର ବୋଲି ନ କହିବାର ଦେଖିଲେ ଆମେ, ଆଧୁନିକ ଯୁଗର ସନ୍ତାନମାନେ ହତଭମ୍ବ ହୋଇଯାଉ । ତେଣୁ, ନିଜକୁ ସନ୍ତୁଷ୍ଟ କରିବା ପାଇଁ ଉପନିଷଦ୍‌ର ନାମରୁ ପ୍ରଣୀତା ଏବଂ ତାଙ୍କର ନାମ ଆବିଷ୍କାର କରିବା ପାଇଁ ଆମେ କଳ୍ପନା ଏବଂ ଚାତୁରୀର ଉପାୟ ଅବଲମ୍ବନ କରୁ । (ଉଦାହରଣ ସ୍ୱରୁପ, କଠ ଉପନିଷଦ୍ ପାଇଁ କଠକ ଋଷି) ।

ନିକଟ ଅତୀତରେ ରାସ୍ତାକଡ଼ର ଗୋଟିଏ ଧର୍ମଶାଳାରେ ମୋର ଜଣେ ସନ୍ୟାସୀଙ୍କ ସହିତ ଅକସ୍ମାତ ଦେଖା ହେଲା । ସେ ମୋତେ ମାଣ୍ଡୁକ୍ୟ ଉପନିଷଦ୍ ସଂକ୍ରାନ୍ତୀୟ ଗୋଟିଏ ତଥ୍ୟ ଦେଲେ । ଏହାର ସତ୍ୟତା ପ୍ରମାଣ କରିବା ପାଇଁ ଯଥେଷ୍ଟ ନିଦର୍ଶନ ନ ଥିବାରୁ ଆଧୁନିକ ଗବେଷକଙ୍କ ପାଇଁ ଏହାର ଗୁରୁତ୍ୱ ନ ଥାଇପାରେ, ତଥାପି ଏହି ଉପନିଷଦ୍‌ର ଅଧ୍ୟୟନ ପାଇଁ ପ୍ରକୃତ ସାଧକଙ୍କୁ ଯଥାର୍ଥ ମନୋବୃତ୍ତି ଏବଂ ମାନସିକ ଭାବରେ ନିୟୋଜିତ କରିବା ପାଇଁ ଏଥିରେ ଅନେକ ପ୍ରେରଣାଦାୟକ ସତ୍ୟ ଅଛି ବୋଲି ମୁଁ ଅନୁଭବ କରେ। ମାଣ୍ଡୁକ୍ୟ ହେଉଛି ଏକ ସଂସ୍କୃତ ଶବ୍ଦ, ଯାହାର ଅର୍ଥ ବେଙ୍ଗ । ଏପରି ଗୋଟିଏ ଶବ୍ଦ ବ୍ୟବହାର କରିବାକୁ ମୋତେ ଅନୁମତି ମିଳିଲେ, ମୁଁ କହିବି ଯେ, ମାଣ୍ଡୁକ୍ୟ ଉପନିଷଦ୍ ହେବ ବେଙ୍ଗୁଆ ଶାସ୍ତ୍ର । ସବୁ ପ୍ରାଣୀଙ୍କ ଭିତରୁ ବେଙ୍ଗ ପରି ଗୋଟିଏ ନିର୍ଦ୍ଦିଷ୍ଟ ପ୍ରାଣୀର ନାମରେ ଶିରୋନାମା ନାମିତ କରି ତାକୁ ମର୍ଯ୍ୟାଦା ଦିଆଯିବାର କାରଣ ସେହି ମହାତ୍ମା ମୋତେ ବୁଝାଇଲେ ଏବଂ ପ୍ରକୃତରେ ତାଙ୍କ କଥା ହୃଦୟ ଏବଂ ମସ୍ତିଷ୍କକୁ ସ୍ପର୍ଶ କଲା ।

ବେଙ୍ଗ ଗୋଟିଏ ପ୍ରାଣୀ, ଯିଏ ବର୍ଷରେ ପ୍ରାୟ ନଅରୁ ଦଶ ମାସ ପୋଖରୀର ପଙ୍କରେ ବା ଅଳିଆ ଗଦା ତଳେ ଲୁଚି ରହେ । ଏପରି ଭାବରେ ବର୍ଷର ଅଧିକାଂଶ ସମୟ ସେମାନେ ନିଭୃତ ଏବଂ ନୀରବରେ ରହନ୍ତି – ସମସ୍ତ କାର୍ଯ୍ୟକଳାପ, କାମନା, ଚାହିଦା, ସଞ୍ଚୟ, ଖାଦ୍ୟ ଗ୍ରହଣ ତ୍ୟାଗକରି ନିଜ ସମ୍ବନ୍ଧରେ ଧ୍ୟାନ କରୁଥିବା ପରି ମନେ ହୁଏ । ତାଙ୍କ ବାର୍ତ୍ତା ଭାଷିବା ପାଇଁ ବର୍ଷା ଋତୁରେ ସେମାନେ ବାହାରକୁ ବାହାରି ଆସନ୍ତି। ତାଙ୍କର ସ୍ୱର କର୍କଶ ହେଲେ ମଧ୍ୟ, ବର୍ଷାଦିନର ଓଦାଳିଆ ଏବଂ ବର୍ଷଣ ମୁଖର ପାଗରେ ତା'ର ଏକ ନିଜସ୍ୱ ମୋହିନୀ ଶକ୍ତି ରହିଛି ।

ଏହିସବୁ ସୃଷ୍ଟିରୁ ଜଣେ ପ୍ରକୃତ ମହାତ୍ମା ତାଙ୍କର ଶାରୀରିକ ଅଭ୍ୟାସ ଏବଂ ଜୀବନର ବ୍ୟବହାରରେ ବେଙ୍ଗର ସମସାମୟିକ । ସେ ଯଦି ପ୍ରକୃତରେ ମହାତ୍ମା, ତେବେ ମଣିଷ

ସମାଜଠାରୁ ଦୂରରେ, ହିମାଳୟର କୌଣସି ଅଜ୍ଞାତ ଗୁମ୍ଫାରେ ଧ୍ୟାନରେ ମଗ୍ନ ରହନ୍ତି । ଏହି ଆତ୍ମାନୁଭବୀ ବ୍ୟକ୍ତିମାନେ ଆତ୍ମକୈନ୍ଦ୍ରିକ ନିଭୃତତାରେ ଧ୍ୟାନର ଜୀବନରେ ସମ୍ପୂର୍ଣ୍ଣ ଏକାକୀ ବାସ କରନ୍ତି । ବର୍ଷା ଋତୁରେ (ଚତୁର୍ମାସ୍ୟା) ସତ୍ୟ ସମ୍ବନ୍ଧରେ ଘୋଷଣା କରିବା ପାଇଁ ସେମାନେ ଏହି ଦୁନିଆକୁ ଆସନ୍ତି । ଭୌତିକ ଏବଂ ଇନ୍ଦ୍ରିୟାସକ୍ତ ବ୍ୟକ୍ତିଙ୍କ ପାଇଁ ଏହି ଘୋଷଣା ନିଶ୍ଚିତ ଭାବରେ କର୍କଶ ଏବଂ ରୁଚିହୀନ ମନେ ହୋଇପାରେ । ଭାବପ୍ରବଣ ପଦ୍ୟ ଏବଂ ଆବେଗପୂର୍ଣ୍ଣ ସଙ୍ଗୀତ କିପରି ଗାନ କରାଯାଏ ତାହା ଦ୍ରଷ୍ଟାମାନେ ଜାଣନ୍ତି ନାହିଁ । ସତ୍ୟକୁ ଅଳଙ୍କୃତ ନ କରି ବାସ୍ତବ ରୂପରେ ପ୍ରକାଶ କରିବା ହିଁ ସେମାନେ ଜାଣନ୍ତି। ଭାବପ୍ରବଣତାର କୋମଳତାରେ ନରମ ହୋଇଥିବା ଆବେଗପୂର୍ଣ୍ଣ ହୃଦୟକୁ ସତ୍ୟର ନିଜସ୍ୱ ସୌନ୍ଦର୍ଯ୍ୟର ପରିପ୍ରକାଶରେ ବେଙ୍ଗରାବ ପରି ଶୁଣାଯାଇପାରେ ! କିନ୍ତୁ ବର୍ଷାର ଓଦାଳିଆ ଦିନରେ, ଘଡଘଡ଼ିର ଗର୍ଜନ ଏବଂ ଆସନ୍ନପ୍ରାୟ ଝଡ଼ ପୂର୍ବର ନୀରବତାର ଜୀବନରେ ବେଙ୍ଗଙ୍କର (ଅର୍ଥାତ୍ ସତ୍ୟଦ୍ରଷ୍ଟା-ମାନଙ୍କର) ରାବରେ ନିଶ୍ଚିତ ଭାବରେ ଏକ ଅସୀମ ମୋହିନୀ ଶକ୍ତି ଏବଂ ଶାନ୍ତି ରହିଛି ।

ଏକଥା ମଧ୍ୟ ସତ୍ୟ ଯେ, ବର୍ଷାର ମଧ୍ୟାନ୍ତରରେ ବେଙ୍ଗମାନେ ଏକାଠି ବସି ଗଳା ଫଟେଇ ଅବିରାମ ଭାବରେ ରାବିବା ଦ୍ୱାରା ନିରସ ଭୂଇଁ ଉପରକୁ ମୂଷଳଧାରାର ବର୍ଷାର ଅବତରଣ ହେବ ବୋଲି ପୃଥିବୀର ଲୋକମାନେ ଆଶା କରନ୍ତି ।

ସେହିପରି, ଜୀବନରେ ମଧ୍ୟ, ଜ୍ଞାତ ବା ଅଜ୍ଞାତ କୁକାର୍ଯ୍ୟ ଯୋଗୁଁ ବିପଥଗାମୀ ମଣିଷସମାଜ ଜାଗତିକ ସମସ୍ୟାର ସନ୍ତସନ୍ତିଆ ଭୂମିରେ (ପଙ୍କ) ପଡ଼ିଗଲେ ଈଶ୍ୱରୀୟ ବ୍ୟକ୍ତିତ୍ୱର ଧରାବତରଣ ହୁଏ । ସେମାନେ ସେ ଯୁଗର ତିକ୍ତ ସମାଲୋଚନା କରନ୍ତି ଏବଂ ସାହାସର ସହିତ ଗୀତାରେ ଥିବା ପରି ମହାନ୍ ସତ୍ୟର ଘୋଷଣା କରନ୍ତି । ପ୍ରତ୍ୟାବର୍ତ୍ତନ କରିବା ପୂର୍ବରୁ ମନୁଷ୍ୟ ଜାତିରେ ଧର୍ମ ପୁନଃ ପ୍ରତିଷ୍ଠିତ ହେବାର ଦେଖନ୍ତି ।

ତେଣୁ, ରାସ୍ତାକଡ଼ ଧର୍ମଶାଳାର ସେହି ମହାରାଜାଙ୍କ ମତରେ ମାଣ୍ଡୁକ୍ୟ ଉପନିଷଦ୍‌ର ନାମ ହିଁ, ଶିଷ୍ୟମାନଙ୍କୁ ନିଜର ବୌଦ୍ଧିକ ଏବଂ ମାନସିକ ମୂର୍ଖତାର ଅବଗତ କରାଏ । ସେମାନଙ୍କୁ ଭଲ ଭାବରେ ସାବଧାନ କରେଇ ଦିଆଯାଇଥାଏ ଯେ ଏହି ଘୋଷଣାରେ ଟିକିଏ ହେଲେ ବି ଆବେଗ ବା ଭାବପ୍ରବଣତାର ମଧୁରତା ନାହିଁ । କୌଣସି ସାଜସଜ୍ଜା ନ କରି ଅଳଙ୍କାର ନ କରି ଉପନିଷଦ୍ କଠୋର ଭାଷାରେ ନିଛକ ସତ୍ୟର ପ୍ରତିପାଦନ କରେ ।

ଏପର୍ଯ୍ୟନ୍ତ ଆମେ ମାଣ୍ଡୁକ୍ୟର ଶିରୋନାମା ନେଇ ଆଲୋଚନା କରିଥିଲେ । ଏହି ସାହିତ୍ୟ ନୂଆକରି ଅଧ୍ୟୟନ କରୁଥିବା ଜଣେ ଶିଷ୍ୟଙ୍କ ପାଇଁ ଉପନିଷଦ୍ ଶବ୍ଦର ଗଠନର ବ୍ୟୁତ୍ପତ୍ତି ସମ୍ବନ୍ଧରେ ଅନୁସନ୍ଧାନ କରିବା ଯୁକ୍ତିସଙ୍ଗତ ହେବ । ଅନୁସନ୍ଧାନର ଗୋଟିଏ ଦୃଷ୍ଟିକୋଣରୁ ଆମେ କହିପାରିବା ଯେ, ମୂଳଧାତୁ 'ଷଦ୍' ସହିତ 'ଉପ' ଏବଂ 'ନି' ଉପସର୍ଗ ଯୋଗ କରି ଶବ୍ଦଟି ଗଠିତ ହୋଇଛି (ଉପ + ନି + ଷଦ୍) । ଏଠାରେ ଅର୍ଥ ହେବ, ଉପ = ପାଖରେ, ନି = ଟିକିଏ ତଳସ୍ତରରେ, ଷଦ୍ = ବସିବା । ଗୁରୁଙ୍କ ପାଖରୁ ଶ୍ରବଣ କରି, ତାଙ୍କ ପାଖରେ ବସି ଜ୍ଞାନଲାଭ କରିବାକୁ ହେବ । ବୌଦ୍ଧିକ, ମାନସିକ ମନୋବୃତ୍ତି ନେଇ ବସିବାକୁ ହେବ ।

ପ୍ରତ୍ୟେକ ଉପନିଷଦ୍‌ର ଜ୍ଞାନକୌଶଳ ଏକା ପରି । ଏହା ହେଉଛି ଜଣେ ଅନିସନ୍ଧିତ୍ସୁ, ଜିଜ୍ଞାସୁ ଶିଷ୍ୟ ଏବଂ ସ୍ନେହମୟ ଗୁରୁଙ୍କ ମଧ୍ୟରେ ବ୍ୟକ୍ତିଗତ କଥୋପକଥନ। ପ୍ରତ୍ୟେକ ଉପନିଷଦ୍‌ର ପଶ୍ଚାତ୍‌ପଟରେ ନିଶ୍ଚିତ ଜଣେ ଗୁରୁ ଏବଂ ନିର୍ଦ୍ଦିଷ୍ଟ ଜଣେ ଶିଷ୍ୟ ଥିବାର ନିଶ୍ଚିତ ଭାବରେ ଦେଖିବାକୁ ମିଳେ । ମାଣ୍ଡୁକ୍ୟ ଉପନିଷଦ୍‌ରେ ମଧ୍ୟ, ଆରମ୍ଭରୁ ହିଁ, ଜଣେ ଗୁରୁ ଏବଂ ଶିଷ୍ୟ ଏକତ୍ର ବସି ଇନ୍ଦ୍ରିୟାତୀତ ବିଷୟକୁ ନେଇ ଆଲୋଚନା କରୁଥିବାର ଚିତ୍ର ଦେଖିବାକୁ ମିଳେ। ସିଧାସଳଖ ଭାବେ ଏହା ବ୍ୟାଖ୍ୟା କରାଯାଇ ନ ଥିଲେ ମଧ୍ୟ, ଗୁରୁ-ଶିଷ୍ୟ ସମ୍ବାଦର ଧାରଣା ସହାନୁଭୂତି ସମ୍ପନ୍ନ ହୃଦୟର ଛାତ୍ରମାନେ ବୁଝିପାରି ଉପଭୋଗ କରିବା ପାଇଁ ଦକ୍ଷ ଓ ସ୍ୱଷ୍ଟ ଭାବରେ ତାତ୍ପର୍ଯ୍ୟ ସହିତ ସୂଚାଇ ଦିଆ ଯାଇଛି ।

ଉପନିଷଦ୍ ଅଧ୍ୟୟନ ପାଇଁ ଜଣେ ଗୁରୁଙ୍କର ଆବଶ୍ୟକତା ଅନିବାର୍ଯ୍ୟ । ଏହାର ମୁଖ୍ୟ କାରଣ ହେଲା, ଶାଶ୍ୱତ, ଅନନ୍ତ ସତ୍ୟଙ୍କର ବ୍ୟାଖ୍ୟା କରିବାକୁ ଉପନିଷଦ୍ ସୃଷ୍ଟି ହୋଇଥିଲେ ମଧ୍ୟ ଶବ୍ଦର ଅନ୍ତର୍ଗତ ବିଷୟ ମାଧ୍ୟମରେ ହିଁ ଏହା ସଫଳ ହୋଇଛି । ବ୍ୟବହାର କରାଯାଇଥିବା ଶବ୍ଦ ଏବଂ ପଦର ଲକ୍ଷଣାର୍ଥ ଦ୍ୱାରା ଏହାର ବର୍ଣ୍ଣନା କରା ଯାଇଥାଏ । ଯେତେ ବିଶଦ ଭାବରେ ହେଲେ ବି କେବଳ ଆକ୍ଷରିକ ଶବ୍ଦ-ଅର୍ଥ ଶିଷ୍ୟମାନଙ୍କୁ ଉପନିଷଦ୍‌ର ବାସ୍ତବ ଜ୍ଞାନ ଦେଇପାରିବ ନାହିଁ । ବ୍ୟବହାର କରାଯାଇଥିବା ସସୀମ ଶବ୍ଦ ମାଧ୍ୟମରେ ସତ୍ୟଙ୍କର ବ୍ୟାଖ୍ୟା କରାଯାଇ ପାରିବ ବୋଲି ଉପନିଷଦ୍ ଦାବୀ କରେ ନାହିଁ । କିନ୍ତୁ ଶବ୍ଦମାନଙ୍କର ନିଜସ୍ୱ ଲକ୍ଷଣାର୍ଥ ଅଛି ଏବଂ ଏହାକୁ ବ୍ୟବହାର କରି ହିଁ ମହାନ୍ ଋଷିମାନେ ସସୀମ ଶବ୍ଦଦ୍ୱାରା ଅସୀମଙ୍କର ବ୍ୟାଖ୍ୟା କରିବାରେ, ଅବର୍ଣ୍ଣନୀୟଙ୍କର ବର୍ଣ୍ଣନା କରିବାରେ ସଫଳ ହୋଇଛନ୍ତି । ତେଣୁ, ବ୍ୟବହୃତ ଶବ୍ଦର ଯଥାର୍ଥ ଲକ୍ଷଣାର୍ଥ ବ୍ୟାଖ୍ୟା କରିବା ପାଇଁ ଜଣେ ମାର୍ଗଦର୍ଶକଙ୍କର ଆବଶ୍ୟକତା ରହିଛି ।

ବେଦର ବ୍ୟାପକ କ୍ଷେତ୍ରର ଯୋଜନାର ଚିତ୍ର ଦେବାପାଇଁ ଏବଂ ଏଥିରେ ଆମ ଜ୍ଞାନର ପବିତ୍ର ମନ୍ଦିର ଉପନିଷଦ୍‌ର ଯଥାର୍ଥ ସ୍ଥାନର ଅବସ୍ଥିତି ସୂଚାଇବା ପାଇଁ ଏହି ଉପକ୍ରମଣିକା ଯଥେଷ୍ଟ ହେବ ବୋଲି ମୁଁ ଭାବୁଛି । କାଲି ଆମେ ସିଧାସଳଖ ଶାସ୍ତ୍ରର ବିଷୟକୁ ଯିବା । ଯଜ୍ଞଶାଳାକୁ କୌଣସି ଶାସ୍ତ୍ର ନ ଆଣିବାକୁ ଏହି ମୁହୂର୍ତ୍ତରେ ମୁଁ ଆପଣମାନଙ୍କୁ ଅନୁରୋଧ କରୁଛି । ଆମେ ଯଥେଷ୍ଟ ଅଧ୍ୟୟନ କରିଛୁ ଏବଂ ଜୀବନସାରା ଅଧ୍ୟୟନ କରିବା ପାଇଁ ଆପଣମାନଙ୍କ ପାଇଁ ଅନେକ ପୁସ୍ତକାଳୟ ରହିଛି । କିନ୍ତୁ ଏଠାରେ କେବଳ ପୁସ୍ତକଗତ ଜ୍ଞାନ ସମ୍ବନ୍ଧରେ ଆଲୋଚନା ହେବ ନାହିଁ । ହାତ ଧରାଧରି ହୋଇ ପାଦେପାଦେ କରି ମହନୀୟ ଆତ୍ମାଙ୍କ ଆସ୍ଥାନରେ ପହଞ୍ଚିବାକୁ ଚେଷ୍ଟା କରିବା ।

ମୁକ୍ତିକୋପନିଷଦ୍‌ରେ, ସଂକ୍ଷେପରେ ଏବଂ ଗୌରବାବହ ଭାବରେ ମାଣ୍ଡୁକ୍ୟର ସମୀକ୍ଷା ରହିଛି । ଏଠାରେ କୁହାଯାଇଛି ଯେ, ମୁକ୍ତିକାମୀ ସାଧକପାଇଁ କେବଳ ମାଣ୍ଡୁକ୍ୟ ହିଁ ଯଥେଷ୍ଟ । (ମାଣ୍ଡୁକ୍ୟମ୍ ଏକମ୍ କେବଳମ୍ ମୁମୁକ୍ଷୁନାମ ବିମୁକ୍ତୟୋ) ।

ଏଥିରେ ବାରଗୋଟି ଗଦ୍ୟ ମନ୍ତ୍ର ରହିଛି । ଏଥିରେ ଜୀବନର ସମଗ୍ରତାକୁ ପରୀକ୍ଷା କରାଯାଇଛି । ଅତୀତ ବା ବର୍ତ୍ତମାନର କୌଣସି ଦର୍ଶନ ତାହା କରିବାରେ ସଫଳ ହୋଇ ନାହିଁ । ପୂର୍ବ ଏବଂ ପାଶ୍ଚାତ୍ୟର ଦର୍ଶନ ମଧ୍ୟ ସାଧାରଣ ଅବସ୍ଥା ବୋଲି କୁହାଯାଉଥିବା ଜୀବନର କେବଳ ଗୋଟିଏ ଦିଗର ସମୀକ୍ଷା କରନ୍ତି । କିନ୍ତୁ ଦର୍ଶନରେ ମାନବୀୟ ଅନୁଭୂତିର ସାମଗ୍ରିକତାର କିମ୍ବା 'ସତ୍ୟ'ଙ୍କ ଦୃଷ୍ଟିରୁ ସମଗ୍ର ଜୀବନର ବ୍ୟାଖ୍ୟା ରହିବା ଦରକାର । ଉଭୟ ଶଙ୍କର ଏବଂ ଗୌଡ଼ପାଦ ଏହି ବ୍ୟାଖ୍ୟା ପ୍ରତି ସମର୍ଥନ ଜଣାଇଛନ୍ତି । ମାଣ୍ଡୁକ୍ୟରେ ଆମେ ଏକ ସଂପୂର୍ଣ୍ଣ ସ୍ୱତଃ-ପ୍ରତିଭାତ କାର୍ଯ୍ୟପ୍ରଣାଳୀ ଦେଖିବାକୁ ପାଇବା । ଏହାଦ୍ୱାରା ମହାନ୍ ଋଷିମାନେ ଜୀବନକୁ ସମ୍ପୂର୍ଣ୍ଣଭାବେ ବ୍ୟବଚ୍ଛେଦ କରି ଏଥିରେ ନିହିତ ସତ୍ୟର ଆବିଷ୍କାର ପାଇଁ ଆମକୁ ସାହାଯ୍ୟ କରିଛନ୍ତି ।

ଜୀବନରେ ଅନୁଭୂତି ଆହରଣ କରିବା ପାଇଁ ଚେତନାର ତିନୋଟି ସ୍ତରରେ ଆମେ ଅବସ୍ଥାନ କରିଥାଉ । ମାଣ୍ଡୁକ୍ୟରେ ଗୋଟିଏ ଗୋଟିଏ କରି ଏହି ସ୍ତରର ଘନିଷ୍ଠ ପର୍ଯ୍ୟବେକ୍ଷଣ ଏବଂ ସମ୍ପୂର୍ଣ୍ଣ ଅଧ୍ୟୟନ କରାଯାଇଛି । ଏହି ମହାନ୍ ଋଷିଙ୍କ ଦ୍ୱାରା ଜୀବନର ଅଧ୍ୟୟନକୁ ଯେଉଁ ଗବେଷଣାର ଭାବ ଏବଂ ପାଣ୍ଡିତ୍ୟ ସହ ଅଣାଯାଇଛି, ମଣିଷର ଭାବନାର ଇତିହାସରେ ତାହା ଅନନ୍ୟ । ଏଠି କୌଣସି ଆସକ୍ତି ନାହିଁ, ଭାବପ୍ରବଣତା ନାହିଁ, ଆବେଗ ନାହିଁ । ସେମାନେ ସତ୍ୟର ଅନୁସନ୍ଧାନ କରୁଥିଲେ ଏବଂ ସତ୍ୟ ବ୍ୟତୀତ ବାସ୍ତବରେ ସେମାନେ ଅନ୍ୟ କିଛି ଖୋଜୁ ନ ଥିଲେ । ଅନୁସନ୍ଧାନ ସମୟରେ ସେମାନେ ଯେଉଁ

ସିଦ୍ଧାନ୍ତରେ ପଦାର୍ପଣ କରିବାକୁ ଯାଉଥିଲେ, ତାହା ଯେତେ ଅପ୍ରିୟ ହେଲେ ମଧ୍ୟ ସେଥିପାଇଁ ସେମାନେ ଉତ୍କଣ୍ଠିତ, ବିବ୍ରତ, ହତୋତ୍ସାହିତ ଏବଂ ଭୟଭୀତ ହେଉ ନ ଥିଲେ। ପରିଶେଷରେ ସତ୍ୟର ଶିଖରରେ ପଦାର୍ପଣ କରିବା ପର୍ଯ୍ୟନ୍ତ ସେମାନେ ଉଦ୍‌ଯୋଗର ସହିତ, ଅସୀମ ବୀରତ୍ୱର ସହିତ ଏବଂ ଜାଣିବାର ଅଦମ୍ୟ ତୃଷ୍ଣା ସହିତ ଅନୁସନ୍ଧାନର ଚିନ୍ତାଧାରାକୁ ଅନୁସରଣ କରୁଥିଲେ । ଏବଂ ଯଥେଷ୍ଟ ବିରାମ ଚିହ୍ନ ସହିତ, ଏହି ସଂକ୍ଷିପ୍ତ ଉକ୍ତିରେ ନିଜର ଅନୁଭୂତିକୁ ସମଭାବରେ ଅନୁପ୍ରାଣିତ ଶିଷ୍ୟ-ମାନଙ୍କୁ ବଜ୍ର-ଗମ୍ଭୀର ସ୍ୱରରେ ଶୁଣାଉଥିଲେ ।

ପୂର୍ବରୁ (କେନ ଏବଂ କଠୋପନିଷଦ୍‌ର ପ୍ରବଚନରେ) ଆମେ ଯାହା ବ୍ୟାଖ୍ୟା କରିଛୁ ଯେ, ଉପନିଷଦ୍‌ମାନଙ୍କର ସାଧାରଣତଃ କେହି ପ୍ରଣେତା ନାହାନ୍ତି, ଏବଂ ତଥାପି, ଆମର ନିଜର ଦୁର୍ବଳତାରେ ଏହି ମହାନ୍ ସାହିତ୍ୟ – ପ୍ରଣେତାଙ୍କର ପରିଚୟ ଆବିଷ୍କାର କରିବା ପାଇଁ ଆମେ  ଚେଷ୍ଟା କରୁ । ମାଧବାଚାର୍ଯ୍ୟ ଏବଂ ତାଙ୍କର ଦୁଇଜଣ ଅନୁଗାମୀ – ବ୍ୟାସତୀର୍ଥ ଏବଂ ଶ୍ରୀନିବାସଙ୍କ ମତରେ, ଉପନିଷଦ୍‌ର ଉଭୟ ଗଦ୍ୟ ଅଂଶ ଏବଂ ପ୍ରଥମ ଅଧ୍ୟାୟରେ ଥିବା ପଦ୍ୟ, ବରୁଣଙ୍କ ଦ୍ୱାରା ଗୋଟିଏ ବେଙ୍ଗ ରୂପରେ ଦିଆଯାଇଥିଲା। ଏହି ପ୍ରକାରର ବ୍ୟାଖ୍ୟା ଦ୍ୱାରା ପୌରାଣିକ ମନୋଭାବାପନ୍ନ ବ୍ୟକ୍ତି ହୁଏତ ସନ୍ତୋଷ ଲାଭ କରିପାରନ୍ତି, କିନ୍ତୁ ଆଧୁନିକ ବିଶ୍ୱବିଦ୍ୟାଳୟର ଶିକ୍ଷିତ ଛାତ୍ରଛାତ୍ରୀଙ୍କୁ ଏହା ବୋଧହୁଏ ଯୁକ୍ତିଯୁକ୍ତ ମନେ ହେବ ନାହିଁ ।

ମାଣ୍ଡୁକ୍ୟ ଉପନିଷଦ୍‌ର ଅଧ୍ୟୟନରେ ଏହା ଆମକୁ ଏକ ସଂଶୟାତ୍ମକ ସମସ୍ୟାରେ ପକାଇ ଦିଏ। ପ୍ରଫେସର ଡିଉସେନଙ୍କ ପରି କେତେଜଣ କହନ୍ତି ଏବଂ ପ୍ରମାଣ କରିଦେବେ ବୋଲି ମୁକ୍ତ କଣ୍ଠରେ ସ୍ୱୀକାର କରନ୍ତି ଯେ, ବାରୋଟି ଗଦ୍ୟ ମନ୍ତ୍ର ଗୌଡ଼ପାଦଙ୍କର ହେଲେ ବି, ମାଣ୍ଡୁକ୍ୟ ଉପନିଷଦ୍ ବୋଲି କିଛି ନାହିଁ, ବରଂ ସମଗ୍ର ସାହିତ୍ୟ ହେଉଛି ଏକ ପ୍ରକରଣ ଗ୍ରନ୍ଥ । (ଦି ଫିଲୋସଫି ଅଫ୍ ଦି ଉପନିଷଦ୍) ନାମକ ତାଙ୍କର କୃତିରେ ସେ ଏକଥା କହିଛନ୍ତି)।

ତାଙ୍କରି ତଥ୍ୟ ପ୍ରମାଣ କରିବା ପାଇଁ ସେ ଶଙ୍କରଙ୍କର ଉଦ୍ଧୃତି ଦେଇ କହିଛନ୍ତି, ଶଙ୍କରଙ୍କ ଦୃଷ୍ଟିରେ ଏହା ଆଦୌ ଉପନିଷଦ୍ ନୁହଁ, ବରଂ ଏହା ଏକ ପ୍ରକରଣ ଗ୍ରନ୍ଥ, କାରଣ ଶଙ୍କର ତାଙ୍କର କୌଣସି ଗୋଟିଏ ହେଲେ ମୌଳିକ ଗ୍ରନ୍ଥରେ ମାଣ୍ଡୁକ୍ୟ ଉପନିଷଦ୍‌ର ଉଲ୍ଲେଖ କରି ନାହାନ୍ତି ।

ତେଣୁ ମାଧବାଚାର୍ଯ୍ୟ ଏବଂ ପ୍ରଫେସର ଡିଉସେନଙ୍କ ଭିତରେ ବହୁତ ପ୍ରଭେଦ ରହିଛି। କାରିକା ମଧ ଉପନିଷଦ୍‌ର ଅଂଶବିଶେଷ ବୋଲି ମାଧବାଚାର୍ଯ୍ୟ ଦାବୀ କରୁଥିବା ବେଳେ, ମନ୍ତ୍ରଗୁଡ଼ିକ କାରିକା ବ୍ୟତୀତ ଅନ୍ୟ କିଛି ନୁହେଁ ବୋଲି ଡିଉସେନ୍ ଦାବୀ କରିଛନ୍ତି । ଏସବୁ ଉଲ୍ଲେଖ କରିବାର ଉଦ୍ଦେଶ୍ୟ ଏହା ଦେଖାଇବାକୁ ଯେ ବୁଦ୍ଧିମାନ, ପଣ୍ଡିତ ଲୋକମାନେ ସେମାନଙ୍କ ପ୍ରତିଭାର କିପରି ଅପବ୍ୟବହାର କରୁଛନ୍ତି, ଅଥଚ ଉପନିଷଦ୍ ଅଧ୍ୟୟନର ପ୍ରକୃତ ଲାଭ ପାଉ ନାହାଁନ୍ତି । ଶଙ୍କର ତାଙ୍କ ଭାଷ୍ୟରେ ମାଣ୍ଡୁକ୍ୟ କଥା ଆଦୌ ଉଲ୍ଲେଖ କରି ନାହାନ୍ତି ବୋଲି ଅନିଶ୍ଚିତ ଭାବେ କହିବା, ସୂକ୍ଷ୍ମଭାବରେ କରାଯାଉଥିବା ଏହି କାର୍ଯ୍ୟରେ  ଗୋଟିଏ ବିଶୃଙ୍ଖଳା ହେବ। ବାସ୍ତବରେ ଶଙ୍କରଙ୍କ ପୂର୍ବରୁ ଅନେକ ମହାନ୍ ଲେଖକ ଉପନିଷଦ୍‌ର ଉଦ୍ଧୃତି ଦେଇ ସେସବୁ ମାଣ୍ଡୁକ୍ୟରୁ ବୋଲି ଦାବୀ କରିଛନ୍ତି । ପୁନଶ୍ଚ, ଭାଷ୍ୟର ଅନେକ ସ୍ଥାନରେ ଶଙ୍କରଙ୍କର ଶବ୍ଦ ମାଣ୍ଡୁକ୍ୟ ଧାରାରେ ସିକ୍ତ ହୋଇ ଥିବାର ଆଭାସ ଆମେ ପାଇପାରୁ।

ଶଙ୍କରଙ୍କର  ସାହିତ୍ୟ-ସେବା ଉଦ୍ଦେଶ୍ୟ ପାଇଁ ଗଦ୍ୟ-ମନ୍ତ୍ରର ବେଶୀ ଅଂଶର ଉଦ୍ଧୃତ ଦେବା ସୁବିଧାଜନକ ହୋଇ ନ ଥିବ, ସେଥିପାଇଁ ହୁଏତ ସେ ଏହା ଦେଇ ନାହାନ୍ତି । ଧାରାର ପରିପ୍ରକାଶରେ ଶଙ୍କରଙ୍କୁ ଏହା ସିଧାସଳଖ ଭାବେ ସାହାଯ୍ୟ କରି ନାହିଁ, କିମ୍ବା ତାଙ୍କର ପଦ୍ୟର ସୂକ୍ଷ୍ମ, ମଧୁର ସ୍ୱର ସହିତ ତାଳ ରଖିପାରି ନାହିଁ । ଶଙ୍କର କେବଳ ଜଣେ ଦାର୍ଶନିକ ନୁହଁନ୍ତି, ବରଂ ସୁସାହିତ୍ୟିକ ଥିଲେ ବୋଲି ଆମେ  ବୁଝିପାରିଲେ ଏହାକୁ ଭଲ ଭାବରେ ଗ୍ରହଣ କରି ହେବ ।

କ୍ଷୁଦ୍ର ହେଲେ ମଧ ମାଣ୍ଡୁକ୍ୟ ବୈଦିକ ସାହିତ୍ୟରେ ଏକ ଉଚ୍ଚ ଆସନ ଗ୍ରହଣ କରିଛି । କାରଣ, ଏହା ଅଦ୍ୱୈତବାଦର ପ୍ରତିପାଦନ କରେ । ଆତ୍ମଚିନ୍ତନ ପାଇଁ ମହାବାକ୍ୟ ଭାବରେ ଗ୍ରହଣ କରାଯାଇଥିବା ଗୋଟିଏ ବାକ୍ୟ ଏହି ଉପନିଷଦ୍‌ରୁ ଆନୀତ । ବେଦାନ୍ତ ସାଧନା ଉଦ୍ଦେଶ୍ୟରେ ଚାରୋଟି ମହାବାକ୍ୟ ରହିଛି; ପ୍ରତ୍ୟେକଟି ଗୋଟିଏ ବେଦରୁ ନିଆଯାଇଛି। ଅଥର୍ବବେଦରୁ ଆନୀତ ମହାବାକ୍ୟ "ଅୟମ୍ ଆତ୍ମା ବ୍ରହ୍ମ" (ଏହି ଆତ୍ମା ବ୍ରହ୍ମ ହିଁ) ଏହି ଉପନିଷଦ୍‌ରୁ (ମନ୍ତ୍ର-୨) ଆସିଛି।

ଉଭୟ ବେଦାନ୍ତ ଏବଂ ମୀମାଂସକମାନେ ସ୍ୱୀକାର କରନ୍ତି ଯେ, ବିଶ୍ୱାସ କରିବା ପାଇଁ ଗ୍ରନ୍ଥଟି ନିଜେ ନିଶ୍ଚିତ ଭାବରେ ଏକ ମହାନ୍ ଯୁକ୍ତି ଏବଂ ଗ୍ରନ୍ଥର ପ୍ରଭାବ ପ୍ରଶ୍ନର ଅତୀତ। ତଥାପି ଶ୍ରୁତିର ବ୍ୟାଖ୍ୟାର ଅନ୍ୟ ନିୟମ ମଧ ଗ୍ରହଣ କରାଯାଇଛି ବୋଲି ଉଭୟ ସ୍ୱୀକାର କରିଛନ୍ତି । ସେଗୁଡ଼ିକ ମଧ୍ୟରୁ ବ୍ୟାଖ୍ୟାର ମୁଖ୍ୟ ନିୟମ ଭାବରେ 'ଉପପତ୍ତି'କୁ

(ତର୍କ ସଂଗତ ଯୁକ୍ତି) ଉଭୟ ମଧ୍ୟ ଗ୍ରହଣ କରିଛନ୍ତି । ଯଦି ଅନେକ ବେଦଶାସ୍ତ୍ର ବାରମ୍ବାର କହିବେ ଯେ, 'ଅଗ୍ନି ଶୀତଳ' ତେବେ ଅଗ୍ନିକୁ ଏହା ଶୀତଳ କରିଦେବ ନାହିଁ । ଏପରି କ୍ଷେତ୍ରରେ ଆମକୁ ବୁଝିବାକୁ ହେବ ଯେ, ଲେଖନ ଶୈଳୀ ଅଳଙ୍କାରିକ ଏବଂ ଗ୍ରନ୍ଥଟିକୁ ଏକ ଯୁକ୍ତି ଯୁକ୍ତ ଅର୍ଥ ଦେବାକୁ ହେବ । ତେଣୁ, ଆମର ଯଜ୍ଞରେ ଅଧ୍ୟୟନ ପାଇଁ ବଛା ଯାଇଥିବା ଗ୍ରନ୍ଥର ମନ୍ତ୍ର ସତ୍ୟଙ୍କର ପ୍ରତିପାଦନ କରିଛି ଏବଂ କାରିକା ଅନୁସନ୍ଧାନ ଏବଂ ଚିନ୍ତନର ଧାରା ଦେଖାଇ ଦେଇଛି। କାରିକାରେ ଗୌଡ଼ପାଦ ଆମର ବୁଦ୍ଧିକୁ ନ୍ୟାୟ ଏବଂ  ଯୁକ୍ତି (ପ୍ରମାଣ)ର ସୁକ୍ଷମ ମାତ୍ରାରେ ଉଦ୍ଦୀପିତ କରିଛନ୍ତି ।

ସମଗ୍ର କାରିକା ଗ୍ରନ୍ଥଟି ଚାରୋଟି ସୁବିଧାଜନକ ଅଧ୍ୟାୟରେ ବିଭାଜିତ। କାରିକାରେ, ଚାରୋଟି ଅଧ୍ୟାୟରେ ସର୍ବମୋଟ ୨୧୫ଟି ଶ୍ଳୋକ ଅଛି; ଆଗମ ପ୍ରକରଣ (ବୈଦିକ ଗ୍ରନ୍ଥ ସମ୍ବନ୍ଧରେ - ଅଧ୍ୟାୟ ୧-୨୯ଟି ଶ୍ଳୋକ), ବୈତଥ୍ୟ ପ୍ରକରଣ(ବିଷୟ ଜଗତର ଅସତ୍ୟତା ସମ୍ବନ୍ଧରେ ଅଧ୍ୟାୟ ୨-୩୮ଟି ଶ୍ଳୋକ), ଅଦ୍ୱୈତବାଦ ପ୍ରକରଣ(ଅଦ୍ୱୈତ ସମ୍ବନ୍ଧରେ, ଅଧ୍ୟାୟ ୩-୪୮ଟିଶ୍ଳୋକ) ଏବଂ ଅଲାତ ଶାନ୍ତି ପ୍ରକରଣ (ଅଗ୍ନିର ପ୍ରଶମନ ସମ୍ବନ୍ଧରେ, ଅଧ୍ୟାୟ ୪-୧୦୦ଟି ଶ୍ଳୋକ)।

ଆଗମ ପ୍ରକରଣରେ ଉପନିଷଦ୍‌ର ବାରୋଟି ମନ୍ତ୍ର ରହିଛି-ମଝିରେ ମଝିରେ ସୁବିଧାଜନକ ସ୍ଥାନରେ କାରିକା ମନ୍ତ୍ର ଦିଆ ଯାଇଛି- ଶ୍ରୁତିଙ୍କର ମତାମତ ଏବଂ ପରିପ୍ରକାଶନର ସ୍ପଷ୍ଟୀକରଣ କରିବା ପାଇଁ କାରିକାକାର ଯେଉଁଠାରେ ଚାହିଁଛନ୍ତି । କାରିକା ଭାଷ୍ୟ ନୁହେଁ ବୋଲି ପୂର୍ବରୁ ଆମେ ବ୍ୟାଖ୍ୟା କରିଛୁ । ସମଗ୍ର ଶାସ୍ତ୍ରର ଗୋଟିଏ ଦିଗ ବୁଝାଇ ଦେଇ ପାରିଲେ କାରିକାକାର ଭଲ କାମ କରିଛନ୍ତି ବୋଲି କୁହାଯିବ । ଶାସ୍ତ୍ର ଗୁଡିକ ଚିନ୍ତନର ସମଗ୍ର ପ୍ରଣାଳୀ ସବିସ୍ତାର ଆଲୋଚନା କରୁଥିବାବେଳେ କାରିକାକାରଙ୍କର କାମ କୌଣସି ଦାର୍ଶନିକ ପଦ୍ଧତିର ଗୋଟିଏ ଅଂଶକୁ ସବିସ୍ତାର ବୁଝାଇବା ଏବଂ ବ୍ୟାଖ୍ୟା କରିବା ।

ଆଗକୁ ବଢ଼ିବା ସହିତ ବିଭାଗରେ ଏକ ଉପକ୍ରମଣିକା ଦେବାର ଚେଷ୍ଟା ଆମେ କରିବା । ପ୍ରତ୍ୟେକ ଅଧ୍ୟାୟ ସହଜ ଲାଗିବା ପାଇଁ ଏହା ଆପଣମାନଙ୍କୁ ସାହାଯ୍ୟ କରିବ।

# ପ୍ରଥମ ଅଧ୍ୟାୟ

# ଆଗମ ପ୍ରକରଣ

ଗୌଡ଼ପାଦଙ୍କ କାରିକା ସହିତ ମାଣ୍ଡୁକ୍ୟ ଉପନିଷଦ୍‌ର ପ୍ରଥମ ଅଧ୍ୟାୟକୁ 'ଆଧ୍ୟାତ୍ମିକ ପ୍ରକରଣ' କୁହାଯାଏ, କାରଣ କାରିକା ଲେଖା ହୋଇଥିବା ଛନ୍ଦୋବଦ୍ଧ ପଦ୍ୟ ବ୍ୟତୀତ ଏଥିରେ ଉପନିଷଦ୍‌ର ଅଂଶ ମଧ୍ୟ ରହିଛି । ପ୍ରଫେସର ଡିଉସେନଙ୍କ ଦୃଷ୍ଟିରୁ ସମଗ୍ର ଗ୍ରନ୍ଥଟି ଗୌଡ଼ପାଦଙ୍କର ନିଜର ନୁହେଁ ବୋଲି ପୂର୍ବରୁ ମୁଁ ବ୍ୟାଖ୍ୟା କରିଛି ।

ଏବେ, 'ଦେର୍ ଅଲତେରେ ବେଦାନ୍ତ' ରେ ଡ.ଓ୍ୟାଲସେର ପ୍ରମାଣ କରିବାକୁ ଚେଷ୍ଟା କରିଛନ୍ତି ଯେ, ଗୌଡ଼ପାଦୀୟ କାରିକା ହେଉଛି ଚାରି ଅଧ୍ୟାୟ ବିଶିଷ୍ଟ ଗୋଟିଏ ବହିର ନାମ, ଏହା ପ୍ରଣେତାଙ୍କ ନାମ ସୂଚାଏ ନାହିଁ । ତାଙ୍କ ମତରେ ସେ ସମୟରେ ଗୌଡ ଦେଶ(ଉତ୍ତର ବଙ୍ଗ)ରେ ବେଦାନ୍ତର କେତୋଟି ସିଦ୍ଧାନ୍ତ ପ୍ରଚଳିତ ଥିଲା । ତାହା ଏହି ଚାରୋଟି ଅଧ୍ୟାୟରେ ସଂହିତାକାରରେ ବଦ୍ଧ କରାଯାଇଛି । ତେଣୁ, ସେସବୁ ମିଶାଇ ଗୌଡ଼ପାଦୀୟ କାରିକା ନାମକ ଗୋଟିଏ ବହି ବୋଲି କୁହାଯାଉଛି । ସଂକ୍ଷେପରେ ଏହା ହେଉଛି ଜଣେ ଲେଖକଙ୍କୁ ପ୍ରକଟ କରିଥିବା ଗୋଟିଏ ବହି, ଲେଖକଙ୍କ ଦ୍ୱାରା ବିକଶିତ ହୋଇଥିବା ବହି ନୁହେଁ । ଗୌଡପାଦୀୟ ପଦରେ ମୁଖ୍ୟତଃ ବହୁବଚନର ବ୍ୟବହାର ମହାନ୍ ଫରାସୀ ବିଦ୍ୱାନଙ୍କୁ ଗୋଳମାଳିଆ ପରିସ୍ଥିତିରେ ପକାଇଛି । କିନ୍ତୁ କେବଳ ସଂସ୍କୃତରେ ନୁହେଁ, ଇଂରେଜୀରେ ମଧ୍ୟ ସମ୍ମାନୀୟ ବ୍ୟକ୍ତିଙ୍କୁ ବହୁବଚନରେ ସମ୍ବୋଧନ କରାଯାଏ ଯଥା, ରାଜକୀୟ 'ଆମେ' । ଗୌଡ଼ ହୁଏତ ଗୋଟିଏ ଗୋଷ୍ଠୀ ବା ସମ୍ପ୍ରଦାୟର ନାମ ହୋଇଥିବ ଏବଂ ପାଦ ଏକ ସମ୍ମାନସୂଚକ ପଦ । ତେଣୁ ଗୌଡ଼ ଦେଶାଗତ ଜଣେ ମହାନ ପୂଜନୀୟ ସାଧୁ କାରିକାର ପ୍ରଣେତା ବୋଲି ଆମେ କହି ପାରିବା ।

ପ୍ରଥମ ଅଧ୍ୟାୟକୁ ଶାସ୍ତ୍ରୀୟ କୁହା ଯାଇଛି, କାରଣ ସୁବିଧାଜନକ ଯାଗାରେ କାରିକା ଶ୍ଳୋକ ସହିତ ଏଠାରେ ଉପନିଷଦୀୟ ମନ୍ତ୍ର ଯୋଗ କରାଯାଇଛି । ଗୌଡ଼ପାଦଙ୍କର ୨୯ଟି ଶ୍ଳୋକ ଉପନିଷଦୀୟ ଗ୍ରନ୍ଥର ପ୍ରତ୍ୟେକଟି ଶବ୍ଦର ବ୍ୟାଖ୍ୟା କରିବାର ଚେଷ୍ଟା କରି ନାହିଁ । ଉପନିଷଦ୍‌ର ଧାରଣାକୁ କାରିକା ମୁଖ୍ୟ ଏପରି ଭାବରେ ବ୍ୟବସ୍ଥିତ କରିବାର

ଚେଷ୍ଟା କରିଛି, ଯାହା କି ପାଠକମାନଙ୍କୁ ଶାସ୍ତ୍ରର ମୁଖ୍ୟ ବିଷୟ ତୂରୀୟ, ନିର୍ବିକଳ୍ପ, ଅଦ୍ୱୈତ ସତ୍ୟଙ୍କ ବିଷୟରେ ସହଜରେ ବୁଝାଇ ପାରିବ । କାରିକାରେ ତାଙ୍କର ନିର୍ଦ୍ଦିଷ୍ଟ ପ୍ରବନ୍ଧର ବିସ୍ତାର ପାଇଁ ଆବଶ୍ୟକ ହେଉ ନ ଥିବା କେତେକ ଅଂଶକୁ ସିଧାସଳଖ ଭାବେ ବା ସ୍ଥୂଳଭାବେ ଛାଡି ଯାଇଛନ୍ତି । ତତ୍ ସହିତ ଉପନିଷଦ୍‌ରେ ଯେଉଁ ସବୁ ସୂକ୍ଷ୍ମ ପରିପ୍ରକାଶକୁ କେବଳ ଇଙ୍ଗିତ କରାଯାଇଛି, କାରିକା ତା'କୁ ସ୍ପଷ୍ଟ ଭାବେ ଦର୍ଶାଇ ନାହିଁ । ଗୌଡ଼ପାଦଙ୍କ ଦର୍ଶନରେ ମାଣ୍ଡୁକ୍ୟ ଉପନିଷଦ୍ କାରୁକାର୍ଯ୍ୟପୂର୍ଣ୍ଣ ସୂକ୍ଷ୍ମ ଆଧାର ପରି କାର୍ଯ୍ୟ କରୁଥିବାରୁ ଏହି ଅଧ୍ୟାୟକୁ ଆଗମ ପ୍ରକରଣ କୁହାଯାଇଛି । ପ୍ରକରଣ ହେଉଛି ଉପଦେଶ ଗ୍ରନ୍ଥ ଏବଂ ଏହି ନାମର ଯଥାର୍ଥତା ପ୍ରତିପାଦନ କରି ଆମର ପାଠ୍ୟ ବହିର ପ୍ରତ୍ୟେକ ଅଧ୍ୟାୟ ଶେଷରେ ବ୍ୟବହାର ଯୋଗ୍ୟ ଏବଂ ଓଜସ୍ୱୀ ଉପଦେଶ ଥିବାର ଆମେ ଦେଖିପାରୁ । ଜଣେ ସାଧକ ପରିପକ୍ୱ ହୋଇ ଶାସ୍ତ୍ରର ବିଷୟବସ୍ତୁ ନିର୍ବିକଳ୍ପ ସତ୍ୟଙ୍କର ଅନୁଭୂତି କିପରି ଲାଭ କରିବ,ଏହି ଉପଦେଶରେ ତା'ର ନିର୍ଦ୍ଦେଶ ଦିଆଯାଇଛି ।

ଚେତନାର ତିନି ଅବସ୍ଥାର ବିଶ୍ଳେଷଣ କରି ଏସବୁର ଅନୁଭୂତିରୁ ଜାଗ୍ରତ, ସ୍ୱପ୍ନ ଏବଂ ସୁଷୁପ୍ତି ଅବସ୍ଥାର ଅତୀତ ତୂରୀୟ ଅବସ୍ଥା (ଶାଶ୍ୱତ ସତ୍ୟ)ର ବୌଦ୍ଧିକ ଅବଧାରଣା କିପରି କରିହେବ, ଗୌଡ଼ପାଦ ତାହା ଶାସ୍ତ୍ରକୁ ଆଧାର କରି ଦର୍ଶାଇଛନ୍ତି । ଶାସ୍ତ୍ରର ଶିକ୍ଷା ଏବଂ କାରିକାର ବିଚାରଧାରାର ବିଶ୍ଳେଷଣ କରି, ସହଜରେ ବୋଧଗମ୍ୟ ହେବା ପାଇଁ ଆମେ ସେ ସବୁକୁ ନିମ୍ନ ତାଲିକାରେ ସଂକ୍ଷିପ୍ତ ଭାବରେ ପ୍ରକାଶ କରିପାରିବା ।

| ଓଁ ର ମାତ୍ରା | ପାଦ | | ଅବସ୍ଥା | ପ୍ରାଜ୍ଞ (ଚେତନା) | ଭୋଗ | ତୃପ୍ତି | ସ୍ଥାନତ୍ରୟ (ଧ୍ୟାନର ସ୍ଥାନ) |
|---|---|---|---|---|---|---|---|
| | ବ୍ୟଷ୍ଟି | ସମଷ୍ଟି | | | | | |
| ଅ | ବିଶ୍ୱ (ଜାଗ୍ରତ)[୧] | ବୈଶ୍ୱାନର/ବିରାଟ (ସମ୍ପୂର୍ଣ୍ଣ ଜାଗ୍ରତ)[୨] | ଜାଗ୍ରତ | ବାହ୍ୟ | ସ୍ଥୂଳ | ସ୍ଥୂଳ | ଡାହାଣ (ଦକ୍ଷିଣ) (ଚକ୍ଷୁ) |
| ଉ | ତୈଜସ (ସ୍ୱପ୍ନଦ୍ରଷ୍ଟା)[୩] | ହିରଣ୍ୟଗର୍ଭ (ସମ୍ପୂର୍ଣ୍ଣ ସ୍ୱପ୍ନଦ୍ରଷ୍ଟା)[୪] | ସ୍ୱପ୍ନ | ଅନ୍ତର | ସୂକ୍ଷ୍ମ | ସୂକ୍ଷ୍ମ | ମନ (ମାନସ) |
| ମ | ପ୍ରାଜ୍ଞ (ସୁଷୁପ୍ତିର ଅନୁଭବୀ)[୫] | ଈଶ୍ୱର | ସୁଷୁପ୍ତି | ଘନ | ଆନନ୍ଦ | ଆନନ୍ଦ | ହୃଦୟ (ଆକାଶ) |

(ଅମାତ୍ର ........ ଆତ୍ମା.........ବ୍ରହ୍ମ...........ତୁରୀୟ)

ଅଧ୍ୟାୟଟି ପୂରା ଅଧ୍ୟୟନ କରିସାରିବା ପରେ ଆମେ ଦେଖିବା ଯେ, ଉଲ୍ଲିଖିତ ତାଲିକା ପ୍ରଥମ ଅଧ୍ୟାୟରେ ପ୍ରକାଶିତ ସମସ୍ତ ଚିନ୍ତାଧାରାର ପ୍ରତିନିଧିତ୍ୱ କରେ।

୧. ବ୍ୟଷ୍ଟିଗତ ଜାଗ୍ରତ / ସ୍ଥୂଳ ଅନୁଭୂତି ସହିତ ତାଦାତ୍ମ୍ୟ

୨. ସମଗ୍ର ଜଗତ/ସ୍ଥୂଳ ଅନୁଭୂତି ସହିତ ତାଦାତ୍ମ୍ୟ

୩. ବ୍ୟଷ୍ଟିଗତ ସ୍ୱପ୍ନ / ସୂକ୍ଷ୍ମ ଅନୁଭୂତି ସହିତ ତାଦାତ୍ମ୍ୟ

୪. ସମଗ୍ର ସ୍ୱପ୍ନ / ସୂକ୍ଷ୍ମ ଅନୁଭୂତି ସହିତ ତାଦାତ୍ମ୍ୟ

୫. ଅବ୍ୟକ୍ତ ଜଗତର ଅଭିନ୍ନ ଅନୁଭୂତି ସହିତ ତାଦାତ୍ମ୍ୟ

**ହରିଃ ଓଁ । ଓମିତ୍ୟେତଦକ୍ଷରମିଦଂ ସର୍ବଂ**

**ତସ୍ୟୋପବ୍ୟାଖ୍ୟାନଂ ଭୂତଂ ଭବଦ୍‌ଭବିଷ୍ୟଦିତି**

**ସର୍ବମୋଙ୍କାର ଏବ । ଯଚ୍ଚାନ୍ୟତ୍ ତ୍ରିକାଳାତୀତଂ**

**ତଦପ୍ୟୋଙ୍କାର ଏବ ॥୧॥**

ହରିଃ ଓଁ = ପରଂବ୍ରହ୍ମଙ୍କ ପ୍ରତୀକ, ଓମ୍ ଇତି = ଓଁ ଏହିପରି ଅଟେ, ଏତତ୍ ଅକ୍ଷରମ୍ = ଏହି ଅକ୍ଷର, ଇଦମ୍ ସର୍ବମ୍ = ଏହିସବୁ ଅଟେ, ତସ୍ୟ = ତାହାଙ୍କର(ଓଁକାରଙ୍କର), ଉପବ୍ୟାଖ୍ୟାନମ୍ = ଗୋଟିଏ ସ୍ପଷ୍ଟ ବ୍ୟାଖ୍ୟା, ଭୂତମ୍ = ଅତୀତ, ଭବତ୍ = ବର୍ତ୍ତମାନ, ଭବିଷ୍ୟତ୍ = (ଏବଂ) ଭବିଷ୍ୟତ, ଇତି = ଏହିପରି, ସର୍ବମ୍ = ଏହିସବୁ, ଓଁକାର ଏବ = କେବଳ ଓଁକାର, ଯତ୍ = ତାହା ଯାହା ଅଟେ, ଚ = ଏବଂ, ଅନ୍ୟତ୍ = ଅନ୍ୟକିଛି, ତ୍ରିକାଳ-ଅତୀତମ୍ = ତିନିକାଳର ଅତୀତ, ତତ୍ = ତାହା, ଅପି = ମଧ୍ୟ, ଓଁକାରଃ (ଅଟେ), ଏବ = କେବଳ ।

*ହରିଃ ଓଁ। ଓଁ ଶବ୍ଦ ହେଉଛି ଏହି ସବୁ। ଏହାର ଏକ ସୂକ୍ଷ୍ମ ବ୍ୟାଖ୍ୟା ଏପରି କରାଯାଇପାରେ ଯାହାସବୁ ଅତୀତ ବର୍ତ୍ତମାନ ଏବଂ ଭବିଷ୍ୟତ, ନିଶ୍ଚିତ ଭାବରେ ତାହା ଓଁ । ଯାହା ତ୍ରିକାଳାତୀତ, ତାହା ମଧ୍ୟ ପ୍ରକୃତରେ ଓଁ ॥୧॥*

ଉପନିଷଦ୍‌ର ଆରମ୍ଭରେ ଓଁ ର ଏପରି ଅପ୍ରତ୍ୟାଶିତ ବ୍ୟାଖ୍ୟାନ ନୂଆ ଏବଂ ଫୁରୁସତରେ ପାଠ କରୁଥିବା ପାଠକଙ୍କ ପାଇଁ ନିରର୍ଥକ ଓ ଅଗ୍ରହଣୀୟ ମନେ ହେବ । ପ୍ରକୃତରେ ତାତ୍ପର୍ଯ୍ୟଟି ନିଜେ ହେଉଛି ଯୁଗାନ୍ତକାରୀ ଏବଂ ଆହୁରି ମଧ୍ୟ ସତ୍ୟର ଆକସ୍ମିକ ଉଦ୍‌ଘୋଷଣା ଯୋଗୁଁ ଏହା ବିଚିତ୍ର ଏବଂ ଭୀଷଣ ମନେ ହୁଏ, କିନ୍ତୁ ମୁଁ ପୂର୍ବରୁ ଯାହା କହିଛି, ଆମେ ବରାବର ମନେରଖିବା ଯେ, ପ୍ରତ୍ୟେକ ଶ୍ରୁତି ହେଉଛି ଜଣେ ଗୁରୁ ଏବଂ ଶିଷ୍ୟଙ୍କ ମଧ୍ୟରେ ଶାଶ୍ୱତ, ଜୀବନ୍ତ କଥୋପକଥନ। ଉପନିଷଦ୍ ଶବ୍ଦରେ ଏବଂ ତା'ମାଧ୍ୟମରେ, ମା'ଗଙ୍ଗାଙ୍କର କଳକଳ ସଙ୍ଗୀତରେ ସ୍ନାତ ହିମାଳୟ ଉପତ୍ୟକାର ଦୃଶ୍ୟ ଦେଖିବାକୁ ଏବଂ ଚିହ୍ନିବାକୁ ଶିକ୍ଷା କରିବା ଦରକାର । ସେଠାରେ ନଡ଼ା ଛାଉଣୀ ହୋଇଥିବା ଗୋଟିଏ କୁଡ଼ିଆର ବାରଣ୍ଡାରେ, ଶାନ୍ତ ସୁବାସିତ, ଆନନ୍ଦମୟ ଉଜ୍ଜ୍ୱଳତାରେ ଉଦ୍ଭାସିତ ହୋଇ ଧୀର ପ୍ରଶାନ୍ତ ମନୋଭାବର ଜଣେ ବ୍ୟକ୍ତି ବସି ଥାଆନ୍ତି । ନିଜର ପ୍ରେରଣାରେ ପୁଲକିତ ହୋଇ ଏହି ଗୁରୁ, ସାମନାରେ ବସିଥିବା ସମର୍ପିତ, ଦିବ୍ୟ ଭାବରେ ଏକାଗ୍ର ଚିତ୍ତ ତୃଷିତ ସାଧକ ପାଇଁ ତାଙ୍କ ହୃଦୟର ପରମ ଅନୁଭୂତି ଢାଳି ଦିଅନ୍ତି ।

ଅସଫଳତା ଏବଂ ଦୁଃଖ-ଦୁର୍ଦ୍ଦଶା ଯୋଗୁଁ ନିରାଶ ଓ ହତୋତ୍ସାହ ହୋଇ ଜଣେ ସାଧାରଣ ସାଧକ ଗୁରୁଙ୍କ ପାଦତଳେ ପହଞ୍ଚେ ନାହିଁ । ଆଧ୍ୟାତ୍ମିକତାର ଜଣେ ପରିପକ୍ୱ ଶିଷ୍ୟ ଦୁଃଖଦ ନୈରାଶ ଏବଂ ଅସଫଳତାର ପଙ୍କିଳତାରୁ ଜନ୍ମ ନିଏ ନାହିଁ । ସମ୍ଭାବ୍ୟ ସାଧକ ଜଣେ ଜୀବନରୁ ପଳାୟନ କରି ନଥାଏ, ସେ ପୂର୍ଣ୍ଣଭାବେ ଉତ୍ତମ ଜୀବନ ଯାପନ କରିଥାଏ ଏବଂ ଜୀବନ ତାକୁ ସର୍ବୋତ୍ତମଭାବେ ଯାହା ଦେଇ ପାରିବ, ତାହା କେବଳ ଦୁଃଖର ଏକ ସନନ୍ଦ ମାତ୍ର ବୋଲି ଜାଣି ସାରିଥାଏ । ଏହାକୁ ଏକ ଆତ୍ମଘାତୀ ନୈରାଶ୍ୟବାଦ ବୋଲି ଭାବିବାକୁ ହେବ ନାହିଁ । ଏହି ଅସନ୍ତୋଷ, ଜୀବନର ଅସଫଳତାର, ହତାଶାର ପରିପ୍ରକାଶ ନୁହେଁ, ବରଂ ଏହା ହେଉଛି ଜଣେ ବ୍ୟକ୍ତି ଜୀବନରେ ମହାନ ସମ୍ଭାବନା ବିଷୟରେ ଅନୁଭବ କରିପାରିବାର ସ୍ୱାଭାବିକ ପରିଣାମ । ଏପରି ଏକ ଉତ୍ସହୀନ ମହିମାମୟ ବିଚିତ୍ର ଅନୁଭୂତି ପ୍ରକାଶ କରିବାକୁ ସାଧକ ଭାଷା ପାଏ ନାହିଁ ।

ଏହିପରି ସୁନ୍ଦର ଏବଂ ପୂର୍ଣ୍ଣ ବୁଦ୍ଧିମତ୍ତାର ସହିତ ନିଷ୍ପାପର ଭାବରେ ଜୀବନଯାପନ କରି, ପରିପୂର୍ଣ୍ଣତା ଏବଂ ଜୀବନୀଶକ୍ତିର ସହିତ ଜିଜ୍ଞାସୁ ହୃଦୟ ନେଇ ଜଣେ ଆଦର୍ଶ ଶିଷ୍ୟ ଗୁରୁଙ୍କ ପାଦତଳେ ପହଞ୍ଚିଥାଏ । ଗୁରୁଙ୍କୁ ସେ ପଚାରିବାକୁ ଆସିଥାଏ, ଗୁରୁଦେବ ! ଖାଇବା ଓ ପିଇବା, ବୃଦ୍ଧି ଓ ମୃତ୍ୟୁ, ରୋଜଗାର ଓ ଖର୍ଚ୍ଚ, ଯୋଜନା ଓ କାମନା, ଆଶା ଓ ନିରାଶା ବ୍ୟତୀତ ଜୀବନରେ କଣ ମହାନ୍ ଲକ୍ଷ୍ୟ କିଛି ନାହିଁ ? ଜୀବନ କଣ ନିରାଶାର ଏକ ଧାରାବାହିକ କାହାଣୀ ? ଏହା କଣ ହସ-କାନ୍ଦର ପଥୁରିଆ ରାସ୍ତାରେ ଦୌଡ଼ି ଦୌଡ଼ି, ଗର୍ଭରୁ ମଶାଣି ପର୍ଯ୍ୟନ୍ତ ଗୋଟିଏ ତୀର୍ଥଯାତ୍ରା ? ଆତ୍ମଘାତୀ ସସୀମ ଭାବରୁ, ମୃତ୍ୟୁ ଏବଂ ଧ୍ୱଂସର ଜଳନ୍ତା ଜୁଇରୁ ମୁକ୍ତି ପାଇଁ କ'ଣ କୌଣସି ସମ୍ଭାବନା ନାହିଁ ? ସମ୍ଭାବନାମୟ....ଅଖଣ୍ଡ ସୁଖ, ଆନନ୍ଦର ମହାନ୍‌କ୍ଷେତ୍ର.....ମହାନ୍ ସାଫଲ୍ୟ ମାଧ୍ୟମରେ ଅବିନଶ୍ୱର ଜୀବନ ପାଇଁ ଏକ ବିଶାଳତର ଜଗତ ଅଛି କି ? କେତୋଟି ବର୍ଷ ଭିତରେ, ପରସ୍ପରକୁ ବୁଝି ପାରିବାର ପରିପକ୍ୱତାରେ କୌଣସି ଏକ ଅପରାହ୍ନରେ ଗୁରୁ ଏପରି ଜଣେ ଶିଷ୍ୟଙ୍କୁ ପାଖକୁ ଡାକି ମହାନ୍ ଉପନିଷଦ୍‌ର ବ୍ୟାଖ୍ୟା କରିବାକୁ ଆରମ୍ଭ କରନ୍ତି।

ବ୍ୟାଖ୍ୟା ପୂର୍ବରୁ କାହାଣୀକୁ ଏପରି ଭାବରେ ବୁଝି ଉପନିଷଦ୍‌ର ଅଧ୍ୟୟନ କଲେ ଅପ୍ରତ୍ୟାଶିତ ପ୍ରାରମ୍ଭିକର ଏକ ଅର୍ଥ ଏବଂ ସନ୍ଦେଶ ଥିବାର ଆମେ ସହଜରେ ବୁଝିପାରିବା।

ମନ୍ତ୍ରର ପ୍ରଥମ ଶବ୍ଦ ଦୁଇଟି ଗୁରୁଙ୍କ ତରଫରୁ ଏକ ପ୍ରାର୍ଥନା ପରି। ଶାସ୍ତ୍ରର ଯଥାର୍ଥ ଜ୍ଞାନଲାଭରେ ଧନ୍ୟ ହେବାପାଇଁ ଏବଂ ସଫଳତାର ସହିତ ବେଦର ଅଧ୍ୟୟନ ସଂପୂର୍ଣ୍ଣ କରିବା ପାଇଁ ଶିଷ୍ୟ ମଧ୍ୟ ଏହାର ପୁନରାବୃତ୍ତି କରେ ।

ଶ୍ରୀ ଶଙ୍କରାଚାର୍ଯ୍ୟ ତାଙ୍କର ଉପକ୍ରମ ମତାମତରେ କହିଛନ୍ତି, "ନାମ ଏବଂ ନାମୀ ଏକ ଏବଂ ଅଭିନ୍ନ ହେଲେ ମଧ, ଏଠାରେ ଦିଆ ଯାଇଥିବା ବ୍ୟାଖ୍ୟା ଓଁ ନାମକୁ ପ୍ରାଧାନ୍ୟ ଦେଇଛି । ଏହି ଉପନିଷଦ୍‌ରେ ପ୍ରଥମେ ଓଁ ଶବ୍ଦର ପ୍ରତ୍ୟେକ ଅକ୍ଷରର ବର୍ଣ୍ଣନା ଓ ତା'ପରେ ତାତ୍ପର୍ଯ୍ୟ ଦିଆଯାଇଛି । ଏହି ଅଂଶର ବ୍ୟାଖ୍ୟା ପରେ ଦିଆଯିବ । ବର୍ତ୍ତମାନ ପାଇଁ ଗୁରୁ ସିଧାସଳଖ, ଭାବଗର୍ଭକ, ସରଳ ଉକ୍ତିରେ ଶିଷ୍ୟର ସମଗ୍ର ସମସ୍ୟାକୁ ବ୍ୟାଖ୍ୟା କରିବାକୁ ଚେଷ୍ଟା କରିଛନ୍ତି- 'ଓଁ' ଶବ୍ଦଟି ହେଉଛି ସବୁ କିଛି ।

ଶିଷ୍ୟର ପ୍ରଶ୍ନ ହେଲା ! ଅନୁଭୂତି ଦ୍ୱାରା ଜାଣି ହେଉଥିବା ଆମ ଚାରିପାଖର ଦ୍ରୁତ ବିଲୀୟମାନ ବହୁବିଧତା ପଛରେ ପ୍ରକୃତରେ କୌଣସି ଗୋଟିଏ ମୌଳିକ ସତ୍ୟ ଅଛି କି ? ସମସ୍ତ ବହୁବିଧତାର ପଛରେ ଥିବା ମୌଳିକ ସତ୍ୟ ଶିଷ୍ୟକୁ ଜଣାଇ ଦେବାପାଇଁ ଗୁରୁ ଚେଷ୍ଟା କରିଛନ୍ତି ଏବଂ କହିଛନ୍ତି ଯେ, ବାହ୍ୟ ଜଗତରେ ଆମେ ଦେଖୁଥିବା ବହୁବିଧତା ପାଇଁ ଜଣେ ସର୍ବମୟକର୍ତ୍ତା ଓ ଆଧ୍ୟାତ୍ମିକ ତତ୍ତ୍ୱ ରହିଛି ।

ହଜାର ହଜାର ମାଟିପାତ୍ର ମାଟି ବ୍ୟତୀତ ଅନ୍ୟ କିଛି ନ ହୋଇଥିବା ପରି ଏକ ମାତ୍ର ଦିବ୍ୟ ଶାଶ୍ୱତ ବିଷୟ ରହିଛି, ଯାହାଠାରୁ ଏହି ବହୁବିଧ ଜଗତର ସୃଷ୍ଟି ହୋଇଛି । ପାତ୍ର ସବୁ ମାଟିରୁ ଜନ୍ମ ହୋଇଥାନ୍ତି, ମାଟିରେ ରହି ଥାଆନ୍ତି ଏବଂ ଧ୍ୱଂସ ହେବା ପରେ ସେମାନେ ମାଟିକୁ ଯିବା ଅବଧାରିତ । ସେହିପରି ସତ୍ୟଙ୍କ ବିନା ବହୁବିଧ ଜଗତ ତିଷ୍ଠି ରହିପାରିବ ନାହିଁ। ସତ୍ୟରେ ତାହା ରହିଥାଏ, ଏବଂ ବ୍ୟକ୍ତ ଅବସ୍ଥାରୁ ଅପସାରିତ ହେଲେ ସତ୍ୟକୁ ହିଁ ପ୍ରତ୍ୟାବର୍ତ୍ତନ କରେ । ସେହି ମୌଳିକ ତତ୍ତ୍ୱ, ପରମ ଶାଶ୍ୱତ, ସର୍ବବ୍ୟାପୀ ତେବେ ତତ୍ତ୍ୱଙ୍କୁ ହିଁ ଓଁ ଭାବରେ ଶିଷ୍ୟଙ୍କୁ ସୂଚାଇ ଦିଆଯାଇଛି ।

ଗୁରୁଙ୍କ ଦ୍ୱାରା ଏହା କୁହାଯିବା ବେଳେ ଏହି ଚରମ ସତ୍ୟର ଅର୍ବାଚିନ ନୂତନତ୍ତ୍ୱ ଶିଷ୍ୟମାନଙ୍କୁ ଆଶ୍ଚର୍ଯ୍ୟଚକିତ କରିଦିଏ ଏବଂ ମୁହଁରେ ବିରାଟ ଏକ ପ୍ରଶ୍ନବାଚୀ ନେଇ ଶିଷ୍ୟ ଗୁରୁଙ୍କୁ ଚାହିଁ ରହିବା ତ ସ୍ୱାଭାବିକ ! ଶିଷ୍ୟଙ୍କ ଚାହାଣୀରେ ଏହି ଅନୁଚ୍ଚାରିତ ପ୍ରଶ୍ନ ଦେଖି ଗୁରୁ ସହାନୁଭୂତିର ସହିତ ତାଙ୍କୁ ଉତ୍ତର ଦେବାକୁ ତତ୍ପରତାର ସହ କହନ୍ତି,"ପରେ ମୁଁ ତୁମକୁ ଏହାର ଏକ ସ୍ୱଷ୍ଟ ବ୍ୟାଖ୍ୟା ଦେବି" ।

ପୁନଶ୍ଚ ଆଶ୍ରମ ବାରଣ୍ଡା କିମ୍ବା ହିମାଳୟର ଉପତ୍ୟକାରେ ଯାହା ଅଛି, ସେତିକ ହିଁ ଓଁ ବୋଲି ପ୍ରଥମ ଉକ୍ତିରୁ ଶିଷ୍ୟ ଭୂଲ ବୁଝିପାରେ, କାରଣ ଶିଷ୍ୟପାଇଁ କେବଳ ଗୁରୁ ଏବଂ ତାଙ୍କର ଆଶ୍ରମ, ଗଙ୍ଗାକୂଳ ଏବଂ ହିମାଳୟର ଉପତ୍ୟକା ହିଁ ପବିତ୍ର । ତେଣୁ

ସେହି ସବୁକୁ 'ଓଁ' ବୋଲି ବିଚାର କରିବା ବିଶେଷ କଷ୍ଟକର ନୁହେଁ। ଶିଷ୍ୟ ମନରୁ ଏହି ଭ୍ରାନ୍ତ ଧାରଣା ଦୂର କରିବା ପାଇଁ ଗୁରୁ ଏହି ସମସ୍ତ ପଦର ପୂର୍ଣ୍ଣ ତାତ୍ପର୍ଯ୍ୟ ବ୍ୟାଖ୍ୟା କରିଛନ୍ତି।ସେ କହିଛନ୍ତି; "ଯାହା ସବୁ ଅତୀତ, ବର୍ତ୍ତମାନ ଏବଂ ଭବିଷ୍ୟତ, ତାହା ହିଁ ନିଶ୍ଚିତ ଭାବରେ ଓଁ । ଯାହା ଥିଲା, ଅଛି ଏବଂ ହେବ, – ଅର୍ଥାତ୍, ଆମର ପୂର୍ବପୁରୁଷଙ୍କ ଦ୍ୱାରା, ଆମଦ୍ୱାରା ଏବଂ ଆମ ସନ୍ତାନଙ୍କ ଦ୍ୱାରା ବୋଧ ହେଉଥିବା ସମଗ୍ର ବିଷୟ ଜଗତ ହେଉଛି ସେହି 'ଓଁ' । ସମଗ୍ର ବିଶ୍ୱର କେବଳ ଗୋଟିଏ ମାତ୍ର ଅଧିଷ୍ଠାନ ଅଛି । ତ୍ରିକାଳରେ ତାହା ଅପରିବର୍ତ୍ତନୀୟ ଏବଂ ତାହା ହିଁ 'ଓଁ' ନାମ ଏବଂ ପ୍ରତୀକ ଦ୍ୱାରା ଦର୍ଶାଯାଇଛି ।

ଏଠାରେ ମଧ୍ୟ ଶିଷ୍ୟଙ୍କର ଭୂଲ ବୁଝିବାର ସମ୍ଭାବନା ରହିଛି ଯେ ଓଁ ହେଉଛି କାଳ ଦ୍ୱାରା ନିରୂପିତ ଜଗତର ଅଧିଷ୍ଠାନ ଏବଂ ସ୍ଥାନ, କାଳ ଓ କାରଣ ଇତ୍ୟାଦି ଧାରଣାର ଊର୍ଦ୍ଧ୍ୱ, ଜଗତ ପାଇଁ ନୁହେଁ । ତେଣୁ ଏଠାରେ ଜୋର୍ ଦେଇ କହିଛନ୍ତି ଯେ ଯାହା ସବୁ ସମୟ ଦ୍ୱାରା ପରିଚ୍ଛିନ୍ନ (ସସୀମ) ଏବଂ ଯାହା ସମୟରୁ ଊର୍ଦ୍ଧ୍ୱରେ, ଅର୍ଥାତ୍ ଯାହା କାଳାତୀତ, ଓଁ ସେ ସବୁର ଅଧିଷ୍ଠାନ ।

ସମୟର ଅବଧାରଣା ହେଉଛି ମନର ଖେଳ । ମନ ନ ଥିବା ଜାଗାରେ ସମୟର ଅବଧାରଣା କାମ କରେ ନାହିଁ । କିନ୍ତୁ ଆମେ ଜାଣୁ ଯେ ମନ ହେଉଛି ଏକ ଜଡ଼ ପଦାର୍ଥ, ନିର୍ଜୀବ ଓ ଅଚେତନ । ମନ ଜୀବନ ସହିତ ସଂଯୁକ୍ତ ହେଲେ ସଜୀବ ଏବଂ ଚେତନ ହୋଇ କାର୍ଯ୍ୟ କରିବା ପରି ଜଣାପଡ଼େ ତେଣୁ ଯାହା ସମୟାତୀତ,ତାହା ହିଁ ଜୀବନର ଦିବ୍ୟ ସ୍ଫୁଲିଙ୍ଗ । ତାହାରି ଯୋଗୁଁ ହିଁ ଶରୀର, ମନ, ବୁଦ୍ଧିର ଏହି ସଂହତି ଏକ ଚଳତ୍ ଶକ୍ତି ସଂପନ୍ନ ଏବଂ ସ୍ପନ୍ଦିତ ସତ୍ତା ଭାବରେ କାର୍ଯ୍ୟ କରେ ।

ତେଣୁ, ପ୍ରତୀକତାରେ ଏବଂ ଅକ୍ଷରର ତାତ୍ପର୍ଯ୍ୟରେ ମଧ୍ୟ ଓଁ କେବଳ ବିବିଧତାର ଜଗତର ବ୍ୟକ୍ତ କରେ ନାହିଁ । ବରଂ ଏହା ଅବ୍ୟକ୍ତ, ଅଦ୍ୱୈତ, ସତ୍ୟର ଅଧିଷ୍ଠାନ ମଧ୍ୟ କେବଳ ପ୍ରତିନିଧିତ୍ୱ କରେ ନାହିଁ, ଏ ସମସ୍ତ ପଛରେ ଥିବା ଆଧ୍ୟାତ୍ମିକ ସତ୍ତାର ମଧ୍ୟ । ଏହା କିପରି, ସମଗ୍ର ଉପନିଷଦ୍‌ର ବାରୋଟି ପବିତ୍ର ମନ୍ତ୍ରର ତାହା ହିଁ ବିଷୟ ବସ୍ତୁ ।

**ସର୍ବଂ ହ୍ୟେତଦ୍ ବ୍ରହ୍ମ**

**ଅୟମାତ୍ମା ବ୍ରହ୍ମ ସୋଽୟମାତ୍ମା ଚତୁଷ୍ପାତ୍ ॥୨॥**

ସର୍ବମ୍ = ସମସ୍ତ, ହି = ବାସ୍ତବରେ, ଏତତ୍ = ଏହା; ବ୍ରହ୍ମ = ବ୍ରହ୍ମ(ଅଟନ୍ତି), ଅୟମ୍ ଆତ୍ମା ବ୍ରହ୍ମ = ଏହି ଆତ୍ମା ବ୍ରହ୍ମ, ସଃ = ତାହା (ବ୍ରହ୍ମ), ଅୟମ୍ ଆତ୍ମା = (ଯାହା) ଏହି ଆତ୍ମା, ଚତୁଷ୍ପାତ୍ = ଚାରି ଭାଗରେ ଏହା ସମନ୍ୱିତ ।

*ଏହିସବୁ ବାସ୍ତବରେ ବ୍ରହ୍ମ। ଏହି ଆତ୍ମା ବ୍ରହ୍ମ। ଏହି ଆତ୍ମାର ଚାରୋଟି ପାଦ ଅଛି ॥୨॥*

ଗତ ମନ୍ତ୍ରରେ ମହାନ୍ ଋଷି ତାଙ୍କର ଇନ୍ଦ୍ରିୟାତୀତ ଜ୍ଞାନ ସଂକ୍ଷେପରେ ଘୋଷଣା କରିଛନ୍ତି। ଏହିସବୁ ନିଶ୍ଚିତ ଭାବରେ 'ଓଁ' । ସେହି ଘୋଷଣା ଜାରି ରଖି ଋଷି ଶିଷ୍ୟମାନଙ୍କୁ ବର୍ତ୍ତମାନ କହିଛନ୍ତି, "ଏହି ସମସ୍ତ ହେଉଛନ୍ତି ବ୍ରହ୍ମ । ସ୍ୱାଭାବିକ ଭାବେ ଏହା ସ୍ପଷ୍ଟ ଯେ ଓଁ ହିଁ ବ୍ରହ୍ମ ବୋଲି ଶିଷ୍ୟମାନେ ବୁଝିବା ମହାନ୍ ଗୁରୁ ଚାହୁଁଛନ୍ତି । ଓଁ କେବଳ ବ୍ୟକ୍ତିଠାରେ ଥିବା ଆଧ୍ୟାତ୍ମିକ କେନ୍ଦ୍ରକୁ ସୂଚାଏ ନାହିଁ, ବିବିଧତାର ଜଗତର ଭ୍ରାନ୍ତ ଅବଧାରଣା ପଛରେ ଥିବା ସମଗ୍ର ଆଧ୍ୟାତ୍ମିକ ସତ୍ୟର ମଧ୍ୟ ପ୍ରତିନିଧିତ୍ୱ କରେ । "ଜଗତ ଗଠନ କରୁଥିବା ନାମ ଏବଂ ରୂପ ହେଉଛି ସର୍ବବ୍ୟାପୀ ଚୈତନ୍ୟଙ୍କ ଉପରେ ଅଧ୍ୟାସ ମାତ୍ର"- ସମଗ୍ର ଉପନିଷଦ୍‌ରେ ଏହା ହିଁ ହେଉଛି ନିରଳସ ପୁନରାବୃତ୍ତି ।

ବେଦାନ୍ତର ଅନୁସନ୍ଧାନରେ ଶିଷ୍ୟଙ୍କୁ ଶରୀର, ଏବଂ ବୁଦ୍ଧିରୁ ପୃଥକ୍ ହୋଇ ନିଜଠାରେ ଚିତ୍ତ ଏକାଗ୍ର କରିବାକୁ କୁହାଯାଉଥିଲେ ମଧ୍ୟ, ପରିଶେଷରେ ନିଜ ଭିତରେ ଅପ୍ରକଟ ଥିବା ଆଧ୍ୟାତ୍ମିକ କେନ୍ଦ୍ରକୁ ବାଟ କଢେଇ ନିଆ ଯାଇଛି । ଚାରିପାଖରେ ଥିବା ସୈତାନୀ ଅପୂର୍ଣ୍ଣତା ଠାରୁ ବ୍ୟକ୍ତିଠାରେ ଥିବା ଦେବତ୍ୱ ପୃଥକ ବୋଲି ଅନୁଭବ କରିବାର ଏହା ଏକ ପ୍ରଚେଷ୍ଟା ଭାବରେ ଭୁଲ ବୁଝିବାକୁ ହେବ ନାହିଁ । ଆତ୍ମାନୁଭବ କରିବାର ଏହା ଏକ ପ୍ରଚେଷ୍ଟା ଭାବରେ ବୁଝିବାକୁ ହେବ । ଆତ୍ମାଙ୍କର ପୁନରାବିଷ୍କାର କରିବା ମଧ୍ୟରେ ସର୍ବବ୍ୟାପୀ ଦେବତ୍ୱର ସାମଗ୍ରିକ ଅନୁଭୂତି ନିହିତ।

ବେଦାନ୍ତରୁ ଉଦ୍ଧୃତ ସାଦୃଶ୍ୟ କଥନରେ ପରିଚ୍ଛିନ୍ନ ଏବଂ ଅପରିଚ୍ଛିନ୍ନ ଆକାଶର ଏହି ଅବଧାରଣା ସୁନ୍ଦର ଭାବରେ ଦିଆଯାଇଛି। ଆମେ ଯାହାକୁ ଘର ଭିତରର ସ୍ଥାନ ବୋଲି କହୁଁ, ବାସ୍ତବରେ ତାହା ସାମଗ୍ରିକ ସ୍ଥାନ (ଆକାଶ)ଠାରୁ କୌଣସି ମତେ ଭିନ୍ନ ନୁହେଁ । ଆକାଶ କୌଣସି ସମୟରେ କୌଣସି ମତେ ସୀମିତ ନୁହେଁ । ଇଟା, ସିମେଣ୍ଟର କାନ୍ଥ ଗଢି ଆକାଶକୁ କଦାପି ସୀମିତ କରିହେବ ନାହିଁ, କାରଣ, ବାୟୁମଣ୍ଡଳକୁ କୋଠରୀ ଠାରୁ ଅଲଗା କରୁଥିବା ପରି ମନେ ହେଉ ଥିବା କାନ୍ଥ ମଧ୍ୟ ଆକାଶରେ ଠିଆ ହୋଇଥାଏ।

ଆକାଶ ଆକାଶକୁ ମଧ୍ୟ ସୀମିତ କରେ ବୋଲି ନ କହିଲେ ଆକାଶକୁ ପ୍ରକୃତରେ ସୀମିତ କରିବା ପରି ଦୁନିଆରେ କିଛିହେଲେ ନାହିଁ । ତଥାପି ଘର ଭିତରର ଆକାଶ କାନ୍ଥ, ଚଟାଣ ଏବଂ ଛାତ ସହିତ ତାଦାତ୍ମ୍ୟ କରି "ବସିବା ଘରର ଆକାଶ ବା ଶୋଇବା ଘରର ଆକାଶ ଇତ୍ୟାଦି ଭାବରେ ଏକ ବିଶେଷ ଅହଂଭାବ ଗ୍ରହଣ କରେ । ବାସ୍ତବରେ ସେହି ଆକାଶକୁ ଘେରି କାନ୍ଥ ତିଆରି କରିବା ପୂର୍ବରୁ ସେହି ଆକାଶ ସମଗ୍ର ଘର ଠାରୁ ଅଭିନ୍ନ ଥିଲା, ଏବଂ କାନ୍ଥ ଭାଙ୍ଗି ଦେଲେ ସମଗ୍ର ଆକାଶ ସହିତ ଏକ ହୋଇଯିବ । ତେଣୁ ଚାରୋଟି କାନ୍ଥ ଏବଂ କୋଠରୀ ସହିତ ସମଗ୍ର ଆକାଶ ତାଦାତ୍ମ୍ୟ କରିବା ଯୋଗୁଁ ଘର ଭିତର ଆକାଶ ନାମକ ଏକ ଭ୍ରାନ୍ତ ଅପଛାୟା ସୃଷ୍ଟି ହୋଇଥାଏ । ବାସ୍ତବରେ ଘର ଭିତରର ଆକାଶ ହେଉଛି ସମଗ୍ର ଆକାଶ (ମହାକାଶ) ।

ସେହିପରି, ଚିରନ୍ତନ-ଶାଶ୍ୱତ ଏବଂ ଅସୀମ ସର୍ବବ୍ୟାପୀ ସତ୍ୟ, ଶରୀର-ମନ-ବୁଦ୍ଧି ରୂପେ ତାଙ୍କ ଚାରିପାଖରେ ନିଜେ ତିଆରି କରିଥିବା ପରିଚ୍ଛିନ୍ନତାର କାନ୍ଥ ସହିତ ଭ୍ରାନ୍ତ ତାଦାତ୍ମ୍ୟ କରି ନିଜର ଭ୍ରାନ୍ତିରେ ନିଜ ପାଇଁ ଏକ ସ୍ୱତନ୍ତ୍ର ସତ୍ତାର ଅନୁଭବ କରନ୍ତି। ଏହି ଜଡ଼ ଉପାଧି ସହିତ ତାଦାତ୍ମ୍ୟ ସ୍ଥାପନ କରି ସେ ନଶ୍ୱର, ଅହଂକାର, ଗର୍ବ ଏବଂ ପରିଣାମତଃ ଅଜ୍ଞର ଭାବ ଲାଭ କରନ୍ତି । ଏହି ମିଥ୍ୟା ଧାରଣା ଦୂରକରି ଶୁଦ୍ଧ ଜ୍ଞାନର ବିଜ୍ଞତାରେ ପାଦ ଦେବା ହେଉଛି ସାଧକର ଲକ୍ଷ୍ୟ ଏବଂ ତେଣୁ ଏଠାରେ ଆମେ ଦେଖିବାକୁ ପାଉ ଯେ, ଉପନିଷଦ୍ ମାଧ୍ୟମରେ ଗୁରୁ ସତ୍ୟଙ୍କର ଏକ ସ୍ପଷ୍ଟ ଏବଂ ସ୍ୱଚ୍ଛ ବିବରଣୀ ଦେଇଛନ୍ତି।

ଆତ୍ମା କଦାପି ବିଭାଜିତ ହୋଇ ପାରିବେ ନାହିଁ। ସେ ସର୍ବଦା ଅବିଭକ୍ତ । ତେବେ ବି ଆମ ଶରୀର ଭିତରେ ବ୍ୟକ୍ତ ହୋଇଛନ୍ତି । ବ୍ରହ୍ମ ହେଉଛନ୍ତି ପରମ ସତ୍ୟ-ସର୍ବବ୍ୟାପୀ, ନିର୍ବିକଳ୍ପ, ସେ ଅଜନ୍ମା ଏବଂ ମୁକ୍ତ । ଏଠାରେ ଉପନିଷଦ୍ କହୁଛନ୍ତି "ଏହି ଆତ୍ମା ହେଉଛନ୍ତି ବ୍ରହ୍ମ", ବେଦାନ୍ତର 'ମୁଁ' ହେଉଛି ସାର୍ବଜନୀନ 'ମୁଁ' ।

ଏହି - ଏହି ସର୍ବନାମଟିର ଗଭୀର ତାତ୍ପର୍ଯ୍ୟ ରହିଛି ଏବଂ ଏହାକୁ ପୁଙ୍ଖାନୁପୁଙ୍ଖ ଭାବେ ଦେଖିବାକୁ ଗଲେ ଏହା ଗୋଟିଏ ମୋଟା ବହିକୁ ପୂର୍ଣ୍ଣ କରି ଦେବ ।

ତେଣୁ, ଆମର ଉଦ୍ଦେଶ୍ୟ ସାଧନ ପାଇଁ ମୁଁ କେବଳ କେତେଗୋଟି ମୁଖ୍ୟ ବିଷୟର ଉଲ୍ଲେଖ କରିବି ।

"ତାହା" ବିପରୀତ ଅର୍ଥରେ ଆମେ ସର୍ବନାମ 'ଏହା' ବ୍ୟବହାର କରିଥାଉ । କାନ୍ଥ ଅପେକ୍ଷା ବହିଟି ଆମର ନିକଟବର୍ତ୍ତୀ ହୋଇଥିଲେ ଆମେ କହୁ, ସେହି କାନ୍ଥ ଏବଂ

ଏହି ବହି । କିନ୍ତୁ ଆମେ ପିନ୍ଧିଥିବା ସାର୍ଟରେ ଉଲ୍ଲେଖ କଲେ 'ଏହି ବହି''ସେହି ବହି' ହୋଇଯାଏ, କାରଣ ବହି ଅପେକ୍ଷା ସାର୍ଟଟି ଆମର ନିକଟବର୍ତ୍ତୀ । ଏହିପରି ଭାବରେ ବିଶ୍ଳେଷଣ କରି ବୁଦ୍ଧି ସହିତ ତାଦାତ୍ମ୍ୟ କଲେ ଆମ ନିଜର ଶରୀର ଏବଂ ମନ ମଧ୍ୟ 'ସେହି ଶରୀର' ଏବଂ 'ସେହି ମନ'ହୋଇଯିବ ।

ତେଣୁ, 'ତାହା' ସର୍ବନାମ ଦ୍ୱାରା ସୂଚୀତ ସମଗ୍ର ବସ୍ତୁ ବିଷୟ ଜଗତ ହେଲା ବେଳେ ଆମ ଭିତରେ ଥିବା କେନ୍ଦ୍ରକୁ ଋଷି 'ଏହା' ବୋଲି କହି ନିର୍ଦ୍ଦେଶ କରିଛନ୍ତି ଏବଂ ମୌଳିକ ଓ ନିର୍ବିକଳ୍ପ 'ଏହା' ଭାବରେ ଯାହା ସୂଚୀତ ହୋଇଛି, ତାହା କଦାପି ସର୍ବନାମ 'ତାହାର' ବିଷୟ ହୋଇ ପାରିବ ନାହିଁ । ସବୁଠାରୁ ଶେଷ ଯାଗା – 'ତାହା' ଦ୍ୱାରା ସୂଚୀତ ସମସ୍ତ ବିଷୟ ଯେଉଁଠି ଗୋଟିଏ ଅନ୍ତିମ 'ଏହା'ରେ ନିଃଶେଷ ହୋଇ ଯାଆନ୍ତି, ଯାହାର ପ୍ରସଙ୍ଗରେ (ତୁଳନାରେ) ଆମର ଅଧିକ ନିକଟବର୍ତ୍ତୀ ଆଉ କିଛି ହୋଇପାରିବ ନାହିଁ, ତାହା ନିଜର ଆତ୍ମା ହିଁ ହେବ, ଆତ୍ମା –ଏହି ଆତ୍ମା ।

ତେଣୁ, ନିର୍ବିକଳ୍ପ ଆତ୍ମା ହିଁ ଆମ ଭିତରେ ଥିବା ଆଧାତ୍ମିକ କେନ୍ଦ୍ର ଏବଂ ଆଧାତ୍ମିକ ବିଷୟଟି ଶାଶ୍ୱତ ଏବଂ ସର୍ବବ୍ୟାପୀ ହୋଇଥିବାରୁ ଆମ ଭିତରର କେନ୍ଦ୍ର ହେଉଛି ସବୁ ସ୍ଥାନର କେନ୍ଦ୍ର । ଆମର ଆତ୍ମା ହେଉଛି ସାର୍ବଜନୀନ ଆତ୍ମା । ତେଣୁ ଶ୍ରୁତି କହିଛନ୍ତି, 'ଏହି ଆତ୍ମା ହିଁ ବ୍ରହ୍ମ' । ବରାବର ଉଲ୍ଲେଖ କରାଯାଉଥିବା ଏହି ଘୋଷଣା ବେଦାନ୍ତ ସାଧକଙ୍କ ଦ୍ୱାରା ଏକ ମହାବାକ୍ୟ ଭାବରେ ବିଚାର କରାଯାଏ । ମହାବାକ୍ୟ ହେଉଛି ଏକ ଶାସ୍ତ୍ରୀୟ ଘୋଷଣା । ଏହାର ଅଶେଷ ତାତ୍ପର୍ଯ୍ୟ ରହିଛି । ସାଧକ ଏହା ଉପରେ ଯେତେ ବେଶୀ ଅଭିନିବେଶ (ଧ୍ୟାନ) କରିବେ, ନିଦିଧ୍ୟାସନରେ ରମଣ କରିବା ପାଇଁ ସେତେ ଅଧିକ ନୂତନ କ୍ଷେତ୍ର ପାଇ ପାରିବେ । ପରିଶେଷରେ ଆମେ ଏପରି ଏକ ସ୍ଥାନରେ ପହଞ୍ଚିବା, ଯେଉଁଠାରେ କି କୌଣସି ଭାବନା ଉଦ୍ଭବ ହେବାର ସମ୍ଭାବନା ରହେ ନାହିଁ । ସମସ୍ତ ଚିନ୍ତା ପ୍ରଶାନ୍ତ ନିରବତାକୁ ବା ଆତ୍ମାନୁଭୂତିର ଆନନ୍ଦ ଆଡକୁ ଗତି କରିବେ ।

ଆମଠାରେ ଜୀବନର ଯେଉଁ ଦିବ୍ୟ ସ୍ଫୁଲିଙ୍ଗକୁ ଆତ୍ମ ଭାବରେ ଅନୁଭବ କରାଯାଏ, ବେଦାନ୍ତରେ ଯାହାକୁ ପ୍ରୟୋଗାତ୍ମିକ ଭାବେ ଆତ୍ମା କୁହାଯାଏ, ଆମର ତାହାକୁ ଦର୍ଶାଇବା କଥା, ସିଧାସଳଖ ଭାବରେ ଆଙ୍ଗୁଳି ନିର୍ଦ୍ଦେଶ କରି ନ ହେଲେ ମଧ୍ୟ, ଅନ୍ତତଃ ପବିତ୍ର ଭାଷାର ଗୁଢାର୍ଥରେ(ତାତ୍ପର୍ଯ୍ୟ) ଅସୀମଙ୍କୁ ଦେଖାଇ ଦେବା ପାଇଁ ବେଦାନ୍ତରେ ଯେଉଁ ଉପାୟ ଗ୍ରହଣ କରା ଯାଇଛି, ତାହା ହେଲା ବୁଦ୍ଧି ଦ୍ୱାରା ବୁଝିପାରିବାର ଧାରା ଏବଂ ଯୁକ୍ତି

ଯୁକ୍ତ ବିଶ୍ଳେଷଣ - ବିଭିନ୍ନ ନାମ ରୂପର ବିଭେଦାତ୍ମକ ଅନୁଭୂତିର ଏକ ରୁକ୍ଷ ବିଶ୍ଳେଷଣ; ଯାହାଯୋଗୁଁ ଆମଠାରେ ଏବଂ ଆମ ଚତୁର୍ଦ୍ଦିଗରେ ଜୀବନୀଶକ୍ତି ନିରନ୍ତର ଏବଂ ସୁସଙ୍ଗତ ଭାବେ କାମ କରୁଥାଏ।

ଦୂରସ୍ଥ ଉପତ୍ୟକାରେ ଧୂଆଁ ଉପରକୁ ଉଠୁଥିବାର ଦେଖି, ସେଠାରେ ନିଆଁ ଥିବା କଥା ଆମେ ଜାଣିପାରୁ । ସେହିପରି ମଧ୍ୟ, ନିର୍ଜୀବ ବସ୍ତୁ ଜୀବନୀ ଶକ୍ତିସମ୍ପନ୍ନ ହୋଇ ସଚେତନ ଭୂମିକା ନିର୍ବାହ କଲେ, ଶୁଦ୍ଧ-ଚୈତନ୍ୟ ଜଡ଼ର ସଂସ୍ପର୍ଶରେ ଆସିଥିବେ ବୋଲି ଆମେ ଜାଣୁ। ତେଣୁ, ସତ୍ୟଙ୍କ ସମ୍ବନ୍ଧରେ ଆମର ବୋଧ କରାଇବା ପାଇଁ ଋଷିଙ୍କ ପାଇଁ ଯେଉଁ ଏକମାତ୍ର ଉପାୟ ଥିଲା, ତାହା ହେଉଛି ଉପଲବ୍ଧି କରି ହେଉଥିବା ତାଙ୍କର ସକ୍ରିୟତା - ଗତିବିହୀନ ଜଡ଼ ମାଧ୍ୟମରେ ସତ୍ୟଙ୍କର ସକ୍ରିୟତା ଦେଖାଇବା ।

ବିଦ୍ୟୁତ୍ ଶକ୍ତିକୁ ବୁଝାଇ ହେବ ନାହିଁ ବା ଏହା ଦେଖାଯିବ ନାହିଁ, ତଥାପି, ବିଜୁଳି ଶକ୍ତିର ନାନା ପ୍ରକାରର ପରିପ୍ରକାଶ ପ୍ରତି ଜଣେ ନିପଟ ଗାଉଁଲି ଲୋକର ଦୃଷ୍ଟି ଆର୍କଷଣ କରି ଆମେ ବୈଦ୍ୟୁତିକ ଶକ୍ତିର ନିର୍ଦ୍ଦିଷ୍ଟ ଧାରଣା ବ୍ୟାଖ୍ୟା କରି ତାକୁ ବୁଝାଇ ଦେଇପାରିବା।

ସନ୍ଧ୍ୟା ସମୟରେ ସମୁଦ୍ର କୂଳରେ ବୁଲୁଥିବାବେଳେ ତୁମର ପୁଅ ଯଦି ଠିଆ ହୋଇ ପଚାରିବ, "ବାପା, ସମୁଦ୍ର କଣ ?" ପିଲାଟି ପ୍ରକୃତରେ ଦେଖୁଥିବା ସମୁଦ୍ରର ବିଭିନ୍ନ ପ୍ରକାର ପରିପ୍ରକାଶ (ରୂପ) ମାଧ୍ୟମରେ ତା'କୁ ବ୍ୟାଖ୍ୟା କରିବା ବ୍ୟତୀତ ଅନ୍ୟ କିଛି ଉପାୟ ନାହିଁ। ବାପାଙ୍କୁ କହିବାକୁ ହେବ, "ଯେଉଁ ସବୁ ତରଙ୍ଗ, ଢେଉ ଏବଂ ଫେଣ ଇତ୍ୟାଦି ତୁ ଦେଖି ପାରୁନୁ ଏବଂ ତୁ ଦେଖି ପାରୁ ନ ଥିବା ପୃଥିବୀର ସମସ୍ତ ସମୁଦ୍ରରେ ଯାହା କିଛି ରହିଛି, ତାହା ହିଁ ସମୁଦ୍ର । ସମୁଦ୍ରରେ କେବଳ ଢେଉ, ଝଡ଼ ଏବଂ ବିପଦ ନ ଥାଏ । ଏହା ସମୁଦ୍ରର ବାହ୍ୟ ସ୍ଥିତି । ଏହାର ଗଭୀରତାରେ ରହିଛି ପ୍ରଶାନ୍ତ ନୀରବତା - ସେଠାକୁ ସୂର୍ଯ୍ୟ କିରଣ ବି ପ୍ରବେଶ କରିପାରେ ନାହିଁ । ଅଶାନ୍ତ କରିବା ପାଇଁ ସେଠି କୌଣସି ଝଡ଼ ମଧ୍ୟ ପ୍ରବେଶ କରିପାରିବ ନାହିଁ । ଆହୁରି ଗଭୀରତାରେ ରହିଛି ସମୁଦ୍ରର ସମ୍ପତ୍ତି, ମୁକ୍ତା ଇତ୍ୟାଦି । ପିଲାଟିକୁ ବାପାଙ୍କୁ ସମୁଦ୍ରର ଏହିସବୁ ପ୍ରକାଶିତ ରୂପ ଦେଖାଇବାକୁ ପଡ଼ିବ ଏବଂ ଏସବୁ ସହ ବାହ୍ୟ ଆନ୍ଦୋଳିତ ରୂପର ଆଧାର ମଧ୍ୟ ସମୁଦ୍ର ହିଁ ବୋଲି ପିଲାଟିକୁ ବୁଝାଇବାକୁ ପଡ଼ିବ ।

ସେହିପରି ଶିଷ୍ୟ ଶ୍ରେଣୀର ସାଧକମାନଙ୍କର ଜ୍ଞାନପିପାସା ନିବାରଣ କରିବା ପାଇଁ, ନିର୍ବିକଳ୍ପ ସତ୍ୟ ନିଜକୁ ପ୍ରକାଶ କରୁଥିବା ବିଭିନ୍ନ ବ୍ୟକ୍ତ ରୂପ ଆଡକୁ ଆମର ପ୍ରାଚୀନ ସଂସ୍କୃତିର ଗୁରୁଜନମାନଙ୍କୁ ନିର୍ଦ୍ଦେଶ କରିବାକୁ ପଡୁଥିଲା । ବ୍ରହ୍ମନ୍ ବା ଆତ୍ମାଙ୍କର ବିଭିନ୍ନ

ପ୍ରକାରର ବ୍ୟକ୍ତ ରୂପ ମାଧ୍ୟମରେ ତାଙ୍କୁ ବ୍ୟାଖ୍ୟା କରିବା ପାଇଁ ଋଷି ମାଣ୍ଡୁକ୍ୟ ଉପନିଷଦ୍‌ରେ ଚେଷ୍ଟା କରିଛନ୍ତି । ଏହି ପ୍ରବଚନ ପାଇଁ ଶିଷ୍ୟମାନଙ୍କୁ ପ୍ରସ୍ତୁତ କରି ମହାନ୍ ଋଷି କହିଛନ୍ତି, "ଏହି ଆତ୍ମାଙ୍କର ଚାରୋଟି ପାଦ(ଭାଗ) ଅଛି ।

ଅଦୃଶ୍ୟ ସତ୍ୟ କେବେ ବି ବିଭିନ୍ନ ଭାଗରେ ବିଭକ୍ତ ହୋଇଥିବେ, ସେକଥା ନୁହେଁ । ଶଙ୍କରାଚାର୍ଯ୍ୟ ତାଙ୍କ ଭାଷ୍ୟରେ ବିଶେଷ ଭାବରେ ଦର୍ଶାଇଛନ୍ତି ଯେ,ଏଠାରେ ପାଦର ଅର୍ଥ ଅନ୍ୟ ଅଙ୍ଗ-ପ୍ରତ୍ୟଙ୍ଗ ନୁହେଁ, ଯେମିତିକି, ଗାଈର ଚାରୋଟି ପାଦ ଅଛି । ଆମେ ଯଦି ଏହି ଆଭିଧାନିକ ଅର୍ଥକୁ ଧରି ବସିବା, ତେବେ ସମଗ୍ର ବେଦାନ୍ତିକ ଭାବକୁ ବିକୃତ କରି ଆମେ ଭୂଲ ବୁଝିବା । ଚାରୋଟି ପାଦ ଅଛି ବୋଲି ଆମେ ଯଦି ଗ୍ରହଣ କରିବା, ତେବେ ସତ୍ୟଘନଙ୍କ ଠାରେ ସ୍ୱତଃ ଭେଦ ଦେଖାଯିବ । ଯାହାର ନିଜ ଭିତରେ କୌଣସି ବିବିଧରୂପ ଅଛି, ସେ ଗୋଟିଏ 'ବସ୍ତୁ' ହୋଇଯିବ, ତାହାହେଲେ ସତ୍ୟ ପରିଛିନ୍ନ ଏବଂ ନଶ୍ୱର ହୋଇଯିବେ ।

ଶ୍ରୁତି ଏଠାରେ ଯାହା କହିଛନ୍ତି, ତାର ଅର୍ଥ ହେଲା - କାର୍ଯ୍ୟକଳାପରୁ ଚାରୋଟି କ୍ଷେତ୍ର ଏବଂ ଆତ୍ମା ନିଜ ପାଇଁ ସେହି ଚାରୋଟି ବିଭିନ୍ନ ଆକୃତି ଗ୍ରହଣ କରିବା ପରି ମନେ ହୁଏ, ଯଦିଓ ପ୍ରଥମ ତିନୋଟି ବାସ୍ତବରେ ଶେଷ ପାଦରେ ନିଜକୁ ସମର୍ପଣ କରନ୍ତି। ଉପନିଷଦୀୟ ମନ୍ତ୍ରମାନଙ୍କର ବିବରଣର ଅର୍ଥ ବୁଝିବା ସହିତ ଏହା କିପରି ହୁଏ ବୋଲି ଆମେ ଜାଣି ପାରିବା। ବର୍ତ୍ତମାନ ପାଇଁ ଶଙ୍କରଙ୍କ ଅର୍ଥରୁ ଆମେ ବ୍ୟବହାର କରୁଥିବା ଖୁଚୁରା ପଇସା ପରି ପାଦସବୁ ଭଗ୍ନାଂଶ ବୋଲି ବୁଝିପାରିଲେ ଯଥେଷ୍ଟ ହେବ।

ଚାରି ଅଣାଟିଏ କେବଳ ଗୋଟିଏ ମୁଦ୍ରା, ଦୁଇଟି ଚାରିଅଣା ଗୋଟିଏ ଆଠଅଣା ମୁଦ୍ରା, ତିନୋଟି ଚାରିଅଣା କେବଳ ବାର ଅଣା ହୁଏ । ଏହା ସହିତ ଚତୁର୍ଥ ଚାରିଅଣାଟିଏ ଯୋଗ କଲେ ଗୋଟିଏ ଟଙ୍କାକିଆ ମୁଦ୍ରାରେ ସେମାନେ ସମଷ୍ଟି ହୁଅନ୍ତି । ଗୋଟିଏ ଟଙ୍କାକିଆ ମୁଦ୍ରାରେ ଚାରଣିମାନଙ୍କର ସ୍ୱତନ୍ତ୍ର, ବ୍ୟକ୍ତିଗତ ସତ୍ତାର କ୍ଷୁଦ୍ରତା ବା ସସୀମତା ନ ଥାଏ ।

ସେହିପରି ମଣିଷର ଆତ୍ମିକ ଜୀବନର ବିଶ୍ଳେଷଣ କଲେ ଆମେ ଦେଖିପାରିବା ଯେ, ଚୈତନ୍ୟର ତିନୋଟି ସ୍ତର ଅଛି ଏବଂ ପ୍ରତିଦିନ ଆମେ ଏଥିରେ ବିହାର କରୁ । ଏହି ତିନୋଟି ସ୍ତର ହେଲା ଜାଗ୍ରତ, ସ୍ୱପ୍ନ ଏବଂ ସୁଷୁପ୍ତି । ତେବେ ଏହି ତିନୋଟି ସ୍ତର ସହିତ ଚୈତନ୍ୟର ଚତୁର୍ଥ ସ୍ତର- ତୁରୀୟକୁ ଯୋଗ କଲେ ପୂର୍ବ ତିନୋଟିର ଅତିକ୍ରମଣ ହୋଇ, ଗୋଟିଏ ସମଷ୍ଟି ହେବା ପାଇଁ ସମସ୍ତେ ମିଶି ଯାଆନ୍ତି । ସେହି ଆତ୍ମାଙ୍କଠାରେ

ଜାଗ୍ରତ ପୁରୁଷ ନାହିଁ, ସ୍ୱପ୍ନଦ୍ରଷ୍ଟା ନାହିଁ ବା ସୁଷୁପ୍ତି ନାହିଁ । ଆତ୍ମାଙ୍କର ଚାରିପାଦ ଅଛି ବୋଲି ମନ୍ତ୍ରଟି କହିବା ବେଳେ ଏହି ଅବଧାରଣାକୁ ସୂଚାଇ ଦିଏ । ସେମାନେ କ'ଣ, କିପରି ବ୍ୟବହାର କରନ୍ତି ଏବଂ ସେମାନଙ୍କର କାର୍ଯ୍ୟକ୍ଷେତ୍ର କ'ଣ, ପରେ ସେସବୁର ବର୍ଣ୍ଣନା କରାଯିବ ।

**ଜାଗରିତସ୍ଥାନୋ ବହିଷ୍ପ୍ରଜ୍ଞଃ ସପ୍ତାଙ୍ଗ**

**ଏକୋନବିଂଶତିମୁଖଃ ସ୍ଥୂଳଭୁକ୍**

**ବୈଶ୍ୱାନରଃ ପ୍ରଥମଃ ପାଦଃ ॥୩॥**

ଜାଗରିତ ସ୍ଥାନଃ = ଜାଗ୍ରତ ଅବସ୍ଥା ଯାହାର କ୍ଷେତ୍ର, ବହିଃ ପ୍ରଜ୍ଞଃ = ବାହ୍ୟ ବିଷୟ ସମ୍ବନ୍ଧରେ ଯିଏ ସଚେତନ, ସପ୍ତ ଅଙ୍ଗ = ସାତୋଟି ଅଙ୍ଗ ଅଛି, ଏକୋନ-ବିଂଶତି-ମୁଖଃ = ଉଣେଇଶଟି ପାଟି ଅଛି; ସ୍ଥୂଳ-ଭୁକ୍ = ସ୍ଥୂଳ ବିଷୟର ଅନୁଭବ-କର୍ତ୍ତା, ବୈଶ୍ୱାନରଃ= ବୈଶ୍ୱାନର(ଅଟେ), ପ୍ରଥମଃ = ପ୍ରଥମ, ପାଦଃ = ଭାଗ ।

*ପ୍ରଥମ ପାଦ ହେଲେ ବୈଶ୍ୱାନର । ଜାଗ୍ରତ ଅବସ୍ଥା ତାଙ୍କର କାର୍ଯ୍ୟକ୍ଷେତ୍ର । ବାହ୍ୟ ବସ୍ତୁ-ଜଗତ ସମ୍ବନ୍ଧରେ ସେ ସଚେତନ । ତାଙ୍କର ସାତୋଟି ଅଙ୍ଗ ଏବଂ ଉଣେଇଶଟି ପାଟି ଅଛି । ସେ ଜଗତର ସ୍ଥୂଳ ପଦାର୍ଥର ଉପଭୋଗ କରନ୍ତି ॥୩॥*

ଜୀବନର ଏକକ ହେଲା ଅନୁଭୂତି ଏବଂ ଅନୁଭୂତିରେ ତିନୋଟି ବିଷୟ ରହିଛି- ଅନୁଭବ କର୍ତ୍ତା, ଯାହା ଅନୁଭବ କରାଯାଏ ଏବଂ ଅନୁଭବ କର୍ତ୍ତା ଓ ଯାହା ଅନୁଭବ କରାଯାଏ ସେମାନଙ୍କ ମଧ୍ୟରେ ସମ୍ପର୍କ । ଏହାକୁ 'ଅନୁଭବ କରିବା' କୁହାଯାଏ । ଭୌତିକ ବିଜ୍ଞାନୀମାନେ ଅନୁସନ୍ଧାନ ପାଇଁ 'ବସ୍ତୁଜଗତ'କୁ ତାଙ୍କର କ୍ଷେତ୍ରଭାବରେ ଗ୍ରହଣ କରିଥିବା ବେଳେ ଧର୍ମ ଏବଂ ଦର୍ଶନ 'ବିଷୟଜଗତ'କୁ ଅନୁସନ୍ଧାନ ପାଇଁ ନେଇଛନ୍ତି । ଅର୍ନ୍ତଜଗତର ଅନୁସନ୍ଧାନ ସମୟରେ ଯୁକ୍ତିସଂଗତ ଅନୁକ୍ରମ ଭାବେ ସେମାନେ ଜାଗ୍ରତ, ସ୍ୱପ୍ନ ଏବଂ ସୁଷୁପ୍ତି ଅବସ୍ଥାକୁ ଜୀବନର ତିନୋଟି ପରିପ୍ରକାଶ ଭାବେ ଚିହ୍ନି ପାରିଲେ । ଆମେ ମଧ୍ୟ ଦେଖିବାକୁ ପାଉ ଯେ, ତିନୋଟି ବିଭିନ୍ନ ସତ୍ତା ପରି ଆମେ ଚେତନାର ଏହି ତିନୋଟିସ୍ତରରେ ଭିନ୍ନ ଭିନ୍ନ ବ୍ୟବହାର କରୁ । ଆମଠାରେ ଥିବା ଜାଗ୍ରତ ପୁରୁଷ ସ୍ୱପ୍ନଦ୍ରଷ୍ଟାଠାରୁ ସ୍ୱତନ୍ତ୍ର, ତୃତୀୟ ସତ୍ତା ସୁଷୁପ୍ତ ଉଭୟ ଜାଗ୍ରତ ଏବଂ ସ୍ୱପ୍ନ ଅବସ୍ଥା ସହିତ ସଂଯୁକ୍ତ ହୋଇଥିବା ଜୀବନଠାରୁ ସ୍ୱତନ୍ତ୍ର !*

---

* ବିଶଦ ଭାବରେ ଜାଣି ପାଇଁବା ସ୍ୱାମୀଜୀଙ୍କର 'ମେଡିଟେସନ୍ ଏଣ୍ଡ୍ ଲାଇଫ୍' ଦେଖନ୍ତୁ ।

ଆମଠାରେ ଥିବା ଜାଗ୍ରତ ପୁରୁଷର ସଠିକ୍ ଅବସ୍ଥିତି, ପରିଚିତି, କାର୍ଯ୍ୟକଳାପର କ୍ଷେତ୍ର ଏବଂ ଉପଭୋଗ୍ୟ ପଦାର୍ଥକୁ ଚିହ୍ନାଇ ଦେବାପାଇଁ ଏହି ଉପନିଷଦ୍ ଚେଷ୍ଟା କରିଛି । ଋଷିମାନଙ୍କର ସଂସ୍କୃତ ଭାଷାରେ ଏହି ଜାଗ୍ରତପୁରୁଷକୁ 'ବୈଶ୍ୱାନର' କୁହାଯାଏ ଏବଂ ବୈଶ୍ୱାନର(ବା ବିଶ୍ୱ) ହେଉଛି ଚେତନାର ଜାଗ୍ରତ ଅବସ୍ଥା ଉପଭୋଗ କରୁଥିବା ଜୀବ । ସେ କେବଳ ବସ୍ତୁ ଜଗତ ସମ୍ବନ୍ଧରେ ସଚେତନ ନୁହେଁ, ବରଂ ଯେଉଁ ଏକମାତ୍ର ଉପଭୋଗ ବିଷୟରେ ଜାଣିଛି, ତାହା ବସ୍ତୁ ଜଗତରେ ହିଁ ଥାଏ । ସେ ରୂପ, ଶବ୍ଦ, ସ୍ୱାଦ, ଗନ୍ଧ ଏବଂ ସ୍ପର୍ଶର ଉପଭୋଗ କରେ ଏବଂ ସେତିକି ମାତ୍ରରେ ହିଁ ସୀମିତ । 'ଜାଗ୍ରତ ପୁରୁଷ' ତା'ର ଜାଗ୍ରତ ଅବସ୍ଥାରେ ପାଞ୍ଚ ଇନ୍ଦ୍ରିୟଙ୍କର ଏହି ପାଞ୍ଚୋଟି ତୁଚ୍ଛ କ୍ଷେତ୍ର ବ୍ୟତୀତ ଅନ୍ୟ କିଛି ଉପଭୋଗ କରି ପାରିବ ନାହିଁ ।

ବିଶ୍ୱଙ୍କର 'ସାତୋଟି ଅଙ୍ଗ ଏବଂ ଉଣେଇଶିଟି ପାଟି' ଅଛି ବୋଲି ଉପନିଷଦ୍ର ଦ୍ରଷ୍ଟା ଏଠାରେ ବର୍ଣ୍ଣନା କରିଛନ୍ତି । ବ୍ୟାବହାରିକ-ବୁଦ୍ଧିସମ୍ପନ୍ନ ଲୋକମାନେ ଉପନିଷଦ୍ରେ ଏପରି କଥା ପଢ଼ି ସ୍ୱାଭାବିକ ଭାବେ ପାଗଳ ହୋଇଯାଆନ୍ତି ଏବଂ ତା ଭିତରେ ଲୁଚି ରହିଥିବା ସୌନ୍ଦର୍ଯ୍ୟ, ତାତ୍ପର୍ଯ୍ୟର ସମ୍ପଦ ଓ ସାର ଜ୍ଞାନ ପାଇ ପାରନ୍ତି ନାହିଁ, ସେମାନେ ଏହି ଶବ୍ଦର ଆକ୍ଷରିକ ଅର୍ଥ ଗ୍ରହଣ କରନ୍ତି ଏବଂ ଏହା କୁତ୍ସିତ ବୋଲି ସ୍ୱାଭାବିକଭାବେ ଧରି ନିଅନ୍ତି । କାରଣ, ଜାଗ୍ରତ ଅବସ୍ଥାରେ ସେମାନଙ୍କୁ ବହୁ ମସ୍ତକ, ବହୁପାଦବିଶିଷ୍ଟ ଡ୍ରାଗନ ବୋଲି କହିବା ନିଶ୍ଚିତ ଭାବେ ଅପମାନଜନକ । ଜାଗ୍ରତପୁରୁଷକୁ ଭୟଙ୍କର ଡ୍ରାଗନ ବୋଲି କହିବାକୁ ସାହାସ କରିଥିବା ସାହିତ୍ୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାପାଇଁ ଆଧୁନିକ ବୈଜ୍ଞାନିକ ଏବଂ ଆଧୁନିକ ଶିକ୍ଷିତ ବ୍ୟକ୍ତିଙ୍କ ପ୍ରତି ଆମେ ନିଶ୍ଚିତ ଭାବରେ ସହାନୁଭୂତି ଦେଖାଇବା । କିନ୍ତୁ ବାସ୍ତବରେ ଆମେ ଉପମା ପଛରେ ଥିବା ଉଦ୍ଦେଶ୍ୟକୁ ବୁଝିବା । ଏ ବିଷୟରେ ଆମେ ଟିକିନିଖି କରି ନିରିଖେଇ ଦେଖିବା ।

ଏଠାରେ ପାଟି ଶବ୍ଦଟି ବ୍ୟାପକ ଅର୍ଥରେ ଗ୍ରହଣ କରିବାର ସାଧନ ଭାବରେ ବ୍ୟବହାର କରାଯାଇଛି । ସାଧାରଣତଃ ଏହି ଅର୍ଥରେ ଆମେ କହୁ ଯେ, ପାଞ୍ଚୋଟି ପାଟି, ଅର୍ଥାତ୍ ପାଞ୍ଚଗୋଟି ଇନ୍ଦ୍ରିୟ ମାଧ୍ୟମରେ ଆମେ ବିଷୟ ଜଗତର ଉପଭୋଗ କରୁ ଏବଂ ତା'ଦ୍ୱାରା ଆମର ଅନୁଭୂତିର ଆନନ୍ଦର ଆହରଣ କରୁ । ମନ୍ତ୍ରରେ ଜାଗ୍ରତ ପୁରୁଷର ଉଣେଇଶଟି ପାଟି ଅଛି ବୋଲି କୁହା ଯାଇଛି । ଅର୍ଥାତ୍ ପାଞ୍ଚୋଟି ଜ୍ଞାନେନ୍ଦ୍ରିୟ, ପାଞ୍ଚୋଟି କର୍ମେନ୍ଦ୍ରିୟ, ପଞ୍ଚ ପ୍ରାଣ, ମନ, ବୁଦ୍ଧି, ଅହଂକାର ଏବଂ ଚିତ୍ତ ।

ମାନସିକ ଏବଂ ବୌଦ୍ଧିକ ବ୍ୟକ୍ତିତ୍ୱର ଉପାଧି ଏବଂ ପ୍ରାଣର ପାଞ୍ଚୋଟି ଦିଗ ଦ୍ୱାରା ପରିଚାଳିତ ହୋଇ କର୍ମେନ୍ଦ୍ରିୟ ଏବଂ ଜ୍ଞାନେନ୍ଦ୍ରିୟ ମାଧ୍ୟମରେ ଆମେ ଜାଗ୍ରତ ଅବସ୍ଥା ଅନୁଭବ କରିବାରେ ସମର୍ଥ ହେଉ । ଏମାନଙ୍କ ଭିତରୁ ଗୋଟିଏ ନ ରହିଲେ ଆମର ଜାଗତିକ ଅନୁଭୂତି ସେହି ପରିମାଣରେ ଅପୂର୍ଣ୍ଣ ରହିବ । ଏହିପରି ଭଲ ଭାବରେ ବୁଝି ପାରିଲେ କୁତ୍ସିତ ମନେ ହେଉଥିବା କଥାଟି ତାତ୍ପର୍ଯ୍ୟପୂର୍ଣ୍ଣ, ଅର୍ଥପୂର୍ଣ୍ଣ, ଓ ଅନୁକରଣୀୟ ହୋଇଯାଏ । ଗୁଡାଏ ପ୍ରୟୋଗାତ୍ମକ ପୁସ୍ତକ ପଠନ ଅପେକ୍ଷା ଜଣେ ଗୁରୁଙ୍କ ପାଖରେ ବସି ଉପନିଷଦ୍ ଅଧ୍ୟୟନରେ ଲାଭ ମିଳି ପାରିବ ।

ମୂଳରୁ ଆମକୁ କୁହାଯାଇଛି ଯେ, ଆତ୍ମା ହେଉଛି ବ୍ରହ୍ମ, ଜୀବ ହେଉଛି ଈଶ୍ୱର, ଜୀବାତ୍ମା ହେଉଛି ପରମାତ୍ମା । ତେଣୁ, ବ୍ୟଷ୍ଟି ହିଁ ସମଷ୍ଟି – ଏହି ତଥ୍ୟରେ ଦୃଢ଼ ରହିଲେ ବେଦାନ୍ତ ପ୍ରତିଷ୍ଠିତ ହୋଇ ପାରିବା ସ୍ୱାଭାବିକ । ଏହା ପ୍ରମାଣ କରିବା ପାଇଁ ଉପନିଷଦ୍‌ରେ ବର୍ଣ୍ଣନା କରାଯାଇଛି ଯେ, ବୈଶ୍ୱାନର ମାଧ୍ୟମରେ ବ୍ୟକ୍ତ ଆତ୍ମା ମଧ୍ୟ 'ସାତଅଙ୍ଗ' ବିଶିଷ୍ଟ।

'ସାତୋଟି ଅଙ୍ଗ' ଏହି ଉକ୍ତି ଛାନ୍ଦୋଗ୍ୟ ଉପନିଷଦ୍‌ରେ ଥିବା ଶାସ୍ତ୍ରୀୟ ବ୍ୟାଖ୍ୟା ସ୍ମରଣ କରାଇ ଦିଏ । ଶାସ୍ତ୍ରୀୟ ପରମ୍ପରା ସହିତ ସୁପରିଚିତଙ୍କ ପାଇଁ ଏହି ଉକ୍ତି ବିରାଟଙ୍କର ଗଠନ ବିଷୟରେ କରାଯାଇଥିବା ବର୍ଣ୍ଣନାର ସ୍ମରଣ କରାଇ ଦେବା ପାଇଁ ଯଥେଷ୍ଟ । ଜୀବ ତାର ପରିଚ୍ଛିନ୍ନ ଜୀବନ ଯାପନ କରୁଥିବାବେଳେ ବିରାଟ ନିଜ ମଧ୍ୟରେ ସମଗ୍ର ବିଶ୍ୱକୁ ଧାରଣା କରି ସମ୍ମିଳିତ କରନ୍ତି । ଏହି ବିରାଟଙ୍କୁ ନିର୍ଦ୍ଦେଶ କରିବା ପାଇଁ ଶାସ୍ତ୍ର ତାଙ୍କ ନିଜ ଭାଷାରେ ଏହିପରି ବ୍ୟାଖ୍ୟା କରିଛନ୍ତି । ସେହି ବୈଶ୍ୱାନରର ଦୀପ୍ତିମାନ ଅଂଶ ହେଲା ତାଙ୍କର ମସ୍ତକ, ସୂର୍ଯ୍ୟ ତାଙ୍କର ଆଖି, ପବନ ତାଙ୍କର ପ୍ରାଣ, ଆକାଶ ଶରୀରର ମଧ୍ୟଭାଗ, ଜଳ ତାଙ୍କର ମୂତ୍ରାଶୟ, ପୃଥିବୀ ତାଙ୍କର ପାଦ, ଏବଂ ବାଣୀ ରୂପୀ ଅଗ୍ନି ତାଙ୍କର ମୁଖ (ପାଟି)।*

ଆର୍ଯ୍ୟ ଜାତି ବସ୍ତୁତଃ ସ୍ୱଭାବରେ କବି ଏବଂ ଆର୍ଯ୍ୟମାନଙ୍କଠାରେ ଏହି ଗୁଣ ବିଶେଷ ଭାବରେ ବିକଶିତ ହୋଇ ପାରିଛି, ବୋଧ ହୁଏ ତାଙ୍କର ଦେଶ ଗାଙ୍ଗେୟ ଉପତ୍ୟକାର ବିଳାସମୟ ସୌନ୍ଦର୍ଯ୍ୟ ଯୋଗୁଁ ପ୍ରତ୍ୟେକଟି ଜିନିଷ ପ୍ରତି ଏପରିକି ନିଜର ଶରୀର, ମନ, ବୁଦ୍ଧି ପ୍ରତି ମଧ୍ୟ ସେମାନେ ନିରାସକ୍ତ ଥାଇ ବି, ନିଜର ଇନ୍ଦ୍ରିୟାତୀତ ଅନୁଭବ ବ୍ୟକ୍ତ କରିବାକୁ ଚେଷ୍ଟା କଲାବେଳେ ତାଙ୍କଠାରେ ଥିବା କାବ୍ୟିକ ଗୁଣ ପ୍ରସ୍ଫୁଟିତ ହୋଇଛି । ତେଣୁ ଶାସ୍ତ୍ରରେ ମଧ୍ୟ ଭାବପ୍ରକାଶ ବଡ଼ କାବିକ୍ୟ ଏବଂ ଆଲଙ୍କାରିକ ।

---

* 'ଛାନ୍ଦୋଗ୍ୟ ଉପନିଷଦ୍' ୫-୧୮-୨ ।

ସଂସ୍କୃତ ଭାଷାରେ ଏହି ଶୈଳୀ ସହଜଲବ୍ଧ ଏବଂ ପ୍ରାଚୀନ କାଳର ଋଷିମାନେ ଏହାର ଉତ୍ତମ ଉପଯୋଗ କରିଥିଲେ, ଏବଂ ତାଙ୍କର ପାଦତଳେ ପହଞ୍ଚୁ-ଥିବା ଶିଷ୍ୟମାନେ ଥିଲେ ସେଇ ଯୁଗର । ତେଣୁ ନିର୍ବିକଳ୍ପଙ୍କୁ କାବିକ୍ୟ ଭାଷାରେ ଆଲୋଚନା କରିବାକୁ ବୋଧହୁଏ ବେଶୀ ପସନ୍ଦ କରୁଥିଲେ । ଆଲୋଚ୍ୟ ଏହି ଅଂଶରେ ମଧ୍ୟ ଦାର୍ଶନିକ ପରିପ୍ରକାଶ ବ୍ୟତୀତ ଯଥେଷ୍ଟ କାବ୍ୟିକ ପ୍ରକାଶ ଦେଖିବାକୁ ମିଳେ, "ସାତୋଟି ଅଙ୍ଗ" ଶବ୍ଦରେ ଏହାକୁ କେବଳ ସଂକ୍ଷିପ୍ତ କରାଯାଇଛି ।

ଏହିପରି ଭାବରେ, ଛାନ୍ଦୋଗ୍ୟ ଉପନିଷଦ୍‌ର ବିସ୍ତୃତ ବର୍ଣ୍ଣନାର ଭିତ୍ତିରେ ମାଣ୍ଡୁକ୍ୟରେ ଗୋଟିଏ ଶବ୍ଦରେ ବୈଶ୍ୱାନର - ବିରାଟଙ୍କର ବର୍ଣ୍ଣନା ଦିଆ ଯାଇଛି । ବୈଶ୍ୱାନରଙ୍କର ବିଶ୍ୱରୂପକୁ ବିରାଟ କୁହାଯାଏ ଏବଂ ଗୀତାରେ ବର୍ଣ୍ଣନା କରାଯାଇଥିବା ଭଗବାନଙ୍କର ବିଶ୍ୱରୂପ ଆମେ ସମସ୍ତେ ଭଲଭାବେ ଜାଣିଛେ । ସମସ୍ତ ସ୍ଥୂଳରୂପକୁ ନେଇ ଗଠିତ ଗୋଟିଏ ସତ୍ତାଙ୍କର ଏହି ବର୍ଣ୍ଣନା ମୁଖ୍ୟପାଠ୍ୟରେ ପୂର୍ବ ମନ୍ତ୍ରରେ ବର୍ଣ୍ଣନା କରାଯାଇ ସାରିଥିବା ଆଧ୍ୟାତ୍ମିକ ସତ୍ୟ -"ଆତ୍ମା ହିଁ ବ୍ରହ୍ମ" ସହିତ ଐକ୍ୟତା ରକ୍ଷା କରିଛି ।

ଯଦି କୋଠରୀ ଭିତରର ସ୍ଥାନ ସମଗ୍ର ଆକାଶ ବ୍ୟତୀତ ଅନ୍ୟ କିଛି ନୁହେଁ, ତେବେ କୋଠରୀର ଯାଗାକୁ ସୀମାହୀନ ଆକାଶ ଭାବରେ ବର୍ଣ୍ଣନା କରାଯାଇ ପାରିବ; ଯେଉଁଥିରେ ସମଗ୍ର ବିଶ୍ୱ ଘୂରି ବୁଲୁଛି, କାରଣ ସମଗ୍ର ବିଶ୍ୱ ଶୂନ୍ୟରେ ହିଁ ବୁଲୁଛି ବୋଲି ଆମେ ଜାଣୁ । ଏହି ଅର୍ଥରେ ଆମକୁ ମୂଳରୁ କୁହାଯାଇଛି ଯେ, ଶୁଦ୍ଧ ବୁଦ୍ଧି ଯେତେ ବିଜ୍ଞାନସମ୍ମତ ଏବଂ ତାର୍କିକ ହେଲେ ବି, ଅଙ୍କ କଷିବାରେ ଯେତେ ଧୂରନ୍ଧର ହେଲେ ବି, ଉପନିଷଦ୍‌ରେ ଆଲୋଚିତ ଆଧ୍ୟାତ୍ମିକ ସତ୍ୟଙ୍କର ତତ୍ତ୍ୱ ଅନୁଭବ କରିବା ପାଇଁ, ତାଙ୍କୁ ବୁଝିବା ପାଇଁ ଓ ସେହି ଅନୁସାରେ ଜୀବନ ଯାପନ କରିବା ପାଇଁ ଏହା ଉପଯୁକ୍ତ ସାଧନ ନୁହେଁ ।

ପରିବର୍ତ୍ତୀ ମନ୍ତ୍ର ସ୍ୱପ୍ନଦ୍ରଷ୍ଟା ସମ୍ବନ୍ଧରେ ଅବଗତ କରାଏ ।

**ସ୍ୱପ୍ନସ୍ଥାନୋଽନ୍ତଃପ୍ରଜ୍ଞଃ ସପ୍ତାଙ୍ଗ**

**ଏକୋନବିଂଶତିମୁଖଃ ପ୍ରବିବିକ୍ତଭୁକ୍**

**ତୈଜସୋ ଦ୍ୱିତୀୟଃ ପାଦଃ ।।୪।।**

ସ୍ୱପ୍ନଃ ସ୍ଥାନଃ = ସ୍ୱପ୍ନାବସ୍ଥା ଯାହାର କ୍ଷେତ୍ର, ସେହି ଲୋକ; ଅନ୍ତଃ ପ୍ରଜ୍ଞଃ = ଯିଏ ଅନ୍ତର ବିଷୟରେ ସଚେତନ, ସପ୍ତ-ଅଙ୍ଗଃ = ସାତୋଟି ଅଙ୍ଗ ବିଶିଷ୍ଟ, ଏକୋନଃ-ବିଂଶତି-ମୁଖଃ = ଉଣେଇଶଟି ପାଟି ଅଛି, ପ୍ରବିବିକ୍ତ-ଭୂକ୍ = ସୂକ୍ଷ୍ମ ବିଷୟରେ ଅନୁଭବ, ତୈଜସଃ = ତୈଜସଃ ଅଟେ, ଦ୍ୱିତୀୟଃ ପାଦଃ = ଦ୍ୱିତୀୟ ପାଦ ।

*ଦ୍ୱିତୀୟ ପାଦ ହେଉଛି ତୈଜସ । ସ୍ୱପ୍ନାବସ୍ଥା ତାର କର୍ମକ୍ଷେତ୍ର । ସେ ଅନ୍ତଃଜଗତର ବସ୍ତୁ ସମ୍ବନ୍ଧରେ ସଚେତନ ତା'ର ସାତୋଟି ଅଙ୍ଗ ଏବଂ ଉଣେଇଶଟି ପାଟି ଅଛି ଏବଂ ସେ ମାନସିକ ଜଗତର ସୂକ୍ଷ୍ମ ବସ୍ତୁ ଉପଭୋଗ କରେ ।।୪।।*

ଶରୀର ସହିତ ତାଦାତ୍ମ୍ୟ କରିଥିବା ଜୀବନ ନିଜର ସ୍ୱରୂପ ସମ୍ବନ୍ଧରେ ନ ଜାଣି ଭୌତିକ ଜଗତକୁ ଦେଖେ ଏବଂ ନିଜର ମିଥ୍ୟା ଉପଲବ୍ଧିରେ ଭ୍ରମିତ ହୋଇ ଜାଗ୍ରତ ଅବସ୍ଥା ଅନୁଭବ କରେ ଏବଂ ଏହି ପ୍ରକାରେ ଏକ ନିର୍ଦ୍ଦିଷ୍ଟ ବ୍ୟକ୍ତିତ୍ୱ ଭାବରେ ବୈଶ୍ୱାନର ନାମରେ ନାମିତ ହୁଏ ।

ବର୍ତ୍ତମାନ, ସେହି ଜୀବନୀ ଶକ୍ତି ବାହ୍ୟ ଜଗତର ଲୀଳାଖେଳରୁ ନିଜକୁ ଅପସାରିତ କରି ସୂକ୍ଷ୍ମ-ଶରୀର ସହିତ ତାଦାତ୍ମ୍ୟ ସ୍ଥାପନ କରି, ସ୍ୱପ୍ନଦ୍ରଷ୍ଟା ବା ତୈଜସ୍ ନାମକ ଏକ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ସୃଷ୍ଟି କରେ । ତୈଜସର ସ୍ୱପ୍ନରେ ରହିଛି ତା'ର ନିଜର ଅନୁଭୂତ ଜଗତ । ଆଲୋଚ୍ୟ ମନ୍ତ୍ର ଆମକୁ ସ୍ୱପ୍ନଦ୍ରଷ୍ଟାର ସ୍ୱରୂପ, ତାର କାର୍ଯ୍ୟକଳାପର କ୍ଷେତ୍ର ଏବଂ ଉପଭୋଗ୍ୟ ବସ୍ତୁର ବିସ୍ତୃତ ବିବରଣୀ ଦେଉଛି ।

ସ୍ୱପ୍ନ ଦେଖୁଥିବା ସମୟରେ ସ୍ୱପ୍ନଦ୍ରଷ୍ଟା ପାଇଁ ସ୍ୱପ୍ନଟି ପୂରାପୂରି ବାସ୍ତବ ହେଲେ ମଧ୍ୟ, ପ୍ରକୃତରେ ଆମେ ଜାଣୁ ଯେ, ସ୍ୱପ୍ନଜଗତ ସ୍ୱପ୍ନ ଦ୍ରଷ୍ଟାର ଏକ ମାନସିକ ସୃଷ୍ଟି ବ୍ୟତୀତ ଅନ୍ୟ କିଛି ନୁହେଁ । ଜାଗ୍ରତ ଅବସ୍ଥାରେ ଭୌତିକ ଜଗତ ଅନୁଭବ କରୁଥିବାବେଳେ ମନ କେତେକ ଅସ୍ପଷ୍ଟ ସ୍ମୃତି ସଂଗ୍ରହ କରେ ଏବଂ ସ୍ୱପ୍ନ ଦେଖିବା ସମୟରେ ସ୍ୱପ୍ନଦ୍ରଷ୍ଟାର ମନର ଏକଅଂଶ ନିଜ ମନର ଅନ୍ୟ ଅଂଶରେ ଏହି ସ୍ମୃତିର ପର୍ଯ୍ୟବେକ୍ଷଣ କରେ । ତେଣୁ, ସ୍ୱପ୍ନଦ୍ରଷ୍ଟା ବା ତୈଜସ ସୂକ୍ଷ୍ମ ପଦାର୍ଥ ଜଗତ ଉପଭୋଗ

କରେ, କାରଣ ସେ କେବଳ ଅନ୍ତଃଜଗତ ବିଷୟରେ ସଚେତନ ଥାଏ । ତେଣୁ ତୈଜସର କର୍ମକ୍ଷେତ୍ର ହେଲା ସ୍ୱପ୍ନ ଜଗତ ।

ସାତୋଟି ଅଙ୍ଗ ଏବଂ ଉଣେଇଶଟି ପାଟି ବିଷୟରେ ପୂର୍ବରୁ ବିଶଦ ଭାବରେ ଆଲୋଚନା କରାଯାଇଛି ।

ବୈଶାନ୍ୱର ଏବଂ ତୈଜସ, ବା ଜାଗ୍ରତ ପୁରୁଷ ଏବଂ ସ୍ୱପ୍ନଦ୍ରଷ୍ଟା ଉଭୟ ହେଉଛନ୍ତି ଆମଠାରେ ଥିବା ଆଧ୍ୟାତ୍ମିକ ସତ୍ତାର ଅଂଶ ବିଶେଷ । ଶୁଦ୍ଧ ଚୈତନ୍ୟ ସ୍ଥୂଳ ଶରୀର ସହିତ ତାଦାତ୍ମ୍ୟ ସ୍ଥାପନ କରି ବୈଶ୍ୱାନର ଅଂଶରେ କାମ କରେ ଏବଂ ସେହି ସତ୍ୟ ବା ଚୈତନ୍ୟ ତତ୍ତ୍ୱ ସୂକ୍ଷ୍ମ ଶରୀର ସହିତ ତାଦାତ୍ମ୍ୟ କରି ସ୍ୱପ୍ନଦ୍ରଷ୍ଟା ହୁଏ ଏବଂ ତୈଜସ ଭାବରେ ସ୍ୱପ୍ନ ଜଗତର ଅନୁଭବ କରେ ।

ଏହିପରି ଭାବରେ ଦୁଇ ପାଦ ବିଷୟରେ ଆଲୋଚନା କରି, ପରବର୍ତ୍ତୀ ମନ୍ତ୍ରର ଉପଦେଶ ତୃତୀୟ ପାଦ- ସୁଷୁପ୍ତିର ବ୍ୟାଖ୍ୟା କରିଛନ୍ତି ।

**ଯତ୍ର ସୁପ୍ତୋ ନ କଞ୍ଚନ କାମଂ କାମୟତେ**

**ନ କଞ୍ଚନ ସ୍ୱପ୍ନଂ ପଶ୍ୟତି ତତ୍ ସୁଷୁପ୍ତମ୍।**

**ସୁଷୁପ୍ତସ୍ଥାନ ଏକୀଭୂତଃ ପ୍ରଜ୍ଞାନଘନ**

**ଏବାନନ୍ଦମୟୋ ହ୍ୟାନନ୍ଦଭୁକ୍ ଚେତୋମୁଖଃ**

**ପ୍ରାଜ୍ଞ ତୃତୀୟଃ ପାଦଃ ॥୫॥**

ଯତ୍ର = ଯେଉଁଠାରେ, ସୁପ୍ତଃ = ଆତ୍ମ-ଅଜ୍ଞ, ନ = ନୁହେଁ, କଞ୍ଚନ କାମମ୍ = ଯେକୌଣସି ବାହ୍ୟ ପଦାର୍ଥ, କାମୟତେ = କାମନା କରେ, ନ = କରେ ନାହିଁ, କଞ୍ଚନ ସ୍ୱପ୍ନମ୍ = ଯେକୌଣସି ସ୍ୱପ୍ନ, ପଶ୍ୟତି = ଦେଖେ, ତତ୍ = ତାହା, ସୁଷୁପ୍ତମ୍ = ସୁଷୁପ୍ତି ଅବସ୍ଥା, ସୁଷୁପ୍ତ-ସ୍ଥାନଃ = ସୁଷୁପ୍ତି ଅବସ୍ଥା ଯାହାର କ୍ଷେତ୍ର, ଏକୀଭୂତଃ = ଏକୀଭୂତ, ପ୍ରଜ୍ଞାନ-ଘନଃ ଏବ = କେବଳ ଚୈତନ୍ୟ-ଘନ, ଆନନ୍ଦମୟଃ = ଆନନ୍ଦମୟ, ହି ଆନନ୍ଦଭୁକ୍ = ପ୍ରକୃତରେ ଆନନ୍ଦର ଉପଭୋଗକାରୀ, ଚେତଃ ମୁଖଃ = (ଜାଗ୍ରତ ଏବଂ ସ୍ୱପ୍ନର) ଅନୁଭୂତିକୁ ଦ୍ୱାର, ପ୍ରାଜ୍ଞଃ = ପ୍ରାଜ୍ଞ ଅଟେ, ତୃତୀୟଃ ପାଦଃ = ତୃତୀୟ ପାଦ ।

*ଯେଉଁ ଅବସ୍ଥାରେ ସୁଷୁପ୍ତ ବ୍ୟକ୍ତି କୌଣସି କାମ କରେ ନାହିଁ, କୌଣସି ସ୍ୱପ୍ନ ମଧ୍ୟ ଦେଖେ ନାହିଁ, ତାହାହିଁ ହେଉଛି ସୁଷୁପ୍ତି ଅବସ୍ଥା । ତୃତୀୟ ପାଦ ହେଉଛି ପ୍ରାଜ୍ଞ, ତାର ଜଗତ ସୁଷୁପ୍ତି । ଏହିଠାରେ ସମସ୍ତ ଅନୁଭୂତି ଏକୀଭୂତ ହୁଏ, ଏ ନିଶ୍ଚିତ ଭାବରେ ହେଉଛି ଚୈତନ୍ୟ ଘନ, ଏ ଆନନ୍ଦମୟ, ଏ ପ୍ରକୃତରେ ଆନନ୍ଦର ଉପଭୋଗ କରେ ଏବଂ ଚୈତନ୍ୟର ଅନ୍ୟ ଦୁଇଟି ସ୍ତର- ସ୍ୱପ୍ନ ଓ ଜାଗ୍ରତ ଅବସ୍ଥାକୁ ଚୈତନ୍ୟର ପ୍ରକ୍ଷେପଣ ପାଇଁ ଏହା ଦ୍ୱାର ସ୍ୱରୂପ କାର୍ଯ୍ୟ କରେ। ॥୫॥*

ଆଂଶିକ ଭାବରେ ହେଲେ ମଧ୍ୟ 'ସୁଷୁପ୍ତ ଅବସ୍ଥା' ପାଶ୍ଚାତ୍ୟ ଦେଶରେ ପରିଚିତ। ମନର ଏହି ଅବସ୍ଥା ସମ୍ବନ୍ଧରେ ଆଲୋଚନାର ଚେଷ୍ଟା କରିବାକୁ ପାଶ୍ଚାତ୍ୟ ମନୋବିଜ୍ଞାନ ପଛଘୁଞ୍ଚା ଦିଏ । ସୁପ୍ତ ଅବସ୍ଥାକୁ ବର୍ଣ୍ଣନା କରିବାର ଅସୁବିଧା ହେଲା, ଶୋଇଥିବା ସମୟରେ ଆମ ଉପଲବ୍ଧିର ସାଧନ କାମ କରି ନ ଥାଏ – ଆମେ କେବଳ ଏତିକି ହିଁ ଜାଣୁ ।

ଶରୀର-ଦୁର୍ଗର ପ୍ରାଚୀରରେ ଥିବା ପାଞ୍ଚୋଟି ଛିଦ୍ର ମାଧ୍ୟମରେ ଆମେ ଯାହା ଅବଲୋକନ କରିଥାଉ, ଜଗତ ସମ୍ବନ୍ଧରେ ଆମ ଜ୍ଞାନ ହେଲା ସେହିଥିରୁ ସଂଗ୍ରହ କରିଥିବା ଉପଲବ୍ଧିର ସାର। ଭୌତିକ ଜଗତ ସମ୍ବନ୍ଧରେ ଆମେ ଯାହା ସବୁ ଜାଣୁ, ତାହା

ହେଲା, ଏହି ପାଞ୍ଚୋଟି ଜ୍ଞାନ-ଇନ୍ଦ୍ରିୟ ମାଧ୍ୟମରେ ପାଇଥିବା ବିବରଣୀ । ସୁପ୍ତ ଅବସ୍ଥାରେ ମନ ଏବଂ ବୁଦ୍ଧି ଅପସରି ଯାଇଥାନ୍ତି । ତେଣୁ ଏହି ଅବସ୍ଥାରେ ବାସ କରୁଥିବାବେଳେ ଏହିସବୁ ଛିଦ୍ର ମଧ୍ୟ ରୁଦ୍ଧ ହୋଇ ଯାଇଥାଏ ।

ତେଣୁ ସୁପ୍ତ ଅବସ୍ଥାରେ ଆମେ କେବଳ ଗୋଟିଏ ପରିପୂର୍ଣ୍ଣ ଅଜ୍ଞତା ବା କିଛି ନ ଥିବାର ଅନୁଭୂତି ଲାଭ କରିଥାଉ । ସୁଷୁପ୍ତି ହେଉଛି ଆମ ଅନୁଭୂତିର ଏପରି ଏକ ଅବସ୍ଥା, ଯେଉଁଠାରେ ରୂପ ନ ଥାଏ, ଶବ୍ଦ ନ ଥାଏ, ସ୍ୱାଦ ନ ଥାଏ, ଗନ୍ଧ ନ ଥାଏ, ସ୍ୱର୍ଗ ନ ଥାଏ । ସଂକ୍ଷେପରେ, ସୁଷୁପ୍ତି ଅବସ୍ଥାରେ ଆମେ ଯାହା କିଛି ଜାଣୁ । ତାହା ହେଉଛି, ମୋର କିଛି ଜ୍ଞାନ ନାହିଁ ।

ତେଣୁ, ଜ୍ଞାନେନ୍ଦ୍ରିୟ ମାନଙ୍କ କ୍ଷମତା ପରିସର ବାହାର ଅନୁଭୂତିର ପରିପ୍ରକାଶ କରିବା ପାଇଁ ଗୋଟିଏ ନୂଆ ପଦ୍ଧତିର ଆବିଷ୍କାର ହେବା ପର୍ଯ୍ୟନ୍ତ, ଆଧୁନିକ ଯୁଗର ଭୌତିକ ବିଜ୍ଞାନୀମାନଙ୍କୁ ଅପେକ୍ଷା କରିବାକୁ ପଡ଼ିବ ।

ଏହି ମନ୍ତ୍ରରେ ସୁଷୁପ୍ତିକୁ ବ୍ୟାଖ୍ୟା କରିବାର ସର୍ବୋତ୍ତମ ଉପାୟ ରହିଛି । ଏଠାରେ ମଧ୍ୟ ଏହା କେବଳ ନିଷେଧର ଭାଷାରେ ପ୍ରକାଶ କରାଯାଇଥିବା ଏକ ବ୍ୟାଖ୍ୟା । ମନ୍ତ୍ର କହେ ଯେ, ଏହି ଅବସ୍ଥାରେ ସୁଷୁପ୍ତ ପାଇଁ ବସ୍ତୁର ଆବଶ୍ୟକତା ନ ଥାଏ ଏବଂ ସେ କୌଣସି ସ୍ୱପ୍ନ ମଧ୍ୟ ଦେଖେ ନାହିଁ । ଆମର ଜାଗ୍ରତ ନ ଥିବା ବେଳର ଅଥବା ସ୍ୱପ୍ନ ଦେଖୁ ନ ଥିବା ବେଳର ଅନୁଭୂତିକୁ ସୁଷୁପ୍ତ ଅନୁଭୂତି ବୋଲି ଧରାଯାଏ ।

ଚୈତନ୍ୟର ପୂର୍ବ ଦୁଇ ଅବସ୍ଥା, ଜାଗ୍ରତ ଏବଂ ସ୍ୱପ୍ନର ବିପରୀତରେ, ସୁଷୁପ୍ତି ଅବସ୍ଥାରେ ମଣିଷ ରୂପେ ଯାହା ସବୁ ଚେତନା ଲାଭ କରାଯାଇଥାଏ, ସେସବୁକୁ ଘନୀଭୂତ କରି ସଂରକ୍ଷଣ କରାଯାଏ। ଜାଗ୍ରତ ଅବସ୍ଥାରେ ସେହି ଏକା ଚୈତନ୍ୟ, ମନ ଏବଂ ଇନ୍ଦ୍ରିୟ ମାଧ୍ୟମରେ ଇନ୍ଦ୍ରିୟ ଭୋଗ୍ୟ ବସ୍ତୁର ବାହ୍ୟ ଜଗତରେ ବିକ୍ଷିପ୍ତ ହୋଇ ବସ୍ତୁର ଜ୍ଞାନ ଲାଭ କରିଥାଏ । ସ୍ୱପ୍ନାବସ୍ଥାରେ ମଧ୍ୟ ଆମଠାରେ ଥିବା ଚୈତନ୍ୟ ମାନସିକ ଜଗତର ଭାବନାକୁ ପ୍ରକାଶିତ କରେ । ଏହାକୁ ଆମେ ସ୍ୱପ୍ନ ବୋଲି କହୁ ।

କିନ୍ତୁ, ଏହି ଉଭୟ ଜାଗ୍ରତ ଏବଂ ସ୍ୱପ୍ନ ଅବସ୍ଥାର ଅତୀତ ହେଲେ ଆମେ ସୁଷୁପ୍ତ ଅବସ୍ଥାରେ ପହଞ୍ଚିବା । ସେହି ଅବସ୍ଥାରେ, ଚୈତନ୍ୟ ବାହ୍ୟ ଜଗତର ସ୍ଥୂଳ ପଦାର୍ଥ, କିମ୍ବା ମନର ସୂକ୍ଷ୍ମ ପଦାର୍ଥକୁ ପ୍ରକାଶିତ କରେ ନାହିଁ । ସୁଷୁପ୍ତି ଅବସ୍ଥାରେ ଆମର ସମଗ୍ର ଚେତନା ଘନୀଭୂତ ହୋଇ ପ୍ରଜ୍ଞାନ-ଘନ ହୋଇଯାଏ ।

ଏହି ପ୍ରଜ୍ଞାନ-ଘନ ଅବସ୍ଥାକୁ ଆନନ୍ଦମୟ ବୋଲି କୁହାଯାଏ, କାରଣ ଜାଗ୍ରତ ଏବଂ ସ୍ୱପ୍ନାବସ୍ଥାରେ ଯେଉଁ ସବୁ କାରଣରୁ ମାନସିକ ବିକ୍ଷେପ ସୃଷ୍ଟି ହୁଏ, ଏଠାରେ ସେସବୁର ଉପସ୍ଥିତି ନ ଥାଏ । ସୁଷୁପ୍ତି ଅବସ୍ଥାରେ ଆମେ ପ୍ରକୃତରେ ଆନନ୍ଦ ବିଷୟରେ କେବଳ ସଚେତନ ହେଉ ନାହେଁ ବରଂ ନିଦରୁ ଉଠିବା ପରେ ଜାଗ୍ରତ ଅବସ୍ଥାର ଅନୁଭୂତି ସହିତ ସୁଷୁପ୍ତି ଅବସ୍ଥାର ଅନୁଭୂତିର ତୁଳନା କରୁ ଏବଂ ସୁଷୁପ୍ତି ଅବସ୍ଥାରେ ପୂର୍ଣ୍ଣାଙ୍ଗ ଆନନ୍ଦ ଅଛି ବୋଲି କହୁ ।

ତେଣୁ, ସୁଷୁପ୍ତି ଅବସ୍ଥାରେ ସେହି ଚେତନାର ବର୍ଣ୍ଣନା କରି ମହାନ ଉପନିଷଦ୍ ଆନନ୍ଦ ଘନ ଭାବରେ ଏହାର ସ୍ୱଭାବ ନିର୍ଦ୍ଧାରଣ କରିଛନ୍ତି । ସକାରାତ୍ମକ ଆନନ୍ଦର ଅନୁଭୂତି ଉପରେ ଜୋର ଦେବା ପାଇଁ ଯେତେ ନୁହେଁ, ସେଠାରେ ବିକ୍ଷେପର କାରଣ ନ ଥିବାର ସୂଚାଇବା ପାଇଁ ଏପରି କରିଛନ୍ତି । ବହୁବିଧତା ଏବଂ ଜଗତର ବିଷୟ ବାସନା ଦ୍ୱାରା ମାନସିକ ବିକ୍ଷେପର କାରଣରୁ ଅସ୍ଥିରତା ସୃଷ୍ଟି ହୋଇଥାଏ । ଇନ୍ଦ୍ରିୟଭୋଗ୍ୟ ବସ୍ତୁଗୁଡିକୁ ଆମେ ଆନନ୍ଦ ସହିତ ତାଦାତ୍ମ୍ୟ କରି, ସେସବୁ ପାଇବା ପାଇଁ, ରଖିବା ପାଇଁ ଏବଂ ଉପଭୋଗ କରିବା ପାଇଁ ଚାହୁଁ, ଏବଂ ଏହି କାରଣରୁ ସେସବୁ ନ ପାଇଲେ ମାନସିକ ବିକ୍ଷେପ ସୃଷ୍ଟି ହୁଏ ।

ଭୌତିକ ଜଗତର ଇନ୍ଦ୍ରିୟଭୋଗ୍ୟ ବସ୍ତୁ ଆମକୁ ଆନନ୍ଦ ବା ଦୁଃଖ ଦେଇ ପାରିବ ନାହିଁ । ବାହ୍ୟ ଜଗତ ସହିତ ଆମର ସଂସ୍ପର୍ଶ ଏବଂ ଭ୍ରମାତ୍ମକ ସଂପର୍କ ଯୋଗୁଁ ହିଁ ଏସବୁ ଆମକୁ କିଛି ଦୁଃଖ ବା ସୁଖ ଦେଇ ପାରିବା ପରି ସାମର୍ଥ୍ୟ ପାଇ ପାରି ଥାଆନ୍ତି । ସୁଷୁପ୍ତି ଅବସ୍ଥାରେ ମନ କାମ କରୁ ନଥିବାରୁ ଏବଂ ବୁଦ୍ଧି ଅନ୍ତର୍ଦୃଷ୍ଟିହୀନ ହୋଇଥିବାରୁ ଆମେ ବାହ୍ୟ ଭୌତିକ ଜଗତ ସମ୍ବନ୍ଧରେ ସଚେତନ ହୋଇ ନ ଥାଉ । ସେମାନଙ୍କ ସମ୍ବନ୍ଧରେ ସଚେତନ ନ ହେଲେ ସେମାନେ ଆମକୁ ବିଚଳିତ କରି ପାରିବେ ନାହିଁ ବା ମୋହିତ କରି ପାରିବେ ନାହିଁ । ତେଣୁ କୌଣସି ମାନସିକ ବିକ୍ଷେପ ସୃଷ୍ଟି କରି ପାରିବେ ନାହିଁ ।

ସେଥିପାଇଁ ଶ୍ରୁତି ଏହି କୋଷକୁ ଆନନ୍ଦମୟ ବୋଲି ବର୍ଣ୍ଣନା କରିଛନ୍ତି । ଏହି ସୁଷୁପ୍ତି ଅବସ୍ଥା ସହିତ ତାଦାତ୍ମ୍ୟ କରିଥିବା ପରମାତ୍ମାଙ୍କୁ ପ୍ରାଜ୍ଞ କୁହାଯାଏ । ଏହି ପ୍ରାଜ୍ଞ, ଜାଗ୍ରତ ପୁରୁଷ ପରି ବାହ୍ୟ ଇନ୍ଦ୍ରିୟ ବିଷୟରେ ବା ସ୍ୱପ୍ନଦ୍ରଷ୍ଟା ପରି ଅନ୍ତଃସ୍ଥ ସୂକ୍ଷ୍ମ ବିଷୟରେ ଆନନ୍ଦର ଅନ୍ୱେଷଣ କରନ୍ତି ନାହିଁ । ସୁପ୍ତ ଅବସ୍ଥାରେ ସେ ପରିପୂର୍ଣ୍ଣ ଆନନ୍ଦ ଅନୁଭବ କରନ୍ତି, ଆନନ୍ଦର କାରଣ ଦୁଃଖର ଅଭାବ ।

ପୁନଶ୍ଚ, ଶ୍ରୁତି 'ସୁଷୁପ୍ତ ପ୍ରାଜ୍ଞ'ର ସ୍ୱରୂପ ବ୍ୟାଖ୍ୟା କରିବାର ଚେଷ୍ଟା କରୁଛନ୍ତି – ଏହା 'ଜ୍ଞାନର ଦ୍ୱାର' ବୋଲି କହୁଛନ୍ତି । ଏଠାରେ ଶ୍ରେଷ୍ଠ କାବ୍ୟ ଓ ମହାନ୍ ଦର୍ଶନ ଛନ୍ଦୋବଦ୍ଧ ହୋଇଥିବାର ଆମେ ଦେଖିବାକୁ ପାଉ ଏବଂ ଏହା ହିଁ ହେଉଛି ଉପନିଷଦ୍‌ର ବିଶେଷ ସୌନ୍ଦର୍ଯ୍ୟ। ଋଷିମାନେ କେବଳ ଦାର୍ଶନିକ ନଥିଲେ, ନିଜର କାମରେ ସେମାନେ ଥିଲେ ଅନୁପ୍ରାଣିତ କବି । ସୁଷୁପ୍ତି ଅବସ୍ଥାକୁ ଜ୍ଞାନର ଦ୍ୱାର, 'ଚିତ୍' ଭାବରେ ଅଲଗା କରି ଗୁରୁ ବ୍ୟାଖ୍ୟା କରିବାକୁ ଚାହିଁଛନ୍ତି ଯେ, ଏହି ସୁଷୁପ୍ତି ଅବସ୍ଥାରେ ବସ୍ତୁ ସମ୍ବନ୍ଧରେ ସଚେତନ ହେବାର ସମସ୍ତ ସାମର୍ଥ୍ୟ ଘନୀଭୂତ ହୋଇ ଆନନ୍ଦଘନ ହୋଇଯାଏ ।

ସ୍ୱପ୍ନ ଅବସ୍ଥାକୁ ପ୍ରକାଶିତ କରିବା ପାଇଁ ଏହା ସୁଷୁପ୍ତି ଅବସ୍ଥାରୁ ପ୍ରକ୍ଷେପିତ ହୋଇଥାଏ ଏବଂ ପୁନଶ୍ଚ ପ୍ରକ୍ଷେପଣ ବୃଦ୍ଧି ପାଇ ବାହ୍ୟ ଜଗତରେ ପହଞ୍ଚିଲେ ବାହାରର ବସ୍ତୁ ଜଗତକୁ ଜାଗ୍ରତ ଅବସ୍ଥାରେ ଜାଣିବା ପାଇଁ ସେହି ଚୈତନ୍ୟ ସମ୍ଭବ କରାଇଥାଆନ୍ତି। ଶରୀର ଓ ବାହ୍ୟ ବସ୍ତୁ ଜଗତରୁ ଜ୍ଞାନଧ୍ୟାନ ବା ସଚେତନତା ଅପସାରଣ କରିନେଲେ, ମନ ଏବଂ ବୁଦ୍ଧିର ଜଗତ ପ୍ରକାଶିତ ହୋଇଥାଏ, ଏହାକୁ ସ୍ୱପ୍ନାବସ୍ଥା କୁହାଯାଏ ।

ପୁନଶ୍ଚ, ସ୍ୱପ୍ନାବସ୍ଥାରୁ ଆମର ଧ୍ୟାନ ଅପସାରଣ କଲେ, ଆହୁରି ଗଭୀରତାରେ ଚେତନା ଘନୀଭୂତ ହୋଇଥିବାର ଅବସ୍ଥା ବା ଜାଗ୍ରତହୀନ ସ୍ୱପ୍ନହୀନ ଅବସ୍ଥାକୁ ସୁଷୁପ୍ତି ଅବସ୍ଥା କୁହାଯାଏ। ସ୍ୱପ୍ନର କ୍ଷେତ୍ର ବା ଜାଗ୍ରତ ଅବସ୍ଥାର କ୍ଷେତ୍ର ପ୍ରକାଶିତ କରିବା ପାଇଁ ନିଦ୍ରା ମାଧ୍ୟମରେ ଚୈତନ୍ୟ ପ୍ରକ୍ଷେପିତ ହେଉଥିବାରୁ ନିଦ୍ରାକୁ ଏକ ଦ୍ୱାର ଭାବରେ ବିଚାର କରିବା ବାସ୍ତବରେ ମହନୀୟ କାବ୍ୟର ଗୋଟିଏ ଉଦାହରଣ । ସୂକ୍ଷ୍ମତମ ଦର୍ଶନର ଆତ୍ମନିଷ୍ଠ ବିଶ୍ଳେଷଣ ପାଇଁ ଏହାକୁ ବ୍ୟବହାର କରାଯାଇପାରେ ।

ଆତ୍ମା ଏହି ଅନୁଭୂତି ସହିତ ତାଦାତ୍ମ୍ୟ ସ୍ଥାପନ କଲେ ତାଙ୍କୁ ସେହି ସମୟରେ ପ୍ରାଜ୍ଞ କୁହାଯାଏ ଏବଂ ଏହି 'ପ୍ରାଜ୍ଞ' ହେଲେ ଆତ୍ମାଙ୍କର ତୃତୀୟ ପାଦ।

**ଏଷ ସର୍ବେଶ୍ୱର ଏଷ ସର୍ବଜ୍ଞ ଏଷୋଽନ୍ତର୍ଯ୍ୟାମ୍ୟେଷ**

**ଯୋନିଃ ସର୍ବସ୍ୟ ପ୍ରଭବାପ୍ୟୟୌ ହି ଭୂତାନାମ୍ ॥୬॥**

ଏଷଃ = ଏହି ଗୋଟିକ, ସର୍ବେଶ୍ୱରଃ = ସମସ୍ତଙ୍କର ଈଶ୍ୱର, ଏଷଃ ସର୍ବଜ୍ଞଃ = ଏହା ସର୍ବଜ୍ଞ, ଏଷଃ ଅନ୍ତର୍ଯ୍ୟାମୀ = ଏହା ଅନ୍ତର୍ଯ୍ୟାମୀ, ଏଷଃ ଯୋନିଃ = ଏହା ଉତ୍ସ, ସର୍ବସ୍ୟ = ସମସ୍ତଙ୍କର, ପ୍ରଭବ-ଅପ୍ୟୟୌ = ସୃଷ୍ଟି ଏବଂ ବିଲୟ, ହି = ନିଶ୍ଚିତ ଭାବରେ, ଭୂତାନାମ୍ = ସବୁ ପ୍ରାଣୀଙ୍କର ।

*ଏହା ସମସ୍ତଙ୍କର ଈଶ୍ୱର, ଏହା ସର୍ବଜ୍ଞ, ଏହା ଅନ୍ତର୍ଯ୍ୟାମୀ, ଏହା ସମସ୍ତଙ୍କର ଉତ୍ସ, ଏବଂ ଏହାଙ୍କ ଠାରୁ ସମସ୍ତ ବସ୍ତୁର ସୃଷ୍ଟି ହୋଇଛି ଏବଂ ପରିଶେଷରେ ଏହାଙ୍କଠାରେ ହିଁ ସେମାନେ ବିଲୟ ଲାଭ କରନ୍ତି ॥୬॥*

ସୁଷୁପ୍ତି ଅବସ୍ଥାର ଚୈତନ୍ୟ ସମ୍ବନ୍ଧରେ ବ୍ୟାଖ୍ୟା ଚାଲୁ ରଖି ଉପନିଷଦ୍‌ର ଋଷି ଆମକୁ ଆଉ ଗୋଟିଏ ଅଧିକ ମନ୍ତ୍ର ଦେଇଛନ୍ତି । ଗୁରୁ ହୁଏତ ବୁଝି ପାରିଛନ୍ତି ଯେ, ଅହଂକାରରୁ ଭଲଭାବେ ବିଯୁକ୍ତ ହୋଇ ସୁଷୁପ୍ତି ଅବସ୍ଥାର ପରିସ୍ଥିତି ବିଷୟରେ ସଚେତନ ହୋଇ ପାରିବା ଜଣେ ସାଧାରଣ ଲୋକ ପାଇଁ ବଡ଼୍ କଷ୍ଟସାଧ୍ୟ ।

ଜାଗ୍ରତ ଅବସ୍ଥାର ବ୍ୟକ୍ତିତ୍ୱ ବିଷୟରେ ବୁଝି ପାରିବା ପ୍ରକୃତରେ ବଡ଼ ସହଜ । ତା ଭିତରେ ଥିବା ସ୍ୱପ୍ନଦ୍ରଷ୍ଟାକୁ ବୁଝିପାରିବା ଜଣେ ସାଧାରଣ ଲୋକ ପାଇଁ କଷ୍ଟକର; ତଥାପି, ସଚେତନ ଭାବରେ ଟିକିଏ ଚେଷ୍ଟା କଲେ ଏହି ବ୍ୟକ୍ତିତ୍ୱକୁ ବୁଝି ପାରିବା ସମ୍ଭବପର । କିନ୍ତୁ ତା'ଠାରେ ଥିବା 'ସୁଷୁପ୍ତ', ବା ସୁପ୍ତ ସମୟର ଜୀବକୁ ବୁଝିପାରିବାର ଜ୍ଞାନ ହେବା ସାଧାରଣ ଲୋକ ପାଇଁ ପ୍ରକୃତରେ ବଡ଼ କଷ୍ଟକର । କାରଣ, ଇନ୍ଦ୍ରିୟମାନଙ୍କ ମାଧ୍ୟମରେ ଗୃହୀତ ତଥ୍ୟର ଉତ୍ପାଦ ହେଉଛି ଏହି ଜ୍ଞାନ ଏବଂ ସୁପ୍ତାବସ୍ଥାରେ ଇନ୍ଦ୍ରିୟମାନେ ନିଷ୍କ୍ରିୟ ଓ ବିଲୀନ ହୋଇଯାଆନ୍ତି ତେଣୁ ଏହି ଜ୍ଞାନ ହୁଏ ନାହିଁ ।

ସୁଷୁପ୍ତି ଅବସ୍ଥାରେ ଜ୍ଞାନେନ୍ଦ୍ରିୟ କିଛି କର୍ମ କରନ୍ତି ନାହିଁ, ଜ୍ଞାନ ମଧ୍ୟ କର୍ମ କରେ ନାହିଁ। ଅନୁଭୂତି ପାଇଁ ଆବଶ୍ୟକ ହେଉଥିବା ଆମର ଜ୍ଞାତ ଇନ୍ଦ୍ରିୟ ମିଳୁ ନଥିବାର ଏପରି ମୁହୂର୍ତ୍ତରେ ଆମେ ଏକ ବିଚିତ୍ର ଜଗତରେ ଥିବାପରି ମନେ ହୁଏ । ସେହି ଜଗତ ଅଜ୍ଞାତ ଏବଂ ଅଜ୍ଞାତବ୍ୟ। ତେଣୁ, ଶିଷ୍ୟ ପ୍ରତି ଅନୁକମ୍ପାବଶତଃ ପ୍ରାଜ୍ଞର ବର୍ଣ୍ଣନା କରିବା ପାଇଁ ଉପନିଷଦ୍‌ର ଋଷି ଆଉ ଗୋଟିଏ ମନ୍ତ୍ର ଦେଇଛନ୍ତି ।

ପୂର୍ବରୁ ଆମେ ଦେଖିଛେ ଯେ, ସୁଷୁପ୍ତି ଅବସ୍ଥାରେ ସଚେତନତା ହେଉଛି ସଘନ ଓ ଶୁଦ୍ଧ-ଚୈତନ୍ୟ, "ମୁଁ ଜାଣେ ନାହିଁ" - କେବଳ ଏହି ଏକ ମାତ୍ର ଧାରଣା ବ୍ୟତୀତ ନିର୍ଦ୍ଦିଷ୍ଟ ଭାବରେ ଏହା କିଛି ପ୍ରକାଶିତ କରେ ନାହିଁ । ଏହି ଅବସ୍ଥାକୁ ବେଦାନ୍ତରେ "ଅବିଦ୍ୟା" ଭାବରେ ବର୍ଣ୍ଣନା କରା ଯାଇଛି । ତେଣୁ, ବେଦାନ୍ତୀମାନେ ତାଙ୍କ ଭାଷାରେ କହନ୍ତି ଯେ, ସୁଷୁପ୍ତି ଅବସ୍ଥାରେ ଆତ୍ମା ଅବିଦ୍ୟା ବା କାରଣ ଶରୀର ସହିତ ତାଦାତ୍ମ୍ୟ ସ୍ଥାପନ କରନ୍ତି ।

ଏହି ସୁଷୁପ୍ତି ଅବସ୍ଥାରେ ଆମ ଭିତରେ ଥିବା ଚୈତନ୍ୟ ଏକୀଭୂତ ହୋଇ ଅବିରତ ନିଷେଧ ଅବସ୍ଥା ବ୍ୟତୀତ ନିର୍ଦ୍ଦିଷ୍ଟ ଭାବରେ ଅନ୍ୟ କିଛିକୁ ପ୍ରକାଶ କରେ ନାହିଁ । (ଏହି ଅବସ୍ଥା ଋଷିଙ୍କ ଦ୍ୱାରା ସର୍ବେଶ୍ୱର ଭାବରେ ବର୍ଣ୍ଣିତ) ବାସ୍ତବରେ ଏହା ସର୍ବେଶ୍ୱର । କାରଣ ଏହି ଚୈତନ୍ୟ ନ ଥିଲେ ଆମେ ଯେପରି ଜୀବନ୍ତ, ସଚେତନ ପ୍ରାଣୀ ହୋଇପାରିଛୁ, ସେପରି ହୋଇପାରି ନ ଥାନ୍ତେ ।

ସେହିପରି, ଚୈତନ୍ୟଙ୍କୁ ସର୍ବଜ୍ଞ ଭାବରେ ବର୍ଣ୍ଣନା କରାଯାଇଛି, କାରଣ ଏହି ପ୍ରକାଶତତ୍ତ୍ୱ, ଜୀବନର ଏହି ଦିବ୍ୟ ଜ୍ୟୋତି, ଏହି ସ୍ଫୁଲିଙ୍ଗ, ଏହି ଶୁଦ୍ଧ ଆଲୋକ ଆମ ଭିତରେ ନିରନ୍ତର ସ୍ପନ୍ଦିତ ନ ହେଉଥିଲେ ଜାଗ୍ରତ ଅବସ୍ଥାର ଜଗତ ବା ସ୍ୱପ୍ନାବସ୍ଥାର ଜଗତ, ଏପରିକି ସୁଷୁପ୍ତି ଅବସ୍ଥା ଆମର ହୋଇ ପାରନ୍ତା ନାହିଁ । ସେ 'ଅନ୍ତର୍ଯ୍ୟାମୀ' - ଏହି ଉକ୍ତିଟି ଦ୍ୱାରା ଏହା ସ୍ପଷ୍ଟ ପ୍ରତିଭାତ ।

ଆମ ଭିତରେ ଥିବା ଚୈତନ୍ୟ ନିଶ୍ଚିତ ଭାବରେ ହେଉଛି ସମସ୍ତ ବସ୍ତୁର ଉତ୍ସ କାରଣ ଚୈତନ୍ୟ ନ ଥିଲେ ସୂର୍ଯ୍ୟ, ଚନ୍ଦ୍ର ବା ତାରା, କିମ୍ବା ସମଗ୍ର ବିଷୟ ଜଗତ ଅସ୍ତିତ୍ୱ ହୀନ ହୋଇଥାଆନ୍ତା । ସେମାନଙ୍କର ସମ୍ବନ୍ଧରେ ସଚେତନ ହୋଇପାରିବାର ପରିପ୍ରେକ୍ଷୀରେ ହିଁ ସେମାନେ ଥିବା ପରି ଦେଖାଯାଏ । "ମଣିଷର ହଳେ ଶିଙ୍ଗ ଅଛି, କିନ୍ତୁ ସେ ବିଷୟରେ ଆମେ ଅବଗତ ନୋହୁଁ" ଏହି କଥା କହିବା ଓ "ମଣିଷର ଶିଙ୍ଗ ନାହିଁ, କିମ୍ବା ମଣିଷ ଶିଙ୍ଗର ସ୍ଥିତି ନାହିଁ" କହିବା ସହିତ ସମାନ । ଆମ ଠାରେ ଚୈତନ୍ୟ ନ ରହିଲେ, ଆମମାନଙ୍କ ଭିତରୁ କାହାର ହେଲେ ଶିଙ୍ଗ ହଳେ ନ ଥିବା ପରି ସମଗ୍ର ବିଷୟ ଜଗତ ମଧ୍ୟ ସତ୍ତାହୀନ ହୋଇଯିବ ।

ମନ, ବୁଦ୍ଧି ଏବଂ ଇନ୍ଦ୍ରିୟମାନଙ୍କ ମାଧ୍ୟମରେ ଏହି ଚୈତନ୍ୟ-ତତ୍ତ୍ୱ ପ୍ରକ୍ଷେପିତ ହେଲେ ଭୌତିକ ଜଗତ ଏବଂ ଭାବନା ଓ ବିଚାର ଜଗତ ସମ୍ବନ୍ଧୀୟ ସଚେତନତା ପ୍ରକାଶିତ ହୁଏ । ଏକ ନିର୍ଦ୍ଦିଷ୍ଟ ଶରୀରରୁ ଏହି ଚେତନ ତତ୍ତ୍ୱ ବା ଚୈତନ୍ୟଙ୍କୁ ଅପସାରିତ

କଲେ, ତାହା ବାହ୍ୟ ଜଗତ ବିଷୟରେ ଆଉ ଜାଣି ପାରିବ ନାହିଁ। ତେଣୁ କେବଳ ଶାସ୍ତ୍ରୀୟ ଭାଷାରେ ନୁହେଁ, ବିଜ୍ଞାନ-ସମ୍ମତ ସତ୍ୟ ଭାବରେ ଆମେ କହିପାରିବା ଯେ, ବାହ୍ୟ ଜଗତ ଏବଂ ଅର୍ନ୍ତ-ଜଗତ ଏହି ଶୁଦ୍ଧ ଚୈତନ୍ୟରୁ ହିଁ ସୃଷ୍ଟ - ଏହି ଚୈତନ୍ୟରେ ସେମାନଙ୍କର ସ୍ଥିତି ଏବଂ ଚୈତନ୍ୟ ଅପସରି ଗଲେ ଏହି ଚୈତନ୍ୟରେ ହିଁ ଲୀନ ହୋଇଯିବେ।

ସୂର୍ଯ୍ୟକିରଣର ସରୁ ରେଖାଟିଏ ଖଣ୍ଡେ ପ୍ରିଜିମ୍ ମାଧ୍ୟମ ଦେଇ ଗଲେ କିରଣର ରଙ୍ଗ ବିଚ୍ଛୁରିତ ହୋଇଥିବାର ଆମେ ଦେଖିବାକୁ ପାଇବା । ଉତ୍ପନ୍ନ ହୋଇଥିବା ସାତୋଟି ରଙ୍ଗ ପ୍ରିଜିମ୍ ଦେଇ ଯାଇଥିବା ଆଲୋକରୁ ହିଁ ବାହାରିଛି । ସେମାନେ ସେହି ଆଲୋକରେ ଥିଲେ ଏବଂ ସେହି ଆଲୋକରେ ପୁଣି ଲୀନ ହୋଇଯିବେ । ଗୋଟିଏ ମାତ୍ର ସରୁ ଆଲୋକ ରେଖା ଏପରି ସାତୋଟି ବର୍ଣ୍ଣରେ ବିଚ୍ଛୁରିତ ହେବା ପ୍ରିଜିମ୍‌ର କାରସାଦି ଯୋଗୁଁ ହିଁ ହୋଇଥାଏ । ଏହା ଆଲୋକର ସ୍ରୋତକୁ ପ୍ରତିହତ କରି ତା'କୁ ବିଚ୍ଛୁରଣ ପ୍ରକ୍ରିୟାରେ ରୂପାନ୍ତରଣ କରେ ।

ସେହିପରି, ମନ-ବୁଦ୍ଧି ରୂପକ ପ୍ରିଜିମ୍ ମାଧ୍ୟମରେ ଚୈତନ୍ୟ ପ୍ରକ୍ଷେପିତ ହେଲେ ଆମେ ଜଗତର ବହୁବିଧତାର ଜ୍ଞାନ ଲାଭ କଲାପରି ମନେ ହୁଏ। ଏହା ହେଉଛି ବେଦାନ୍ତର ସିଦ୍ଧାନ୍ତ । କୌଣସି ଆଧ୍ୟାତ୍ମିକ ଉପାୟରେ ଆମେ ମନ ଏବଂ ବୁଦ୍ଧି ଉପାଧିର ଅତୀତ ହୋଇ ପାରିଲେ ଆମ ଠାରୁ ପ୍ରକ୍ଷେପିତ ହେଉଥିବା ଚୈତନ୍ୟ, ଆମ ଚତୁର୍ଦ୍ଦିଗରେ ନିତ୍ୟ (ସର୍ବ) ବିଦ୍ୟମାନ ଚୈତନ୍ୟରେ ବିଲୀନ ହୋଇଯିବ ଏବଂ ସର୍ବବ୍ୟାପୀ ସତ୍ୟଙ୍କୁ ଆମେ ସମସ୍ତ ନାମ-ରୂପରେ ଅନୁଭବ କରି ପାରିବା । ଏହି ମନ୍ତ୍ରରେ ବଡ଼ ତାତ୍ପର୍ଯ୍ୟପୂର୍ଣ୍ଣ ଭାବରେ ଏହି ଅବଧାରଣାକୁ ଇଙ୍ଗିତ କରାଯାଇଛି।

ଏଠାରେ ଶ୍ରୀ ଗୌଡ଼ପାଦଙ୍କର କାରିକା ଆରମ୍ଭ ହୋଇଛି :

**ବହିଷ୍ପ୍ରଜ୍ଞୋ ବିଭୁର୍ବିଶ୍ୱୋ ହ୍ୟନ୍ତଃପ୍ରଜ୍ଞସ୍ତୁ ତୈଜସଃ ।**

**ଘନପ୍ରଜ୍ଞସ୍ତଥା ପ୍ରାଜ୍ଞ ଏକ ଏବ ତ୍ରିଧା ସ୍ମୃତଃ ॥୧॥**

ବହିଃ ପ୍ରଜ୍ଞଃ = ଯିଏ ବାହ୍ୟ ସ୍ଥୂଳବିଷୟରେ ସଚେତନ, ବିଭୁଃ = ସର୍ବବ୍ୟାପୀ, ବିଶ୍ୱଃ = ବିଶ୍ୱ, ହି = ଯେହେତୁ (ପକ୍ଷାନ୍ତରେ), ଅନ୍ତଃପ୍ରଜ୍ଞଃ = ଅନ୍ତଃ ସମ୍ବନ୍ଧରେ ଯିଏ ସଚେତନ, ତୁ = କିନ୍ତୁ, ତୈଜସଃ = ତୈଜସ ଅଟେ, ଘନ ପ୍ରଜ୍ଞଃ = ଘନ ପ୍ରଜ୍ଞ (ଚୈତନ୍ୟ ଘନ), ତଥା = ଏବଂ, ପ୍ରାଜ୍ଞଃ = ପ୍ରାଜ୍ଞ ଅଟେ, ଏକଃ ଏବ = ସେହି ଜଣକ କେବଳ, ତ୍ରିଧା = ତିନୋଟି ବିଭିନ୍ନ ବାଟରେ, ସ୍ମୃତଃ = ଚିନ୍ତା କରାଯାଏ ।

*ଯିଏ ସର୍ବବ୍ୟାପୀ, ବାହ୍ୟ ସ୍ଥୂଳ ବିଷୟର ଅନୁଭବ କରିପାରେ (ଜାଗ୍ରତ) ସେ ହେଉଛି ବିଶ୍ୱ, ପ୍ରଥମ ପାଦ । ଦ୍ୱିତୀୟ ପାଦ ତୈଜସ ହେଉଛି, ଅନ୍ତର ବା ସୂକ୍ଷ୍ମ ଶରୀରକୁ ଯିଏ ଅନୁଭବ କରିପାରେ (ସ୍ୱପ୍ନ ଦ୍ରଷ୍ଟା) । ପ୍ରାଜ୍ଞ ହେଉଛି ଚୈତନ୍ୟ ଘନ । ଚୈତନ୍ୟର ତିନିଗୋଟି ବିଭିନ୍ନ ସ୍ତରରେ ସେ ହିଁ କେବଳ ତିନୋଟି ଭାବରେ ପରିଚିତ ॥୧॥*

ଏହି ଶ୍ଳୋକଟି ଗୌଡ଼ପାଦଙ୍କର କାରିକାର । ପ୍ରଥମ ଥର ପାଇଁ ଏହି ଶ୍ଳୋକରେ ଆମେ କାରିକାର ରଚୟିତା ତଥା ତାଙ୍କର ପରିପୂର୍ଣ୍ଣ ଭାବଗର୍ଭକ ଶାସ୍ତ୍ରୀୟ ଗ୍ରନ୍ଥର ବର୍ଣ୍ଣନା ଏବଂ ବ୍ୟାଖ୍ୟାର ସଂସ୍ପର୍ଶରେ ଆସୁଛୁ । ଏ ପର୍ଯ୍ୟନ୍ତ ଆମେ ମହାନ ଶାସ୍ତ୍ରୀୟ ଗ୍ରନ୍ଥର ବାରୋଟି ଶ୍ଳୋକ ମଧ୍ୟରୁ ଛ'ଟିର ଆଲୋଚନା କରୁଥିଲେ । ଷଷ୍ଠ ମନ୍ତ୍ରଟିର ବର୍ଣ୍ଣନା ପରେ, ମନ୍ତ୍ରଗୁଡ଼ିକ ଇଙ୍ଗିତ କରିଥିବା ଗଭୀର ତାତ୍ପର୍ଯ୍ୟର ମୁଖ୍ୟ ବିଷୟର ସାରାଂଶ ଦେବା ପାଇଁ କାରିକାକାର ଏଠାରେ ଅୟମାରମ୍ଭ କରିଛନ୍ତି ।

ଉପନିଷଦ୍ ସବୁ ଅତ୍ୟନ୍ତ ସଂକ୍ଷିପ୍ତ । ହିନ୍ଦୁଶାସ୍ତ୍ରରେ ଋଷିମାନେ ଗ୍ରହଣ କରିଥିବା ନିର୍ଦ୍ଦିଷ୍ଟ ଶୈଳୀ ସମ୍ବନ୍ଧରେ ଆମେ ଉପକ୍ରମଣିକାରେ ଦର୍ଶାଇଛୁ । ସଂକ୍ଷିପ୍ତତା ଯୋଗୁଁ ସାଧାରଣ ଲୋକଙ୍କ ପାଇଁ ବିସ୍ତାରିତ ବ୍ୟାଖ୍ୟାର ଆବଶ୍ୟକ ହୋଇଥାଏ, କାରଣ ବ୍ୟାଖ୍ୟା ବିନା ଶାସ୍ତ୍ରମାନେ ଅର୍ଥହୀନ, ଏପରିକି ହାସ୍ୟାସ୍ପଦ ମନେ ହୋଇପାରନ୍ତି ।

କାରିକାର କର୍ତ୍ତବ୍ୟ ଏବଂ ସଂରଚନା ସମ୍ବନ୍ଧରେ ବ୍ୟାଖ୍ୟା କରି ପୂର୍ବରୁ ଆମେ ଭାଷ୍ୟଠାରୁ ଏହାର ପ୍ରଭେଦ କହି ସାରିଛୁ । ଭାଷ୍ୟକାରଙ୍କର ଉଦ୍ଦେଶ୍ୟ ହେଲା ମନ୍ତ୍ର ବା ଶାସ୍ତ୍ରର ପ୍ରତ୍ୟେକଟି ପଦ ବା ଶବ୍ଦର ପୂର୍ଣ୍ଣ ବର୍ଣ୍ଣନା ଦେବା ଏବଂ ବ୍ୟାଖ୍ୟା କରିବା; କିନ୍ତୁ ଯେଉଁ ପଦକୁ ନେଇ କାରିକାକାରଙ୍କ ମୁଖ୍ୟତଃ ଚିନ୍ତା, ସେସବୁ ବ୍ୟାଖ୍ୟା କଲେ ତାଙ୍କର

ଉଦ୍ଦେଶ୍ୟ ପୂର୍ଣ୍ଣ ହୋଇଥାଏ। ତେଣୁ ଶାସ୍ତ୍ରର ତାତ୍ପର୍ଯ୍ୟ ବୁଝିବାକୁ ଜଣେ ସାଧାରଣ ଲୋକ ପାଇଁ ଯେଉଁ ଅନେକ କଷ୍ଟକର ଶବ୍ଦର ବ୍ୟାଖ୍ୟା ପ୍ରକୃତରେ ଦରକାର, ଗୌଡପାଦ ତାକୁ ବିଚାରକୁ ନେଇ ନାହାନ୍ତି । ଆମେ କାରିକାର ଅର୍ଥ ବୁଝିପାରିଲେ ଏହା କାରିକାକାରଙ୍କର ଦୁର୍ବଳତା ନୁହେଁ ବୋଲି ଜାଣି ପାରିବା।

ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତର ତୀର୍ଥଯାତ୍ରା ସମୟରେ, ପ୍ରତ୍ୟେକଟି ମୁହୂର୍ତ୍ତରେ ମନୁଷ୍ୟ ଅନୁଭୂତି ଆହରଣ କରି ଜୀବନଯାପନ କରେ ।

ମଣିଷର ଜୀବନ କାଳରେ ଏମିତି ଗୋଟିଏ ମୁହୂର୍ତ୍ତ ନାହିଁ, ଯେତେବେଳେ ସେ ବାହ୍ୟ ବିଷୟର ସଂସ୍ପର୍ଶରେ ଆସୁ ନାହିଁ ଏବଂ ଅଭିଜ୍ଞତା ଲାଭ କରୁ ନାହିଁ । ଶରୀରର ସୌଧଟି ଯେଉଁ ମୁହୂର୍ତ୍ତରେ ଅଭିଜ୍ଞତା ଲାଭ କରିପାରେ ନାହିଁ, ସେହି ଶରୀରକୁ ଆମେ ମୃତ ବୋଲି କହୁ ।

ପାଶ୍ଚାତ୍ୟ ଦର୍ଶନ ଏବଂ ଭାରତର କେତେକ ମତର ଦର୍ଶନ ଜୀବନର ଗୋଟିଏ ଦିଗ ଯଥା ଜାଗ୍ରତ ଅବସ୍ଥା ଉପରେ ବିବେଚନା କରିଥାନ୍ତି । କେବଳ ଇନ୍ଦ୍ରିୟ ଭୋଗ୍ୟ ବିଷୟର ଜାଗ୍ରତ ଅବସ୍ଥାର ଜଗତକୁ ନେଇ ଜୀବନ ଗଠିତ ହୋଇ ନାହିଁ । ଜୀବନ ମାନେ ସମଗ୍ର ଜୀବନ । ଏଥିରେ ଜାଗ୍ରତ ଅବସ୍ଥା, ସ୍ୱପ୍ନାବସ୍ଥା ଏବଂ ସୁଷୁପ୍ତି ଅବସ୍ଥାର ଅନୁଭୂତି ରହିଛି । କେବଳ ଜାଗ୍ରତ ଅବସ୍ଥାର ଜଗତକୁ ବିଶ୍ଲେଷଣ କରି ବିଷୟ ଜଗତ ଏବଂ ତା' ସମ୍ପର୍କରେ ଆମର ସ୍ୱରୂପ (ସ୍ୱଭାବ) ବୁଝିବାକୁ ଚେଷ୍ଟା କଲେ, ଜୀବନକୁ ଆଂଶିକ ଭାବରେ ଦେଖି ତାର ମୂଲ୍ୟାୟନ କରିବାର ଚେଷ୍ଟା କରିବା ପରି ହେବ ।

ଖଣ୍ଡେ ମୂଲ୍ୟବାନ ପଥରର କେବଳ ଗୋଟିଏ ପାର୍ଶ୍ୱ ଦେଖି କୌଣସି ରତ୍ନ-ବିକ୍ରେତା ତାର ମୂଲ୍ୟାୟନ କରିବ ନାହିଁ ବା ତାକୁ କିଣିବ ନାହିଁ । ସବୁ ଅବସ୍ଥାରେ ବିଭିନ୍ନ ପ୍ରକାରର ଆଲୁଅରେ ତା'ର ସବୁ ପାର୍ଶ୍ୱକୁ ସେ ଦେଖିବ । ସେହପରି, ସଂପୂର୍ଣ୍ଣ ନିରାସକ୍ତ ଭାବରେ ଜୀବନର ମୂଲ୍ୟାୟନ କରୁଥିବା ଦାର୍ଶନିକଟିଏ ଜୀବନକୁ, ସାମଗ୍ରିକ ଭାବରେ ବୁଝି ପାରିବା ପାଇଁ ପ୍ରତ୍ୟେକଟି କୋଣରୁ ଏହାକୁ ନିରୀକ୍ଷଣ କରିବାର ଚେଷ୍ଟା କରିବ । ଜୀବନକୁ ଏକ ପୂର୍ଣ୍ଣତ୍ୱ ଭାବରେ ବୁଝି ପାରିବା ପାଇଁ ଏହାର ଅନ୍ତର୍ଗତ ସମସ୍ତ ବିଷୟ ବୁଝିବାକୁ ହେବ। ପ୍ରତ୍ୟେକଟି ଦିନରେ ମଣିଷ ଯେଉଁ ଜୀବନଯାପନ କରେ ତା'ରି ମାଧ୍ୟମରେ ଚୈତନ୍ୟର ସମସ୍ତ ଅବସ୍ଥା ଏବଂ ଅନୁଭୂତିର ସମଗ୍ର କ୍ଷେତ୍ରକୁ ବୁଝିବାକୁ ହେବ। ମାଣ୍ଡୁକ୍ୟ ଉପନିଷଦ୍ ବୋଧହୁଏ ପୃଥିବୀର ସର୍ବପ୍ରଥମ ଶାସ୍ତ୍ରୀୟ ସାହିତ୍ୟ ଯେଉଁଥିରେ ଜୀବନକୁ ସମଗ୍ର ରୂପରେ ବିଚାରକୁ ନିଆ ଯାଇଛି ଏବଂ ଭଲଭାବେ ନିରୀକ୍ଷଣ କରିବା

ପରେ ଗୁରୁମାନେ ସେମାନଙ୍କର ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି । କାରିକାର ମହାନ ଋଷିମାନଙ୍କର ତାତ୍ପର୍ଯ୍ୟପୂର୍ଣ୍ଣ ସିଦ୍ଧାନ୍ତ ଦେବାର ଚେଷ୍ଟା କରିଛନ୍ତି ।

ଶାସ୍ତ୍ରରେ ଏପର୍ଯ୍ୟନ୍ତ ଆମକୁ ବିଭିନ୍ନ ପ୍ରକାର ଅହଂର ବର୍ଣ୍ଣନା ଦିଆଯାଇଛି । ଜାଗ୍ରତ ଅବସ୍ଥାରେ ଆମ ଭିତରେ କାର୍ଯ୍ୟ କରୁଥିବା ଅହଂ, ସ୍ୱପ୍ନ ଏବଂ ସୁଷୁପ୍ତି ଅବସ୍ଥାରେ କାର୍ଯ୍ୟ କରୁଥିବା ଅହଂଠାରୁ ସଂପୂର୍ଣ୍ଣ ଭିନ୍ନ । ଆମଠାରେ ଥିବା 'ଜାଗ୍ରତ ପୁରୁଷ'ଠାରୁ 'ସ୍ୱପ୍ନଦ୍ରଷ୍ଟା' ଏବଂ 'ସୁଷୁପ୍ତ' ସ୍ପଷ୍ଟତଃ ଭିନ୍ନ । ଅନେକ ପରିଶ୍ରମ କରି ମହାନ୍ ଋଷିମାନେ ଆମ ପାଇଁ ଯେଉଁ ପର୍ଯ୍ୟବେକ୍ଷଣକୁ ସ୍ପଷ୍ଟ କରିଛନ୍ତି ତା'ରି ତାତ୍ପର୍ଯ୍ୟ ଦେଖାଇବା ପାଇଁ କାରିକାକାର ଏହି ଶ୍ଳୋକରେ ଚେଷ୍ଟା କରିଛନ୍ତି । "ସେହି ଏକ ହିଁ କେବଳ ଏହିପରି ଭାବରେ ତିନି ଅବସ୍ଥାରେ ଜାଣି ହୁଅନ୍ତି" - ଶ୍ଳୋକର ଏହି ସମାପ୍ତି ଉପରେ ଜୋର ଦିଆ ଯାଇଛି ।

ସରଳ ଭାବରେ କହିବାକୁ ଗଲେ, ଆମଠାରେ ଥିବା ଜୀବନ-ତତ୍ତ୍ୱ ବା ଶୁଦ୍ଧ-ଚୈତନ୍ୟ ହେଉଛନ୍ତି ଏକ ଏବଂ ଅନନ୍ୟ । ଶରୀର ସହିତ ତାଦାତ୍ମ୍ୟ କରି ସେ ବାହ୍ୟ ବିଷୟ ଦେଖନ୍ତି। ସେ ବାହ୍ୟ-ଜଗତ ସମ୍ବନ୍ଧରେ ସଚେତନ ଥିବା ଅବସ୍ଥାକୁ ଜାଗ୍ରତ ଅବସ୍ଥା କୁହାଯାଏ । ସ୍ଥୂଳ ଶରୀରରୁ ନିଜକୁ ବିଯୁକ୍ତ କରି ସେହି ଚୈତନ୍ୟ-ତତ୍ତ୍ୱ ମନ ଏବଂ ବୁଦ୍ଧି ସହିତ ତାଦାତ୍ମ୍ୟ କଲେ ସ୍ୱପ୍ନ-ଦ୍ରଷ୍ଟା ହୋଇ ଯାଆନ୍ତି । ସେ ନିଜର ଯେଉଁ ଜଗତ ଏବଂ ବାସନାର ସ୍ୱପ୍ନ ଦେଖନ୍ତି, ବାହ୍ୟ ଜଗତ ସହିତ ତା'ର କୌଣସି ସମ୍ପର୍କ ନ ଥାଏ । ପୁନଶ୍ଚ, ସେହି ଚୈତନ୍ୟ ସ୍ଥୂଳ ଶରୀର ଏବଂ ସୂକ୍ଷ୍ମ ଶରୀରରୁ ନିଜକୁ ସମ୍ପୂର୍ଣ୍ଣଭାବେ ଅପସାରିତ କରି କାରଣ ଶରୀର ସହିତ ତାଦାତ୍ମ୍ୟ ସ୍ଥାପନ କଲେ ସୁଷୁପ୍ତ ହୋଇଯାଏ ଏବଂ ସୁଷୁପ୍ତି ନାମକ ଚୈତନ୍ୟ ଅବସ୍ଥା ଉପଭୋଗ କରେ ।

ତେଣୁ ଆମର ବିଭିନ୍ନ ପ୍ରକାରର ତାଦାତ୍ମ୍ୟରେ, ଆମରି ଭିତରେ ହିଁ ଆମେ ତିନୋଟି ସ୍ପଷ୍ଟ ବ୍ୟକ୍ତିତ୍ୱର ଅନୁଭୂତି ଲାଭ କରୁ । ବାସ୍ତବରେ, ବୌଦ୍ଧିକ ସ୍ତରରେ ଏହା ଗ୍ରହଣୀୟ ଯେ, ଏହି ତିନିଗୋଟି ଅବସ୍ଥା ପଛରେ ଥିବା ସତ୍ୟ ହିଁ ମୁଖ୍ୟ ବିଷୟ, ଅନୁଭୂତିର ଏହି ତିନି କ୍ଷେତ୍ର ଉପରେ ଅଧକ୍ଷ କରୁଥିବା ଜୀବନ-ତତ୍ତ୍ୱ ହେଉଛି ଏକ ଏବଂ ଅନନ୍ୟ-'ମୁଁ'(ଅହଂ) ଭାବ ।

ଏହା କେବଳ ଗୋଟିଏ ସିଦ୍ଧାନ୍ତ ନୁହେଁ। ଏହା ଅନୁଭବ କରି ହେବ । ଅନ୍ଧବିଶ୍ୱାସକୁ ଏହା ଆହ୍ୱାନ ନୁହେଁ । ପ୍ରକୃତରେ ଏହା ହେଲା ବୁଦ୍ଧି ପାଇଁ ଏକ ଆହ୍ୱାନ ଏବଂ ଘୋଷଣା। ଅନ୍ଧ ଭାବରେ କୌଣସି ବିଶ୍ୱାସର ଅନୁସରଣ କରୁଥିବା ଲୋକମାନଙ୍କୁ ହିନ୍ଦୁ ଶାସ୍ତ୍ର ସମର୍ଥନ

କରେ ନାହିଁ, କିନ୍ତୁ ନିଜର ଶୁଦ୍ଧ, ବୌଦ୍ଧିକ ଯୁକ୍ତିଯୁକ୍ତତାର ବ୍ୟବହାର କରି ବୈଦାନ୍ତିକ ଦୃଢବିଶ୍ୱାସ ଲାଭ କରିବାକୁ ସାଧକମାନଙ୍କ ଉପରେ ଜୋର ଦିଏ ଏବଂ ସେଥିପାଇଁ ଆହ୍ୱାନ କରେ। ଅନୁଭୂତିର ଏହି ତିନି ସ୍ତରରେ ଅନୁଭବକର୍ତ୍ତା ଏକ ଏବଂ ଅଭିନ୍ନ ବୋଲି ପ୍ରମାଣ କରିବା ପାଇଁ ଯଥେଷ୍ଟ କାରଣ ରହିଛି ।

ଜଣେ ଅନ୍ୟ ଜଣକର ଅନୁଭୂତି ମନେରଖି ପାରିବ ନାହିଁ, ଉଦାହରଣ ସ୍ୱରୂପ, ତୁମେ ମୋର କୌଣସି ଗୋଟିଏ ହେଲେ ଅନୁଭୂତି ମନେରଖି ପାରିବ ନାହିଁ; ମୁଁ ମଧ୍ୟ ତୁମର କୌଣସି ଅନୁଭୂତି ମନେ ରଖିପାରିବି ନାହିଁ । ଅନ୍ୟ ପକ୍ଷରେ ତୁମେ ତୁମର ଅନୁଭୂତି ମନେ ରଖିପାରିବା ପରି ମୁଁ ମୋର ଅନୁଭୂତି ସହଜରେ ମନେ ରଖିପାରିବି ଏବଂ ଏହା ସ୍ୱାଭାବିକ ଭାବେ ହୁଏ; କାରଣ ସ୍ମୃତିର ନିୟମ ହେଲା ମନେ ରଖିପାରିବାର ବ୍ୟକ୍ତି ଏବଂ ଅନୁଭବ କରିବାର ବ୍ୟକ୍ତି ଏକ ଏବଂ ଅଭିନ୍ନ ହେବା ଦରକାର। ଏହି ବ୍ୟାବହାରିକ, ସାଧାରଣ ଏବଂ ଯୁକ୍ତିସଙ୍ଗତ ଚିନ୍ତାଧାରା ତୁମେ ଗ୍ରହଣ କରିପାରିଲେ ଏକମାତ୍ର ପବିତ୍ର ତତ୍ତ୍ୱ ଚୈତନ୍ୟର ତିନୋଟିଯାକ ସ୍ତରରେ ପ୍ରଭୁତ୍ୱ କରୁଥିବା କଥା ବିଶ୍ୱାସ କରି ହେବ ।

କାରଣ କାଲି ମୁଁ ଯେଉଁ ଜାଗ୍ରତ-ପୁରୁଷ ଥିଲି, ସେ କଥା କଣ ମନେରଖିପାରି ନାହିଁ? କାଲି ଯେଉଁ ସ୍ୱପ୍ନ ଦେଖିଥିଲି, ମନେରଖି ନାହିଁ ? ସ୍ୱପ୍ନ ପରେ ସୁଷୁପ୍ତି ଅବସ୍ଥାକୁ କିପରି ଗଲି ବୋଲି ମନେ ରଖି ନାହିଁ ? ମୋ ଜୀବନର ଗତ ଚବିଶ ଘଣ୍ଟା ଭିତରେ ଚେତନାର ଯେଉଁ ତିନୋଟି ସ୍ତର ଦେଇ ମୁଁ ପାରି ହେଲି, ସେସବୁକୁ ମନେରଖି ପାରୁଥିବାବେଳେ, ମୋ ଭିତରେ ଚେତନାର ଏହି ତିନୋଟି ସ୍ତରରେ ବାସ କରୁଥିବା ଜଣେ ସାର୍ବଜନୀନ ଅନୁଭବକର୍ତ୍ତା ନିଶ୍ଚୟ ରହିଥିବ । ମୋର କାର୍ଯ୍ୟକଳାପର ତିନୋଟି କ୍ଷେତ୍ରର ସାର୍ବଜନୀନ ଅନୁଭବକର୍ତ୍ତା ବା କର୍ତ୍ତା ହେଉଛି ସାର୍ବଜନୀନ 'ମୁଁ' - ଶାଶ୍ୱତ କର୍ତ୍ତା, ଶୁଦ୍ଧ ଚୈତନ୍ୟ ।

ତେଣୁ, ଏହି ଶ୍ଳୋକରେ କାରିକାକାର ଯେଉଁ ଧାରଣାଟି ଦେବାକୁ ଚେଷ୍ଟା କରିଛନ୍ତି, ତାହା ହେଲା ସତ୍ୟ ହେଉଛନ୍ତି ଏକ ଏବଂ ଅଭିନ୍ନ, ଜୀବନ ହେଉଛି ଏକ ଏବଂ ଅଭିନ୍ନ; ଯଦିଓ ସତ୍ତାର ତିନୋଟି ବିଭିନ୍ନ କ୍ଷେତ୍ରରେ ଏବଂ ଅନୁଭୂତିର ତିନୋଟି ବିଭିନ୍ନ ସ୍ତରରେ ଏହା ଭିନ୍ନ ଭିନ୍ନ ଭାବରେ କାର୍ଯ୍ୟ କରିବାବେଳେ ତିନି ପ୍ରକାରର ବିଭିନ୍ନ ଅନୁଭୂତି ଲାଭ କରିବା ପରି ମନେ ହୁଏ । ଏହି ସାର୍ବଜନୀନ କର୍ତ୍ତାଟି କ'ଣ, ପରେ ପୁଣି ଆଲୋଚନା କରାଯିବ ଏବଂ ମନ୍ତ୍ରଟିର ଆଲୋଚନାବେଳେ ଆମେ ଏହା ବିଶଦ ଭାବରେ ଦେଖିବା ।

**ଦକ୍ଷିଣାକ୍ଷିମୁଖେ ବିଶ୍ୱୋ ମନସ୍ୟନ୍ତସ୍ତୁ ତୈଜସଃ ।**
**ଆକାଶେ ଚ ହୃଦି ପ୍ରାଜ୍ଞସ୍ତ୍ରିଧା ଦେହେ ବ୍ୟବସ୍ଥିତଃ ॥୨॥**

ଦକ୍ଷିଣ-ଅକ୍ଷି-ମୁଖେ = ଦକ୍ଷିଣ ଚକ୍ଷୁ (ରେ ଅଛି), ବିଶ୍ୱଃ = ବିଶ୍ୱ, ଅନ୍ତଃମନସି = ଭିତରେ (ଅଛି), ତୁ = ଯେହେତୁ, ପକ୍ଷାନ୍ତରେ; ତୈଜସଃ = ତୈଜସ, ଆକାଶେ ହୃଦି = ହୃଦୟ ଗୁହା ଭିତରେ (ଅଛି), ଚ ପ୍ରାଜ୍ଞଃ = ଏବଂ ପ୍ରାଜ୍ଞ, ତ୍ରିଧା = ତିନି ପ୍ରକାରରେ, ଦେହେ = ଦେହରେ, ବ୍ୟବସ୍ଥିତଃ = ରଖା ଯାଇଛି ।

*ବିଶ୍ୱ ଦକ୍ଷିଣ ଚକ୍ଷୁରୁ କାମ କରେ । ତୈଜସ ମନରୁ ଏବଂ ପ୍ରାଜ୍ଞ ହୃଦୟ-କନ୍ଦରରୁ । ଏହି ପରି ଏକମାତ୍ର ଆତ୍ମା ତିନୋଟି ବିଭିନ୍ନ ସ୍ଥାନରୁ, ତିନୋଟି ସତ୍ତା ଭାବରେ କାର୍ଯ୍ୟ କରୁଥିବାର ଧାରଣା କରାଯାଏ ॥୨॥*

ଆମ ଚୈତନ୍ୟର ତିନୋଟି ଅବସ୍ଥାରେ ଅହଂ କାର୍ଯ୍ୟ କରୁଥିବା ସମ୍ବନ୍ଧରେ ମାଣ୍ଡୁକ୍ୟ ଉପନିଷଦ୍‌ରେ ପ୍ରତ୍ୟକ୍ଷ ଭାବରେ କିଛି ପ୍ରକାଶ କରାଯାଇ ନାହିଁ । ବିଶ୍ୱ, ତୈଜସ୍, ପ୍ରାଜ୍ଞଙ୍କୁ ଚିହ୍ନ, ଠିକ୍ କେଉଁ ସ୍ଥାନରେ ତାଙ୍କର ଅବସ୍ଥିତି ନିର୍ଣ୍ଣୟ କରିହେବ, କାରିକାରେ ଗୌଡ଼ପାଦ ଆମକୁ ସେକଥା ଜଣାଇ ଦେଇଛନ୍ତି । କାରିକା କୌଣସି ଶାସ୍ତ୍ର ନୁହେଁ, ଶାସ୍ତ୍ର ହେଉଛି ବିଶଦ ଦର୍ଶନର ଏକ ବିଜ୍ଞାନ ସମ୍ମତ ଗ୍ରନ୍ଥ । ଅଥଚ କାରିକା ହେଉଛି ତା'ର ଗୋଟିଏ ଦିଗର ପରିପୂର୍ଣ୍ଣ ଏବଂ ସଂପୂର୍ଣ୍ଣ ବର୍ଣ୍ଣନା । ତେଣୁ କାରିକା ହେଉଛି ଏକ ଉପଦେଶ ଗ୍ରନ୍ଥ, ନିର୍ଦ୍ଦିଷ୍ଟ ଉପଦେଶର ଶାସ୍ତ୍ର । ଏହା ସାର୍ବଜନୀନ ଦର୍ଶନ ନୁହେଁ । ସେପରି ହୋଇଥିଲେ ସାଧନା ମାର୍ଗରେ ଅଭ୍ୟାସ କରିବା ପାଇଁ ସାଧକକୁ ସାହାଯ୍ୟ କରିବାକୁ ଗୌଡ଼ପାଦ ଅଧିକତର ସବିଶେଷ ବର୍ଣ୍ଣନା କରିଥାନ୍ତେ । ଅନ୍ୟାନ୍ୟ ଅଧ୍ୟାୟରେ ଆମେ ଏହା ଅଧିକ ସ୍ପଷ୍ଟ ଭାବରେ ଦେଖିବାକୁ ପାଉ । କିପରି ଭାବରେ ଆଧ୍ୟାତ୍ମିକ ଜୀବନଯାପନ କରିବାକୁ ହେବ, ଏବଂ ଏହାର ଅଭ୍ୟାସ କରିବାକୁ ହେବ, ସେ ସମ୍ବନ୍ଧରେ ସମ୍ପୂର୍ଣ୍ଣ ଉପଦେଶ ନ ଦେଇ କାରିକାର କୌଣସି ଅଧ୍ୟାୟ ଶେଷ ହୋଇ ନାହିଁ ।

କାରିକାକାର ହିସାବରେ ତାଙ୍କର ଦାୟିତ୍ୱ ନିର୍ବାହ କରି ଗୌଡ଼ପାଦ, ଚେତନାର ତିନୋଟି ସ୍ତରରେ ଆତ୍ମାଙ୍କର କାର୍ଯ୍ୟକଳାପର କ୍ଷେତ୍ର ସମ୍ବନ୍ଧରେ ସମ୍ପୂର୍ଣ୍ଣ ବିବରଣୀ ଦେଇଛନ୍ତି । ଏହା ସେମାନଙ୍କର ଧ୍ୟାନ, ବିଶ୍ଳେଷଣ ଓ ଯଥାର୍ଥ ବୋଧଶକ୍ତି ପାଇଁ ଉଦ୍ଦିଷ୍ଟ । ଜାଗ୍ରତ ପୁରୁଷ ବା ବିଶ୍ୱର ମୁଖ୍ୟ କାର୍ଯ୍ୟାଳୟ ଡାହାଣ ଚକ୍ଷୁରେ ଅବସ୍ଥିତ ବୋଲି ସାଧାରଣଭାବେ ପଢ଼ି, ପ୍ରାଚୀନ ଋଷିଙ୍କର ହାସ୍ୟାସ୍ପଦ ଉକ୍ତିରେ ଆମେ ଆଶ୍ଚର୍ଯ୍ୟଚକିତ ଏବଂ ଭୟତ୍ରସ୍ତ ହେବା ସ୍ୱାଭାବିକ । ଜଣେ ଆଧୁନିକ, ଶିକ୍ଷିତ ବ୍ୟକ୍ତି, ପ୍ରତ୍ୟେକଟି ଶବ୍ଦର

ସାଧାରଣ ଅନୁବାଦ ଥିବା ଖଣ୍ଡିଏ ଉପନିଷଦ୍ ଗ୍ରନ୍ଥ କୌଣସି ରେଳବାଇ ବହି ଦୋକାନରୁ ତରତର ହୋଇ କିଣି ପକେଇ ଅସ୍ୱସ୍ତିକର ରେଳଯାତ୍ରା ସମୟରେ ଏହାର ପୃଷ୍ଠା ଓଲଟାଇଲେ ଠିକ୍ ଏପରି ଘଟିଥାଏ । ତା'ର ଧାରଣା ହୁଏ ଯେ ଶାସ୍ତ୍ର କେତେକ ଅର୍ଥହୀନ ଶବ୍ଦର ସମାହାର ବ୍ୟତୀତ ଅନ୍ୟ କିଛି ନୁହେଁ । ଏହାର କୌଣସି ତାତ୍ପର୍ଯ୍ୟ ହିଁ ନାହିଁ । ଭଲ ଭାବରେ ବୁଝିବାପାଇଁ ଆମେ ଏହାର ମୂଲ୍ୟାୟନ କରିବାର ଚେଷ୍ଟା କରିବା । ବିଶ୍ୱ ହେଉଛି ଜାଗ୍ରତ-ଅବସ୍ଥାର ଜଗତର ଅନୁଭବ କର୍ତ୍ତା । ଜାଗ୍ରତ ଅବସ୍ଥାରେ ଆମେ ସ୍ଥୂଳ ଶରୀର ସମ୍ବନ୍ଧରେ ସଚେତନ ଥାଉ ଏବଂ ଶରୀରର ବାରଣ୍ଡାରେ ଠିଆ ହୋଇ ରହି ବିଚିତ୍ର ଜଗତକୁ ଚିହ୍ନିବାକୁ ଏବଂ ଅନୁଭବ କରିବାକୁ ଚେଷ୍ଟା କରୁ । କେବଳ ଜାଗ୍ରତ ଅବସ୍ଥାର ଜୀବ ହିଁ ପ୍ରାକୃତିକ ଜଗତକୁ ଚିହ୍ନି ପାରିଥାଏ । ଗୁରୁ ବର୍ତ୍ତମାନ ଏହି ବିଶେଷ ଅହଂଙ୍କର ନିର୍ଦ୍ଦିଷ୍ଟ ଅବସ୍ଥିତି ବିଷୟରେ ଜଣାଇବାକୁ ଚେଷ୍ଟା କରୁଛନ୍ତି ।

ଗୋଟିଏ ମୁଦି ବା ବୋତାମଟିଏ ପରି ଆତ୍ମା ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ନ ଥାନ୍ତି। ଏହା ସର୍ବବ୍ୟାପୀ । ପାଦ ଆଙ୍ଗୁଳିର ଅଗ୍ରଭାଗରୁ ମସ୍ତକର ଶୀର୍ଷ ପର୍ଯ୍ୟନ୍ତ ସବୁ ଜାଗାରେ ଆତ୍ମା କାର୍ଯ୍ୟ ସମ୍ପାଦନ କରନ୍ତି, ଏବଂ ତେବେ ବି, ଜାଗ୍ରତ ଅବସ୍ଥାରେ ସ୍ଥୂଳ ଶରୀରକୁ ବିଶ୍ଳେଷଣ କରି, ସମସ୍ତ କାର୍ଯ୍ୟକଳାପ ଯେଉଁ କେନ୍ଦ୍ରରୁ ବାହାରୁଥିବାର ମନେ ହୁଏ, ତାକୁ ବୁଝିବାକୁ ଚେଷ୍ଟାକଲେ ଆମେ ଦେଖିବାକୁ ପାଉ ଯେ, ସମସ୍ତ ଇନ୍ଦ୍ରିୟମାନଙ୍କ ମଧ୍ୟରୁ ଚକ୍ଷୁ ହେଉଛି ପ୍ରଧାନ ଏବଂ ଏହାକୁ ବରାବର କାମରେ ଲଗାଯାଏ।

ତୁଳନାତ୍ମକ ଅଧ୍ୟୟନ କରିବାର ଚେଷ୍ଟା କଲେ, ଆମେ ଦେଖିବାକୁ ପାଇବା ଯେ- ଦୁଇଟି ଚକ୍ଷୁ ମଧ୍ୟରୁ ବାମ ଚକ୍ଷୁ ଅପେକ୍ଷା ଡାହାଣ ଚକ୍ଷୁ ବେଶୀ ଶକ୍ତିଶାଳୀ । ଚକ୍ଷୁ ବିଶେଷଜ୍ଞ ମଧ୍ୟ ଏଥିରେ ଏକମତ ହେବେ । ଆମର ଅନ୍ୟ କୌଣସି ଇନ୍ଦ୍ରିୟ ନ ରହିଲେ, ଜଗତ ସମ୍ବନ୍ଧରେ ଆମେ ସେତେ ବେଶୀ ଅଜ୍ଞତା ଅନୁଭବ କରୁ ନାହୁଁ; କିନ୍ତୁ ଅନ୍ଧ ହୋଇଗଲେ ସେପରି ହେବ ନାହିଁ । ଆମେ ବଧିର ହୋଇଗଲେ ବା ପକ୍ଷାଘାତଗ୍ରସ୍ତ ହେଲେ ବି ଚକ୍ଷୁ ଦୁଇଟି ଭଲ ଥିଲେ, ଅନ୍ଧ ହେବାର ଅବସ୍ଥା ଅପେକ୍ଷା, ଜଗତ ବିଷୟରେ ବେଶୀ ପରିମାଣରେ ଯଥାର୍ଥ ଜ୍ଞାନ ଲାଭ କରିପାରୁ । ଏପରି ଭାବରେ ବିଶ୍ଳେଷଣ କଲେ, ନିଶ୍ଚିତ ଭାବରେ ଆମେ ଏ ସିଦ୍ଧାନ୍ତରେ ଉପନୀତ ହେବା ଯେ, ଅନୁଭୂତି ଲାଭ କରିବା ପାଇଁ ଜାଗ୍ରତ ଅବସ୍ଥାର ପୁରୁଷ ଯେଉଁ ସବୁ ସ୍ଥାନରୁ କାର୍ଯ୍ୟକରେ, ଚକ୍ଷୁ ସେମାନଙ୍କ ମଧ୍ୟରେ ବିଶେଷ ସ୍ଥାନ ଲାଭ କରିଛି ଏବଂ ଦୁଇ ଚକ୍ଷୁ ମଧ୍ୟରୁ ଦକ୍ଷିଣ ବା ଡାହାଣ ଚକ୍ଷୁ ହିଁ ହେଉଛି ମୁଖ୍ୟ କାର୍ଯ୍ୟାଳୟ, ଯେଉଁଠାରୁ ବିଶ୍ୱ କାର୍ଯ୍ୟ କରେ ଏବଂ କାର୍ଯ୍ୟ କରିବାର

କ୍ଷେତ୍ରର ଆଦେଶ ଦିଏ । ତେଣୁ ବିଶ୍ୱ ଡାହାଣ ଚକ୍ଷୁରେ ଆଶ୍ରୟ ନେଇଥିବାର ମାଣ୍ଡୁକ୍ୟ କାରିକାରେ ବ୍ୟାଖ୍ୟା କରାଯାଇଛି ।

ତୈଜସ୍ ହେଉଛି ସ୍ୱପ୍ନ ଦ୍ରଷ୍ଟା । ସ୍ୱପ୍ନ ଜଗତରେ ଜୀବ ମନରେ ସ୍ୱପ୍ନ ଦେଖେ ଏବଂ ତୈଜସର ମୁଖ୍ୟ କାର୍ଯ୍ୟାଳୟ ମନ ହିଁ ହେବା ସ୍ୱାଭାବିକ ।

ଜାଗ୍ରତ ଅବସ୍ଥାରେ ଜୀବ ଏବଂ ସ୍ୱପ୍ନଦ୍ରଷ୍ଟା ନିଦ୍ରିତାବସ୍ଥାକୁ ଗଲେ ସମଗ୍ର ଚେତନା ନିଜ ଭିତରେ ନିଜେ ଘନୀଭୂତ ହୋଇଯାଇ ଚୈତନ୍ୟ ଘନ (ପ୍ରାଜ୍ଞ) ହୋଇଯାଏ । ଏଠାରେ ହୃଦୟ-କନ୍ଦର ପ୍ରାଜ୍ଞର ଆସ୍ଥାନ ଭାବରେ ବ୍ୟାଖ୍ୟା କରା ଯାଇଛି ।

ମିଥ୍ୟା ମନେ ହେଉଥିବା ମହାନ ଋଷିଙ୍କର ଏହି ଉକ୍ତିରେ ଆଧୁନିକ ଜୀବ ବିଜ୍ଞାନୀମାନେ ଧକ୍‌କା ଖାଆନ୍ତି । କିନ୍ତୁ ସେମାନଙ୍କର ବୁଝିବା ଉଚିତ୍ ଯେ, ଆମେ ଭାବୁଥିବା ପରି ପ୍ରାଚୀନ ଋଷିମାନେ ସେପରି ଅଜ୍ଞ ନ ଥିଲେ । ମଣିଷର ଶରୀର ସମ୍ବନ୍ଧରେ ସେମାନଙ୍କର ପରିପୂର୍ଣ୍ଣ ଜ୍ଞାନ ଥିଲା ଏବଂ ପାଶ୍ଚାତ୍ୟର ସମସ୍ତ ଜ୍ଞାତ ବିଜ୍ଞାନ ସମ୍ବନ୍ଧରେ ନିଶ୍ଚିତ ଭାବରେ ସେମାନେ ଅବଗତ ଥିଲେ । ମାଧ୍ୟାକର୍ଷଣ ଶକ୍ତି ଏବଂ ଆଧୁନିକତମ ମନେହେଉଥିବା ପାଶ୍ଚାତ୍ୟର ଆହୁରି ଅନେକ ବୈଜ୍ଞାନିକ ଆବିଷ୍କାର ସମ୍ବନ୍ଧରେ ସେମାନେ ଜାଣିଥିବାର ଯଥେଷ୍ଟ ପ୍ରମାଣ ମହାନ୍ ଉପଦେଶ ମାନଙ୍କରେ ରହିଛି ।

ଏବଂ ତଥାପି, ହୃଦୟ କନ୍ଦର ବିଷୟରେ ସେମାନେ ଯଦି କିଛି କହନ୍ତି ତେବେ ହୃଦ୍‌ବିଜ୍ଞାନ ବିଷୟରେ ସେମାନଙ୍କର ଅନଭିଜ୍ଞତା ଯୋଗୁଁ ନୁହେଁ । ହୃଦୟ କନ୍ଦରକୁ ସେମାନେ ଆକ୍ଷରିକ ଅର୍ଥରେ ଆଦୌ ନେଇ ନାହାନ୍ତି । ହୃଦୟ ହେଉଛି ମଣିଷଠାରେ ଥିବା ମାନବୀୟ ବୃତ୍ତି ଏବଂ ଦିବ୍ୟ ଗୁଣର ଆସ୍ଥାନ । ମସ୍ତିଷ୍କ ତର୍କ ଏବଂ ପ୍ରମାଣର ଆସ୍ଥାନ ହୋଇଥିବାବେଳେ ହୃଦୟ ହେଉଛି ଭାବପ୍ରବଣତା, ଆବେଗ, ଦୟା, ପ୍ରେମ ଓ କରୁଣା ପରି କୋମଳ ଭାବର ଆସ୍ଥାନ । ପ୍ରକୃତ ବୁଦ୍ଧିର ଆସ୍ଥାନ ହୃଦୟ-କନ୍ଦରରେ ବୋଲି ପ୍ରାଚୀନ କାଳର ମହାନ୍ ଋଷିମାନେ ବିଚାର କରୁଥିଲେ । ସେମାନେ ଏପରି କହିବାର ଅର୍ଥ କେବଳ ଏତିକି ଯେ, ମଣିଷଠାରେ ଥିବା ଯୁକ୍ତି ଓ ତର୍କ କ୍ଷମତା ଏକ ଉଲ୍ଲସିତ ପ୍ରେମ, ପ୍ରଫୁଲ୍ଲ ସହନଶୀଳତା ଏବଂ ଦୟାର୍ଦ୍ର ଧୈର୍ଯ୍ୟର ପରିବେଶରେ ହିଁ ଉଦ୍ଭବ ହୋଇଥାଏ ।

ହୃଦୟରେ ଏପରି ଗୁଣ ନ ଥାଇ ଶୁଦ୍ଧ ବୁଦ୍ଧିକୁ କେବଳ ପ୍ରାଚ୍ୟରେ ନୁହେଁ, ପାଶ୍ଚାତ୍ୟରେ ମଧ୍ୟ ଏକ ନୀଚ ଏବଂ ଘାତକ ସାଧନ ଭାବରେ ବିଚାର କରାଯାଏ ।

ଏପରି ଏକ ଶୁଦ୍ଧବୁଦ୍ଧି, ତଥ୍ୟ ଅନୁସନ୍ଧିତ୍ସୁ ନକାରାତ୍ମକ ଏବଂ ଅସଂସ୍କୃତ ବୁଦ୍ଧି ତା'ର ସମସ୍ତ କ୍ରୁର ହିଂସାରେ ଆତ୍ମଘାତୀ ଜହର ସମାନ ହୋଇଥାଏ ।

ସାପର ବିଷ ସାପକୁ ମାରି ନ ପାରିବାର କାରଣ ହେଲା, ଏହା ବିଷଗ୍ରନ୍ଥି ନାମକ ଥଳୀରେ ଭଲ ଭାବରେ ରକ୍ଷା କରାଯାଇଥାଏ । ସାପ କାମୁଡ଼ିବା ଯାଗାରେ ଦାନ୍ତବାଟେ ସେହି ଯାଗାରେ ଏହା ପ୍ରବେଶ କରିଥାଏ । ନଚେତ୍ ସେହି ବିଷ ହିଁ ସାପକୁ ମାରିଦେଇ ପାରନ୍ତା । ସେହିପରି, ମଣିଷଠାରେ ଥିବା ସୂକ୍ଷ୍ମ ବିବେଚନାକାରୀ ଗୁଣ- ଶୁଦ୍ଧ ପ୍ରମାଣ ଏବଂ ତାର୍କିକ ଗୁଣ ହୃଦୟ ଗ୍ରନ୍ଥିରେ ଭଲ ଭାବରେ ସୁରକ୍ଷିତ ହୋଇ ରହି ନ ଥିଲେ, ତା'ର ନିଜ ବୁଦ୍ଧି ତାକୁ ଧ୍ୱଂସ କରନ୍ତା ।

ବର୍ତ୍ତମାନ ଦୁନିଆଁରେ ହେଉଥିବା ସମସ୍ତ ଅଶୁଭ କଥାର ଏହା ହିଁ ହେଉଛି କାରଣ। ହୃଦୟର ମୂଲ୍ୟ ବିନିମୟରେ ମସ୍ତିଷ୍କ ବେଶୀ ବୃଦ୍ଧି ପାଇଛି ଏବଂ କେବଳ ବୁଦ୍ଧି ଦ୍ୱାରା କରାଯାଉଥିବା ଯୋଜନାରେ ଆମେ ଘରୋଇ, ସାମାଜିକ, ସାଂସ୍କୃତିକ ଏବଂ ଅର୍ଥନୈତିକ କ୍ଷେତ୍ରରେ ନିଜକୁ ଖାପ ଖୁଆଇବାର ଚେଷ୍ଟା କରୁ । ହୃଦୟ-ବିହୀନ ହୋଇ ଆମେ କେବଳ ବୁଦ୍ଧିରେ ବଞ୍ଚିବାକୁ ଚାହୁଁ ଏବଂ ସେଥିପାଇଁ, ଯେତେ ଚେଷ୍ଟା କଲେ ମଧ୍ୟ ଆମେ ଆନନ୍ଦରେ ରହି ପାରିବା ଭଳି, ଶାନ୍ତି ଏବଂ ବୁଝାମଣାର ବାତାବରଣରେ ମହାନ୍ ସଂସ୍କୃତିରେ ପ୍ରତିପାଳିତ ହେବା ଭଳି ଏକ ଆଦର୍ଶ ଢାଞ୍ଚା ପାଇପାରୁ ନାହୁଁ ।

ଶୁଦ୍ଧ ଚୈତନ୍ୟ, ହୃଦୟ-କନ୍ଦରରେ ରହୁଥିବା କଥା ଗୌଡ଼ପାଦ ଏଠାରେ ଦେଖାଇ ଦେଇଛନ୍ତି । ଏହାର ଅର୍ଥ ହେଲା ହୃଦୟ କନ୍ଦରରେ ପ୍ରବେଶ କଲେ ଆମେ ଏହାଙ୍କୁ ଅନୁଭବ କରି ପାରିବା ।

ଏହି ତିନୋଟି ଅହଂର ତିନୋଟି ବାସସ୍ଥାନ ସମ୍ବନ୍ଧରେ ବିଶଦ ବ୍ୟାଖ୍ୟା କେବଳ ଧ୍ୟାନ ପାଇଁ ହିଁ କରାଯାଇଛି। ଧ୍ୟାନ କରିବା ପାଇଁ ପ୍ରତ୍ୟେକ ନୂତନ ସାଧକ ନିଶ୍ଚିତ ଭାବରେ ଏକ ନିର୍ଦ୍ଦିଷ୍ଟ ସ୍ଥାନ ଚାହିଁବେ ।

**ବିଶ୍ୱୋ ହି ସ୍ଥୂଳଭୁଙ୍‌ନିତ୍ୟଂ ତୈଜସଃ ପ୍ରବିବିକ୍ତଭୁକ୍ ।**
**ଆନନ୍ଦଭୁକ୍ତଥା ପ୍ରାଜ୍ଞସ୍ତ୍ରିଧା ଭୋଗଂ ନିବୋଧତ ॥୩॥**

ବିଶ୍ୱଃ ହି = ଅବଶ୍ୟ ବିଶ୍ୱ (ଅଟେ), ସ୍ଥୂଳ-ଭୁକ୍ = ସ୍ଥୂଳର ଅନୁଭବ କର୍ତ୍ତା, ନିତ୍ୟମ୍ = ନିରନ୍ତର, ତୈଜସଃ = ତୈଜସ, ପ୍ରବିବିକ୍ତ-ଭୁକ୍ = ସୂକ୍ଷ୍ମର ଅନୁଭବ କର୍ତ୍ତା, ଆନନ୍ଦ-ଭୁକ୍ = ଆନନ୍ଦର ଅନୁଭବ କର୍ତ୍ତା, ତଥା = ଏବଂ, ପ୍ରାଜ୍ଞଃ = ପ୍ରାଜ୍ଞ(ଅଟେ) ତ୍ରିଧା = ତିନି ପ୍ରକାର, ଭୋଗମ୍ = ଅନୁଭୂତି, ନିବୋଧତ = ଜାଣ ।

*ଏହି ସବୁକୁ ତିନି ପ୍ରକାର ଅନୁଭୂତି ଭାବରେ ଜାଣ, ବିଶ୍ୱ ବରାବର ସ୍ଥୂଳ ଇନ୍ଦ୍ରିୟ ବିଷୟର ଅନୁଭବ କରେ, ତୈଜସ ସୂକ୍ଷ୍ମ ଜଗତର ଉପଭୋଗ କରେ ଏବଂ ପ୍ରାଜ୍ଞ ଆନନ୍ଦମୟ ଜଗତର ॥୩॥*

**ସ୍ଥୂଳଂ ତର୍ପୟତେ ବିଶ୍ୱଂ ପ୍ରବିବିକ୍ତଂ ତୁ ତୈଜସମ୍ ।**
**ଆନନ୍ଦଶ୍ଚ ତଥା ପ୍ରାଜ୍ଞଂ ତ୍ରିଧା ତୃପ୍ତିଂ ନିବୋଧତ ॥୪॥**

ସ୍ଥୂଳମ୍ ତର୍ପୟତେ = ସ୍ଥୂଳ ବିଷୟ ସନ୍ତୁଷ୍ଟ କରେ, ବିଶ୍ୱମ୍ = ବିଶ୍ୱ, ପ୍ରବିବିକ୍ତମ୍ = ସୂକ୍ଷ୍ମ, ତୁ = ଯେହେତୁ, ପକ୍ଷାନ୍ତରେ; ତୈଜସମ୍ = ତୈଜସ, ଆନନ୍ଦଃ = ଆନନ୍ଦ, ତଥା ଚ = ଏବଂ ସେହିପରି, ପ୍ରାଜ୍ଞଂ = ପ୍ରାଜ୍ଞ, ତ୍ରିଧା = ତିନିପ୍ରକାର ହେବାକୁ, ତୃପ୍ତିମ୍ = ତୃପ୍ତି, ସନ୍ତୋଷ; ନିବୋଧତ = ଜାଣ।

*ସ୍ଥୂଳ ବିଷୟ ବିଶ୍ୱକୁ ତୃପ୍ତି ଦିଏ, ସୂକ୍ଷ୍ମ ତୈଜସକୁ ସନ୍ତୋଷ ଦିଏ ଓ ସେହିପରି ଆନନ୍ଦ ପ୍ରାଜ୍ଞକୁ ସନ୍ତୁଷ୍ଟ କରେ । ତେଣୁ ଆନନ୍ଦ ହେଉଛି ତ୍ରିବିଧ ॥୪॥*

ଅନୁରୂପ ଆଲୋଚନାରେ ଏ ଦୁଇ ଶ୍ଳୋକରେ ଥିବା ଅବଧାରଣା ପୂର୍ବରୁ ବିଶଦ ଭାବରେ ଆଲୋଚିତ ହୋଇଛି । ଉପନିଷଦ୍‌ର ସମସ୍ତ ବୋଧଶକ୍ତିକୁ ବ୍ୟାପକ କରିବାରେ ସହଜ କରିବା ପାଇଁ ଏହି ଅଧ୍ୟାୟର ଉପକ୍ରମଣିକାରେ ଆମେ ଗୋଟିଏ ସଂକ୍ଷିପ୍ତ ସାରଣୀ ଦେଇଛୁ । ସେଥିରେ ଚୈତନ୍ୟର ତିନି ଅବସ୍ଥାର ଭୋଗ ତୃପ୍ତି ଏବଂ ଧ୍ୟାନର ସ୍ଥାନ ଇତ୍ୟାଦିକୁ ଶ୍ରେଣୀବଦ୍ଧ କରାଯାଇଛି । ଶଙ୍କରାଚାର୍ଯ୍ୟ ନିଜେ କୌଣସି ଭାଷ୍ୟ ଦେଇ ନାହାନ୍ତି ଏବଂ ସେଥିପାଇଁ ତିନୋଟିଯାକ ପଦର ବ୍ୟାଖ୍ୟା କରାଯାଇଛି ବୋଲି କହି ଛାଡ଼ି ଦେଇଛନ୍ତି ।

**ତ୍ରିଷୁ ଧାମସୁ ଯଦ୍‌ଭୋଜ୍ୟଂ ଭୋକ୍ତା ଯଶ୍ଚ ପ୍ରକୀର୍ତିତଃ ।**
**ବେଦୈତଦୁଭୟଂ ଯସ୍ତୁ, ସ ଭୁଞ୍ଜାନୋ ନ ଲିପ୍ୟତେ ॥୫॥**

ତ୍ରିଷୁ ଧାମସୁ = ଚୈତନ୍ୟର ତିନୋଟି ସ୍ତରରେ, ଯତ୍-ଭୋଜ୍ୟମ୍ = ତାହା (ଯାହା) ଭୋଗ କରାଯିବ, ଭୋକ୍ତା = ଭୋଗ କର୍ତ୍ତା, ଚ = ଏବଂ, ଯଃ ପ୍ରକୀର୍ତିତଃ = ଯାହା ପରିଚିତ, ବେଦ = ଜାଣେ, ଉଭୟମ୍ ଏତତ୍ = ସେ ଦୁହେଁ, ଯଃ = ଯିଏ, ତୁ = ପ୍ରକୃତରେ, ସଃ = ସେହି (ଲୋକ), ଭୁଞ୍ଜାନଃ = ଭୋଗ କରୁଥିବା ବେଳେ, ନ = ନୁହେଁ, ଲିପ୍ୟତେ = ପ୍ରଭାବିତ ହୁଏ ।

*ଚୈତନ୍ୟର ତିନିଟି ଅବସ୍ଥା ସହିତ ସଂଶ୍ଳିଷ୍ଟ, ଉଭୟ ଅନୁଭବୀ ଏବଂ ଅନୁଭୂତକୁ ଯିଏ ଜାଣେ, ସେ ତିନୋଟି ଅବସ୍ଥା ସମ୍ବନ୍ଧୀୟ ବିଷୟକୁ ଅନୁଭବ (ଭୋଗ) କରୁଥିବା ବେଳେ ମଧ୍ୟ ଆଦୌ ପ୍ରଭାବିତ ହୁଏ ନାହିଁ ॥୫॥*

ଉପନିଷଦ୍ ବ୍ୟାଖ୍ୟା କରିଥିବା ତିନୋଟି ଆତ୍ମାର କେବଳ ବୌଦ୍ଧିକ ଅବବୋଧ କିମ୍ବା ପୁସ୍ତକୀୟ ଜ୍ଞାନ ଆମକୁ ଏପରି ପୂର୍ଣ୍ଣାଙ୍ଗ ଅବସ୍ଥାରେ ପହଞ୍ଚାଇ ଦେବ ନାହିଁ, ଯେଉଁଠାରେ କି ଆମେ କର୍ମ ଦ୍ୱାରା ବା ଜଗତର ସସୀମ ଅନୁଭୂତି ଦ୍ୱାରା ଅସ୍ପଷ୍ଟ ହୋଇ ରହିବା। ଉଦାହରଣ ସ୍ୱରୂପ, ତୁମେ ସମସ୍ତେ ଉପନିଷଦ୍‌ର ବକ୍ତବ୍ୟ ଶୁଣିଛ ଏବଂ ବୁଝିଛ। ତୁମେ କେବଳ ଶୁଣିଛ ବୋଲି ଜୀବନର ସମସ୍ତ ଅବସ୍ଥାରେ ଏକ ପ୍ରଶାନ୍ତ ସମଭାବତ୍ୱ ଅନୁଭବ କରି ପାରିବ ନାହିଁ। ଧ୍ୟାନ ମାଧ୍ୟମରେ ଅନୁଭୂତି ଲାଭ କରି ସ୍ୱୟଂକୁ ଆନନ୍ଦମୟ ବୋଲି ହୃଦୟଙ୍ଗମ କରି ବୁଝିବାକୁ ହେବ । ରନ୍ଧନ ପ୍ରଣାଳୀର ବହିଟିଏ ପଢିଲେ କ୍ଷୁଧାର ଉପଶମ ହେବ ନାହିଁ ।

ତେଣୁ, ଜାଗ୍ରତ, ସ୍ୱପ୍ନ ଏବଂ ସୁଷୁପ୍ତି ଅବସ୍ଥାରେ ତିନି ଅହଂ(ଜୀବ)ର ଖେଳ ଆମେ ବୁଝି ପାରିଛୁ । ସେମାନଙ୍କ ପଛରେ ଥିବା ସତ୍ୟ, ଅର୍ଥାତ୍ ଶୁଦ୍ଧ ଚୈତନ୍ୟ ବା ଆତ୍ମାଙ୍କ ବ୍ୟତୀତ ଏ ତିନୋଟି କାମ କରିପାରିବେ ନାହିଁ ବୋଲି ଠିକ୍ ଭାବରେ ବୁଝି ପାରିଲେ ଏବଂ ଆତ୍ମା ଆମର ସ୍ୱରୂପ ବୋଲି ସମାଧି ଅବସ୍ଥାର ବାସ୍ତବ ଅନୁଭୂତିରେ ହୃଦୟଙ୍ଗମ କଲେ, ତାପରଠାରୁ ତିନୋଟି ସ୍ତରର ଅନୁଭୂତି ଆମକୁ ଦୁଃଖ ବା ସୁଖରେ ଜଡ଼ିତ କରି ପାରିବେ ନାହିଁ ।

ଅସୀମଙ୍କୁ ସସୀମ ଉଦାହରଣ ଦ୍ୱାରା ନିର୍ଦ୍ଦେଶ କରିବା ପ୍ରକୃତରେ ଏକ ନିରର୍ଥକ ପ୍ରଚେଷ୍ଟା ହେବ ଏବଂ ନିଶ୍ଚିତଭାବରେ ନୈରାଶ୍ୟଜନକ । କିନ୍ତୁ ତଥାପି ଯଦି ଏପରି ଏକ ଉଦାହରଣ ଦିଆଯାଏ ଯେଉଁଠାରେ ଆମେ ଅନୁଭବ କରୁଥିବା ଅବସ୍ଥାରେ ମଧ୍ୟ

ଅନୁଭୂତି ସହିତ ଜଡିତ ହୋଇପଡୁ ନାହେଁ, ତେବେ ସ୍ୱପ୍ନାବସ୍ଥା କଥା ବିଚାରକୁ ନେବା। ଏହି ଅବସ୍ଥାରେ ଆମେ ନିଜର ଜାଗ୍ରତ ଅହଂ ବିଷୟରେ ପୂର୍ଣ୍ଣ ସଚେତନ ଥାଉ। ମନେକର ମୁଁ ଗୋଟିଏ ସ୍ୱପ୍ନ ଦେଖିବି ଏବଂ ମୋର ଜାଗ୍ରତ ଅବସ୍ଥାର କଥା ଭୂଲି ନ ଯାଇ ସ୍ୱପ୍ନ ଅନୁଭୂତିରେ ବାସ କରିବି । ତାହାହେଲେ ସ୍ୱପ୍ନରେ ଯାହାସବୁ ଅନୁଭୂତି ହେବ, ସେ ସବୁ ମୋତେ ସ୍ପର୍ଶ କରିପାରିବ ନାହିଁ । ମୋତେ ରାଜା କରାଯାଇଛି ବୋଲି ମୁଁ ହୁଏତ ସ୍ୱପ୍ନ ଦେଖୁଥାଇପାରେ, ଏହା ମୋ ମୁହଁରେ ଆନନ୍ଦର ଟିକିଏ ହେଲେ ହସ ଫୁଟାଇ ପାରିବ ନାହିଁ । ଗୋଟିଏ ସିଂହ ମୋତେ ଗୋଡେଇଛି ବୋଲି ସ୍ୱପ୍ନରେ ମୁଁ ହୁଏତ ଦେଖିପାରେ, କିନ୍ତୁ ସେ ମୋ ଉପରକୁ ଡେଇଁଲେ ବି ମୁଁ ଇଞ୍ଚେ ହେଲେ ଘୁଞ୍ଚିବି ନାହିଁ, କାରଣ ସିଂହଟି ମୋର ମନ ଦ୍ୱାରା ସୃଷ୍ଟ ବୋଲି ମୁଁ (ଜାଗ୍ରତ ଅହଂ) ଭଲଭାବେ ଜାଣେ।

ହଲ୍‌ରେ ଦେଖୁଥିବା ସିନେମା ହେବ ଆଉ ଗୋଟିଏ ବଳିଷ୍ଠ ଉଦାହରଣ । କାହାଣୀଟି ଦୁଃଖଦ ହେଉ ବା ସୁଖଦ, ଆମେ ସେଥିରେ ଅନାସକ୍ତ ରହି ହୁଏତ ଦେଖି ଚାଲିବା । ଚିତ୍ରଟି ନୃଶଂସ ହତ୍ୟା ଦେଖାଉଥିଲେ ମଧ୍ୟ, ଜାଗ୍ରତ ଅବସ୍ଥାରେ ରାସ୍ତା କଡ଼ରେ ପ୍ରକୃତରେ ଗୋଟିଏ ହତ୍ୟାକାଣ୍ଡ ଦେଖିବା ପରି ଆମେ ଭାବପ୍ରବଣ ହେବା ନାହିଁ । ଏହାର କାରଣ ହେଲା ହଲ୍‌ରେ ଆମେ ପୂରା ସଚେତନ ଯେ, ଛବିରେ ଯାହା ଦେଖାଯାଉଛି, ତାହା ଆମର ମନୋରଞ୍ଜନ ପାଇଁ ଏବଂ ହତ୍ୟାର ଦୃଶ୍ୟ ସହିତ ଆମେ ପ୍ରକୃତରେ ସଂଶ୍ଳିଷ୍ଟ ନୁହେଁ। ଅନ୍ୟପକ୍ଷରେ, ତୁମ ପାଖେ ବସିଥିବା ତୁମର ସନ୍ତାନ ତା'ର ବ୍ୟକ୍ତିଗତ ପରିଚୟ ଭୁଲିଯାଇ ଦୁଃଖ ସହିତ ତାଦାତ୍ମ୍ୟ କରି ଗୋଟିଏ ପ୍ରକୃତ ହତ୍ୟାକାଣ୍ଡର କଷ୍ଟ ଅନୁଭବ କରିବ ।

ତେଣୁ ପ୍ରାଚୀନ କାଳର ମହାନ୍ ଋଷିମାନେ କହିଛନ୍ତି ଯେ, ଆତ୍ମାନୁଭୂତି ପରେ ଆମ ନିଜ ଭିତରେ (ଆତ୍ମାରେ) ମୁଖ୍ୟ କେନ୍ଦ୍ରଟିର ଅନୁଭବ କରି ତାକୁ ବୁଝି ସାରିବା ପରେ, ଚେତନାର ତିନୋଟି ସ୍ତର – ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତିରେ ଜୀବନର ଖେଳ ଖେଳିବାକୁ ଆମେ ଫେରିଗଲେ ମଧ୍ୟ, ଆମେ ହୁଏତ ଭଲ ଏବଂ ମନ୍ଦର ଅନୁଭୂତି ଲାଭ କରି ପାରିବା, କିନ୍ତୁ ଆମ ଭିତରେ ଥିବା ବ୍ୟକ୍ତି ସତ୍ତାଟି ଏମାନଙ୍କ ମଧ୍ୟରୁ କାହାରି ସହିତ ନିଜକୁ ଜଡ଼ିତ କରିବ ନାହିଁ ।

ଏପରିକି ଶ୍ରୀ ରାମକୃଷ୍ଣ ପରମହଂସଙ୍କର ଗଳାର କ୍ୟାନସର ମଧ୍ୟ ବୈଶ୍ୱାନରର ଯନ୍ତ୍ରଣା ବ୍ୟତୀତ ତାଙ୍କ ପାଇଁ ଅନ୍ୟ କିଛି ନ ଥିଲା । ଯୀଶୁଙ୍କର ଦୁଃଖ ନିଜପାଇଁ ନୁହଁ ବରଂ ଏହା ଯୀଶୁଙ୍କ ହୃଦୟର ବେଦନା ଯୋଗୁଁ ।

ଏହିପରି ଭାବରେ ଜଣେ ନିଜଠାରୁ ପୃଥକ୍ ହେଲେ ସମଗ୍ର ଜଗତକୁ ଦେଖି ପାରିବ । ସଂପୂର୍ଣ୍ଣ ନିରାସକ୍ତ (ବୈରାଗ୍ୟରେ) ହୋଇ ତା'ରି ଠାରେ, ତା'ଦ୍ୱାରା, ତା'ରି ମନୋରଞ୍ଜନ ପାଇଁ ହେଉଥିବା ମହାନ୍ ତାମସା ତା'କୁ କିପରି ପ୍ରଭାବିତ କରୁଛି ଦେଖି ପାରିବ । ଅଖଣ୍ଡ ପ୍ରଶାନ୍ତି ଏବଂ ଶାନ୍ତିର ଏହି ଅବଧାରଣା "ବିଷୟର ଅନୁଭୂତିରେ ମଧ୍ୟ ପ୍ରଭାବିତ ହୁଏ ନାହିଁ" ବୋଲି ଉକ୍ତିରେ ଏଠାରେ ଦର୍ଶାଯାଇଛି ।

**ପ୍ରଭବଃ ସର୍ବଭାବାନାଂ ସତାମିତି ବିନିଶ୍ଚୟଃ ।**

**ସର୍ବଂ ଜନୟତି ପ୍ରାଣଶ୍ଚେତୋଂଽଶୂନ୍‌ପୁରୁଷଃ ପୃଥକ୍ ॥୬॥**

ପ୍ରଭବଃ = ଜନ୍ମ, ସୃଷ୍ଟି(ଅଟେ), ସର୍ବଭାବାନାଂ = ସମସ୍ତ ବସ୍ତୁ ପାଇଁ, ସତାମ୍ = ଯାହାର ସ୍ଥିତି ଅଛି, ଇତି = ଏହିପରି, ବିନିଶ୍ଚୟଃ = ଭଲଭାବରେ ପ୍ରତିଷ୍ଠିତ, ସର୍ବମ୍ = ସବୁ କିଛି, ପ୍ରାଣଃ ଜନୟତି = ଅବ୍ୟକ୍ତ ସୃଷ୍ଟି କରେ, ଚେତଃ ଅଂଶୁନ୍ = ସଚେତନ ଜୀବ, ପୁରୁଷଃ = ପୁରୁଷ, ପୃଥକ୍ = ଭିନ୍ନ ।

*ବିଦ୍ୟମାନ (ଅବିଦ୍ୟମାନ ନୁହେଁ) ଥିବା କୌଣସି କାରଣରୁ ହିଁ କେବଳ କାର୍ଯ୍ୟ ଭାବରେ କିଛି ସୃଷ୍ଟି ହୋଇ ପାରେ - ଏହା ସୁପ୍ରତିଷ୍ଠିତ । ପ୍ରାଣ ସମସ୍ତ ନିର୍ଜୀବ ପଦାର୍ଥକୁ ବ୍ୟକ୍ତ କରେ; ପୁରୁଷ ଚେତନ ଜୀବଙ୍କୁ, ଅହଂକୁ ବିଭିନ୍ନ ରୂପରେ ପୃଥକ୍ ଭାବରେ ସୃଷ୍ଟି କରେ ॥୬॥*

ସୃଷ୍ଟିର ଅବଧାରଣା ବୁଝାଇବା ପାଇଁ ଗୌଡ଼ପାଦ ଏଠାରେ ବାଟ ହୁଡି ଯାଇଛନ୍ତି। ଯେତେବେଳେ ଆମେ ଆତ୍ମା ବିଷୟରେ ଜିଜ୍ଞାସା ଆରମ୍ଭ କଲେ, ପ୍ରଥମେ ନିଶ୍ଚିତ ହେବା ଉଚିତ୍ ଯେ, ବିଷୟ ଜଗତ ହେଉଛି ଏକ ରୂପକଥା । ଆତ୍ମା ମନର ପ୍ରିଜିମ୍ ଦେଇ ଗତି କଲେ ଚୈତନ୍ୟର ଯେଉଁ ବିକାର ସୃଷ୍ଟି ହୋଇଥାଏ, ଏହା ସେହିଥିରୁ ସୃଷ୍ଟ। ଏହି ଚିତ୍ତ ଚାଞ୍ଚଲ୍ୟ ଥିବା ପର୍ଯ୍ୟନ୍ତ ମିଥ୍ୟା ଜଗତରୁ ଆମେ ସମଗ୍ର ଧ୍ୟାନ ହଟାଇ ନେଇ ପାରିବା ନାହିଁ ଏବଂ ଆମ ଭିତରେ ଥିବା ଆତ୍ମାର ବାସ୍ତବ ଜଗତର ଜିଜ୍ଞାସା ପାଇଁ ଏହି ଧ୍ୟାନର ପ୍ରୟୋଗ କରି ପାରିବା ନାହିଁ ।

ତେଣୁ, ଏହି ବିଷୟ ଜଗତ କିପରି, କାହିଁକି ଏବଂ କେଉଁ କାରଣରୁ ହେଲା ବୋଲି ପ୍ରତ୍ୟେକ ମହାନ୍ ଋଷିଙ୍କୁ ସର୍ବପ୍ରଥମେ ଗୋଟିଏ ବ୍ୟାଖ୍ୟା ଦେବାର ଦରକାର ହେଲା। ଶାସ୍ତ୍ରମାନଙ୍କର ଏହି ପରମ୍ପରାଗତ ଉପାୟର ଅବଲମ୍ବନ କରି ଗୌଡ଼ପାଦ ମଧ୍ୟ, ଅଳ୍ପ କେତୋଟି ଶ୍ଳୋକରେ ବିଷୟ ଜଗତ ଏବଂ ତାହାର ସୃଷ୍ଟିର ବ୍ୟାଖ୍ୟାରେ ପୂର୍ବର

ଗୁରୁମାନଙ୍କ ଦ୍ୱାରା ଦିଆ ଯାଇଥିବା ବିଭିନ୍ନ ବର୍ଣ୍ଣନାର ସାର-ସଂକ୍ଷେପ ଦେଇ ଏଠାରେ ନିଜର ଅଭିଳାଷ ପୂର୍ଣ୍ଣ କରିଛନ୍ତି।

ଈଶ୍ୱର ହେଉଛନ୍ତି ଉଭୟ ସକ୍ରିୟତା ଏବଂ ଚେତନାର ଏକ ତେଜସ୍କର ଶକ୍ତି । ଆମେ ଯଦି ସେପରି କହିବା, ତେବେ ସତ୍ୟଙ୍କର କ୍ରିୟାଶୀଳ ଦିଗକୁ ପ୍ରାଣ କୁହାଯିବ ଏବଂ ଚେତନାଶୀଳ ଦିଗକୁ ଚୈତନ୍ୟ । ଚତୁର୍ଦ୍ଦିଗରେ ଆମେ ଦେଖିପାରୁଥିବା ଜଗତ ଉଭୟ ଜଡ଼ ପଦାର୍ଥ ଏବଂ ଚେତନ ସତ୍ତାକୁ ନେଇ ଗଠିତ । ପରିଚ୍ଛିନ୍ନ ଅନୁଭୂତିରେ ଆମେ ଜାଣୁ ଯେ, ଦୁଇଟି ଭିନ୍ନପ୍ରକାର କାର୍ଯ୍ୟ ଥିଲେ ଏହାର ଦୁଇଟି ଭିନ୍ନ ସ୍ପଷ୍ଟ କାରଣ ଥିବ। ଏକ ଏବଂ ଅଭିନ୍ନ କାରଣରୁ ଦୁଇଟି ବିଭିନ୍ନ କାର୍ଯ୍ୟ ହୋଇ ପାରିବ ନାହିଁ । ସଚେତନ ଏବଂ ଜଡ଼ ଭିତରେ ପ୍ରଭେଦ ଥିବାରୁ ଏବଂ ସେମାନେ ବିପରୀତ (ଧର୍ମୀ) ହୋଇଥିବାରୁ ଉଭୟଙ୍କ ପାଇଁ ଦୁଇଟି ସ୍ପଷ୍ଟ କାରଣ ଥିବ ।

ସେହି କାରଣ ଦୁଇଟି କଣ ହୋଇପାରେ ବୋଲି ଗୌଡ଼ପାଦ ବର୍ତ୍ତମାନ ବ୍ୟାଖ୍ୟା କରିବାର ଚେଷ୍ଟା କରୁଛନ୍ତି । ସେ କହୁଛନ୍ତି ଯେ, ସତ୍ୟଙ୍କର ଚେତନାଶୀଳ ଦିଗ(ପୁରୁଷ)ରୁ ସମଗ୍ର ସଚେତନ ଜଗତ ଆସିଥିବାବେଳେ ସତ୍ୟଙ୍କର କ୍ରିୟାଶୀଳ ଦିଗ(ପ୍ରାଣ)ରୁ ସମସ୍ତ ଜଡ଼ ପଦାର୍ଥ ଆସିଛନ୍ତି ।

**ବିଭୂତିଂ ପ୍ରସବଂ ତ୍ୱନ୍ୟେ ମନ୍ୟନ୍ତେ ସୃଷ୍ଟିଚିନ୍ତକାଃ।**

**ସ୍ୱପ୍ନମାୟାସରୂପେତି ସୃଷ୍ଟିରନ୍ୟୈର୍ବିକଳ୍ପିତା ॥୭॥**

ବିଭୂତି = (ଭଗବାନଙ୍କର) ବିଭୂତି, ପ୍ରସବମ୍ = ସୃଷ୍ଟି, ତୁ = କିନ୍ତୁ, ଅନ୍ୟେ = ଅନ୍ୟ କେହି, ମନ୍ୟନ୍ତେ = ବିଚାର କରନ୍ତି, ଗ୍ରହଣ କରନ୍ତି, ସୃଷ୍ଟି-ଚିନ୍ତକାଃ = ସୃଷ୍ଟିର ଚିନ୍ତକ ମାନେ, ସ୍ୱପ୍ନ-ମାୟା-ସ୍ୱରୂପା = ସ୍ୱପ୍ନ ବା କୁହୁକ ସହିତ ତୁଳନା କରାଯାଇ ପାରିବ, ଇତି = ହେବାକୁ, ସୃଷ୍ଟିଃ = ସୃଷ୍ଟି, ଅନ୍ୟୈ = ଅନ୍ୟମାନଙ୍କ ଦ୍ୱାରା, ବିକଳ୍ପିତା = ବିଚାର କରାଯାଏ ।

*ଜଗତର ସ୍ୱରୂପ ସ୍ୱପ୍ନ ବା ମାୟାର ସ୍ୱଭାବ ଭଳି ବୋଲି କେତେଜଣ ଭାବୁଥିବାବେଳେ, ଏହା ଭଗବାନଙ୍କର ନିଜର ଅତିମାନବୀୟ ଶକ୍ତିର ପ୍ରକ୍ଷେପଣ ବୋଲି କେତେକ ସୃଷ୍ଟିବାଦୀ ବିଶ୍ୱାସ କରନ୍ତି ॥୭॥*

ଆମର ଦର୍ଶନ ସାହିତ୍ୟରେ ଦିଆ ଯାଇଥିବା ନାନାପ୍ରକାରର ସୃଷ୍ଟି-ସମ୍ବନ୍ଧୀୟ ସିଦ୍ଧାନ୍ତର ଏପରି ଭାବରେ ମୂଲ୍ୟ ନିରୂପଣ କରି ଗୌଡ଼ପାଦ ପ୍ରଥମ ପଂକ୍ତିରୁ ହିଁ ଇଙ୍ଗିତ ଦେଇଛନ୍ତି ଯେ, ବ୍ୟକ୍ତିଗତଭାବେ ସୃଷ୍ଟି ସମ୍ବନ୍ଧରେ ସେ ଆଦୌ ବିଶ୍ୱାସ କରନ୍ତି ନାହିଁ ।

ତାଙ୍କ ମତରେ ପରମ ସତ୍ୟ ହେଉଛନ୍ତି ଅଜାତ ଏବଂ ଭଗବାନଙ୍କ ଦ୍ୱାରା ସୃଷ୍ଟ- 'ସୃଷ୍ଟି ବା ଜଗତ' ବୋଲି କେବେ କିଛି ନଥିଲା । ଆମେ ଯେଉଁ ବିଷୟ-ଜଗତର ପରିଚୟ ପାଉ, ତାହା ଆମଦ୍ୱାରା ନିର୍ମିତ ଏକ ମାନସିକ ପ୍ରକ୍ଷେପଣ ବ୍ୟତୀତ ଅନ୍ୟ କିଛି ନୁହେଁ । ଏହାକୁ ଅଜାତବାଦ ସିଦ୍ଧାନ୍ତ କୁହାଯାଏ । ପ୍ରାଚୀନ ବେଦାନ୍ତର ମୁଖ୍ୟତଃ ପ୍ରତିନିଧିତ୍ୱ କରୁଥିବା ମାଣ୍ଡୁକ୍ୟ କାରିକା ଓ ଯୋଗବାଶିଷ୍ଟ ଅଜାତବାଦ ସିଦ୍ଧାନ୍ତରେ ବିଶ୍ୱାସ କରେ । ବିଶେଷ ଭାବେ ପ୍ରତିନିଧିତ୍ୱ କରୁଥିବା ଶ୍ରୀ ଶଙ୍କରାଚାର୍ଯ୍ୟ ଭୌତିକ ଜଗତର ବସ୍ତୁ ଓ ସତ୍ତାକୁ ଆପେକ୍ଷିକ ବା ତୁଳନାତ୍ମକ ବାସ୍ତବତା (ସତ୍ୟତା)ପ୍ରଦାନ କରିଛନ୍ତି । ସିଦ୍ଧାନ୍ତ ଦୁଇଟିକୁ ଆମେ ଭଲଭାବେ ବୁଝି ପାରିଲେ ସେମାନଙ୍କ ମଧ୍ୟରେ କୌଣସି ମୌଳିକ ପ୍ରଭେଦ ନ ଥିବାର ଜାଣି ପାରିବା ।

ଅଜାତବାଦୀମାନେ ମଧ୍ୟ ଜଗତକୁ ଏକ ଦୀର୍ଘ ସ୍ୱପ୍ନ ଭାବରେ ବ୍ୟାଖ୍ୟା କରିଛନ୍ତି। ପରିଶେଷରେ ନିଜେ ଗୌଡ଼ପାଦ ମଧ୍ୟ, ସ୍ୱପ୍ନ ଅବସ୍ଥାର ଅନୁଭୂତି ଅପେକ୍ଷା ଜାଗ୍ରତ ଅବସ୍ଥା କୌଣସି ମତେ ଅଧିକତର ସତ୍ୟ ନୁହେଁ ବୋଲି ଯୁକ୍ତିସଙ୍ଗତ ଭାବରେ, ବିଚାରପୂର୍ବକ ପ୍ରମାଣ କରିବା ପାଇଁ ବିଶଦଭାବରେ ଉଭୟଙ୍କର ଏକ ତୁଳନାତ୍ମକ ଅଧ୍ୟୟନ କରିଥିବାର ଦେଖିବାକୁ ପାଇବା । କିନ୍ତୁ ଏଠାରେ, ଜାତବାଦୀମାନେ ଜଗତର ସୃଷ୍ଟି ନିମନ୍ତେ ଏକ ସିଦ୍ଧାନ୍ତ ଦେଖାଇ ଏହାକୁ ସ୍ୱପ୍ନ ଭାବରେ ବ୍ୟାଖ୍ୟା କଲାବେଳେ, ସ୍ୱପ୍ନ-ଜଗତ ମନର ଏକ ମାୟା ବୋଲି ବିଚାର କରନ୍ତି ନାହିଁ । ଅପରପକ୍ଷେ, ସେମାନଙ୍କ ମତରେ ସ୍ୱପ୍ନ ସ୍ୱପ୍ନାବସ୍ଥା ଥିବା ପର୍ଯ୍ୟନ୍ତ ସତ୍ୟ।

ଭାରତର ଗୋଟିଏ ଶ୍ରେଣୀର ଚିନ୍ତକମାନଙ୍କର ବିଶ୍ୱାସ ଯେ, ଆକ୍ଷରିକ ଭାବରେ ସ୍ୱପ୍ନ ହେଉଛି ସତ୍ୟ । ସେମାନଙ୍କ ମତରେ ସ୍ୱପ୍ନଦ୍ରଷ୍ଟା ସ୍ୱପ୍ନ ଦେଖୁଥିବା ବେଳେ ତାହା ସତ୍ୟ ହୋଇଥାଏ । ସେମାନଙ୍କ ମତରେ ଭ୍ରମ ଥିବା ପର୍ଯ୍ୟନ୍ତ ଜଣେ ଯାଦୁକରର କୁହୁକ ବା ଦଉଡ଼ିରେ ସାପ ଦେଖାଯିବାର ମିଥ୍ୟା ଧାରଣା ସତ୍ୟ ପ୍ରତିଭାତ ହୋଇଥାଏ । ସେମାନେ ଯୁକ୍ତି କରନ୍ତି ଯେ, ଗୋଟିଏ ଅସତ୍ୟ ଜିନିଷ ଆମର ଧାରଣା ଶକ୍ତିରେ ପଶି ଆମକୁ ବିଶ୍ୱାସ ଦିଆଇ ପାରିବ ନାହିଁ । ସେମାନଙ୍କ ମତରେ ଗୋଟିଏ ପଦାର୍ଥର ଅବଗତି ହେଲେ ଏବଂ ତା'ଦ୍ୱାରା କିଛି ଭାବନାର ଉଦ୍ରେକ ହେଲେ, ଯେତେ ସଂକ୍ଷିପ୍ତ ହେଲେ ମଧ୍ୟ ତାର ସତ୍ୟତା ରହିଛି । ଏହି ଅର୍ଥରେ, ସୃଷ୍ଟ ଜଗତ ସହିତ ସ୍ୱପ୍ନର ଏକ ସାଦୃଶ୍ୟ କିମ୍ବା ତୁଳନା ଆମେ ଏଠାରେ ଦେଖିବାକୁ ପାଇବା ।

**ଇଚ୍ଛାମାତ୍ରଂ ପ୍ରଭୋଃ ସୃଷ୍ଟିରିତି ସୃଷ୍ଟୌ ବିନିଶ୍ଚିତାଃ ।**

**କାଲାତ୍-ପ୍ରସୂତିଂ ଭୂତାନାଂ ମନ୍ୟନ୍ତେ କାଲଚିନ୍ତକାଃ ॥ ୮॥**

ଇଚ୍ଛା ମାତ୍ରମ୍ = କେବଳ ଇଚ୍ଛାଟିଏ ଯୋଗୁଁ, ପ୍ରଭୋଃ = ପ୍ରଭୂଙ୍କର, ସୃଷ୍ଟିଃ = ସୃଷ୍ଟି, ଇତି = ତାହା, ସୃଷ୍ଟୌ = ସୃଷ୍ଟିସଂକ୍ରାନ୍ତୀୟ, ବିନିଶ୍ଚିତାଃ = ନିଶ୍ଚିତ ହୋଇଥିବା, କାଲାତ୍ = କାଳ ବା ସମୟ ଯୋଗୁଁ, ପ୍ରସୂତିମ୍ ଭୂତାନାମ୍ = ଭୂତମାନଙ୍କର ସୃଷ୍ଟି, ମନ୍ୟନ୍ତେ = ବିଚାର କରେ, ବିଶ୍ୱାସ କରେ, କାଲ-ଚିନ୍ତକାଃ = ଜ୍ୟୋତିର୍ବିଜ୍ଞାନୀମାନେ ।

*ଜାତବାଦୀମାନେ କହନ୍ତି ଯେ, କେବଳ ଭଗବାନଙ୍କର ଇଚ୍ଛା ଯୋଗୁଁ ହିଁ ଏହି ବ୍ୟକ୍ତ ଜଗତ ସୃଷ୍ଟି ହୋଇଛି । ଅନ୍ୟ କେତେକ ସମୟକୁ ସତ୍ୟ ଭାବରେ ଗ୍ରହଣ କରି ଘୋଷଣା କରନ୍ତି ଯେ, ସମୟ ଯୋଗୁଁ ହିଁ ସମସ୍ତ ପଦାର୍ଥ ବ୍ୟକ୍ତ ହୋଇଛନ୍ତି ॥୮॥*

ପୃଥିବୀର ସୃଷ୍ଟି ସମ୍ବନ୍ଧରେ ସେତେବେଳେ ଅନ୍ୟ ଯାହାସବୁ ସିଦ୍ଧାନ୍ତ ଥିଲା, କାରିକାକାର ଗୋଟିଏ ପରେ ଗୋଟିଏ ସେସବୁ ଗଣନା କରି କହିଛନ୍ତି ଯେ ଭଗବାନଙ୍କର ଦୃଢ ଇଚ୍ଛା ଯୋଗୁଁ ଜଗତ ସୃଷ୍ଟି ହୋଇଛି । ଅନ୍ୟ କେତେକ ବିଶ୍ୱାସ କରନ୍ତି ଯେ ସମୟ ହେଉଛି ପ୍ରକୃତ ସତ୍ତା ଏବଂ ବହୁବିଧ ନାମ ଏବଂ ରୂପର ସୃଷ୍ଟି ସମୟ ଉପରେ ସଂପୂର୍ଣ୍ଣଭାବେ ନିର୍ଭର କରେ ।

ଗୌଡ଼ପାଦଙ୍କ ଦ୍ୱାରା ଦର୍ଶନ ଜଗତର ଏହିସବୁ ଅସ୍ଥାୟୀ ଚିନ୍ତାଧାରାକୁ ଏଠାରେ ଏକତ୍ରିତ କରାଯାଇଛି - ପରିଶେଷରେ କେବଳ ନଷ୍ଟ କରାଯିବା ପାଇଁ । ଏହା ଦ୍ୱାରା ସେ ଶୁଦ୍ଧ ବେଦାନ୍ତର ପ୍ରତିପାଦନ କରି ପାରିବାର ଆଶା କରିଛନ୍ତି । ଶିଷ୍ୟମାନଙ୍କର ମନ ଏବଂ ବୁଦ୍ଧି ଭିତରେ ବେଦାନ୍ତକୁ ପୂରାଇବା ପାଇଁ ଏହା ଏକ ନିଶ୍ଚିତ ଉପାୟ । ସେ କିପରି ଏହି ଚାତୁରୀଟି କରିପାରିଛନ୍ତି ଆମେ ପରବର୍ତ୍ତୀ ଶ୍ଳୋକରେ ଦେଖି ପାରିବା ।

**ଭୋଗାର୍ଥଂ ସୃଷ୍ଟିରିତ୍ୟନ୍ୟେ କ୍ରୀଡ଼ାର୍ଥମିତି ଚାପରେ ।**
**ଦେବସ୍ୟୈଷ ସ୍ୱଭାବୋଽୟମାପ୍ତକାମସ୍ୟ କା ସ୍ପୃହା ॥୯॥**

ଭୋଗ-ଅର୍ଥମ୍ = ଉପଭୋଗ ପାଇଁ, ସୃଷ୍ଟିଃ = ସୃଷ୍ଟି, ଇତି = ତାହା, ଅନ୍ୟେ = ଅନ୍ୟ କେହି, କ୍ରୀଡ଼ା-ଅର୍ଥମ୍ = କ୍ରୀଡ଼ା ପାଇଁ, ଇତି = ତାହା, ଚ ଅପରେ = ଏବଂ ଅନ୍ୟମାନେ(ବିଚାର କରନ୍ତି), ଦେବସ୍ୟ = ଦେବତାଙ୍କର, ଏଷଃ ଅନ୍ୟମ୍ = ଏହି (ସୃଷ୍ଟି), ସ୍ୱଭାବଃ = ସ୍ୱଭାବ, ଆପ୍ତ-କାମସ୍ୟ = ଆପ୍ତକାମୀ ଭଗବାନଙ୍କ ପାଇଁ, କା ସ୍ପୃହା = କି କାମନା ?

*ଅନ୍ୟମାନେ ଭାବନ୍ତି ଯେ, ଭଗବାନଙ୍କର ଉପଭୋଗ ପାଇଁ ଜଗତ ସୃଷ୍ଟି ହୋଇଛି । ଆହୁରି ଅନ୍ୟ କେତେକ ଏହାକୁ ଭଗବାନଙ୍କର ଏକ ଲୀଳା ବୋଲି କହନ୍ତି । କିନ୍ତୁ ଏହା ହିଁ ଆତ୍ମାଙ୍କର ସ୍ୱରୂପ, କାରଣ ଯାହାର ସମସ୍ତ କାମନା ସର୍ବଦା ପରିପୂର୍ଣ୍ଣ ହୋଇ ରହିଛି, ତା'ପାଇଁ କି କାମନା ସମ୍ଭବ ? ॥୯॥*

ଅନ୍ୟ କେତେକ ବିଶ୍ୱାସ କରନ୍ତି ଯେ, କେତେକ ଉଦ୍ଦେଶ୍ୟ ନେଇ ଜଗତ ସୃଷ୍ଟି ହୋଇଛି, ଉଦ୍ଦେଶ୍ୟ ହେଲା, ହୁଏତ ସୃଷ୍ଟିକର୍ତ୍ତା ଭଗବାନଙ୍କର ଉପଭୋଗ ପାଇଁ, କିମ୍ବା ଅନ୍ୟ ଦେବତାମାନଙ୍କର ଦିପହରିଆ ଛୁଟି ପାଇଁ । ଏହିପରି ଭାବରେ ସମୁଦାୟ ଛଅଟି ସିଦ୍ଧାନ୍ତ ବିଷୟରେ କହିବା ପରେ, ଗୌଡ଼ପାଦ ଦ୍ୱିତୀୟ ପଂକ୍ତିରେ ତାଙ୍କ ନିଜର ବ୍ୟାଖ୍ୟା ଦେଇଛନ୍ତି । ବେଦାନ୍ତ ଜଗତର ସୃଷ୍ଟି ଧାରଣାରେ ବେଦାନ୍ତ କାହିଁକି ବିଶ୍ୱାସ କରେ ନାହିଁ ତା'ର କାରଣ ଦେଇଛନ୍ତି । ତାଙ୍କ ମତରେ, ସୃଷ୍ଟି ପାଇଁ ଆମେ ଯେଉଁ ଗୋଟିକ ବ୍ୟାଖ୍ୟା ଦେଇ ପାରିବା, ତାହା ହେଲା, ଏହା ହେଉଛି ପରମାତ୍ମାଙ୍କର ସ୍ୱଭାବ ହିଁ । ନିଜର ସ୍ୱ ସ୍ୱଭାବକୁ ଛାଡ଼ି କିଛିହେଲେ କେବେ ବି ରହି ପାରିବ ନାହିଁ, ଅସୀମଙ୍କର ସ୍ୱଭାବ ହେଲା ସସୀମ ହୋଇ ଲୀଳା କରିବା ।

ଗୋଟିଏ ଅନୁରୂପତାର ଅଧ୍ୟୟନ କଲେ ଏହା ଅଧିକ ସ୍ପଷ୍ଟ ହେବ । ସମୁଦ୍ର ଦ୍ୱାରା ସମୁଦ୍ରରେ ତରଙ୍ଗର ସୃଷ୍ଟି ହୁଏ, ବୋଲି ଆମେ କହି ପାରିବା ନାହିଁ କିନ୍ତୁ ସମୁଦ୍ରରେ ତରଙ୍ଗ ରହିବା ହେଉଛି ତା'ର ସ୍ୱଭାବ। କେବଳ ତରଙ୍ଗ ହିଁ ସମୁଦ୍ର ନୁହେଁ, ଏହାର ଗଭୀରତାରେ ପୂର୍ଣ୍ଣ ଶାନ୍ତ ଏବଂ ପ୍ରଶାନ୍ତ ଭାବରେ ଅଛି ସମୁଦ୍ରର ଅଧିକାଂଶ ଜଳରାଶି । ପୁନଶ୍ଚ, ନିଆଁର ସ୍ୱରୂପ ହେଉଛି ଉତ୍ତାପ, ଉତ୍ତାପ ନ ଥିବା ନିଆଁ ଆମେ ପାଇ ପାରିବା ନାହିଁ । ସେହିପରି ମଧ୍ୟ ଦୀପ୍ତିମାନ ସତ୍ୟଙ୍କର ସ୍ୱଭାବ ହେଲା ଉଭୟ ସକ୍ରିୟତା ଏବଂ ତତସହିତ ଏହାର ଚୈତନ୍ୟ ଭାବରେ ନିଜକୁ ପ୍ରକାଶ କରିବା । ସେହି ପରିପ୍ରକାଶ ହିଁ ଜଡ଼ ପଦାର୍ଥ ଏବଂ ସଚେତନ ସତ୍ତାର ରୂପ ନିଏ ।

ସର୍ବ-ପୂର୍ଣ୍ଣାଙ୍ଗ-ସତ୍ୟ, ପରମ ସତ୍ତା କୌଣସି କାମନା ପୋଷଣ କରନ୍ତି ବୋଲି କହିହେବ ନାହିଁ । କୌଣସି ସତ୍ତା କୌଣସି ପଦାର୍ଥର ଅଭାବ ଅନୁଭବ କଲେ ତାପାଇଁ କାମନା କରିଥାଏ। ଦ୍ୱିପ୍ରହରରେ ମୁଁ ପେଟ ପୂରାଇ ଖାଇବା ପରେ କିଛି ଫଳ ଖାଇଲେ, ଠିକ୍ ସେହି ମୁହୂର୍ତ୍ତରେ ମୋତେ ଯଦି କିଏ ଭୋଜି ଖାଇବାକୁ ଡାକିବ, ତାହା ଯେତେ ସୁସ୍ୱାଦୁ ହୋଇ ଥିଲେ ମଧ୍ୟ ମୁଁ ପାଟି କରି କହିବି, 'ନା' 'ନା' ମୋ ପାଇଁ ନୁହେଁ, ମୋ ପାଇଁ ନୁହେଁ । କାରଣ ସେହି ସମୟରେ ଖାଦ୍ୟର ଅନୁପସ୍ଥିତି ଅନୁଭବ କରାଯାଉ ନ ଥିବାରୁ ସେହି ସମୟ ପାଇଁ ଖାଦ୍ୟର କୌଣସି କାମନା କରିବା ଅସମ୍ଭବ। ସେହିପରି, ଏଠାରେ ମଧ୍ୟ, ପରମସତ୍ତା ତାଙ୍କର ପରିପୂର୍ଣ୍ଣତାରେ କୌଣସି କାମନା ଅନୁଭବ କରନ୍ତି ନାହିଁ ।

ଉପନିଷଦ୍‌ର ଋଷିମାନେ କାମନା ବିହୀନତାକୁ ପୂର୍ଣ୍ଣତାର ଅବସ୍ଥା ଭାବରେ ଦେଖିଛନ୍ତି। ତେଣୁ, ଏଠାରେ ଏହି ଜଗତ ସୃଷ୍ଟି କରିବାରେ ସୃଷ୍ଟିକର୍ତ୍ତାଙ୍କର ଉଦ୍ଦେଶ୍ୟ ଅଛି ବୋଲି କହିବାର ଭ୍ରାନ୍ତ ଧାରଣାକୁ ଇଙ୍ଗିତ କରି ଗୌଡ଼ପାଦ ପ୍ରଶ୍ନ କରିଛନ୍ତି : "ଯାହାର ସମସ୍ତ କାମନା ସର୍ବଦା ଏକ ପରିପୂର୍ଣ୍ଣ ଅବସ୍ଥାରେ ରହିଛି ତାପାଇଁ ଅନ୍ୟ କୌଣସି କାମନା କ'ଣ ସମ୍ଭବପର ?"

କାରିକାକାର କହିବାକୁ ଚାହୁଁଛନ୍ତି ଯେ, ନିର୍ବିକଳ୍ପ ପୂର୍ଣ୍ଣାଙ୍ଗଙ୍କର କୌଣସି କାମନା ରହି ନ ପାରେ ଏବଂ ତେଣୁ, ସେ କେବେ କିଛି ସୃଷ୍ଟି କରି ନ ଥିବେ । କାରିକାକାରଙ୍କର ବିରୋଧ କରିବାକୁ ଯଦି କେହି ସାହସ କରି କହେ ଯେ, ଜଗତ ସୃଷ୍ଟି ହୋଇଛି; ତେବେ ତାଙ୍କୁ ଏହି ପ୍ରଶ୍ନର ଉତ୍ତର ଦେବାକୁ ହେବ- "ଏହାକୁ ସୃଷ୍ଟି କରିବାରେ ପ୍ରଭୁଙ୍କର କି ଉଦ୍ଦେଶ୍ୟ ଥାଇପାରେ ?" ଭଗବାନଙ୍କର ଯଦି କୌଣସି ଏକ ନିର୍ଦ୍ଦିଷ୍ଟ କାମନା ଅଛି ବୋଲି ଆମେ ମାନିନେଉଁ, ତେବେ ତା ସହିତ ଆମେ କହି ପାରିବା ନାହିଁ ଯେ, ସତ୍ୟ ପୂର୍ଣ୍ଣାଙ୍ଗ ଏବଂ ନିର୍ବିକଳ୍ପ ।

ସମ୍ପର୍କ ନ ଥିବା ଏହି ବିଷୟର ଅବଲମ୍ବନରେ ଗୌଡ଼ପାଦ ପ୍ରଥମ ଛଅଟି ଉପନିଷଦ୍ ମନ୍ତ୍ର ଉପରେ ତାଙ୍କର କାରିକା ଶେଷ କରିଛନ୍ତି । ବର୍ତ୍ତମାନ ଆମେ ମାଣ୍ଡୁକ୍ୟ ପାଠ୍ୟକୁ ଯିବା ଯାହାର ସପ୍ତମ ମନ୍ତ୍ରରେ ଚୈତନ୍ୟର ତୁରୀୟ ଅବସ୍ଥାର ଏକ ମହନୀୟ ବର୍ଣ୍ଣନା ଆମେ ପାଇ ପାରିବା ।

**ନାନ୍ତଃପ୍ରଜ୍ଞଂ ନ ବହିଷ୍ପ୍ରଜ୍ଞଂ ନୋଭୟତଃ**

**ପ୍ରଜ୍ଞଂ ନ ପ୍ରଜ୍ଞାନଘନଂ ନ ପ୍ରଜ୍ଞଂ ନାପ୍ରଜ୍ଞମ୍ ।**

**ଅଦୃଷ୍ଟମବ୍ୟବହାର୍ଯମଗ୍ରାହ୍ୟମଲକ୍ଷଣମ୍**

**ଅଚିନ୍ତ୍ୟମବ୍ୟପଦେଶ୍ୟମେକାତ୍ମପ୍ରତ୍ୟୟସାରଂ ।**

**ପ୍ରପଞ୍ଚୋପଶମଂ ଶାନ୍ତଂ ଶିବମଦ୍ୱୈତଂ**

**ଚତୁର୍ଥଂ ମନ୍ୟନ୍ତେ ସ ଆତ୍ମା ସ ବିଜ୍ଞେୟଃ ॥୭॥**

*ନ-ଅନ୍ତଃ-ପ୍ରଜ୍ଞମ୍* : ଅର୍ନ୍ତ ଜଗତ ବିଷୟରେ ସଚେତନ ନୁହେଁ, ନ ବହିଃ ପ୍ରଜ୍ଞମ୍ = ବାହ୍ୟ ଜଗତ ବିଷୟରେ ସଚେତନ ନୁହେଁ, ନ-ଉଭୟତଃ ପ୍ରଜ୍ଞମ୍ = ଚୈତନ୍ୟ ଉଭୟ ଦିଗକୁ ନୁହେଁ, ନ ପ୍ରଜ୍ଞାନ-ଘନମ୍ = ପ୍ରଜ୍ଞାନ ଘନ ନୁହେଁ, ନ ପ୍ରଜ୍ଞମ୍ = ସର୍ବଜ୍ଞ ସରଳ ଚୈତନ୍ୟ ନୁହେଁ, ନ ଅପ୍ରଜ୍ଞମ୍ = (ଏବଂ) ଅଚେତନ ନୁହେଁ, ଅଦୃଷ୍ଟମ୍ = ଅଦୃଷ୍ଟ, ଯାହା ଦେଖିହେବ ନାହିଁ, ଅବ୍ୟବହାର୍ଯ୍ୟମ୍ = ବ୍ୟବହାରର ଅତୀତ, ଅଗ୍ରାହ୍ୟମ୍ = (ଇନ୍ଦ୍ରିୟମାନଙ୍କର) ଅଗ୍ରାହ୍ୟ, ଅଲକ୍ଷଣମ୍ = ଯାହା ଅନୁମାନ କରିହେବ ନାହିଁ , ଅଚିନ୍ତ୍ୟମ୍ = ଯାହା ଚିନ୍ତାକରିହେବ ନାହିଁ, ଅବ୍ୟପଦେଶ୍ୟମ୍ = ଯାହା ବର୍ଣ୍ଣନା କରିହେବ ନାହିଁ, ଏକାତ୍ମ-ପ୍ରତ୍ୟୟ-ସାରମ୍ = ଅଖଣ୍ଡ ଆତ୍ମ-ସଚେତନଶୀଳତା ମାଧ୍ୟମରେ ଯାହାର ତତ୍ତ୍ୱ ନିର୍ଣ୍ଣୟ କରାଯାଇପାରେ, ପ୍ରପଞ୍ଚ ଉପଶନମ୍ = ପ୍ରପଞ୍ଚରୁ (ଭୌତିକ ସଂଘଟଣରୁ) ମୁକ୍ତ, ଶାନ୍ତମ୍ = ଶାନ୍ତ, ଅପରିବର୍ତ୍ତନୀୟ; ଶିବମ୍ = ଶିବ, ମଙ୍ଗଳମୟ, ଅଦ୍ୱୈତମ୍ = ଅଦ୍ୱୈତ, ଚତୁର୍ଥମ୍ = ଚତୁର୍ଥ(ପାଦ), ମନ୍ୟନ୍ତେ = ବିଚାର କରାଯାଏ, ସଃ ଆତ୍ମା = ସେହି ଆତ୍ମା, ସଃ ବିଜ୍ଞେୟଃ = ଯାହାକୁ ଜାଣିବା (ଅନୁଭବ କରିବା) ଦରକାର ।

*ଏହା ତାହା ନୁହେଁ, ଯାହା ଆନ୍ତରିକ ଜଗତ ବିଷୟରେ ସଚେତନ, କିମ୍ବା ବାହ୍ୟ ଜଗତ ବିଷୟରେ ସଚେତନ, ଉଭୟ ବିଷୟରେ ସଚେତନ, ଯିଏ ପ୍ରଜ୍ଞାନଘନ, ଯିଏ ସର୍ବଜ୍ଞ, ସରଳ ଚୈତନ୍ୟ କିମ୍ବା ଯିଏ ଅଚେତନ : ଏହା ଇନ୍ଦ୍ରିୟ ଅଗୋଚର, ଏହାକୁ ଅନୁମାନ କରି ହେବ ନାହିଁ, ଏହାଙ୍କୁ କଳ୍ପନା କରି ହେବ ନାହିଁ, ବର୍ଣ୍ଣନା କରିହେବ ନାହିଁ, ଏହାକୁ ଭାବିହେବ ନାହିଁ, ସବୁକିଛିକୁ ନିଷେଧ କରି ଅଖଣ୍ଡ ଆତ୍ମ-ସଚେତନଶୀଳତା ମାଧ୍ୟମରେ ଯାହାର ତତ୍ତ୍ୱ ନିର୍ଣ୍ଣୟ କରାଯାଇପାରେ, ଯିଏ ପ୍ରପଞ୍ଚରୁ ମୁକ୍ତ, ଯିଏ ଶାନ୍ତ, ଶିବ(ମଙ୍ଗଳମୟ), ଅଦ୍ୱୈତ । ତାହାଙ୍କୁ ହିଁ ଚତୁର୍ଥ ପାଦ (ତୁରୀୟ) ଭାବରେ ବିଚାର କରାଯାଏ । ତାହା ହିଁ ଆତ୍ମା ଏବଂ ତାହାଙ୍କୁ ହିଁ ଅନୁଭବ କରିବା କଥା ॥୭॥*

କୌଣସି ପଦାର୍ଥର ଗୁଣ, ଧର୍ମ ଏବଂ କାର୍ଯ୍ୟ ଇତ୍ୟାଦିର ବର୍ଣ୍ଣନା କରିବାରେ ହିଁ ଭାଷା ନିଜକୁ ପ୍ରକାଶ କରିପାରେ। ତେଣୁ, ଭାଷା ପରମସତ୍ତାଙ୍କର ବର୍ଣ୍ଣନା କରିପାରିବ ନାହିଁ । ଶାଶ୍ୱତ ବିଷୟଙ୍କର ଗୁଣ କିମ୍ବା କାର୍ଯ୍ୟ ବିଷୟରେ (ପୂର୍ବରୁ) କହିହେବ ନାହିଁ । ଭୌତିକ ବିଜ୍ଞାନର ପରିଭାଷାରେ ଯାହା ସସୀମ ଓ ଯାହାର କିଛି ଗୁଣ ବା ଧର୍ମ ଅଛି ତାହା ପଦାର୍ଥ ଅଟେ। ପରମସତ୍ତାଙ୍କ (ସ୍ୱରୂପଙ୍କର) କୌଣସି ଗୁଣ ଅଛି ବୋଲି ଆମେ ଯଦି ବର୍ଣ୍ଣନା କରିବା, ତେବେ ତାଦ୍ୱାରା ଆମେ ଅସୀମଙ୍କୁ ସସୀମ ସ୍ତରକୁ, ଅବିନଶ୍ୱରଙ୍କୁ ନଶ୍ୱରତାର ନିମ୍ନସ୍ତରକୁ ନିଶ୍ଚିତ ଭାବରେ ଟାଣି ଆଣିବା ।

ତେଣୁ ଆତ୍ମା, ଚତୁର୍ଥ ବା ତୁରୀୟଙ୍କୁ ନିଷେଧାତ୍ମକ ଭାଷାରେ ହିଁ ନିର୍ଦ୍ଦେଶ କରି ହେବ, ଏବଂ ପରମସ୍ୱରୂପଙ୍କର ଏହି ଅତି ଜଣାଶୁଣା ବର୍ଣ୍ଣନାରେ ଏହି ଉପାୟ ଭଲ ଭାବରେ ଗ୍ରହଣ କରାଯାଇଛି। ଭାଷାରେ ଲକ୍ଷଣାତ୍ମକ ଶବ୍ଦ ମାଧ୍ୟମରେ ସମସ୍ତ ଭାବଗର୍ଭିକ ତାତ୍ପର୍ଯ୍ୟକୁ ନେଇ ପରମସତ୍ୟଙ୍କୁ ଏଠାରେ ଯେପରି ସୁନ୍ଦର ଭାବରେ ବର୍ଣ୍ଣନା କରାଯାଇଛି, କୌଣସି ଦର୍ଶନ ସାହିତ୍ୟରେ, କୌଣସି ଯୁଗରେ ଏବଂ କୌଣସି ଭାଷାରେ ସେପରି ଦେଖାଯାଏ ନାହିଁ ।

ଯାହା ସବୁ ଦେଖିହୁଏ, ଅନୁଭବ କରି ହୁଏ ଏବଂ ଚିନ୍ତା କରାଯାଇପାରେ, ସେସବୁ କିଛିର ନିଷେଧ (ଅସ୍ୱୀକାର) ମାଧ୍ୟମରେ ଆମେ ଏଠାରେ ଅଦ୍ୱୈତ ପରମେଶ୍ୱରଙ୍କୁ ନିର୍ଦ୍ଦେଶ କରୁଥିବା ଜାଗତିକ ଦୃଶ୍ୟ ପାଇପାରୁ ।

ଇନ୍ଦ୍ରିୟ ମାଧ୍ୟମରେ ଆମେ ଭୌତିକ ଜଗତ ଉପଲବ୍ଧି କରିପାରୁ ଏବଂ ମନ ଓ ବୁଦ୍ଧିର ଉପକରଣ ମାଧ୍ୟମରେ ଚିନ୍ତା ଏବଂ ଭାବନା ଜଗତକୁ ଜାଣିପାରୁ । ଜୀବନର ଦୈନନ୍ଦିନ ସ୍ଥିତିରେ ଏ ସବୁ କିଛି ଭୌତିକ ଜଗତର ଅନ୍ତର୍ଭୁକ୍ତ । ଆତ୍ମା ହେଉଛନ୍ତି ଶାଶ୍ୱତ ଜୀବନୀଶକ୍ତି, ଦିବ୍ୟସ୍ଫୁରଣ, ଶୁଦ୍ଧଚୈତନ୍ୟ, ଶୁଦ୍ଧଜ୍ଞାନ । ତେଣୁ ଏହି ଶାଶ୍ୱତ ସତ୍ତାଙ୍କୁ ଦର୍ଶାଇବାର ଏକମାତ୍ର ଉପାୟ ହେଲା ଅନୁଭୂତିର ଅନ୍ୟ ସବୁ କ୍ଷେତ୍ରର ଏବଂ ସେଥିରେ ଅନୁଭବ କରୁଥିବା ବିଷୟର ନିଷେଧ (ଅସ୍ୱୀକାର ବା ପ୍ରତ୍ୟାହାର) କରିବା ।

ଅନ୍ଧାରରେ ଖଣ୍ଡେ ଦଉଡ଼ି ବା ଖଣ୍ଡେ ବାଡ଼ି କିମ୍ବା ପାଣି ଧାରାଟିଏ, ଏପରିକି ଭୂଇଁରେ ଫାଟଟିଏ ମଧ୍ୟ ସାପର ଭ୍ରମ ସୃଷ୍ଟି କରିପାରେ । ଭ୍ରାନ୍ତିରେ ବୁଡ଼ି ରହିଥିବା ଲୋକମାନଙ୍କୁ ଦଉଡ଼ିର ବାସ୍ତବତା ବୁଝାଇବାର ଏକମାତ୍ର ଉପାୟ ହେଲା ଏହି ସବୁ ଭ୍ରାନ୍ତିର ନିଷେଧ କରିବା। ଶାଶ୍ୱତ-ସ୍ୱରୂପଙ୍କର ବର୍ଣ୍ଣନା କରିବାରେ ପ୍ରାୟ ସମସ୍ତ ଶାସ୍ତ୍ରରେ ଏହି ଉପାୟ ହିଁ ବିଶେଷ ଭାବରେ ବ୍ୟବହାର କରାଯାଇଥାଏ ।

ମାନବୀୟ ଅନୁଭୂତିର ଆଲୋଚନାର ଆରମ୍ଭ କରି ଉପନିଷଦ୍‌ମାନେ ଆତ୍ମା ବା ସତ୍ୟଙ୍କର ଚାରୋଟି ପାଦ ଅଛି ବୋଲି କହିଛନ୍ତି । ସେମାନଙ୍କ ମଧ୍ୟରୁ ତିନୋଟି ପାଦ- ଜାଗ୍ରତ ପୁରୁଷ, ସ୍ୱପ୍ନଦ୍ରଷ୍ଟା ଏବଂ ସୁଷୁପ୍ତର ବର୍ଣ୍ଣନା କରାଯାଇ ସାରିଛି । ଚତୁର୍ଥ ପାଦ ତୁରୀୟର ଏକ ସଂପୂର୍ଣ୍ଣ ଏବଂ ବିଶଦ ବର୍ଣ୍ଣନା ଦେବାପାଇଁ ଋଷି ଏଠାରେ ଚେଷ୍ଟା କରୁଛନ୍ତି।

ଜାଗ୍ରତ ପୁରୁଷ, ସ୍ୱପ୍ନଦ୍ରଷ୍ଟା ଏବଂ ସୁଷୁପ୍ତର ବାସ୍ତବ ଗୁଣ, ତାଙ୍କର ଅନୁଭୂତିର କ୍ଷେତ୍ର, ସେମାନଙ୍କର ଭୋଗ ଏବଂ ତୃପ୍ତିର ବ୍ୟାଖ୍ୟା ମାଧ୍ୟମରେ ପୂର୍ବ ମନ୍ତ୍ରମାନଙ୍କରେ ସେମାନଙ୍କୁ ବିଶଦ ଭାବେ ବର୍ଣ୍ଣନା କରାଯାଇଛି । କିନ୍ତୁ ଚତୁର୍ଥ ଅବସ୍ଥା ବର୍ଣ୍ଣନା କରିବାକୁ ଯାଇ ଋଷି ନିଷେଧର ଭାଷାର ଏକ ସମ୍ପୂର୍ଣ୍ଣ ନୂତନ ଶୈଳୀ ଗ୍ରହଣ କରଛନ୍ତି । ଇନ୍ଦ୍ରିୟ, ମନ ବା ବୁଦ୍ଧି ଦ୍ୱାରା ଆତ୍ମାଙ୍କୁ ଉପଲବ୍ଧି କରିହେବ ନାହିଁ, ଅନୁଭବ କରିହେବ ନାହିଁ ବା ଚିନ୍ତା କରିହେବ ନାହିଁ । ଦୂରବୀକ୍ଷଣ ଯନ୍ତ୍ର ଏବଂ ତା ମାଧ୍ୟମରେ ଦେଖୁଥିବା ଲୋକର ଚିତ୍ରଣ କରି ଏହି ଧାରଣାର ବ୍ୟାଖ୍ୟା ପୂର୍ବରୁ କରାଯାଇ ସାରିଛି । ସେହିପରି, ବୁଦ୍ଧି ଆତ୍ମାଙ୍କୁ ଏକ 'ବିଷୟ' ଭାବରେ ଚିନ୍ତା କରି ପାରିବ ନାହିଁ, କାରଣ ବୁଦ୍ଧି ଆତ୍ମାଙ୍କ ଦିଗରେ ସଂପୂର୍ଣ୍ଣଭାବେ ମୁହଁ ବୁଲାଇବା ମୁହୂର୍ତ୍ତରେ ଆତ୍ମା-ବିହୀନ ହୋଇ ଜଡ଼ ଏବଂ ଅଚେତନ ହୋଇଯିବ। କୁଶଳତାର ସହିତ ନିଷେଧର ଭାଷା ବ୍ୟବହାର କରି ଋଷି ସାଧକକୁ ଏଠାରେ ସବୁ ପ୍ରାଣୀଙ୍କୁ ଜୀବନୀ ଶକ୍ତି ଯୋଗାଉଥିବା ଶାଶ୍ୱତ ସତ୍ୟଙ୍କର ଏକ ପରିପୂର୍ଣ୍ଣ, ବିଶଦ ସଂଜ୍ଞା ଦେଇଛନ୍ତି ।

**ନ ଅନ୍ତଃ ପ୍ରଜ୍ଞମ୍ :** ଯିଏ ଅର୍ନ୍ତଜଗତ ସମ୍ବନ୍ଧରେ ସଚେତନ, ସେ ନୁହେଁ – ଏହା କହି ତୁରୀୟ ସ୍ୱପ୍ନ ନୁହେଁ ବୋଲି ଶ୍ରୁତି ଆମକୁ ଦେଖାଇ ଦେଇଛନ୍ତି । ଯେଉଁ ଚୈତନ୍ୟ ଅନ୍ତରସ୍ଥ ଜଗତ, ସ୍ୱପ୍ନ ବିଷୟର ଜଗତ ସମ୍ବନ୍ଧରେ ସଚେତନ, ତାହା ତୈଜସ୍ ବୋଲି ପୂର୍ବରୁ ବର୍ଣ୍ଣନା କରା ଯାଇଛି । ଅନ୍ତରର ସଚେତନଶୀଳତାର ନିଷେଧ କରି ଋଷି ଆମକୁ ନିର୍ଦ୍ଦେଶ  କରିଛନ୍ତି ଯେ ଆତ୍ମା ବା ମଣିଷଠାରେ ଥିବା ଜୀବନୀ ଶକ୍ତି ସ୍ୱପ୍ନ ନୁହେଁ।

**ନ ବହିଷ୍ପ୍ରଜ୍ଞମ୍ :** ଯିଏ ବାହ୍ୟ ଭୌତିକ-ଜଗତ ସମ୍ବନ୍ଧରେ ସଚେତନ, ସେ ନୁହେଁ-ଅର୍ଥାତ୍ ଚେତନାର ଚତୁର୍ଥ ସ୍ତର ଜାଗ୍ରତ ପୁରୁଷ, ବୈଶ୍ୱାନର ନୁହେଁ । ଜାଗ୍ରତ ପୁରୁଷ ବାହ୍ୟ ଭୌତିକ-ଜଗତ ସମ୍ବନ୍ଧରେ ସମ୍ପୂର୍ଣ୍ଣ ସଚେତନ ବୋଲି ଆମେ ଦେଖି ସାରିଛୁ ।

**ନ ଉଭୟତଃ ପ୍ରଜ୍ଞମ୍ :** ଯିଏ ଉଭୟ ବିଷୟରେ ସଚେତନ, ସେ ନୁହେଁ । ଉଭୟ ଜାଗ୍ରତ ଏବଂ ସ୍ୱପ୍ନ ଅବସ୍ଥାର ଆମେ ନିଷେଧ କରି ସାରିଛୁଁ । ଏପରି ସମୟରେ

ଶିଷ୍ୟ ମନରେ ନିଶ୍ଚିତ ଭାବରେ ସନ୍ଦେହ ଦେଖା ଦେବ ଯେ, ଆତ୍ମା ବୋଧହୁଏ ଜାଗ୍ରତ ଏବଂ ସ୍ୱପ୍ନର ମଧ୍ୟବର୍ତ୍ତୀ ଏକ ଅବସ୍ଥା – ଯେଉଁ ଅବସ୍ଥାରେ ଉଭୟ ବାହ୍ୟ ଏବଂ ଅର୍ନ୍ତ ଜଗତର ସାମାନ୍ୟ ଟିକିଏ ସଚେତନଶୀଳତା ଥାଏ । ଆମମାନଙ୍କ ମଧ୍ୟରୁ ପ୍ରାୟ ପ୍ରତ୍ୟେକେ ଏପରି ଅବସ୍ଥାରେ ବାସ କରିଥାଉ । ଦିପହରରେ, ଭଲ ଭାବରେ ପେଟ ପୂରେଇ ଖାଇଦେଇ ଟିକେ ଗଡ଼ିପଡ଼ି ଅଳ୍ପ ସମୟ ପାଇଁ ଆମେ ଆଖି ବୁଜି ଦେବାକୁ ପ୍ରସ୍ତୁତ ହେଉଥିବାର ଝାପ୍‌ସା ମୂହୁର୍ତ୍ତରେ ବାହ୍ୟ ଜଗତ ସମ୍ବନ୍ଧରେ ଆମେ ସଂପୂର୍ଣ୍ଣ ସଚେତନ ନ ଥାଉ କିମ୍ବା ଆମ ଭିତରେ ଥିବା ସ୍ୱପ୍ନିଳ ଶୂନ୍ୟତାର ଜଗତ ବିଷୟରେ ସଂପୂର୍ଣ୍ଣଭାବେ ଅଚେତନ ହୋଇ ନ ଥାଉ । ବର୍ତ୍ତମାନ ଯେଉଁ ପଦଟିର ଆଲୋଚନା କରା ଯାଉଛି, ଏଠାରେ ସେ ଅବସ୍ଥାର ମଧ୍ୟ ନିଷେଧ କରା ଯାଇଛି ।

**ନ-ପ୍ରଜ୍ଞାନ-ଘନମ୍ :** ଯାହା ପ୍ରଜ୍ଞାନଘନ, ତାହା ମଧ୍ୟ ନୁହେଁ । ଏହିପରି ଭାବରେ ବୈଶ୍ୱାନର, ତୈଜସ ଏବଂ ସେମାନଙ୍କର ମଧ୍ୟବର୍ତ୍ତୀ ଅବସ୍ଥାର ନିଷେଧ କରିବା ପରେ ସାଧକ ମନରେ ତତ୍‌କ୍ଷଣାତ୍ ଗୋଟିଏ ଚିନ୍ତାର ଉଦୟ ହେବ – ତାହାହେଲେ ଏହା ନିଶ୍ଚୟ ପ୍ରାଜ୍ଞ- ସୁଷୁପ୍ତ ଅବସ୍ଥାର ଜୀବ ହେବ । ପୂର୍ବରୁ ପ୍ରାଜ୍ଞର ବର୍ଣ୍ଣନା କରୁଥିବା ମନ୍ତ୍ରର ଆଲୋଚନା ହୋଇ ଯାଇଛି । ସେଥିରେ ଦେଖା ଯାଇଛି ଯେ, ପ୍ରାଜ୍ଞ ଅବସ୍ଥାରେ ସ୍ଥୂଳ ଶରୀର ଏବଂ ସୂକ୍ଷ୍ମ ଶରୀରରୁ ସମଗ୍ର ଚୈତନ୍ୟର ଅପସାରଣ ହୋଇଥାଏ ଏବଂ ଏହି ସମଗ୍ର ଚୈତନ୍ୟ ନିଜ ଭିତରେ ଘନୀଭୂତ ହୋଇଯାଏ । ତେଣୁ, ଆଲୋଚ୍ୟ ବିଷୟରେ ତାକୁ ମଧ୍ୟ ନିଷେଧ କରା ଯାଇଛି – ତୁରୀୟରେ ପ୍ରାଜ୍ଞ ମଧ୍ୟ ନ ଥାଏ ।

**ନ ପ୍ରଜ୍ଞମ୍ :** ଯିଏ କେବଳ ସାମାନ୍ୟ ଚେତନତା, ତାହା ମଧ୍ୟ ନୁହେଁ । ନିଷେଧର ଏହି ସମସ୍ତ ସ୍ୱର ଶିଷ୍ୟ ପାଇଁ ସ୍ୱାଭାବିକଭାବେ ଗୋଟିଏ ସମ୍ଭାବନା ଛାଡ଼ିଦେବ, ସେତେବେଳେ ସେ ନିଶ୍ଚିତଭାବରେ ବୁଝି ପାରିବ ଯେ, ଆତ୍ମା ହେଉଛନ୍ତି ତା'ର ସାଧାରଣ ଚୈତନ୍ୟ ହିଁ । କିନ୍ତୁ ହିନ୍ଦୁ ଦର୍ଶନର ସେହି ଚିନ୍ତକମାନେ ନିର୍ମମ ଯୁକ୍ତି ଏବଂ ଦୃଢ଼ ପ୍ରମାଣର ସହ ସ୍ୱ ଅନୁଭବ ଜ୍ଞାନରେ ଘୋଷଣା କରିଥିଲେ ଯେ 'ଚୈତନ୍ୟ' ପରି ସାଧାରଣ ଗୋଟିଏ ପଦ ଦ୍ୱାରା ମଧ୍ୟ ଆତ୍ମାଙ୍କୁ ବର୍ଣ୍ଣନା କରିହେବ ନାହିଁ । ଆତ୍ମାଙ୍କର କୌଣସି ଗୁଣ ଅଛି ବୋଲି ବର୍ଣ୍ଣନା କରିବାର ମାନେ ହେଲା ଅସୀମ, ଅନନ୍ତଙ୍କୁ ଏକ ସସୀମ, ପରିଚ୍ଛିନ୍ନ ପଦାର୍ଥରେ ପରିଣତ କରିଦେବା । ସେଥିପାଇଁ ଏହି ନିଷେଧ ।

ପୁନଶ୍ଚ, ବିପରୀତ ଗୁଣର ପ୍ରରିପ୍ରେକ୍ଷୀରେ ଚୈତନ୍ୟ ପଦର ଗୋଟିଏ ଅର୍ଥ ଅଛି । ସୂର୍ଯ୍ୟଙ୍କଠାରେ ଆଲୋକ ଶବ୍ଦଟିର ପ୍ରୟୋଜନ ନାହିଁ, ଅନ୍ଧାର କ'ଣ ବୋଲି ସୂର୍ଯ୍ୟ ଆଦୌ

ଜାଣନ୍ତି ନାହିଁ । ତେଣୁ ସୂର୍ଯ୍ୟଙ୍କ ଠାରେ ଆଲୋକର କୌଣସି ଅର୍ଥ ନାହିଁ । ସେହିପରି, ଜଡ ଜଗତରେ ହିଁ ଚେତନାର କୌଣସି ଅର୍ଥ ହୋଇପାରେ । ତୁରୀୟ, ସତ୍ୟ ଉଭୟ ଜଡ଼ ଏବଂ ଚେତନକୁ ଆଲୋକିତ କରନ୍ତି ।

**ନ ଅପ୍ରଜ୍ଞମ୍:** ଏହା ଜଡ଼ ନୁହେଁ- ବର୍ତ୍ତମାନ ଏଠାରେ, ଏହି ପଦରେ ଆମେ ସମ୍ଭାବ୍ୟ ପଦମାନଙ୍କର ସଂଯୋଗ-ବିଯୋଗରେ ଏକମାତ୍ର ପ୍ରସଙ୍ଗର ନିଷେଧ ବାର୍ତ୍ତା ପାଉ। ପୂର୍ବରୁ ବ୍ୟାଖ୍ୟା କରା ଯାଇଥିବା ପାଞ୍ଚୋଟି ଯାକ ନିଷେଧ ଯଦି ସତ୍ୟ ହେବ ତେବେ ଯେଉଁ ଏକମାତ୍ର ଛିଦ୍ର ମାଧ୍ୟମରେ ମଣିଷର ବୁଦ୍ଧି ସତ୍ୟ-ସ୍ୱରୂପଙ୍କର ଅବବୋଧ କରି ପାରିବ ଏବଂ ତାଙ୍କୁ ଦେଖିପାରିବ ତାହା ହେଉଛି ଜଡ଼ର ବ୍ୟାଖ୍ୟା। କାରଣ, ଗୁରୁ ଆମକୁ କହିଛନ୍ତି ଯେ, ଆତ୍ମା ବର୍ହିଜଗତ ସମ୍ବନ୍ଧରେ ସଚେତନ ନୁହଁନ୍ତି, ଅନ୍ତର୍ଜଗତ ବା ଉଭୟଙ୍କ ବିଷୟରେ ସେ ସଚେତନ ନୁହନ୍ତି । ଏହା ଚୈତନ୍ୟଘନ ନୁହନ୍ତି ବା ସାଧାରଣ ଚେତନା ମଧ୍ୟ ନୁହଁନ୍ତି । ତେଣୁ ଯାହା ଗୋଟିଏ ମାତ୍ର ସମ୍ଭାବନା ରହିଗଲା, ତାହା ହେଉଛି, ଏହା କେବଳ ଜଡ଼ ହୋଇ  ପାରନ୍ତି। ଯାହା ଜଡ଼, ତାହା ନୁହେଁ ବୋଲି ଋଷିମାନେ କହି ଏହି ନିଷେଧାତ୍ମକ ଧାରଣାର ମଧ୍ୟ ନିଷେଧ କରି ଦେଇଛନ୍ତି ।

ସଂକ୍ଷେପରେ, ପ୍ରଥମ ଅଂଶର ବ୍ୟାଖ୍ୟା ପ୍ରତ୍ୟେକ ବ୍ୟକ୍ତି ସାଧାରଣ ଭାବେ ଜାଣିଥିବା ଚେତନାର ତିନୋଟି ସ୍ତରର ନିଷେଧ କରିବାକୁ ଚେଷ୍ଟା କରିଛି ଏବଂ ଏହା ଘୋଷଣା କରିଛି ଯେ, ଶାଶ୍ୱତ ଏବଂ ଚିରନ୍ତନଙ୍କୁ ବର୍ଣ୍ଣନା କରିବା ପାଇଁ ସାଧାରଣ ଭାଷାରେ ବ୍ୟବହାର କରାଯାଉଥିବା ପଦ ବା ପରିଭାଷା ନାହିଁ ।

ମନ୍ତ୍ରର ଦ୍ୱିତୀୟ ଭାଗରେ ଆତ୍ମାଙ୍କର ଗୁଣ ସମ୍ବନ୍ଧରେ ଆମ ମନରେ କେତେକ ନିର୍ଦ୍ଦିଷ୍ଟ ଧାରଣା ଦେବା ପାଇଁ ଗୁରୁ ଚେଷ୍ଟା କରିଛନ୍ତି । ଏଠାରେ ମଧ୍ୟ ଆମେ ବୁଝିବା ଦରକାର ଯେ, ଦୃଢ ନକାରାତ୍ମକ ଭାଷା ମାଧ୍ୟମରେ ହିଁ ଏହି ସକାରାତ୍ମକ ବର୍ଣ୍ଣନା କରା ଯାଇଛି । ଏଠାରେ ବ୍ୟବହୃତ ପ୍ରତ୍ୟେକଟି ପଦର ତାତ୍ପର୍ଯ୍ୟ ଏତେ ବିଶାଳ ଯେ, ଏହାକୁ ଭଲ ଭାବରେ ବୁଝିବାକୁ  ହେଲେ ଆମକୁ ତୁରୀୟର ବା ବାସ୍ତବ ସ୍ୱରୂପର ଜ୍ଞାନ ଲାଭ କରିବାକୁ ହେବ ।

ଅଦୃଷ୍ଟ-ଆତ୍ମାଙ୍କୁ ଏଠାରେ ଇନ୍ଦ୍ରିୟମାନଙ୍କ ଦ୍ୱାରା ଅଦୃଷ୍ଟ ଭାବରେ ବ୍ୟାଖ୍ୟା କରାଯାଇଛି। ଆତ୍ମାଙ୍କର ରୂପ ନାହିଁ - ଏତିକି କେବଳ ଅଦୃଷ୍ଟ ଶବ୍ଦର ଅର୍ଥ ନୁହେଁ, ବରଂ ଅନ୍ୟ ସମସ୍ତ ଇନ୍ଦ୍ରିୟମାନଙ୍କର କାର୍ଯ୍ୟକୁ ନିଷେଧ କରିବା ପାଇଁ ଶବ୍ଦଟି ଯଥେଷ୍ଟ ତାତ୍ପର୍ଯ୍ୟପୂର୍ଣ୍ଣ ଭାବରେ ବ୍ୟବହାର କରାଯାଇଛି । ଆତ୍ମା କୌଣସି ବସ୍ତୁ ନୁହଁନ୍ତି ଯେ, ମଣିଷର ପାଞ୍ଚୋଟିଯାକ ଇନ୍ଦ୍ରିୟ ମଧ୍ୟରୁ କୌଣସି ଗୋଟିଏ ଦ୍ୱାରା ହେଲେ ମଧ୍ୟ ତାଙ୍କୁ ଜାଣି ହେବ।

**ଅବ୍ୟବହାର୍ଯ୍ୟମ୍ :** କୌଣସି ପଦାର୍ଥ ସହିତ ସମ୍ପର୍କିତ ନୁହେଁ – ଆତ୍ମା ଏକ ସର୍ବବ୍ୟାପୀ ବିଷୟ ଏବଂ ଜଗତର ଅନ୍ୟ କୌଣସି ପଦାର୍ଥ ସହିତ ଏହାଙ୍କର ସମ୍ପର୍କ ନାହିଁ ବୋଲି ଏହି ପଦ ଦ୍ୱାରା କୁହାଯାଇଛି । ଜଗତର ସମସ୍ତ ପଦାର୍ଥ ଓ ପ୍ରାଣୀ ଆତ୍ମାରେ ହିଁ ସେମାନଙ୍କର ବ୍ୟବହାର କରି ଥାଆନ୍ତି । ଅନୁରୂପତା ପାଇଁ ଆମେ ଆକାଶକୁ ନେଇ ପାରିବା । ଆକାଶର କାହା ସହିତ ସମ୍ପର୍କ ନାହିଁ, ତଥାପି, ଆକାଶ ବ୍ୟତୀତ କୌଣସି ସମ୍ପର୍କ ହୋଇପାରିବ ନାହିଁ । ସେହିପରି ଶାଶ୍ୱତ ଏବଂ ଚିରନ୍ତନ ସତ୍ୟ-ସ୍ୱରୂପଙ୍କ ମାଧ୍ୟମରେ ଦୁନିଆର ସମସ୍ତ ନାମ ଏବଂ ରୂପ ପରସ୍ପର ସହିତ ସେମାନଙ୍କର ମିଥ୍ୟା ସମ୍ପର୍କର ବ୍ୟବହାର କରନ୍ତି ।

**ଅଗ୍ରାହ୍ୟମ୍ :** ଅଗ୍ରାହ୍ୟ – ପୂର୍ବୋକ୍ତ ଦୁଇଟି ପଦର ଅର୍ଥର ତାତ୍ପର୍ଯ୍ୟରୁ ଏହା ସ୍ପଷ୍ଟ ବୁଝିହୁଏ ଯେ, ଆତ୍ମା ମନ ଦ୍ୱାରା ଗ୍ରାହ୍ୟ ହୋଇ ପାରିବେ ନାହିଁ । ଏକ ବା ଏକାଧିକ ଇନ୍ଦ୍ରିୟ ମାଧ୍ୟମରେ ମନ ପାଖକୁ ଯାହା ପଠାଯାଏ, ମନ ତାହାକୁ ହିଁ ଗ୍ରହଣ କରିପାରେ । ଇନ୍ଦ୍ରିୟମାନଙ୍କ ଦ୍ୱାରା ଜାଣି ହେବାକୁ ହେଲେ ଆତ୍ମାଙ୍କୁ ପାଞ୍ଚ ଇନ୍ଦ୍ରିୟମାନଙ୍କର ମଧ୍ୟରୁ ଯେକୌଣସି ଗୋଟିଏ ଦ୍ୱାରା ଗୃହୀତ ହେବାକୁ ହେବ । ଆଖି, କାନ, ନାକ, ଜିଭ ଏବଂ ତ୍ୱଚା – ଏ ସବୁ ଇନ୍ଦ୍ରିୟ ସେମାନଙ୍କର ବିଷୟ, ଯଥାକ୍ରମେ ରୂପ, ଶବ୍ଦ, ଗନ୍ଧ, ସ୍ୱାଦ ଏବଂ ସ୍ପର୍ଶ ବିଷୟରେ ଜ୍ଞାନଲାଭ କରି ପାରିବେ । ଆତ୍ମା ଇନ୍ଦ୍ରିୟ ବିଷୟ ହୋଇ ନ ଥିବାରୁ ଏବଂ ଅନ୍ୟ କାହା ସହିତ ଏହାଙ୍କର ବ୍ୟବହାର ନ ଥିବାରୁ ମନ ଦ୍ୱାରା ଏହା ଗ୍ରାହ୍ୟ ହୋଇ ପାରିବେ ନାହିଁ ।

**ଅଲକ୍ଷଣମ୍ :** ଅନୁମାନରହିତ(ଅନୁମେୟ) – ପ୍ରତ୍ୟକ୍ଷ ଅନୁଭୂତି ଦ୍ୱାରା ଆମେ କୌଣସି ବସ୍ତୁ ବିଷୟରେ ଜାଣି ନ ପାରିଲେ, ସାଧାରଣ ଜ୍ଞାନର ଅନ୍ୟ ଯେଉଁ ରାସ୍ତା ଆମ ପାଇଁ ଖୋଲା ଅଛି, ତାହା ହେଉଛି ଅନୁମାନ । ରୋଷେଇ ଘରେ ନିଆଁ ଥିବାବେଳେ, ଧୂଆଁ ମଧ୍ୟ ଥିବାର ଆମେ ଲକ୍ଷ୍ୟ କରୁ । ତେଣୁ ଆମର ପ୍ରତ୍ୟକ୍ଷ ଅନୁଭୂତି ଦ୍ୱାରା ଆମେ ଜାଣିପାରୁଁ ଯେ, ଧୂଆଁ ଥିଲେ ନିଆଁ ଥିବ । ତେଣୁ ଧୂଆଁ ଥିବା ଯାଗାରେ ନିଆଁ ମଧ୍ୟ ଥିବ ବୋଲି ଆମର ପ୍ରତ୍ୟକ୍ଷ ଅନୁଭୂତିରୁ ଆମେ ଜାଣିପାରୁ । ପରେ, କାର୍ଯ୍ୟ ଅର୍ଥାତ୍ ଧୂଆଁ ଦେଖିଲେ, ଦୂରସ୍ଥ ଧୂଆଁଳିଆ ଯାଗାରେ ନିଆଁକୁ ପ୍ରକୃତରେ ଦେଖି ନ ପାରିଲେ ବି, ସେଠାରେ ନିଆଁ କାରଣ ଥିବାର ଆମେ ଅନୁମାନ କରୁ ।

ଏଠାରେ ନିଆଁର କାର୍ଯ୍ୟ ଧୂଆଁ ଯୋଗୁଁ ନିଆଁର ଅବସ୍ଥିତି ବିଷୟରେ ଅନୁମାନ କରି ଆମେ ଜାଣିଥାଉ । ପ୍ରକୃତରେ ଧୂଆଁକୁ ହିଁ ଆମେ ଦେଖିଥାଉ । ଏହି କାର୍ଯ୍ୟକୁ

ସଂସ୍କୃତ ପରିଭାଷାରେ ଲକ୍ଷଣ  କୁହାଯାଏ । ଆତ୍ମାଙ୍କର ଏପରି କିଛି କାର୍ଯ୍ୟ ନ ଥିବାରୁ ଆମେ ତାଙ୍କର ଅବସ୍ଥିତି ସମ୍ପର୍କରେ ଅନୁମାନ  କରି ପାରିବା ନାହିଁ । ଉପନିଷଦ୍‌ର ମହାନ୍ ଗୁରୁମାନେ ଆତ୍ମାଙ୍କୁ ଅଲକ୍ଷଣ ଭାବରେ ବ୍ୟାଖ୍ୟା କରିଛନ୍ତି ।

**ଅଚିନ୍ତ୍ୟମ୍ :** ଅଚିନ୍ତ୍ୟ – ଉପରୋକ୍ତ ବ୍ୟାଖ୍ୟାରୁ ସ୍ୱତଃ ଜଣାପଡ଼େ ଯେ ଯଦି ଅଦୃଷ୍ଟ,  ଅଗ୍ରାହ୍ୟ ଏବଂ ଅଲକ୍ଷଣ ଭାବରେ କିଛି ଅଛି, ତାହା ହେଲେ ତାହା ସ୍ୱାଭାବିକ ଭାବେ  ଅଚିନ୍ତ୍ୟ ହେବ ।

**ଅବ୍ୟପଦେଶମ୍ :** ଅବର୍ଣ୍ଣନୀୟ – ଇନ୍ଦ୍ରିୟ, ମନ ବା ବୁଦ୍ଧି ମାଧ୍ୟମରେ ଆମର ଅନୁଭୂତି ବର୍ଣ୍ଣନା କରାଯାଉଥିବାରୁ ଏହି ପରିସ୍ଥିତିରେ ଆତ୍ମାଙ୍କୁ ବର୍ଣ୍ଣନା କରିହେବ ନାହିଁ – ଏହା ଯୁକ୍ତି-ସଙ୍ଗତ ।

**ଏକାତ୍ମ-ପ୍ରତ୍ୟୟ ସାରମ୍ :** ଅଖଣ୍ଡ ଆତ୍ମ-ସଚେତନଶୀଳତା  ମାଧ୍ୟମରେ ଯାହାର ତତ୍ତ୍ୱ  ନିର୍ଣ୍ଣୟ କରାଯାଇପାରେ, ବିଶୁଦ୍ଧ ଭାବେ ଚୈତନ୍ୟ ସ୍ୱରୂପ – ପୂର୍ବୋକ୍ତ ସମସ୍ତ ନିଷେଧ  ବିଷୟରେ ଆମକୁ କୁହାଯାଇ ପରମ-ସ୍ୱରୂପଙ୍କୁ ବର୍ଣ୍ଣନା କରାଯାଇ ପାରିବ ନାହିଁ ବୋଲି ଜଣାଇ ଶେଷ କରାଯାଇଛି । ଯେତେ ବୁଦ୍ଧିମାନ ହେଲେ ବି ଶିଷ୍ୟ ହତାଶ ହୋଇ ଛାନିଆ ହୋଇ ପଡ଼ିବା ସ୍ୱାଭାବିକ । ତା ମୁହଁରେ ଫୁଟି ଉଠୁଥିବା ହତାଶ ଏବଂ ଛାନିଆ ଭାବ ଗୁରୁଙ୍କ ଆଖିରେ ପଡ଼ିବ । ତେଣୁ ଶିଷ୍ୟ ପାଇଁ ପରମ-ସ୍ୱରୂପଙ୍କର କଳ୍ପିତ ଧାରଣାର ଅଧିକ ବିସ୍ତାରିତ ବ୍ୟାଖ୍ୟା ଦେବା ପାଇଁ ଗୁରୁ ଚେଷ୍ଟା କରୁଛନ୍ତି ।

ସେ କହିଛନ୍ତି ଯେ, ଆତ୍ମାଙ୍କର ସ୍ୱରୂପ ହେଲା ଶୁଦ୍ଧ ଚୈତନ୍ୟ, ଶୁଦ୍ଧ ଜ୍ଞାନ । ଜୀବନ ସହିତ ଆମର ଦୈନନ୍ଦିନ କାରବାରରେ ସାଧାରଣଃ ଆମେ କେବଳ ପଦାର୍ଥମାନଙ୍କର ଜ୍ଞାନ ଲାଭ କରୁ । ଜଗତର ପଦାର୍ଥମାନଙ୍କ ବିଷୟରେ ଆମେ ଅବଗତ ହୋଇଥାଉ ଏବଂ ପଦାର୍ଥଠାରେ ବା ଆମଠାରେ ଥିବା ଧାରଣା ବା ଚିନ୍ତା ଦ୍ୱାରା ଆମର ଜ୍ଞାନ ପ୍ରଭାବିତ ହୋଇଥାଏ। ଶବ୍ଦ ବା ଇନ୍ଦ୍ରିୟଗୋଚର ବିଷୟ, କିମ୍ବା ଆମର ଆବେଗ ବା ଚିନ୍ତା ଆମେ ଜାଣି ପାରୁ, କିନ୍ତୁ  ଯେଉଁ ଜ୍ଞାନ ଦ୍ୱାରା ଆମେ ଉପଲବ୍ଧି  କରୁ, ଯାହା ଦ୍ୱାରା ଆମର ଭାବନା ବୁଝିପାରୁ, ଯାହା  ଦ୍ୱାରା ଆମର କଳ୍ପନା ବୁଝି ହୁଏ, ସେହି ଜ୍ଞାନକୁ ଆମେ ଜାଣିପାରୁ ନାହିଁ । ଗୁରୁ ଏଠାରେ ଜୋର ଦେଇ କହୁଛନ୍ତି ଯେ, ପରମ ସ୍ୱରୂପ ହିଁ ତ ଜ୍ଞାନ; ଗୁଣଦ୍ୱାରା ମାନ୍ୟତା ପାଇବା ପାଇଁ ତାଙ୍କର କୌଣସି ବିଷୟ ନ ଥାଏ । ଏହା ଶୁଦ୍ଧ ସଚେତନଶୀଳତା – ଯାହା ଯୋଗୁଁ ହିଁ ସମସ୍ତ ଇନ୍ଦ୍ରିୟ ନିଜର ବିଷୟ ପ୍ରକାଶ କରିବାର କାର୍ଯ୍ୟ ନିୟମିତ ଭାବରେ କରନ୍ତି ।

ଯେଉଁ ସବୁ ଗୁଣ ବା ଯୋଗ୍ୟତା ସାହାଯ୍ୟରେ ଆମେ ସାଧାରଣତଃ ବହୁରୂପୀ ବିଷୟର ଅବଗତ ହେଉ ବା ସେମାନଙ୍କୁ ବୁଝିପାରୁ, ଆତ୍ମାଙ୍କର ସୁନିଶ୍ଚିତ (ସକାରାତ୍ମକ) ମନେ ହେଉ ଥିବା କେତେକ ଗୁଣ ବିଷୟରେ କହିବାକୁ ବର୍ତ୍ତମାନ ଚେଷ୍ଟା କରାଯାଉଛି। ଏଠାରେ ମଧ୍ୟ ଆମେ ବୁଝିବା ଦରକାର ଯେ, ଋଷି କେତେକ ନିର୍ଦ୍ଦିଷ୍ଟ ସକାରାତ୍ମକ ଶବ୍ଦ ବ୍ୟବହାର କରିଥିଲେ ମଧ୍ୟ ସେସବୁର ବିପରୀତ ନିଷେଧାତ୍ମକ ଅର୍ଥ ପ୍ରକାଶ କରିବାକୁ ହିଁ ସେ ଚାହିଁଛନ୍ତି ।

**ପ୍ରପଞ୍ଚୋପଶମମ୍ :** ସମସ୍ତ ପ୍ରପଞ୍ଚର ନିଷେଧ – ତୁରୀୟ ଅବସ୍ଥାରେ ପରିଚ୍ଛିନ୍ନ ଜଗତ ଏବଂ ଅପୂର୍ଣ୍ଣାଙ୍ଗ ଅନୁଭୂତିର ପ୍ରବେଶ ନିଷେଧ । ତୁରୀୟର ପ୍ରବେଶ ଦ୍ୱାର ପର୍ଯ୍ୟନ୍ତ ହିଁ ଆମେ ବହୁବିଧତା ଦେଖିବାକୁ ପାଉ ଏବଂ ତାକୁ ଅନୁଭବ କରିପାରୁ । ନଶ୍ୱର ଜଗତର ବହୁବିଧତା ନେଇ ଗଠିତ ହୋଇଥିବା ପ୍ରପଞ୍ଚ କେବଳ ଜାଗ୍ରତ, ସ୍ୱପ୍ନ ଏବଂ ସୁଷୁପ୍ତ ଅବସ୍ଥାରେ ହିଁ ଅନୁଭବ କରି ହୁଏ । ଏହି ତିନି ଅବସ୍ଥାରେ ଅତୀତ ହେଲେ ପରମେଶ୍ୱରଙ୍କର ଜଗତରେ ପ୍ରବେଶ କରି ହେବ । ସେହି ତୁରୀୟକୁ ପରିବର୍ତ୍ତନ ଏବଂ ସସୀମତାର, ନଶ୍ୱର ଏବଂ ଦୁଃଖର, ଅପୂର୍ଣ୍ଣତାର ଏବଂ ପ୍ରତାରଣାର, ପରିଚ୍ଛିନ୍ନତାର ଏବଂ ଅଶୁଭର ପ୍ରବେଶ ନିଷେଧ ।

**ଶାନ୍ତମ୍ : ଶାନ୍ତ** – ପୂର୍ବର ଆଲୋଚନାରୁ ଜଣା ପଡ଼ିଛି ଯେ ଆମର କାମନା, ପସନ୍ଦ ଏବଂ ଅପସନ୍ଦ ଇତ୍ୟାଦି ଯୋଗୁଁ ଅଶାନ୍ତି ବା ବିକ୍ଷେପ ସୃଷ୍ଟି ହୋଇଥାଏ । ଦ୍ୱନ୍ଦର ଜଗତରୁ ଅପସରି ଯାଇ ଆତ୍ମା ଜଗତରେ ପ୍ରବେଶ କଲେ, ଆମେ ଶାଶ୍ୱତ, ପୂର୍ଣ୍ଣାଙ୍ଗ ଶାନ୍ତିର ମନ୍ଦିରରେ ପ୍ରବେଶ କରିବା ।

**ଶିବମ୍ :** ସର୍ବ ଆନନ୍ଦ ବା ସର୍ବ ଶୁଭ – ଶାନ୍ତିମୟ ହେଉଛି ଆନନ୍ଦମୟ । ଶାନ୍ତି ନିଜେ ହିଁ ସୁଖ । ସୁଖ ଏକ ମାନସିକ ଅବସ୍ଥା ବ୍ୟତୀତ ଅନ୍ୟ କିଛି ନୁହେଁ ଏବଂ ଏପରି ହୋଇଥିବାରୁ ସର୍ବ-ଶାନ୍ତିମୟ ନିଶ୍ଚିତ ଭାବରେ ସର୍ବ-ଆନନ୍ଦମୟ ହେବ । କେବଳ ବହୁବିଧତାର ଜଗତକୁ ହିଁ ଅଶୁଭ ଆସି ପାରିବ । ତୁରୀୟ ଅବସ୍ଥାକୁ ଶୁଭମୟ ପଦ ଦ୍ୱାରା ବୁଝାଇ ହେବ ।

**ଅଦ୍ୱୈତମ୍ :** ଅଦ୍ୱୈତ – ଖମ୍ବ ଦୃଶ୍ୟ ହୋଇ ତାଠାରେ ଅଧ୍ୟସ୍ତ ଭୂତ ଅପସରି ଗଲେ ଖମ୍ବରୁ ସମସ୍ତ ଅଧ୍ୟସ୍ତ ଦୂର ହୁଏ ଏବଂ 'ଏକମେବ ଅଦ୍ୱିତୀୟ' ଖମ୍ବର ହିଁ ବାସ୍ତବତା କେବଳ ରହିଯାଏ। ଜାଗ୍ରତ ଏବଂ ସ୍ୱପ୍ନ ଅବସ୍ଥାରେ ହିଁ ଆମେ ଦ୍ୱୈତର ଅନୁଭବ କରୁ । ସୁଷୁପ୍ତି ଅବସ୍ଥାରେ ବାସ୍ତବରେ କିଛି ଘନତ୍ୱ ଅବସ୍ଥାର ଅନୁଭୂତି ରହେ,

କିନ୍ତୁ ଏହାର ଅନୁଭୂତି ସମୟରେ ଆମେ ଏହା ସମ୍ବନ୍ଧରେ ସଚେତନ ନ ଥାଉ । ପରମସତ୍ତାଙ୍କ ଜଗତରେ, ତୁରୀୟ ଅଞ୍ଚଳରେ ପ୍ରବେଶ କଲେ ସମଗ୍ର ବହୁବିଧ ଜଗତ ଅପସରି ଯାଏ ଏବଂ ଶାଶ୍ୱତ ସତ୍ୟ ଭାବରେ ଅଦ୍ୱୈତ ସତ୍ୟଙ୍କର ଅନୁଭୂତି ହିଁ କେବଳ ରହିଯାଏ ।

ଏହିପରି ଭାବରେ, ନିଷେଧର ଭାଷାରେ ତୁରୀୟ ଅବସ୍ଥାର ନିର୍ଦ୍ଦେଶ କରି, ଏବଂ କେତେକ ଗୁଣ ବିଷୟରେ କହି 'ଏହା ହିଁ ତୁରୀୟ ଭାବରେ ପରିଚିତ' ବୋଲି ଋଷି ପରିସମାପ୍ତି କରିଛନ୍ତି । ତେଣୁ, ମନ୍ତ୍ରଟି ପରମ ସତ୍ତାଙ୍କର ମହିମାମୟ ବର୍ଣ୍ଣନା ହେଲେ ମଧ୍ୟ, ଏହା ପ୍ରତ୍ୟକ୍ଷ ଭାବରେ ବ୍ୟାଖ୍ୟା ନ କରି କେବଳ ନିଷେଧ ଉପାୟ ଅବଲମ୍ବନ କରି ତାର କାର୍ଯ୍ୟ ଶେଷ କରିଛି । ଆମଠାରେ ଥିବା ବିଷୟ ଜଗତର ନିଷେଧ କରି ଜାଗ୍ରତ-ସ୍ୱପ୍ନ-ସୁଷୁପ୍ତ ଅବସ୍ଥାର ଦୂରସ୍ଥ ଏକ ଅବସ୍ଥାକୁ ନିର୍ଦ୍ଦେଶ କରି ଋଷି ଶିଷ୍ୟମାନଙ୍କୁ କହିଛନ୍ତି, "ତାହାହେଲେ ଏହା ହିଁ ଆତ୍ମା" । ଆତ୍ମାଙ୍କୁ ଗୋଟିଏ ବିଷୟ ପରି ନିର୍ଦ୍ଦେଶ କରି "ଏବଂ ଏହାକୁ ଅନୁଭବ କରିବାକୁ ହେବ" ବୋଲି ଗୁରୁ ଶିଷ୍ୟମାନଙ୍କ ଉପରେ ଜୋର ଦେଇଛନ୍ତି ।

ଗୁରୁଙ୍କର ଅନ୍ତିମ ଶବ୍ଦଗୁଡ଼ିକର ତାତ୍ପର୍ଯ୍ୟ ଗୁଢ ଏବଂ ପବିତ୍ର। ପରମସତ୍ତାଙ୍କର ଏକ ସନ୍ତୋଷଜନକ ବ୍ୟାଖ୍ୟାର ଏହି ସମସ୍ତ ବିସ୍ତୃତ ପ୍ରଚେଷ୍ଟା ପରେ ଗୁରୁ କହିଛନ୍ତି, "ବୌଦ୍ଧିକ ସ୍ତରରେ ତୁମେ ବର୍ତ୍ତମାନ ଯାହା ବୁଝିଲ, ସେତିକିରେ ଶାସ୍ତ୍ର ଅଧ୍ୟୟନର ପୂର୍ଣ୍ଣତା ଲାଭ କରିବ ନାହିଁ।" ମନନ ମାଧ୍ୟମରେ ଶାସ୍ତ୍ରକୁ ବୁଝି ହେବ, ଏଥିରେ ସନ୍ଦେହ ନାହିଁ, କିନ୍ତୁ ମନନ ମାଧ୍ୟମରେ କେବଳ ମାତ୍ର ବୁଝିବା ବ୍ରହ୍ମବିଦ୍ୟାର ପରିଣତି ନୁହେଁ । ବୁଝିଥିବା ଅର୍ଥ ଉପରେ ଧ୍ୟାନ କରିବା ଦରକାର।

ପରିଶେଷରେ, ପ୍ରତ୍ୟେକ ଶିଷ୍ୟ ନିଜକୁ ଜଡ଼ ଉପାଧିରୁ ବିଯୁକ୍ତ କରିବାର ଆଶ୍ଚର୍ଯ୍ୟଜନକ କାର୍ଯ୍ୟଟି କରି ପାରିବା ଦରକାର । ତାର ଯେଉଁ ହୃଦୟ-କନ୍ଦରରେ ଆତ୍ମା ନିଜକୁ ପ୍ରତିଭାତ କରନ୍ତି, ତା'ର ଉପଲବ୍ଧି କରିବା ଦରକାର । ବିଷୟ ଜଗତ ଏବଂ ତାର ଉପଲବ୍ଧି ହେଉଛି ମରୁଭୂମିରେ ମରୀଚିକା ପରି, ମରୀଚିକାର ଜଳୀୟ ବାଷ୍ପରେ ଗୋଟିଏ ହେଲେ ବାଲିକଣା ଓଦା ହୁଏ ନାହିଁ ।

ସେହିପରି, ଏଠାରେ କୁହାଯାଇଛି ଯେ, ଅଦ୍ୱୈତ ଏବଂ ପ୍ରପଞ୍ଚାତୀତ ସତ୍ୟଙ୍କୁ ଶିଷ୍ୟ ନିଜ ଭିତରେ ଅନୁଭବ କରିବା କଥା । ଯେତେ ଅଧ୍ୟୟନ କରି ମନନ କଲେ ବି ତାହା ଜୀବନର ଲକ୍ଷ୍ୟ ପୂର୍ଣ୍ଣ କରିବ ନାହିଁ । ଆଧ୍ୟାତ୍ମିକ ଜୀବନରେ ସଫଳତା ଏବଂ ଅନ୍ତିମ ଐଶ୍ୱର୍ଯ୍ୟ ପାଇଁ ଧ୍ୟାନ ହେଉଛି ରାଜପଥ ।

ନିମ୍ନୋକ୍ତ ଶ୍ଳୋକଗୁଡିକ କାରିକାରୁ ଆସିଛି ।

**ନିବୃତ୍ତେଃ ସର୍ବଦୁଃଖାନାମୀଶାନଃ ପ୍ରଭୁରବ୍ୟୟଃ ।**

**ଅଦ୍ୱୈତଃ ସର୍ବଭାବାନାଂ ଦେବସ୍ତୁର୍ୟ୍ୟୋ ବିଭୂଃ ସ୍ମୃତଃ ॥୧୦॥**

ନିବୃତ୍ତେଃ = (ରୁ) ମୁକ୍ତ, ସର୍ବ-ଦୁଃଖାନାମ୍ = ସମସ୍ତ ଦୁଃଖ, ଇଶାନଃ = ଈଶ୍ୱର, ପ୍ରଭୁଃ = ସର୍ବଶକ୍ତିମାନ, ଅବ୍ୟୟଃ = ଅବ୍ୟୟ, ଅଦ୍ୱୈତଃ = ଅଦ୍ୱୈତ, ସର୍ବ ଭାବାନାମ୍= ସମସ୍ତ ସତ୍ତା, ଦେବଃ = ଦେବ, ଦିପ୍ତିମାନ, ତୁର୍ଯ୍ୟଃ = ତୁରୀୟ, ବିଭୁଃ = ସର୍ବବ୍ୟାପୀ, ସ୍ମୃତଃ = ବିଚାର କରଯାଏ ।

*ଅବ୍ୟୟ ଏବଂ ଅଦ୍ୱୈତ ଭାବରେ ଯାହାଙ୍କୁ ଦର୍ଶାଯାଇଛି, ତାଙ୍କଠାରେ କୌଣସି ଦୁଃଖ ନାହିଁ । ବହୁବିଧ ଜଗତରେ ତାହା ଏକମେବ ଅଦ୍ୱୈତୀୟ, ତାହା ତୁରୀୟ, ଚିର ପ୍ରକାଶ ଏବଂ ସର୍ବବ୍ୟାପୀ ଭାବରେ ପରିଚିତ ॥୧୦॥*

ପୂର୍ବ ମନ୍ତ୍ରର ବିଶଦ ବ୍ୟାଖ୍ୟାର ପରିପ୍ରେକ୍ଷୀରେ କାରିକାରେ ନିର୍ଦ୍ଦେଶିତ ପଦ ଏବଂ ଗୁଣ ସଂପୂର୍ଣ୍ଣ ଭାବେ ସ୍ୱ-ପ୍ରତିଭାତ । ଉପନିଷଦ୍‌ରେ ସଂଜ୍ଞା ଦ୍ୱାରା ଯେଉଁ ମୁଖ୍ୟ ବିଷୟର ଇଙ୍ଗିତ ଦିଆଯାଇଛି, କାରିକାରେ ତା'ର ସାରାଂଶ ଦେବାକୁ ଚେଷ୍ଟା କରୁଛନ୍ତି । ପୂର୍ବ ମନ୍ତ୍ରରେ, ତାଙ୍କର ଅନନୁକରଣୀୟ ଶବ୍ଦରେ ଉପନିଷଦ୍ ପରମଙ୍କର ସଂଜ୍ଞା ନିରୂପଣ କରି ଏକ ଆଶ୍ଚର୍ଯ୍ୟଜନକ କାର୍ଯ୍ୟ କରିଛନ୍ତି । ଏହାକୁ ସଂଜ୍ଞା କୁହାଯାଇପାରିବ ନାହିଁ - କାରଣ କୌଣସି ପଦାର୍ଥ ବା ପ୍ରପଞ୍ଚର ପରିପୂର୍ଣ୍ଣ ବ୍ୟାଖ୍ୟା ହିଁ ହେଉଛି ସଂଜ୍ଞା । ପରମସ୍ୱରୂପ ବା ତୁରୀୟଙ୍କର ପରୋକ୍ଷ ବ୍ୟାଖ୍ୟା ଅପେକ୍ଷା ବ୍ୟବହୃତ ଶବ୍ଦର ଲକ୍ଷଣାତ୍ମକ ଅର୍ଥ ପ୍ରକାଶ କରିବାରେ ଶେଷ ଶ୍ଳୋକଟିର ସଫଳତା ନିହିତ ।

ଜଣେ ନୂଆ ଶିଷ୍ୟ ପାଇଁ ପ୍ରକୃତ ଅର୍ଥ ବୁଝିପାରିବା ସ୍ୱାଭାବିକଭାବେ ବଡ଼ କଷ୍ଟ । ଏପରି ସମୟରେ ଗୁରୁଙ୍କର ଆଶୀର୍ବଚନ ଦରକାର ହୁଏ । ଶବ୍ଦମାନଙ୍କର ପ୍ରକୃତ ଇଙ୍ଗିତ ଆମେ ନିଜେ ବୁଝିପାରିବା ପରି ସେ ଆମର ଧ୍ୟାନ, ଚିନ୍ତା ଏବଂ ପ୍ରମାଣ (ଯୁକ୍ତି)କୁ ଉପଯୁକ୍ତ ମାର୍ଗରେ ପରିଚାଳିତ କରାଇ ପାରିବେ । କାରିକାକାର ଭାବରେ ଗୌଡ଼ପାଦଙ୍କର କର୍ତ୍ତବ୍ୟ ହେଲା, ଉପଯୁକ୍ତ ମାର୍ଗରେ ଆମର ଧ୍ୟାନ ନିର୍ଦ୍ଦେଶ କରିବା । ଉପନିଷଦ୍‌ର ପ୍ରକୃତ ଅର୍ଥକୁ ଯଥାର୍ଥ ଭାବରେ ବୁଝିବାର ଚରମ ଲକ୍ଷ୍ୟ ଦିଗକୁ, ନିମ୍ନୋକ୍ତ ଶ୍ଳୋକ ମାନଙ୍କରେ ସେ ଆମର ମନନକୁ ପରିଚାଳିତ କରିଛନ୍ତି ।

**କାର୍ଯ୍ୟକାରଣବଦ୍ଧୌ ତାବିଷ୍ୟେତେ ବିଶ୍ୱତୈଜସୌ।**
**ପ୍ରାଜ୍ଞଃ କାରଣବଦ୍ଧସ୍ତୁ ଦ୍ୱୌ ତୌ ତୁର୍ଯ୍ୟେ ନ ସିଧ୍ୟତଃ॥୧୧॥**

କାର୍ଯ୍ୟ = କାର୍ଯ୍ୟ, କାରଣ = କାରଣ, ବଦ୍ଧୌ = ପରିଚ୍ଛିନ୍ନ ହୋଇ, ତୌ = ଉଭୟ, ଇଷ୍ୟେତେ = ବୋଲି ବିଚାର କରାଯାଏ, ବିଶ୍ୱ-ତୈଜସୌ = ବିଶ୍ୱ ଏବଂ ତେଜସ୍, ପ୍ରାଜ୍ଞ = ପ୍ରାଜ୍ଞ, କାରଣ-ବଦ୍ଧଃ = କେବଳ କାର୍ଯ୍ୟ ଦ୍ୱାରା ବିଶେଷ ଗୁଣଯୁକ୍ତ ହୋଇ, ତୁ = କିନ୍ତୁ, ଦ୍ୱୌ ତୌ = ଉଭୟ, ତୁର୍ଯ୍ୟେ = ତୁରୀୟରେ, ନ ସିଧ୍ୟତଃ = ରହନ୍ତି ନାହିଁ ।

*ଉଭୟ ବିଶ୍ୱ ଏବଂ ତୈଜସ୍, କାର୍ଯ୍ୟ ଏବଂ କାରଣ ଦ୍ୱାରା ବିଶେଷ ଗୁଣଯୁକ୍ତ ହୋଇଥାନ୍ତି । କିନ୍ତୁ ପ୍ରାଜ୍ଞ କେବଳ କାର୍ଯ୍ୟ ଦ୍ୱାରା ହିଁ ଗୁଣଯୁକ୍ତ ହୋଇଥାଏ । ତୁରୀୟରେ କାର୍ଯ୍ୟ ଏବଂ କାରଣ ଉଭୟ ରହି ନ ଥାନ୍ତି ॥୧୧॥*

'କାରଣ' ଏପରି ଅବସ୍ଥା ଯେଉଁଥିରେ କାର୍ଯ୍ୟ ସବୁ ରହିଥାଏ- ଅବଶ୍ୟ ଅବ୍ୟକ୍ତ ଅବସ୍ଥାରେ। କାରଣରୁ କାର୍ଯ୍ୟ ବ୍ୟକ୍ତ ହେଲେ, କାରଣ ନିଶ୍ଚିତଭାବରେ ବିଲୁପ୍ତ ହୋଇ କାର୍ଯ୍ୟ ହୋଇଯାଏ। ବିଶ୍ୱ ବା ଜାଗ୍ରତପୁରୁଷ ଉଭୟ କାର୍ଯ୍ୟ, କାରଣଦ୍ୱାରା ବିଶେଷ ଗୁଣଯୁକ୍ତ ହୋଇଥାଏ। ଆଧ୍ୟାତ୍ମିକ ଜଗତରେ 'କାରଣ' ହେଲା, ଆମ ସ୍ୱ ସ୍ୱରୂପର ଅଜ୍ଞାନ (ଅବିଦ୍ୟା)। ଆମେ, ଶାଶ୍ୱତ, ଚିରନ୍ତନ, ସର୍ବବ୍ୟାପୀ, ଶୁଦ୍ଧ-ଚୈତନ୍ୟ ବୋଲି ନିଜକୁ ଜାଣି ନ ପାରି ବିଷୟ ଜଗତ ଦେଖିବା ପାଇଁ ନିଜଠାରୁ ନିଜକୁ ପ୍ରକ୍ଷେପିତ କରିଥାଉ । ଏବଂ ତାପରେ, ଏହି ବିଷୟରେ ନିଜକୁ ଛନ୍ଦି ପକାଇ ଆମର ରାଗ ଏବଂ ଦ୍ୱେଷ ଦ୍ୱାରା, ଆମର ପସନ୍ଦ ଅପସନ୍ଦ ଦ୍ୱାରା ଆମେ ବିହ୍ୱଳ ବିକ୍ଷିପ୍ତ ଜାଗ୍ରତ ଅବସ୍ଥାର ଜୀବନଯାପନ କରି ସୁଖ-ଦୁଃଖ ଭିତରେ ଭାଙ୍ଗିରୁଜି ଯାଇଥାଉ।

ତେଣୁ, 'ବିଶ୍ୱ'କୁ ଉଭୟ କାରଣ (ଅଜ୍ଞାନ) ଏବଂ ଏହାର କାର୍ଯ୍ୟ (ବିଷୟଜଗତ)ର ଶିକାର ଭାବରେ ବିଚାର କରାଯାଇ ପାରିବ । ଏଠାରେ ଜଗତରେ କେବଳ ସଜୀବ ବା ନିର୍ଜୀବ ନୁହେଁ, ଆମର ମନ, ବୁଦ୍ଧି ଏବଂ ଶରୀର ମଧ୍ୟ ଅନ୍ତର୍ଭୂକ୍ତ। ଆମେ ଜାଣୁ ଯେ, ଆମଠାରେ ଥିବା 'ଜାଗ୍ରତ ପୁରୁଷ' ବାହ୍ୟ ବିଷୟଜଗତ ବା ପରିସ୍ଥିତି ଦ୍ୱାରା କେବଳ ବିଶେଷ ଗୁଣଯୁକ୍ତ ହୋଇ ନଥାଏ, ବରଂ ଆମର ମନ ଏବଂ ବୁଦ୍ଧି ଦ୍ୱାରା ମଧ୍ୟ ବଦ୍ଧ ହୋଇ ପ୍ରହାର ଖାଇଥାଏ ।

ଯଦି ସୂକ୍ଷ୍ମ ଏବଂ ଉଚ୍ଚ ମନନ କ୍ଷମତା ନ ଥିବ ତେବେ ମନ୍ତ୍ରରେ ଇଙ୍ଗିତ କରାଯାଇଥିବା ଏହି ଅବଧାରଣା ନୂତନ ଶିଷ୍ୟଙ୍କ ପାଇଁ ସ୍ପଷ୍ଟ ହେବ ନାହିଁ । ଗୌଡ଼ପାଦ

କହୁଛନ୍ତି ଯେ, ଉପନିଷଦ୍‌ରେ ଯାହା କୁହାଯାଇଛି ତୁରୀୟ ବହିଃପ୍ରାଜ୍ଞ ନୁହେଁ ବା ଅନ୍ତଃ ପ୍ରାଜ୍ଞ ନୁହେଁ, 'ତା'ର ଅର୍ଥ ହେଲା - ଏହା ବିଶ୍ୱ ନୁହେଁ ବା ତୈଜସ୍ ନୁହେଁ । ବିଶ୍ୱ ଭାବରେ ପରମ ପୁରୁଷ ଠିକ୍ କିପରି ଭାବରେ 'ଜାଗ୍ରତପୁରୁଷ' ନୁହଁନ୍ତି, କାରିକାକାର ବର୍ତ୍ତମାନ ତାହା ଦର୍ଶାଉଛନ୍ତି । 'ଜାଗ୍ରତ ପୁରୁଷ' ଉଭୟ ଅଜ୍ଞାନ ଏବଂ ଅଜ୍ଞାନ-ସୃଷ୍ଟ ମାନସିକ ଏବଂ ବୌଦ୍ଧିକ ଦୁର୍ବଳତାର ଅହଂବଦ୍ଧ ଧାରଣା ଏବଂ ବାହ୍ୟ ଭ୍ରାନ୍ତ ଜଗତର ଭ୍ରମ ଭାବ ଦ୍ୱାରା ଭୂଷିତ ।

ସୂକ୍ଷ୍ମ ଶରୀର ସହିତ ତାଦାତ୍ମ୍ୟ କରି ଆତ୍ମା ସୃଷ୍ଟି କରିଥିବା ତୈଜସ୍ ବା ସ୍ୱପ୍ନଦ୍ରଷ୍ଟା ପାଇଁ ବାହ୍ୟ ସ୍ଥୂଳ ଜଗତ ନିଶ୍ଚିତ ଭାବରେ ନାହିଁ, କିନ୍ତୁ, ତତ୍‌ସହିତ, ସ୍ୱପ୍ନ ଜଗତର ପରିସ୍ଥିତି ଏବଂ ଗୁଣ ଦ୍ୱାରା ଏହା ଗୁଣଯୁକ୍ତ ହୋଇଥାଏ । ତେଣୁ ଗୌଡ଼ପାଦ କହିଛନ୍ତି ଯେ, ତୈଜସ୍ ମଧ୍ୟ ଉଭୟ କାର୍ଯ୍ୟ ଏବଂ କାରଣ ଦ୍ୱାରା ଗୁଣଯୁକ୍ତ ହୋଇଥାଏ ।

ଏହିପରି ଭାବରେ ଯଦି ଉଭୟ ବିଶ୍ୱ ଏବଂ ତୈଜସ୍ କାର୍ଯ୍ୟ ଏବଂ କାରଣ ଦ୍ୱାରା ଗୁଣଯୁକ୍ତ ତେବେ ପ୍ରାଜ୍ଞ ବା ସୁଷୁପ୍ତ, 'ଜାଗ୍ରତପୁରୁଷ' ଏବଂ 'ସ୍ୱପ୍ନଦ୍ରଷ୍ଟା' ଠାରୁ ପୃଥକ କିପରି ? କୁହାଯାଇଛି ଯେ, ସୁଷୁପ୍ତ ଅହଂ (ଜୀବ) କେବଳ କାର୍ଯ୍ୟ ଦ୍ୱାରା ଗୁଣଯୁକ୍ତ ହୋଇଥାଏ । ସୁଷୁପ୍ତି ଅବସ୍ଥାରେ ଆମେ କୌଣସି ବିଷୟ ବା ବହୁବିଧ ଜଗତ ବିଷୟରେ ଜାଣିପାରୁ ନାହେଁ। ସୁଷୁପ୍ତିରେ, 'ମୁଁ ଜାଣେ ନାହିଁ'- ଏହି ନକାରାତ୍ମକ ଘନ ଧାରଣା ବିଷୟରେ ଜାଣିଥାଉ । 'ମୁଁ ଜାଣେ ନାହିଁ' ଆମେ କେବଳ ଏହି ନିରବଛିନ୍ନ ଅଖଣ୍ଡ ଚିନ୍ତା ବିଷୟରେ ଜାଣିଥାଉ ଏବଂ ତେଣୁ ସୁଷୁପ୍ତି ଅବସ୍ଥାରେ ଅଜ୍ଞାନ ବ୍ୟତୀତ ଅନ୍ୟ କିଛି ଅନୁଭବ କରିପାରୁ ନାହେଁ । ଆମ ସ୍ୱରୂପର ଅଜ୍ଞାନ ହିଁ ସମଗ୍ର ବହୁବିଧ ଓ ସସୀମ ଜଗତର କାରଣ । ତେଣୁ, ସୁଷୁପ୍ତ ଅଜ୍ଞାନର କାର୍ଯ୍ୟ ଯଥା ଜାଗ୍ରତ ଏବଂ ସ୍ୱପ୍ନ ଦ୍ୱାରା ନୁହେଁ, ବରଂ କେବଳ ଅଜ୍ଞାନ ମାତ୍ର ଦ୍ୱାରା ହିଁ ଗୁଣଯୁକ୍ତ ହୋଇଥାଏ ।

ଗୁରୁ କହୁଛନ୍ତି ଯେ, ବିଶ୍ୱ ଏବଂ ତୈଜସ ଯଦି ଉଭୟ କାର୍ଯ୍ୟ ଏବଂ କାରଣ ଦ୍ୱାରା ଗୁଣଯୁକ୍ତ ହୁଅନ୍ତି, ଏବଂ ପ୍ରାଜ୍ଞ କେବଳ କାର୍ଯ୍ୟଦ୍ୱାରା, ତେବେ ଚତୁର୍ଥ ତୁରୀୟ ଅବସ୍ଥା, ବାସ୍ତବରେ କ'ଣ ? ଏହା ହିଁ ଏହି ଶ୍ଳୋକର ବିଷୟ । ସତ୍ୟ ବା ତୁରୀୟ କାର୍ଯ୍ୟ ବା କାରଣ ଦ୍ୱାରା ଗୁଣଯୁକ୍ତ ହୁଏ ନାହିଁ, ଏହା ହିଁ ଏଠାରେ ଘୋଷଣା କରାଯାଇଛି । ଖମ୍ବରେ ଭୂତର ଭୟଙ୍କର ସ୍ୱଭାବ ବା ପୋଷାକ, ତା' ଶରୀରର ବିଭିନ୍ନ ଅଂଶ ଖମ୍ବକୁ ଗୁଣ ଯୁକ୍ତ କରେ ନାହିଁ । ଖମ୍ବରେ କୌଣସି ଭୂତ ନ ଥାଏ ।

ଭୂତ ଦୃଶ୍ୟର ଅଧ୍ୟାସ ହେଉଛି ଏକ ଭ୍ରମ ଏବଂ କୌଣସି ଭ୍ରମ ସତ୍ୟ ବା ପରମ ସ୍ୱରୂପଙ୍କୁ ଗୁଣଯୁକ୍ତ କରିପାରିବ ନାହିଁ । ମରୀଚିକାର ଜଳ ମରୁଭୂମିର ଗୋଟିଏ ହେଲେ ବାଲିକଣାକୁ ଓଦା କରିପାରିବ ନାହିଁ । ସେହିପରି ଜାଗ୍ରତ, ସ୍ୱପ୍ନଦ୍ରଷ୍ଟା ଏବଂ ସୁଷୁପ୍ତକୁ ଗୁଣଯୁକ୍ତ କରୁଥିବା କୌଣସି କାର୍ଯ୍ୟ ବା କାରଣ ଏହି ତିନିଙ୍କ ପଛରେ ଥିବା ସତ୍ୟ ବା ପରମେଶ୍ୱରଙ୍କୁ କଳୁଷିତ କରିପାରିବ ନାହିଁ । ଏପରି କହି, ଜାଗ୍ରତ, ସ୍ୱପ୍ନ ଏବଂ ସୁଷୁପ୍ତ ଅବସ୍ଥାର ଜୀବ ହେଉଛି ପରମସ୍ୱରୂପ ତୁରୀୟଙ୍କ ଉପରେ କେବଳ ଅଧ୍ୟାସ ମାତ୍ର ବୋଲି କାରିକାକାର ସୂଚାଇଛନ୍ତି ।

**ନାତ୍ମାନଂ ନ ପରାଂଶ୍ଚୈବ ନ ସତ୍ୟଂ ନାପି ଚାନୃତମ୍ ।**
**ପ୍ରାଜ୍ଞଃ କିଞ୍ଚନ ସଂବେତ୍ତି ତୁର୍ଯ୍ୟଂ ତତ୍ ସର୍ବଦୃକ୍ ସଦା ॥୧୨॥**

ନ ଆତ୍ମାନାମ୍ = ନିଜେ ନୁହେଁ, ନ ଚ ଏବ ପରାନ୍ = ଏବଂ ଅନ୍ୟମାନେ ମଧ୍ୟ ନୁହଁନ୍ତି, ନ ସତ୍ୟମ୍ = ସତ୍ୟ ବି ନୁହେଁ, ନ-ଅପି ଚ-ଅନୃତଂ = ଅସତ୍ୟ ମଧ୍ୟ ନୁହେଁ, ପ୍ରାଜ୍ଞଃ = ପ୍ରାଜ୍ଞ, କିଞ୍ଚନ = ଯେକୌଣସି ଜିନିଷ, ସଂବେତ୍ତି = ଜାଣେ, ତତ୍ ତୁର୍ଯ୍ୟମ୍ = ସେହି ତୁରୀୟ, ସର୍ବ-ଦୃକ୍ = ସର୍ବ ଦ୍ରଷ୍ଟା, ସଦା = ସବୁଦିନ ପାଇଁ ।

*ପ୍ରାଜ୍ଞ ସତ୍ୟ ବା ଅସତ୍ୟ ବିଷୟରେ କିଛି ଜାଣେ ନାହିଁ, ପ୍ରାଜ୍ଞ ଆତ୍ମା ବା ଅନାତ୍ମା ବିଷୟରେ କିଛି ଜାଣେ ନାହିଁ, ପ୍ରାଜ୍ଞ କିଛିହେଲେ ଜାଣେ ନାହିଁ । କିନ୍ତୁ ତୁରୀୟ ଚିରଦିନ ପାଇଁ ରହିଛି ଏବଂ ଏହା ସର୍ବଦା ସର୍ବଜ୍ଞ ଏବଂ ସର୍ବଦ୍ରଷ୍ଟା ॥୧୨॥*

ଅଜ୍ଞାନ (ଅବିଦ୍ୟା) ଭାବରେ ବ୍ୟାଖ୍ୟା କରାଯାଇଥିବା କାରଣ, ପରମସ୍ୱରୂପଙ୍କର ଅନୁପଲବ୍ଧି ବ୍ୟତୀତ ଅନ୍ୟ କିଛି ନୁହେଁ । ଫଳ ସ୍ୱରୂପ ଏହା ଭ୍ରାନ୍ତ ଜଗତର ସୃଷ୍ଟି କରେ, ଏହି ଅର୍ଥରେ ଏହାର କାର୍ଯ୍ୟକୁ ମିଥ୍ୟା ଜ୍ଞାନ କୁହାଯିବ । ପରମେଶ୍ୱରଙ୍କ (ସତ୍ୟଙ୍କ) ସମ୍ବନ୍ଧୀୟ ଏହି ଅଜ୍ଞାନତା ଆମ ଜୀବନରେ ଏପରି ଭ୍ରାନ୍ତ ଧାରଣା ସୃଷ୍ଟି କରେ । ଉଭୟ ଜାଗ୍ରତ ପୁରୁଷ ଏବଂ ସ୍ୱପ୍ନଦ୍ରଷ୍ଟା ଆତ୍ମ-ଅଜ୍ଞାନ ଏବଂ ମିଥ୍ୟା ଜ୍ଞାନ ଦ୍ୱାରା ଗୁଣଯୁକ୍ତ ହୋଇଥାନ୍ତି । ସୁଷୁପ୍ତି ଅବସ୍ଥାରେ ଆମଠାରେ ଥିବା ଜୀବ, ସତ୍ୟଙ୍କର ଅଜ୍ଞାନ (କାରଣ) ଦ୍ୱାରା ହିଁ କେବଳ ଗୁଣଯୁକ୍ତ ହୋଇଥାଏ । ପୂର୍ବ କାରିକାରେ ଆମେ କେବଳ ଏତିକି ମାତ୍ର ଜାଣି ପାରିଛୁ ।

ବର୍ତ୍ତମାନ ତୁରୀୟରେ ଅଜ୍ଞାନତା ବା ଭୂଲ ଧାରଣା ନାହିଁ ବୋଲି କୁହାଯିବାବେଳେ ଆମ ମନରେ ସନ୍ଦେହ ଦେଖା ଦେଇପାରେ ଯେ, ତୁରୀୟ ଏବଂ ପ୍ରାଜ୍ଞ ମଧ୍ୟରେ, ତଥା ପରମ (ସତ୍ୟ)ସ୍ୱରୂପ ଏବଂ ସୁଷୁପ୍ତ ମଧ୍ୟରେ ଯଥାର୍ଥ ରୂପେ ପ୍ରଭେଦ କଣ ?

ନିଷେଧ ଉପାୟରେ ସବୁବେଳେ ଗୋଟିଏ ବିପଦ ରହିଥାଏ । ତାହା ହେଲା- ଶିଷ୍ୟମାନେ ପରମସ୍ୱରୂପଙ୍କୁ "ତାହା, ଯାହାଙ୍କୁ ନିଷେଧ କରାଯାଇ ପାରିବ ନାହିଁ", ବୋଲି ବୁଝି ପାରନ୍ତି । ଗତ ଶ୍ଳୋକରେ ଗୌଡ଼ପାଦ ତୁରୀୟରେ ଉଭୟ ଜାଗ୍ରତ ଏବଂ ସ୍ୱପ୍ନ ଅବସ୍ଥାର ନିଷେଧ କରିଛନ୍ତି । ତେଣୁ ବିପଦ ହେଲା, ଶିଷ୍ୟମାନେ ଧରିନେଇ ପାରନ୍ତି ଯେ, ପରମସ୍ୱରୂପ ସୁଷୁପ୍ତ ଅବସ୍ଥା ଏବଂ ସେହି ଅବସ୍ଥାରେ ଥିବା ଜୀବ (ଅହଂ) ହୋଇ ପାରନ୍ତି । ଏହାକୁ ବି ନିଷେଧ କରିବା ପାଇଁ ଏହି ଶ୍ଳୋକରେ ଆମକୁ ଅଧିକରୁ ଅଧିକ ସୂକ୍ଷ୍ମ ବର୍ଣ୍ଣନା ଏବଂ ଯୁକ୍ତି ଦିଆଯାଇଛି ।

ଏଠାରେ ଆମେ ସୁଷୁପ୍ତିର ବିଷୟହୀନ ଜଗତ ଏବଂ ପରମସ୍ୱରୂପଙ୍କର ସୁଷୁପ୍ତି ବିହୀନ ଜଗତର ସ୍ପଷ୍ଟ ତୁଳନା ଦେଖିବାକୁ ପାଉ । ଏପରିକି ସୁଷୁପ୍ତି ବିଷୟକ ଧାରଣ କରିବା ବା ବୁଝିବା ଆମ ପକ୍ଷେ ବଡ଼ କଷ୍ଟକର । ସୁଷୁପ୍ତିବିହୀନ ପରମେଶ୍ୱରଙ୍କ ସମ୍ବନ୍ଧରେ ଉପନିଷଦ୍ ଆମକୁ ନିର୍ଦ୍ଦେଶ କଲାବେଳେ ତାର ଯଥାର୍ଥ ଅର୍ଥ ଧାରଣା କରିବାକୁ ଜଣକୁ ନିଶ୍ଚିତ ଭାବରେ ଯଥେଷ୍ଟ ପରିମାଣରେ ପରିଶ୍ରମ କରିବାକୁ ପଡ଼ିବ ।

ଏହି ଶ୍ଳୋକରେ କାରିକାକାର ବ୍ୟାଖ୍ୟା କରିଛନ୍ତି ଯେ, ସୁଷୁପ୍ତ ଅବସ୍ଥାରେ ଜୀବ କିଛି ଜାଣି ପାରେ ନାହିଁ- ସତ୍ୟକୁ ନୁହେଁ ବା ଅସତ୍ୟକୁ ନୁହେଁ, ଠିକ୍‌କୁ ନୁହେଁ ବା ଭୂଲକୁ ନୁହେଁ, ଆତ୍ମାକୁ ନୁହେଁ ବା ଅନାତ୍ମାକୁ ନୁହେଁ । ସୁଷୁପ୍ତି ପୂର୍ଣ୍ଣତାର ଅବସ୍ଥା ନୁହେଁ, ଏହା ଶୁଦ୍ଧ ଚୈତନ୍ୟର ଅବସ୍ଥା ନୁହେଁ । ସୁଷୁପ୍ତି ଅବସ୍ଥାରେ ଆମେ କେବଳ 'ଅଜ୍ଞାନ-ଅବତାର'ର ଜ୍ଞାନ ଅନୁଭବ କରିପାରୁ ।

ଅନ୍ଧାରକୁ ଦେଖିବାର ମାନେ ଆଲୁଅକୁ ନ ଦେଖିବା । ଅନ୍ୟ ପକ୍ଷରେ ତୁରୀୟ ହେଉଛି ଚିରନ୍ତନ, ଏବଂ ଅବିଚ୍ଛିନ୍ନ 'ଜାଣୁଥିବାର' ଅବସ୍ଥା । ଏହି ଅର୍ଥରେ ଆଲୋକ ଓ ଅନ୍ଧକାର ପରି ତୁରୀୟ ଏବଂ ପ୍ରାଜ୍ଞ, ପରସ୍ପରର ବିପରୀତ ଓ ବିରୋଧୀ । ଆମର ସୁଷୁପ୍ତି ଅବସ୍ଥାର ଜ୍ଞାନ ହେଉଛି " ଆମେ କିଛି ଜାଣୁ ନାହେଁ"। ତୁରୀୟ ହେଉଛି ଜ୍ଞାନର ଏପରି ଏକ ଅବସ୍ଥା, ଯେଉଁଥିରେ ଆମେ ନିରବଚ୍ଛିନ୍ନ ଭାବେ ଜାଣୁ ଯେ, 'ଆମେ ସବୁ ଜାଣୁ'। ତୁରୀୟ ହେଉଛି ଶୁଦ୍ଧ ଜ୍ଞାନ । ତେଣୁ ଜାଣିବା ହେଉଛି ଏହାର ଅପରିହାର୍ଯ୍ୟ ସ୍ୱରୂପ ।

ନିଜକୁ ଆଲୋକିତ କରିବା ପାଇଁ ଆଲୋକ ଅନ୍ୟ ଆଲୋକର ସାହାଯ୍ୟ ଆବଶ୍ୟକ କରେ ନାହିଁ, ଆଲୋକ ନିଜେ ହିଁ ଆଲୋକିତ । ସେହିପରି ଆତ୍ମାଙ୍କୁ ଜାଣିବା ପାଇଁ ଅନ୍ୟ ଜ୍ଞାନର ଆବଶ୍ୟକ ନାହିଁ । ଆତ୍ମା ନିଜେ ବିଷୟ ହୋଇଥିବାରୁ ଆତ୍ମଜ୍ଞାନ ହେବା ପାଇଁ ଅନ୍ୟ କୌଣସି ବିଷୟର ଆବଶ୍ୟକ ହୁଏ ନାହିଁ । ଆତ୍ମା ବା ତୁରୀୟ ସବୁ ଜାଣୁଛନ୍ତି ।

ତେଣୁ କାରିକାକାର ତୁରୀୟ ସଦାସର୍ବଦା ସର୍ବଦ୍ରଷ୍ଟା ବୋଲି କହିବା ବେଳେ ତୁରୀୟଙ୍କର ଏହି ବୈଶିଷ୍ଟ୍ୟ ସାରପୂର୍ଣ୍ଣ ଭାବରେ ଦର୍ଶାଇଛନ୍ତି ।

**ଦ୍ୱୈତସ୍ୟାଗ୍ରହଣଂ ତୁଲ୍ୟମୁଭୟୋଃ ପ୍ରାଜ୍ଞତୂର୍ଯ୍ୟୟୋଃ।**
**ବିଜନିଦ୍ରାୟୁତଃ ପ୍ରାଜ୍ଞଃ ସା ଚ ତୁର୍ଯ୍ୟେ ନ ବିଦ୍ୟତେ ।।୧୩।।**

ଦ୍ୱୈତସ୍ୟ = ଦ୍ୱୈତର, ଅଗ୍ରହଣମ୍ = ଅବଗତ ନ ହେବା, ତୁଲ୍ୟମ୍ = ସାଧାରଣ ଅଟେ, ଉଭୟୋଃ ପ୍ରାଜ୍ଞ-ତୁର୍ଯ୍ୟୟୋଃ = ଉଭୟ ପ୍ରାଜ୍ଞ ଏବଂ ତୁରୀୟ ପାଇଁ, ବୀଜ-ନିଦ୍ରା-ଯୁତଃ = କାରଣଜନିତ ଅଜ୍ଞାନ ସହିତ ସଂଯୁକ୍ତ, ପ୍ରାଜ୍ଞଃ = ପ୍ରାଜ୍ଞ, ଚ ସା = ଏବଂ ତାହା, ତୁର୍ଯେ = ତୁରୀୟରେ, ନ ବିଦ୍ୟତେ = ନ ଥାଏ ।

*ଉଭୟ ତୁରୀୟ ଏବଂ ସୁଷୁପ୍ତ ଅବସ୍ଥାରେ ଦ୍ୱୈତ ଭାବର ଅବଗତି ହୁଏ ନାହିଁ, କିନ୍ତୁ ସୁଷୁପ୍ତ ନିଦ୍ରା ଗୁଣରେ ଯୁକ୍ତ ହୋଇ କାରଣ ରୂପରେ ଥାଏ । ଏହି-ସୁଷୁପ୍ତି ବା କାରଣ (ଅବିଦ୍ୟା) ତୁରୀୟରେ ନ ଥାଏ ।।୧୩।।*

ଶେଷ ଦୁଇ ଶ୍ଳୋକର ଗଭୀର ମନନ କଲେ ଗୋଟିଏ ସନ୍ଦେହ ଦେଖା ଦେଇପାରେ ଏବଂ ଏଠାରେ ତାହାର ଉତ୍ତର ଦିଆ ଯାଇଛି। ସୁଷୁପ୍ତି ଅବସ୍ଥାରେ ଦ୍ୱୈତ ଭାବରେ ଅବଗତି ହୋଇ ନଥାଏ ବୋଲି କୁହାଯାଇଛି ।

ତୁରୀୟରେ ଆତ୍ମ ଚେତନାରେ ବିଷୟ ଜଗତ ମଧ୍ୟ ଅନଧିକାର ପ୍ରବେଶ କରି ନ ଥାଏ, ତେଣୁ ଉଭୟ ସୁଷୁପ୍ତ ଏବଂ ତୁରୀୟରେ ଦ୍ୱୈତ ଭାବ ନ ଥିବାରୁ ସୁଷୁପ୍ତିରୁ ତୁରୀୟ କିପରି ଭାବରେ ଭିନ୍ନ ? ସଂକ୍ଷେପରେ, ତୁରୀୟରେ ଦ୍ୱୈତ ଭାବର ଅନୁପସ୍ଥିତି ଥିବାରୁ, ସୁଷୁପ୍ତ ଅବସ୍ଥା ଅପେକ୍ଷା ଏହା ଭିନ୍ନ କିଛି ହୋଇ ନ ଥିବ ବୋଲି ଯୁକ୍ତି ଉଠି ପାରେ ।

ପୃଥିବୀର ନାସ୍ତିକମାନେ, ବିଶେଷକରି ସାମ୍ୟବାଦୀମାନେ ସେମାନଙ୍କର ନିଜର ଭ୍ରମ ବିଚାର ଯୋଗୁଁ ପ୍ରମାଣ କରିବାକୁ ଚାହାଁନ୍ତି ଯେ, ଧର୍ମ ହେଉଛି ସାରହୀନ ଏବଂ ଛଳନା-ପୂର୍ଣ୍ଣ। ସେମାନେ ମହାନ୍ ଶାସ୍ତ୍ରମାନଙ୍କୁ ଉପରଠାଉରିଆ ଭାବରେ ବୁଝିବାର ଚେଷ୍ଟା କରନ୍ତି ଏବଂ ନିଜର ବ୍ୟକ୍ତିଗତ ସିଦ୍ଧାନ୍ତରେ ଉପନୀତ ହୁଅନ୍ତି । ସେମାନଙ୍କର ମତ ହେଲା- ବେଦାନ୍ତ ଜନୈକ ପିଢିକୁ ମନୋବୈଜ୍ଞାନିକ ଏବଂ ବୌଦ୍ଧିକ ଜଡତାରୁ ମୁକ୍ତିର ଏକ ସୁଖଦ ଅବସ୍ଥାର ନିର୍ଦ୍ଦେଶ କରେ । ସେମାନଙ୍କ ଯୁକ୍ତିର ନିରର୍ଥକତା ସେମାନଙ୍କର ବେଦାନ୍ତର ସୂକ୍ଷ୍ମ ତତ୍ତ୍ୱ ସମ୍ବନ୍ଧରେ ଅଜ୍ଞାନତାକୁ ପ୍ରକାଶ କରେ । ବୁଦ୍ଧି ଯେତେ ତୀକ୍ଷ୍ଣ ହେଲେ ବି ଶ୍ରୁତିକୁ ବୁଝିହେବ ନାହିଁ ତଥା ଏହାର ତାତ୍ପର୍ଯ୍ୟକୁ ପରୀକ୍ଷା

କରିହେବ ନାହିଁ । ସୁବିବେଚିତ ଏବଂ ଶୁଦ୍ଧ ଅନ୍ତଃକରଣରେ ଏହାର ନିର୍ଦ୍ଦେଶିତ ମୂଲ୍ୟବୋଧର ଜୀବନଯାପନ କଲେ ହିଁ ବେଦାନ୍ତ ବିଷୟବସ୍ତୁର ବୌଦ୍ଧିକ ଧାରଣା କରି ହେବ ।

ଏଠାରେ ତୁରୀୟ ଏବଂ ସୁଷୁପ୍ତି ଅବସ୍ଥାର ମୁଖ୍ୟ ପ୍ରଭେଦ ସ୍ପଷ୍ଟ ଭାବରେ ଦିଆ ଯାଇଛି । ସୁଷୁପ୍ତ, ସୁଷୁପ୍ତି ଅବସ୍ଥାର ଗୁଣଯୁକ୍ତ ହୋଇଥାଏ । ଏହି ଅବସ୍ଥା ପରମେଶ୍ୱରଙ୍କର ଜ୍ଞାନର ଅଭାବ ଭାବରେ ପରିଚିତ । ଏହି ଅଜ୍ଞତା ହେଉଛି ବହୁବିଧ ଜଗତର ଅବଗତିର କାରଣ । ତୁରୀୟ ଅବସ୍ଥା ଏକ ସର୍ବଦା - ସର୍ବଦ୍ରଷ୍ଟା ସ୍ଥିତି ହୋଇଥିବାରୁ ଏଠାରେ ପାରମାର୍ଥିକ ଜ୍ଞାନର ଅଭାବ ନାହିଁ ଏବଂ ତେଣୁ, ତୁରୀୟ ସ୍ତରରେ ସୁଷୁପ୍ତ ଅବସ୍ଥାର ସ୍ଥିତି ନାହିଁ ।

ଆତ୍ମସ୍ଥ ହେବାର ଆନନ୍ଦମୟ ମୁହୂର୍ତ୍ତ ହେଉଛି ସକ୍ରିୟ, ନିରବଚ୍ଛିନ୍ନ, ନିଶ୍ଚଳ ଜ୍ଞାନ ଲାଭ କରିବାର ମୁହୂର୍ତ୍ତ, ଏହା ଏକ ପୂର୍ଣ୍ଣାଙ୍ଗ ପ୍ରକାଶମୟ ଅବସ୍ଥା, ଲୁଚିବାକୁ ଅନ୍ଧାର ପାଇଁ ସେଠାରେ ପାଦେ ହେଲେ ଯାଗା ନାହିଁ । ଏହା ଏକ ସର୍ବବ୍ୟାପୀ, ଅସୀମ, ଶାଶ୍ୱତ, ପୂର୍ଣ୍ଣାଙ୍ଗ ଜ୍ଞାନର ନିରବଚ୍ଛିନ୍ନ ଅବସ୍ଥା । ତୁରୀୟ ଅବସ୍ଥା ଅନ୍ୟ କୌଣସି ଅବସ୍ଥାର ପୂର୍ବର ନୁହେଁ ବା ପରର ନୁହେଁ, ଏହା କାହାର କାରଣ ନୁହେଁ ବା ଅନ୍ୟ କୌଣସି କାରଣର କାର୍ଯ୍ୟ ନୁହେଁ। ଏହା ଅବିକାରୀ ଏବଂ ଶାଶ୍ୱତ । ଏହା ଶୁଦ୍ଧ ଜ୍ଞାନ । ତେଣୁ, ତୁରୀୟରେ କୌଣସି କାରଣ ସମ୍ବନ୍ଧୀୟ ଅବସ୍ଥା (କାରଣ ଶରୀର) ରହିବ ନାହିଁ । ତୁରୀୟ ହେଉଛି ନିର୍ବିକଳ୍ପ ଜ୍ଞାନ । ଏଠାରେ ଅଜ୍ଞାନର ସ୍ଥିତି ଆଦୌ ନାହିଁ ।

**ସ୍ୱପ୍ନନିଦ୍ରାଯୁତାବାଦ୍ୟୌ ପ୍ରାଜ୍ଞସ୍ତ୍ୱସ୍ୱପ୍ନନିଦ୍ରୟା ।**
**ନ ନିଦ୍ରାଂ ନୈବ ଚ ସ୍ୱପ୍ନଂ ତୁର୍ୟେ ପଶ୍ୟନ୍ତି ନିଷ୍ଚିତାଃ ॥୧୪॥**

ସ୍ୱପ୍ନ-ନିଦ୍ରା-ଯୁତୌ = ସ୍ୱପ୍ନ ଏବଂ ନିଦ୍ରା ସହିତ ଯୁକ୍ତହୋଇ, ଆଦ୍ୟୌ = ପ୍ରଥମ ଦୁଇଟି, ତୁ-ପ୍ରାଜ୍ଞଃ = କିନ୍ତୁ ପ୍ରାଜ୍ଞ, ଅସ୍ୱପ୍ନ ନିଦ୍ରୟା = ସ୍ୱପ୍ନ ହୀନ ନିଦ୍ରା, ନ ନିଦ୍ରାମ୍ = ନିଦ୍ରା ବି ନୁହେଁ, ଏବ ଚ ସ୍ୱପ୍ନମ୍ = ଏବଂ ସ୍ୱପ୍ନରେ ମଧ, ତୁର୍ୟେ = ତୁରୀୟରେ, ନ ପଶ୍ୟନ୍ତି = ଦେଖନ୍ତି ନାହିଁ, ନିଷ୍ଚିତାଃ = ଜ୍ଞାନୀ ଲୋକମାନେ ।

*ପ୍ରଥମ ଦୁଇଟି- ବିଶ୍ୱ ଏବଂ ତୈଜସ୍, ସ୍ୱପ୍ନ ଏବଂ ନିଦ୍ରାବସ୍ଥା ସହିତ ଯୁକ୍ତ । ପ୍ରାଜ୍ଞ ହେଉଛି ସ୍ୱପ୍ନ-ବିହୀନ ନିଦ୍ରାବସ୍ଥା । ସତ୍ୟାନୁଭବୀ ଜ୍ଞାନୀମାନେ ତୁରୀୟରେ ନିଦ୍ରା ବା ସ୍ୱପ୍ନ ପାଆନ୍ତି ନାହିଁ ॥୧୪॥*

ପରମସ୍ୱରୂପ, ଶରୀର ସଚେତନ ହୋଇ ସ୍ଥୂଳ ଶରୀର ସହ ତାଦାତ୍ମ୍ୟ କରି ଜଗତକୁ ଚାହିଁଲେ, ଜାଗ୍ରତ ଜଗତର ବହୁବିଧତାର ଅନୁଭବ କରନ୍ତି ଏବଂ ସେଠାରେ ଲାଭ କରୁଥିବା ଅନୁଭୂତି ହେଉଛି 'ଜାଗ୍ରତପୁରୁଷ' ଜୀବନ । ଶରୀର ସଚେତନଶୀଳତାର ଅପସାରଣ କରିନେଲେ, ଭୌତିକ ଜଗତ ମଧ୍ୟ ଅଦୃଶ୍ୟ ହୋଇଯାଏ। ଏହିପରି ଭାବରେ କୌଣସି ବ୍ୟକ୍ତିବିଶେଷର ଧ୍ୟାନ ବାହ୍ୟଜଗତରୁ ଅପସାରିତ ହେଲେ ମନ ଏବଂ ବୁଦ୍ଧିକୁ ନେଇ ଗଠିତ ସୂକ୍ଷ୍ମ ଶରୀର ସହିତ ତାଦାତ୍ମ୍ୟ ହୁଏ । ଏହା ସ୍ୱପ୍ନ ଜଗତ ସୃଷ୍ଟି କରେ ଏବଂ ଏଠାରେ ଇତଃସ୍ତତଃ ଭ୍ରମଣ କଲେ ସେ ସ୍ୱପ୍ନ ଜଗତର ଅନୁଭୂତି ସୃଷ୍ଟି କରେ ।

କାରିକାର "ଜାଗ୍ରତ ପୁରୁଷ" ଏବଂ 'ସ୍ୱପ୍ନଦ୍ରଷ୍ଟା' ସ୍ଥୂଳ ଜଗତ ଏବଂ ସ୍ୱପ୍ନମୟ ନିଦ୍ରା ଉପାଧିଯୁକ୍ତ ହୁଅନ୍ତି ବୋଲି କହିବାର ଅର୍ଥ ହେଲା, ସେମାନେ ଉଭୟ କାର୍ଯ୍ୟ ଏବଂ କାରଣ- ଆତ୍ମ ଅଜ୍ଞାନ ଏବଂ ମିଥ୍ୟା ଜ୍ଞାନର ଉପାଧିଯୁକ୍ତ ହୁଅନ୍ତି । ଅନ୍ୟପକ୍ଷରେ, 'ସୁଷୁପ୍ତ' ସ୍ୱପ୍ନ ବିହୀନ ନିଦ୍ରା ଉପାଧିଯୁକ୍ତ ହୁଏ, ଅର୍ଥାତ୍ ସେ ମିଥ୍ୟା ଜ୍ଞାନ ବିହୀନ ଆତ୍ମ ଅଜ୍ଞାନର ଉପାଧିଯୁକ୍ତ ହୁଏ । ଏହାକୁ ଏପରି କୁହାଯାଇପାରେ ଯେ, ସୁଷୁପ୍ତି ଅବସ୍ଥାରେ ଜୀବ କେବଳ ଅଜ୍ଞାନ (ଅବିଦ୍ୟା) ଦ୍ୱାରା ଉପାଧିଯୁକ୍ତ ହୋଇଥାଏ, ସ୍ଥୂଳ ବା ସୂକ୍ଷ୍ମ ବହୁବିଧ ଜଗତ ଦ୍ୱାରା ନୁହେଁ। ସ୍ପଷ୍ଟ ଭାବରେ କହିବାକୁ ଗଲେ ଏହି ବହୁବିଧ ଜଗତ ହେଉଛି 'ଆତ୍ମ ଅଜ୍ଞାନ' ସ୍ୱରୂପ ରୂପୀ କାରଣର କାର୍ଯ୍ୟ ।

ଆମର ସାଧାରଣ ଜୀବନରେ ଜାଣି ହେଉଥିବା ସଚେତନା ଅବସ୍ଥା ଏବଂ ଅଜ୍ଞାତ ଅବସ୍ଥା ସହ, ଉପନିଷଦ୍‌ରେ ଚେତନାର ଚତୁର୍ଥ ଅବସ୍ଥା ଭାବରେ ବ୍ୟାଖ୍ୟା କରାଯାଇଥିବା, ଅପୂର୍ବ ପରି ମନେ ହେଉଥିବା ଅନୁଭୂତି ମଧ୍ୟରେ ପ୍ରଭେଦ ଦର୍ଶାଇବା ପାଇଁ କାରିକାକାର କଷ୍ଟ ସ୍ୱୀକାର କରିଛନ୍ତି । ସେ କହିଛନ୍ତି ଯେ, ଚେତନାର ସେହି ଶୁଦ୍ଧ ଅବସ୍ଥା ତୁରୀୟରେ ନିଦ୍ରା ନାହିଁ ବା ସ୍ୱପ୍ନ ନାହିଁ ।

ଏହି ଧାରଣା କେବଳ ଏକ କଳ୍ପନା ମାତ୍ର ନୁହେଁ, କିମ୍ବା କେବଳ ଦାର୍ଶନିକ ସିଦ୍ଧାନ୍ତ ନୁହେଁ । ଏହା ଅନୁଭୂତି ଯୋଗ୍ୟ । ଅନେକେ ଏହି ସତ୍ୟରେ ଜୀବନଧାରଣ କରିଛନ୍ତି। ଏହି ମହାନୁଭୂତି ପାଇଁ ନିଜକୁ ପ୍ରସ୍ତୁତ କରିପାରିଲେ ପ୍ରତ୍ୟେକଙ୍କୁ ଏହି ଅନୁଭୂତି ମିଳି ପାରିବ- ଏହା ସତ୍ୟ। ଏହି ଅବସ୍ଥାରେ ଉଭୟ ସ୍ୱପ୍ନ ଏବଂ ସୁଷୁପ୍ତି, ମିଥ୍ୟା ଜ୍ଞାନ ଏବଂ ଆତ୍ମଅଜ୍ଞାନ ଅନୁପସ୍ଥିତ ରହନ୍ତି ବୋଲି ସତ୍ୟଙ୍କ ଦ୍ରଷ୍ଟାମାନେ ଘୋଷଣା କରିଛନ୍ତି। ସଂକ୍ଷେପରେ ଆମେ ଏହି ଶ୍ଳୋକରୁ ବୁଝିବା ଉଚିତ ହେବ ଯେ, ଉପନିଷଦ୍‌ରେ ଆଲୋଚନା କରାଯାଇ ବ୍ୟାଖ୍ୟା କରା ଯାଇଥିବା ଚୈତନ୍ୟର ଚତୁର୍ଥ ଅବସ୍ଥା ହେଉଛି ଏକ ଅନୁଭୂତିର ଅବସ୍ଥା- ପ୍ରପଞ୍ଚର ବହୁବିଧ ବିଷୟ ଜଗତରେ ଆମର ସମସ୍ତ ଜ୍ଞାତ ଅନୁଭୂତିରୁ ଏହା କିଛିଟା ସ୍ୱତନ୍ତ୍ର ।

॥ ୮୩ ॥

ସତ୍ୟାନୁଭୂତି ଏପରି କୌଣସି ଜ୍ଞାନ ନୁହେଁ ଯେ, ଜ୍ଞାନର ବିଷୟକୁ କୌଣସି ଜ୍ଞାନର ସାଧନ ଦ୍ୱାରା ବତାଇଲେ ଏହା ବୁଝି ହେବ । ତୁରୀୟ ଅବସ୍ଥାରେ ମନ ଏବଂ ବିଷୟ ମିଶି ଯାଇ ଶୁଦ୍ଧ-ଜ୍ଞାନ-ଘନ ହୋଇ ଯାଆନ୍ତି । ଏହା ହିଁ ନିର୍ବିକଳ୍ପ ଜ୍ଞାନ । ବିଭିନ୍ନ ଶ୍ଳୋକର ଆଲୋଚନା କରି ଆଗେଇବା ବେଳେ ଏହାର କିପରି କାହିଁକି ଇତ୍ୟାଦିର ଅଧିକାଧିକ ସବିଶେଷ ବର୍ଣ୍ଣନା ମିଳି ପାରିବ ।

**ଅନ୍ୟଥା ଗୃହ୍ଣତଃ ସ୍ୱପ୍ନୋ ନିଦ୍ରା ତତ୍ତ୍ୱମଜାନତଃ ।**

**ବିପର୍ଯ୍ୟାସେ ତୟୋଃ କ୍ଷୀଣେ ତୁରୀୟଂ ପଦମଶ୍ନୁତେ ॥୧୫॥**

ଅନ୍ୟଥା = ମିଥ୍ୟା ଜ୍ଞାନ, ଭ୍ରାନ୍ତ ଜ୍ଞାନ; ଗୃହ୍ଣତଃ = ଅନୁଭବ କରି, ସ୍ୱପ୍ନଃ = ସ୍ୱପ୍ନ, ନିଦ୍ରା = ନିଦ୍ରା, ତତ୍ତ୍ୱମ୍ = ତତ୍ତ୍ୱ (ଆତ୍ମା), ଅଜାନତଃ = ଅଜ୍ଞାନ(ଯିଏ ଜାଣେ ନାହିଁ), ବିପର୍ଯ୍ୟା ସେ = ଯେତେବେଳେ ଏହିସବୁ ଭ୍ରମ, ତୟୋଃ = ଏହି ଦୁଇଟି, କ୍ଷୀଣେ = ଅଦୃଶ୍ୟ ହେଲେ, ତୁରିୟମ୍ = ତୁରୀୟ, ପଦମ୍ = ଅବସ୍ଥା, ଅଶ୍ନୁତେ = ଉପଲବ୍ଧି ହୁଏ, ମିଳେ ।

*ସୁଷୁପ୍ତି ପରମସ୍ୱରୂପଙ୍କ ସମ୍ବନ୍ଧୀୟ ଅଜ୍ଞାନ ଅବସ୍ଥା ହୋଇଥିବା ବେଳେ ସ୍ୱପ୍ନ ହେଉଛି ତାଙ୍କର ମିଥ୍ୟା ଜ୍ଞାନ । ଏହି ଦୁଇ ଅବସ୍ଥାର ଭ୍ରାନ୍ତ ଜ୍ଞାନ ଅଦୃଶ୍ୟ ହୋଇଗଲେ ତୁରୀୟ ଉପଲବ୍ଧି ହୁଏ ॥୧୫॥*

ଚୈତନ୍ୟର ଏହି ଚତୁର୍ଥ ସ୍ତରକୁ ଜଣେ କେତେବେଳେ ଅନୁଭବ କରିପାରେ ? ଏହି ଶ୍ଳୋକରେ ତା'ର ବ୍ୟାଖ୍ୟା କରାଯାଇଛି । ଏଠାରେ ସ୍ୱପ୍ନ ଏବଂ ସୁଷୁପ୍ତି ଶବ୍ଦ ଦୁଇଟିକୁ ସେମାନଙ୍କର ଆଧ୍ୟାତ୍ମିକ ତାତ୍ପର୍ଯ୍ୟରେ ବ୍ୟବହାର କରାଯାଇଛି । ଅର୍ଥାତ୍ ପରମସ୍ୱରୂପଙ୍କର ମିଥ୍ୟା ଜ୍ଞାନ ଏବଂ ଅଜ୍ଞାନ । ଜାଗ୍ରତ ଅବସ୍ଥାକୁ ଏଠାରେ ବିଶେଷ ଭାବରେ ବ୍ୟବହାର କରାଯାଇ ନାହିଁ, କାରଣ ଜାଗ୍ରତ ଅବସ୍ଥା ସ୍ୱପ୍ନ ପଦର ଅନ୍ତର୍ଭୁକ୍ତ ଏବଂ ଏହା ସହିତ ସମ୍ମିଳିତ, କାରଣ ଉଭୟ ଜାଗ୍ରତ ଏବଂ ସ୍ୱପ୍ନ ଅବସ୍ଥା ପରମସ୍ୱରୂପଙ୍କର ଭ୍ରାନ୍ତ ଜ୍ଞାନ ଦ୍ୱାରା ପରିଚିତ । କେହିଜଣେ ଖଣ୍ଡେ ଦଉଡ଼ିକୁ ସାପ ବା ବାଡ଼ି ଖଣ୍ଡେ ବୋଲି ଭୂଲ ବୁଝିଲେ, ମିଥ୍ୟା ଜ୍ଞାନ ହୋଇଥାଏ, ସେହିପରି ସ୍ୱପ୍ନ ବା ଜାଗ୍ରତ ଅବସ୍ଥାରେ ଆମେ ଯାହା ଜାଣୁ, ତାହା ହେଉଛି ମିଥ୍ୟା । ତେଣୁ ଆମେ ପରମସ୍ୱରୂପଙ୍କର ମିଥ୍ୟା ଜ୍ଞାନରେ ରହୁ ।

ତେଣୁ, ତୁରୀୟ ମିଥ୍ୟା ଜ୍ଞାନର ଅତୀତ ବୋଲି ଏହି ଶ୍ଳୋକରେ ଦର୍ଶାଯାଇଛି । ପୁନଶ୍ଚ, ଅଜ୍ଞାନ ଅର୍ଥରେ ଏଠାରେ ସୁଷୁପ୍ତିର ବ୍ୟବହାର କରା ଯାଇଛି । ପୂର୍ବରୁ ଆମେ

ଜାଣି ସାରିଛୁ ଯେ, ସତ୍ୟର ଅଜ୍ଞାନ ହିଁ ଉଭୟ ଜାଗ୍ରତ ଏବଂ ସ୍ୱପ୍ନ ଅବସ୍ଥାରେ ବହୁବିଧ ପ୍ରପଞ୍ଚ ଜଗତର ମିଥ୍ୟାଜ୍ଞାନର କାରଣ । ତେଣୁ, ଅଜ୍ଞାନ ହେଉଛି କାରଣ, ଏବଂ ଉଭୟ ସ୍ୱପ୍ନ ଓ ଜାଗ୍ରତ ଅବସ୍ଥାର ମିଥ୍ୟା ଜ୍ଞାନ ହେଉଛି କାର୍ଯ୍ୟ ।

ଆମ ସ୍ୱରୂପର ଅଜ୍ଞାନ (କାରଣ) ଏବଂ ବହୁବିଧ ଦୃଶ୍ୟ ଜଗତ (କାର୍ଯ୍ୟ) – ଏହି ଉଭୟଙ୍କର ଅତୀତ ହେଲେ, ଚୈତନ୍ୟର ଚତୁର୍ଥ ଅବସ୍ଥା, ତୁରୀୟରେ ପରମେଶ୍ୱରଙ୍କର ଅନୁଭୂତି  ଆମେ ଲାଭ କରି ପାରିବା ।

ଜ୍ଞାନ ଦ୍ୱାରା ଅଜ୍ଞାନ ଦୂର ହୁଏ। କାରଣର ଇତି ହେଲେ କାର୍ଯ୍ୟ ରହିପାରିବ ନାହିଁ, ଅଜ୍ଞାନର ଇତି ହେଲେ ପ୍ରପଞ୍ଚ ଜଗତ ଏବଂ ତାର ବହୁବିଧ ପରିପ୍ରକାଶ ରହିପାରିବ ନାହିଁ।

**ଅନାଦିମାୟୟା ସୁପ୍ତୋ ଯଦା ଜୀବଃ ପ୍ରବୁଧ୍ୟତେ।**
**ଅଜମନିଦ୍ରମସ୍ୱପ୍ନମଦ୍ୱୈତଂ ବୁଧ୍ୟତେ ତଦା ॥୧୬॥**

ଅନାଦିମାୟୟା = ଅନାଦି ମାୟା ଯୋଗୁଁ, ସୁପ୍ତଃ = ସୁପ୍ତ, ଯଦା = ଯେତେବେଳେ, ଜୀବଃ = ଜୀବ, ପ୍ରବୁଧ୍ୟତେ = ଜାଗ୍ରତ ହୋଇଥାଏ, ଅଜମ୍ = (ଯାହା) ଅଜନ୍ମା, ଅନାଦି, ଅନିଦ୍ରମ୍ = ନିଦ୍ରାହୀନ, ଅସ୍ୱପ୍ନମ୍ = ସ୍ୱପ୍ନହୀନ, ଅଦ୍ୱୈତମ୍ = ଅଦ୍ୱୈତ (ଆତ୍ମା), ବୁଧ୍ୟତେ = (ସେ) ଅନୁଭବ କରିପାରେ, ତଦା = ସେତେବେଳେ ।

*ଅନାଦି ମାୟାର ପ୍ରଭାବରେ ସୁଷୁପ୍ତ ଥିବା ଜୀବ ଜାଗ୍ରତ ହେଲେ, ନିଜ ଭିତରେ ଅଜନ୍ମା, ସୁଷୁପ୍ତିରହିତ, ସ୍ୱପ୍ନରହିତ, ଅଦ୍ୱୈତଙ୍କୁ ଅନୁଭବ କରିପାରେ ॥୧୬॥*

ପରମସତ୍ୟଙ୍କର ମିଥ୍ୟାଜ୍ଞାନ ଏବଂ ଅଜ୍ଞାନର ଅର୍ଥରେ ସ୍ୱପ୍ନ ଏବଂ ସୁଷୁପ୍ତ ଶବ୍ଦ ଦୁଇଟି  ବ୍ୟବହାର କରି କାରିକାକାର ବିଶ୍ୱାସ ଦେଇ କହୁଛନ୍ତି ଯେ, ବୈଦାନ୍ତିକ ସାଧନା ଏବଂ ଧ୍ୟାନ ମାଧ୍ୟମରେ ଆମେ ନିଜକୁ ଦିବ୍ୟ ଚୈତନ୍ୟର ଅବସ୍ଥାକୁ ଜାଗ୍ରତ କରିପାରିଲେ, ଆତ୍ମିକ ଭାବରେ ଚୈତନ୍ୟଙ୍କର ଚତୁର୍ଥ ଅବସ୍ଥା – ପରମ ସତ୍ୟଙ୍କର  ଅନୁଭୂତି ଲାଭ କରି ପାରିବା। ଉପନିଷଦୀୟ  ସତ୍ୟ କେବଳ ଏକ କଳ୍ପିତ ସୁଖ-ସ୍ୱପ୍ନ ନୁହେଁ, ପ୍ରତ୍ୟେକ ଅଭ୍ୟାସକର୍ତ୍ତାଙ୍କ ଜୀବନରେ ଏହି ଅନୁଭୂତି ହୋଇ ପାରିବ ବୋଲି ଗୁରୁ ବାରମ୍ବାର ଜୋର ଦେଇ କହିଛନ୍ତି ।

ମଣିଷ ବର୍ତ୍ତମାନ ଆତ୍ମ ଅଜ୍ଞାନରେ ସୁଷୁପ୍ତି ଅବସ୍ଥାରେ ବାସ କରୁଛି । ଏହାର ଅର୍ଥ  ହେଲା, ନିଜର ସର୍ବବ୍ୟାପୀ ଚୈତନ୍ୟସ୍ୱରୂପର ଅଜ୍ଞାନରେ ମଣିଷ ବର୍ତ୍ତମାନ ଜୀବନ ଧାରଣ  କରୁଛି । ସୃଷ୍ଟିର ଆରମ୍ଭ ସମୟରୁ ହିଁ ଏପରି ହୋଇ ଆସୁଛି । ସମୟର ପ୍ରଥମ

ମୁହୂର୍ତ୍ତର ଧାରଣା ହେବାଠାରୁ ହିଁ ସୃଷ୍ଟି ହୋଇଛି । ତେଣୁ ସୃଷ୍ଟି ହେଉଛି ଅନାଦି । ସୃଷ୍ଟିର ଆରମ୍ଭରୁ ବର୍ତ୍ତମାନର ମୁହୂର୍ତ୍ତ ପର୍ଯ୍ୟନ୍ତ ଆମେ ସୁଷୁପ୍ତ ଅବସ୍ଥାରେ, ଅର୍ଥାତ୍ ପରମସ୍ୱରୂପଙ୍କର ଅଜ୍ଞାନରେ ଜୀବନ ଧାରଣ କରିଛୁ । ବର୍ତ୍ତମାନର ସୁଷୁପ୍ତ ଜୀବ ସ୍ୱୟଂ ସ୍ୱରୂପକୁ ପୂର୍ଣ୍ଣ ଜାଗ୍ରତ ହେଲେ ସେ ଅଦ୍ୱୈତ, ଜନ୍ମରହିତ (ଅନାଦି), ସୁଷୁପ୍ତି ରହିତ ଏବଂ ସ୍ୱପ୍ନରହିତ ସତ୍ୟସ୍ୱରୂପରେ ପଦାର୍ପଣ କରିବ ।

ସ୍ୱପ୍ନରହିତ - ଏହି ଗୁଣ ଯେଉଁ ତାତ୍ପର୍ଯ୍ୟ ବହନ କରେ, ତାହା ହେଲା, ସତ୍ୟଙ୍କ ଠାରେ ମିଥ୍ୟାଜ୍ଞାନ ନାହିଁ । ଅନ୍ୟାନ୍ୟ ଉପନିଷଦ୍‌ମାନଙ୍କରେ ଏବଂ ବିଶେଷକରି 'ଜାଗ୍ରତ' 'ଉତ୍ତିଷ୍ଠ' ବୋଲି ମାନବ ପ୍ରତି ଋଷିମାନଙ୍କର ପ୍ରସିଦ୍ଧ ଆହ୍ୱାନରେ ସେହି ଅବଧାରଣା ବାରମ୍ବାର ଦୋହରା ଯାଇଛି । ସ୍ୱପ୍ନରୁ ଜାଗ୍ରତ ହେଲେ, ମିଥ୍ୟା ସ୍ୱପ୍ନ ଜଗତର ଇତି ହୁଏ । ସେହିପରି ଆମେ ସ୍ୱ ସ୍ୱରୂପକୁ ଜାଗ୍ରତ ହେଲେ, ପରିଚ୍ଛିନ୍ନତା, ସସୀମତା, ନଶ୍ୱରତା ଇତ୍ୟାଦି ସମସ୍ତ ଧାରଣା ଆଉ ରହେ ନାହିଁ । ଜୀବ (ଅହଂ) ସବୁଦିନ ପାଇଁ ନିଶ୍ଚିହ୍ନ ହୋଇଯାଏ ।

ସଂସାର ହେଉଛି ଜୀବ ପାଇଁ ଏବଂ ଜୀବର ବିନାଶ ହେଲେ ତା'ର ସମସ୍ତ ମିଥ୍ୟା ଧାରଣାର ଇତି ହେବ ହିଁ । ଜୀବର ଗଠନ ଏବଂ ତା'ର ସ୍ୱତନ୍ତ୍ର ସତ୍ତାର ଭ୍ରାନ୍ତ ଧାରଣା ଆମ ପାଖକୁ କିପରି ଆସିଲା, ତାହା ପୂର୍ବରୁ ବର୍ଣ୍ଣନା କରାଯାଇଛି । ଧ୍ୟାନ ମାଧ୍ୟମରେ ଆମେ ମହାନ ସ୍ୱରୂପକୁ ଉଠିଲେ, ତୁରୀୟ ନାମରେ ପରିଚିତ ଚୈତନ୍ୟର ଅବସ୍ଥାକୁ ଜାଣିପାରୁ । ସେହି ଅବସ୍ଥାରେ ଆମର ସତ୍ୟର ଅଜ୍ଞାନ ନ ଥାଏ ବା ମିଥ୍ୟା ଜ୍ଞାନ ନ ଥାଏ ।

**ପ୍ରପଞ୍ଚୋ ଯଦି ବିଦ୍ୟେତ ନିବର୍ତ୍ତେତ ନ ସଂଶୟଃ ।**

**ମାୟାମାତ୍ରମିଦଂ ଦ୍ୱୈତମଦ୍ୱୈତଂ ପରମାର୍ଥତଃ ॥୧୭॥**

ପ୍ରପଞ୍ଚ = ଜଗତ, ଯଦି ବିଦ୍ୟେତ = ଯଦି ଥାଆନ୍ତା, ନିବର୍ତ୍ତେତ = ଅଦୃଶ୍ୟ ହେବ, ନ ସଂଶୟଃ = ସନ୍ଦେହ ନାହିଁ, ମାୟା ମାତ୍ରମ୍ = କେବଳ ମାୟା, ଇଦମ୍ ଦ୍ୱୈତମ୍ = ଏହି ଦ୍ୱୈତ, ଅଦ୍ୱୈତମ୍ = ଅଦ୍ୱୈତ, ପରମାର୍ଥତଃ = ପରମସ୍ୱରୂପ ।

*ଦୃଶ୍ୟ ବହୁବିଧ ଜଗତ ଯଦି ସତ୍ୟ ହୋଇଥାନ୍ତା, ତେବେ ଏହା କଦାପି ଅଦୃଶ୍ୟ ହୁଅନ୍ତା ନାହିଁ । ଯେଉଁ ଦ୍ୱୈତର ଉପଲବ୍ଧି ହୁଏ, ତାହା କେବଳ ମାୟା ମାତ୍ର । ଅଦ୍ୱୈତ ହିଁ ପରମସ୍ୱରୂପ ॥୧୭॥*

ଗତ ଶ୍ଳୋକରେ କୁହାଯାଇଛି ଯେ, ଦ୍ୱୈତର ବହୁବିଧ ଜଗତ ଅଦୃଶ୍ୟ ହେଲେ ଅନୁଭୂତି ପାଇଁ ଅଦ୍ୱୈତ ସ୍ୱରୂପ ହିଁ କେବଳ ରହିଯାଏ । ଜଣେ ସାଧାରଣ ଶିଷ୍ୟ ଏହି ଉକ୍ତି ସମ୍ବନ୍ଧରେ ସନ୍ଦେହ ପ୍ରକାଶ କରିପାରନ୍ତି । ଏଠାରେ ଗୋଟିଏ ବ୍ୟାଖ୍ୟା କରାଯାଇଛି । ବହୁବିଧ ଜଗତ ଯଦି ପ୍ରକୃତରେ ଥାଆନ୍ତା, ତାହାହେଲେ ଏହି ସନ୍ଦେହର କିଛିଟା ଯଥାର୍ଥତା ରହି ଥାଆନ୍ତା । ରଜ୍ଜୁରେ ସର୍ପ ପରି, ବହୁବିଧ ଜଗତ ଏକ ମିଥ୍ୟା କଳ୍ପନା ହୋଇଥିବାରୁ, ବାସ୍ତବରେ ଏହାର ସତ୍ତା ନାହିଁ, ଏବଂ ତେଣୁ ପରମସ୍ୱରୂପଙ୍କୁ ଯଥାର୍ଥ ଭାବରେ ବୁଝି ପାରିଲେ ଏହା ନିଶ୍ଚିତଭାବେ ଅଦୃଶ୍ୟ ହୋଇଯିବ ।

ଯେଉଁ ଲୋକମାନେ ଯୁକ୍ତି କରନ୍ତି ଯେ, ଦେଖା ଯାଉଥିବା ବହୁବିଧ ଜଗତକୁ ହିଁ କେବଳ ସେମାନେ ବିଶ୍ୱାସ କରିବେ ଏବଂ ବର୍ତ୍ତମାନ ଦୃଶ୍ୟ ହେଉ ନ ଥିବା ଅଦ୍ୱୈତ ସ୍ୱରୂପକୁ ନୁହେଁ – ଏହା ହେଉଛି ସେମାନଙ୍କ ପାଇଁ ଉତ୍ତର । ଗୋଟିଏ ଦଉଡ଼ିକୁ ଦଉଡ଼ି ଭାବରେ ନ ବୁଝି, ସାପ ଭାବରେ ଭୂଲ ବୁଝି ଏବଂ ତଥାପି, ମିଛ ସାପ ପଛରେ ଥିବା ସତ୍ୟକୁ ଯଥାର୍ଥ ଭାବରେ ବୁଝି ପାରିଲେ ଆମେ ଏକମେବ ଅଦ୍ୱୈତୀୟ ଦଉଡ଼ିର ସତ୍ୟତା ବୁଝି ପାରୁ । ଏହି ଅନୁରୂପତା ସାହାଯ୍ୟରେ ଶ୍ରୀଶଙ୍କରାଚାର୍ଯ୍ୟ ତାଙ୍କ ଭାଷ୍ୟରେ ଏହି ମନ୍ତ୍ରର ବ୍ୟାଖ୍ୟା କରିଛନ୍ତି । ବହୁବିଧ ଜଗତ ସମ୍ବନ୍ଧରେ ମଧ୍ୟ ଏହା ପ୍ରଯୁଜ୍ୟ ।

ପ୍ରଥମ ଧାଡ଼ିଟିକୁ ଅନୁକୂଳ ତର୍କ ଭାବରେ ଧରାଯାଏ । ଭାରତୀୟ ତାର୍କିକମାନେ ପ୍ରାୟତଃ ଏହି ତର୍କ ବ୍ୟବହାର କରି ଥାଆନ୍ତି । ଶ୍ଳୋକର ପ୍ରଥମାର୍ଦ୍ଧ କହେ ଯେ, ଜଗତର ସ୍ଥିତି ନାହିଁ, ଯଦି ଅଛି ତେବେ ତାହା ଅଦୃଶ୍ୟ ହୋଇଯିବ; ଏହା ଅଦୃଶ୍ୟ ହୁଏ ନାହିଁ, ତେଣୁ ଏହା ନାହିଁ । ବହୁବିଧତାର ଜଗତ ଯଦି ଅଛି, ତେବେ ନିଶ୍ଚିତ ଭାବରେ ଏହା ଅଦୃଶ୍ୟ ହୋଇଯିବ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ବାସ୍ତବରେ ଏହାର ସ୍ଥିତି ନାହିଁ, କାରଣ ଦ୍ୱୈତ ହେଉଛି ମାୟା ମାତ୍ର, ଅଦ୍ୱୈତ ହିଁ କେବଳ ସତ୍ୟ ।

**ବିକଲ୍ପୋ ବିନିବର୍ତ୍ତେତ କଲ୍ପିତୋ ଯଦି କେନଚିତ୍ ।**
**ଉପଦେଶାଦୟଂ ବାଦୋ ଜ୍ଞାତେ ଦ୍ୱୈତଂ ନ ବିଦ୍ୟତେ ॥୧୮॥**

ବିକଲ୍ପଃ = ବିକଳ୍ପ, ବିନିବର୍ତ୍ତେତ = ଚାଲିଯିବ, ବିଲୁପ୍ତ ହେବ; କଲ୍ପିତଃ = କଳ୍ପନା କରାଯାଇଥିବା, ଯଦି = ଯଦି (ଏହା ଥାଆନ୍ତା), କେନଚିତ୍ = ଯାହାଦ୍ୱାରା ହେଲେ ବି, ଉପଦେଶାତ୍ = ଉପଦେଶ ପାଇଁ, ଅୟମ୍ = ଏହା, ବାଦଃ = (ଦ୍ୱୈତ)ର କଥା, ଜ୍ଞାତେ = ଅନୁଭବରେ (ପରମସତ୍ୟଙ୍କର); ଦ୍ୱୈତ୍ୟମ୍ = ଦ୍ୱୈତ, ନ ବିଦ୍ୟତେ = ରହେ ନାହିଁ ।

*ଯଦି କେହି କେବେ ବିବିଧ ଧାରଣାର କଳ୍ପନା କରିଛି ବା ପ୍ରକ୍ଷେପଣ କରିଛି ସେସବୁ ଅଦୃଶ୍ୟ ହୋଇଯାଇପାରେ । ଶିକ୍ଷା ଦେବା ଉଦ୍ଦେଶ୍ୟରେ ଏହି ବ୍ୟାଖ୍ୟା । ବ୍ୟାଖ୍ୟାରେ ସୂଚୀତ ହୋଇଥିବା ଦ୍ୱୈତ ଉଚ୍ଚତମ ସତ୍ୟଙ୍କର ଅନୁଭୂତିରେ ଅଦୃଶ୍ୟ ହୁଏ ॥୧୮॥*

ପୂର୍ବ ଶ୍ଳୋକର ଆଲୋଚନା ହେଉଥିବା ବେଳେ ସତ୍‌ସଙ୍ଗରେ ଜଣେ ଆପତ୍ତିକାରୀ ଗୋଟିଏ ସନ୍ଦେହ ଉତ୍‌ଥାପନ କରିଥିବାର ମନେହୁଏ ଯେ, "ମହାଶୟ, ଆପଣଙ୍କ କହିବାନୁସାରେ ଦୃଶ୍ୟ ବହୁବିଧତା ଯଦି ସଂପୂର୍ଣ୍ଣ ପୌରାଣିକ ଉପାଖ୍ୟାନ ଏବଂ ମାୟା ହୁଏ, ତେବେ ଗୁରୁ, ଶିଷ୍ୟ ଏବଂ ଶାସ୍ତ୍ରର ଅବଧାରଣା କେବଳ ପୌରାଣିକ କାହାଣୀ ବା ମାୟା ମାତ୍ର ?

ଜଣେ ବେଦାନ୍ତୀଙ୍କର ଉତ୍ତର ସବୁବେଳେ ଏକାପରି ହେବ । ଅନୁଭୂତିର ମୁହୂର୍ତ୍ତରେ ଗୁରୁ, ଶାସ୍ତ୍ର ଏବଂ ଶିଷ୍ୟର ଅବଧାରଣା– ସବୁ ସମାନ ଭାବରେ ମିଥ୍ୟା ହୁଏ । ଆତ୍ମାଙ୍କଠାରେ ଗୁରୁ ନାହାନ୍ତି, ଶାସ୍ତ୍ର ନାହିଁ ବା ଶିଷ୍ୟ ନାହିଁ । ପରମସତ୍ୟଙ୍କଠାରେ ପହଞ୍ଚିବା ପାଇଁ ଏବଂ ତାଙ୍କର ପୂର୍ଣ୍ଣତ୍ୱର ଅନୁଭତି ପାଇଁ ଏହି ତିନୋଟିର ଧାରଣା ଏକ ମାଧ୍ୟମ ମାତ୍ର । ସତ୍ୟଙ୍କର ଅନୁଭୂତିର ମୁହୂର୍ତ୍ତରେ ଅନୁଭବ କର୍ତ୍ତା କଦାପି ବହୁବିଧତା ଦେଖିପାରେ ନାହିଁ। ବିଷୟ (କର୍ତ୍ତାଙ୍କ) ଠାରେ କୌଣସି ବିଷୟ ରହିପାରିବ ନାହିଁ ।

ଏଠାରେ ଆମର ଗୋଟିଏ ତର୍କ ଅଛି । ଦାର୍ଶନିକ ଆଲୋଚନା ମାନଙ୍କରେ ପ୍ରାୟତଃ ବ୍ୟବହୃତ ତର୍କର ଉଦାହରଣ ଶ୍ଳୋକର ପ୍ରଥମାର୍ଦ୍ଧ ଆମକୁ ଦେଇଛି । ତର୍କଟି ଏହିପରି ଭାବରେ ଗଠିତ ହୋଇଛି "ଜଗତ ଯଦି କେବଳ କଳ୍ପନା ମାତ୍ର ହୁଏ, ତେବେ ଯେକୌଣସି ସମୟରେ ଏହାର ଅପସାରଣ କରି ହେବ, କିନ୍ତୁ ଏହା ସେପରି ଭାବରେ ଅପସାରିତ ହେଉ ନାହିଁ, ତେଣୁ ଏହା କଳ୍ପନା ନୁହେଁ । ଜଗତ ସତ୍ୟ ବୋଲି ଏହି ତର୍କ ଦ୍ୱାରା ପ୍ରତିଷ୍ଠା କରାଯାଏ, କିନ୍ତୁ ଅଦ୍ୱୈତ ପାଇଁ ଏହା ଗ୍ରହଣୀୟ ନୁହେଁ । ଗୌଡ଼ପାଦଙ୍କ

କାରିକା ଦ୍ୱାରା ସୁଦୃଢ ବେଦାନ୍ତର ଯୁକ୍ତିକୁ ଦୁର୍ବଳ କରିବା ପାଇଁ କେତେକ ସମାଲୋଚକ ଏହି ତର୍କର ବ୍ୟବହାର କରନ୍ତି ।

ଏପରି ଭାବରେ ତର୍କ କରୁଥିବା ଲୋକମାନେ ଏହି ଶ୍ଳୋକର ଯଥାର୍ଥ ଅର୍ଥ ସମ୍ବନ୍ଧରେ ଭୁଲ ବୁଝନ୍ତି । ଏଠାରେ ଅର୍ଥ ହେବ ! "ଯଦି କେହି ଏହାକୁ ସୃଷ୍ଟି କରିଥାଏ, ତେବେ ବହୁବିଧତାର ଜଗତ ନିଶ୍ଚିହ୍ନ ହେବ । କିନ୍ତୁ ସୃଷ୍ଟି କେବଳ ପ୍ରତୀତି ମାତ୍ର, ବାସ୍ତବ ନୁହେଁ। ଧ୍ୟାନ ମାଧ୍ୟମରେ ପରମସ୍ୱରୂପଙ୍କୁ ଜାଣିପାରିଲେ ଦ୍ୱୈତ ରହିବ ନାହିଁ । ଶ୍ଳୋକର ଶେଷାଂଶ ଅକାଟ୍ୟ ଭାବରେ ପ୍ରମାଣ କରେ ଯେ ସତ୍ୟାନୁଭୂତିରେ ବହୁବିଧତା ସଂପୂର୍ଣ୍ଣରୂପେ ବିଦାୟ ନେବ ।

ଏଥର ପୁଣି ମାଣ୍ଡୁକ୍ୟର ପାଠ୍ୟ -

**ସୋଽୟମାତ୍ମାଽଧ୍ୟକ୍ଷରମୋଙ୍କାରୋ-**

**ଅଧିମାତ୍ରଂ ପାଦା ମାତ୍ରା ମାତ୍ରାଶ୍ଚ ପାଦା**

**ଅକାର ଉକାରୋ ମକାର ଇତି ॥ ୮॥**

ସଃ ଅୟମ୍ ଆତ୍ମା = ସେହି ଏକ ଆତ୍ମା, ଅଧ୍ୟକ୍ଷରମ୍ = ସମସ୍ତ ଅକ୍ଷର ଦୃଷ୍ଟିରୁ, ଓଁ କାରଃ = ଏହା ଓଁ ଅକ୍ଷର ଅଟେ, ଅଧିମାତ୍ରମ୍ = ପ୍ରତ୍ୟେକ ଅକ୍ଷର ଦୃଷ୍ଟିରୁ, ପାଦାଃ = ପାଦସବୁ ଅଟନ୍ତି, ମାତ୍ରାଃ = ଅକ୍ଷରସବୁ, ଚ ମାତ୍ରାଃ = ଏବଂ ଅକ୍ଷରସବୁ, ପାଦାଃ = ପାଦ ସବୁ, ଅକାରଃ = ଅକାର, ଉକାରଃ = ଉକାର, ମକାରଃ = (ଏବଂ) ମକାର, ଇତି = ତାହା।

*ଅକ୍ଷରମାନଙ୍କ ଦୃଷ୍ଟିରୁ ସେହି ଆତ୍ମା ପୁଣି ଓଁ । ଧ୍ୱନି ବା ଅକ୍ଷର ଦୃଷ୍ଟିରୁ ପାଦ ସହିତ ଓଁ କୁ ଦେଖାଯାଏ । ପାଦମାନେ ହେଲେ ଅକ୍ଷର ଏବଂ ଅକ୍ଷର ହେଲେ ପାଦ । ଏଠାରେ ଅକ୍ଷରସବୁ ହେଲେ ଅ, ଉ, ମ ॥୮॥*

ଶାଶ୍ୱତ ଶବ୍ଦ ଓଁ ର ଆଲୋଚନା ସନ୍ଦର୍ଭରେ ବର୍ତ୍ତମାନ ଉପନିଷଦ୍ ମନ୍ତ୍ରଟି ଦିଆଯାଇଛି। ଆତ୍ମାଙ୍କର ପାଦ ପରିପ୍ରେକ୍ଷୀରେ ପୂର୍ବର ମନ୍ତ୍ର ମାନଙ୍କର ଓଁ ଶବ୍ଦର ବହୁଳଭାବରେ ଆଲୋଚନା କରାଯାଇଛି । ବର୍ତ୍ତମାନ ଆମେ ଓଁ ଶବ୍ଦର ଯେଉଁ ଆଲୋଚନା କରୁଛୁ, ସେଥିରେ ଓଁ ର ତିନୋଟି ଅକ୍ଷର ଅ, ଉ,ମ ର ତାତ୍ପର୍ଯ୍ୟର ସ୍ପଷ୍ଟୀକରଣ କରାଯାଇଛି।

ଅ, ଉ, ମ - ଏହି ତିନୋଟି ଅକ୍ଷର ଉପରେ ଚେତନାର ଅବସ୍ଥା, ଯଥା ଜାଗ୍ରତ, ସ୍ୱପ୍ନ ଏବଂ ସୁଷୁପ୍ତିର ଅଧ୍ୟାସ କରିବାକୁ ଆମେ ପୂର୍ବରୁ ମଧ୍ୟ ଚେଷ୍ଟା କରିଥିଲୁ । ଏହିପରି

ଭାବରେ ବର୍ତ୍ତମାନ ପର୍ଯ୍ୟନ୍ତ ଓଁ ର ପାଦ ସଂକ୍ରାନ୍ତୀୟ ତାତ୍ପର୍ଯ୍ୟର ଆଲୋଚନା ହୋଇଛି । ବର୍ତ୍ତମାନ ଓଁ ର ଅକ୍ଷର ବା ମାତ୍ରା ସଂକ୍ରାନ୍ତୀୟ ଅର୍ଥ ବାହାର କରିବା ।

ତିନୋଟି ମାତ୍ରା ତିନୋଟି ପାଦ ବୋଲି ଉପନିଷଦ୍ ଏଠାରେ ଆମକୁ କହୁଛନ୍ତି ।

**ଜାଗରିତସ୍ଥାନୋ  ବୈଶ୍ୱାନରୋଽକାରଃ**

**ପ୍ରଥମା  ମାତ୍ରାପ୍ତେରାଦିମତ୍ତ୍ୱାଦ୍ୱାପ୍ନୋତି**

**ହ ବୈ ସର୍ବାନ୍‌କାମାନାଦିଶ୍ଚ**

**ଭବତି ୟ ଏବଂ ବେଦ ॥୯॥**

ଜାଗରିତ-ସ୍ଥାନ = ଜାଗ୍ରତ ଅବସ୍ଥା ପରି(କାର୍ଯ୍ୟକ୍ଷେତ୍ର) ପାଇ, ବୈଶ୍ୱାନରଃ = ବୈଶ୍ୱାନର (ବିରାଟ), ଅକାରଃ = ଅକାର, ପ୍ରଥମା ମାତ୍ରା = (ଓଁ ର) ପ୍ରଥମ ଅକ୍ଷର, ଆପ୍ତେଃ = ଏହାର ସର୍ବବ୍ୟାପକତା ଯୋଗୁଁ, ବା ଆଦିମତ୍ତ୍ୱାତ୍ = କିମ୍ବା, ପ୍ରଥମ ହୋଇଥିବାରୁ, ଆପ୍ନୋତି  ହ ବୈ = ସେ ନିଶ୍ଚିତ ଭାବରେ ଲାଭ କରେ, ସର୍ବାନ୍-କାମାନ୍ = ସମସ୍ତ କାମନା, ଆଦିଃ = ଆଦି, ପ୍ରଥମ ଚ ଭବତି = ଏବଂ ହୁଏ, ୟଃ = ତାହା, ଏବମ୍ = ଏହିପରି, ବେଦ = ଜାଣେ (ଧ୍ୟାନ କରେ) ।

*ଜାଗ୍ରତ ଅବସ୍ଥାର କାର୍ଯ୍ୟକ୍ଷେତ୍ର ଥିବା ବୈଶ୍ୱାନର, ଓଁ କାରର ପ୍ରଥମ ଅକ୍ଷର ଅ ଅଟେ । ଏହା ତାର ସର୍ବବ୍ୟାପକତା (ଅନନ୍ତ) ଯୋଗୁଁ କିମ୍ବା ପ୍ରାଥମିକତା (ଅନାଦି)ଯୋଗୁଁ- ଉଭୟରେ ଏହି ଦୁଇଟି ହେଉଛି ସାଧାରଣ ବୈଶିଷ୍ଟ୍ୟ । ଯିଏ ଏପରି ଜାଣେ, ତା'ର ସମସ୍ତ କାମନା ନିଶ୍ଚିତ ଭାବରେ ପୂର୍ଣ୍ଣ ହୁଏ ଏବଂ ସେ ସମସ୍ତଙ୍କ ମଧ୍ୟରେ ଅଗ୍ରବର୍ତ୍ତୀ ହୁଏ ॥୯॥*

ପରମସ୍ୱରୂପ ସ୍ଥୂଳ ଶରୀର ସହିତ ତାଦାତ୍ମ୍ୟ କରି ଇନ୍ଦ୍ରିୟଗ୍ରାହ୍ୟ ଜଗତ ପ୍ରତି ସଚେତନ ହେଲେ, ବୈଶ୍ୱାନର ଭାବେ ଜାଗ୍ରତ ପୁରୁଷର ଅନୁଭୂତି ଲାଭ କରନ୍ତି, ବିଷୟାଭିମୁଖ ହୁଅନ୍ତି ବୋଲି ପୂର୍ବରୁ ଆମେ ଜାଣିଛୁ । ଧ୍ୟାନ ଉଦ୍ଦେଶ୍ୟରେ 'ଓଁ' ର 'ଅ' ଧ୍ୱନି ଉପରେ ଏହି ଜାଗ୍ରତ ପୁରୁଷର ଅଧ୍ୟାସ କରାଯାଏ ।

ଗୋଟିଏ ପଦାର୍ଥ ଉପରେ କୌଣସି ଅର୍ଥର ଅଧ୍ୟାସ କରିବା ହେଉଛି ମୂର୍ତ୍ତି ପୂଜାର ରହସ୍ୟ । ଗୋଲାକାର ଖଣ୍ଡେ ପଥର ଉପରେ ଆମେ ଶିବ-ଭାବର ଅଧ୍ୟାସ କରିଥାଉ ଏବଂ ପରେ ଯଥାର୍ଥ ଭକ୍ତିର ସହିତ ଜଣେ ଭକ୍ତ ସେହି ନିର୍ଦ୍ଦିଷ୍ଟ ପଥର ପାଖେ ପହଞ୍ଚିଲେ ଭଗବାନ କୈଳାସ ପତିଙ୍କ ସମକ୍ଷରେ ଉପସ୍ଥିତ ହୋଇଥିବାର ଦିବ୍ୟ ପ୍ରେରଣା ଲାଭ

କରେ । ସେହିପରି, କ୍ରୁଶ ପରି ଯାତନାଦାୟକ ଯନ୍ତ୍ରରେ, ଖ୍ରୀଷ୍ଟିଆନ୍‌ମାନେ ଯୀଶୁଙ୍କର ଦିବ୍ୟ ଆଭା ସନ୍ଦର୍ଶନ କରନ୍ତି। ବଡ଼ ହେଉ ବା ସାନ, ଯେଉଁଠାରେ ହେଲେ ଗୋଟିଏ କ୍ରୁଶ ଦେଖିଲେ ସେମାନେ ଦିବ୍ୟ ପ୍ରେରଣାରେ ଅନୁପ୍ରାଣିତ ହୋଇ ଭଗବତ୍ ଆଶୀର୍ବାଦ ଲାଭ କରିବାର ଅନୁଭବ କରିପାରନ୍ତି ।

ନିରାକାର ପରମସ୍ୱରୂପ ଆତ୍ମାଙ୍କ ଉପରେ ଧ୍ୟାନ କରିବା ବୈଦାନ୍ତିକ ଶିଷ୍ୟ ପାଇଁ ରାଜମାର୍ଗ । ପ୍ରାଥମିକ ପ୍ରସ୍ତୁତି ସମୟରେ କୌଣସି ଗୋଟିଏ ବିଷୟରେ ମନକୁ ଏକାଗ୍ର କରିବାର ଆବଶ୍ୟକତା ହୋଇଥାଏ । ସେଥିପାଇଁ ଓଁ ଉପରେ ଧ୍ୟାନ କରିବାକୁ ବ୍ୟାଖ୍ୟା କରି ଶ୍ରୁତି ଦ୍ୱାରା ଏଠାରେ ଗୋଟିଏ ପବିତ୍ର ପ୍ରତୀକ ଯୋଗାଇ ଦିଆଯାଇଛି । ଓଁ ଗୋଟିଏ ଧ୍ୱନି କେବଳ, କୌଣସି ରୂପ ହୋଇ ନ ଥିବାରୁ ଏହି ସାଧନଟିକୁ ବ୍ୟବହାର କରିବା ନିଶ୍ଚିତ ଭାବରେ କଷ୍ଟସାଧ୍ୟ ।

ଏଠାରେ କୌଣସି ପଦାର୍ଥର ଅଂଶ-ବିଶେଷ ବଦଳରେ, ଆମକୁ ଓଁ ଅକ୍ଷରର ଧ୍ୱନିର ଅଂଶ ସବୁ ଦିଆଯାଇଛି । ଏହା ଉପରେ ମାନବ-ବ୍ୟକ୍ତିତ୍ୱର ବିଭିନ୍ନ ଦିଗର ଅଧ୍ୟାସ କରାଯାଇଛି। ଧ୍ୟାନର ପ୍ରାଥମିକ ଅବସ୍ଥାରେ ବେଦାନ୍ତର ଜଣେ ଶିଷ୍ୟ ଓଁ ଅକ୍ଷର ଉପରେ ଅଧ୍ୟାସ କରି ଧ୍ୟାନ କରିବାକୁ ଶିକ୍ଷା କରିଥାଏ । ଏହି ମନ୍ତ୍ର ଏବଂ ଏହାର ପରବର୍ତ୍ତୀ ଦୁଇ ମନ୍ତ୍ରରେ ଏହି ଉପାୟ ବିସ୍ତାରିତ କରାଯାଇଛି ।

ଦୁଇଟି ଜିନିଷ ତୁଳନା କଲାବେଳେ ତୁଳନୀୟ ପଦାର୍ଥ ଏବଂ ତୁଳନାର ମାନ ମଧ୍ୟରେ ତୁଳନାର ସାଧାରଣ ଲକ୍ଷଣ ରହିବା ଦରକାର । ଯେଉଁ ଜିନିଷର ତୁଳନା କରାଯିବାକୁ ଥାଏ ଏବଂ ଯାହା ସହିତ ତୁଳନା କରାଯାଏ, ସେମାନଙ୍କ ମଧ୍ୟରେ କିଛି ସାଧାରଣ ଲକ୍ଷଣ ନ ଥିଲେ, ତୁଳନା କରାଯାଇ ପାରିବ ନାହିଁ । ଦୁଧକୁ ମହୁ ପରି ବୋଲି ଆମେ କହୁ ନାହେଁ, କିନ୍ତୁ ଚନ୍ଦ୍ର କିରଣକୁ ଦୁଧ ସହିତ (ଦୁଧର ଚୋଫା ଗୁଣ)ତୁଳନା କରୁ ।

ସେହିପରି ଏଠାରେ ଜାଗ୍ରତ ପୁରୁଷକୁ ଓଁ ର ଅ ଅକ୍ଷର ସହିତ ତୁଳନା କରିବା ଶ୍ରୁତିଙ୍କର ଯଦି ଉଦ୍ଦେଶ୍ୟ, ତେବେ ଏହି ଉଭୟଙ୍କ ମଧ୍ୟରେ ଅନ୍ତତଃ କିଛି ପରିମାଣର ସାଧାରଣ ଲକ୍ଷଣ ଦେବା ପାଇଁ ଶାସ୍ତ୍ର ବାଧ୍ୟ । ତେଣୁ, ମନ୍ତ୍ରରେ ବିଶଦ ଭାବରେ ସାଧାରଣ ଲକ୍ଷଣର ବ୍ୟାଖ୍ୟା କରା ଯାଇଛି । ଋଷିଙ୍କ ମତରେ 'ଓଁ' ର 'ଅ' ଅକ୍ଷର ଏବଂ ଜାଗ୍ରତ ଜୀବର ଏକ ସାଧାରଣ ତୁଳନା ରହିଛି, ଯଥା "ସର୍ବବ୍ୟାପକତ୍ୱ" କିମ୍ବା 'ପ୍ରଥମ' ହୋଇଥିବାରୁ ।

'ଅ' ଧ୍ୱନି ହେଉଛି ପୂରାପୂରି ମୌଳିକ 'ଧ୍ୱନି' ମଣିଷ ପାଟି ଖୋଲାକରି ପବନ ଛାଡ଼ି ଦେଲେ ପ୍ରଥମ ଧ୍ୱନି 'ଅ' ବାହାରେ । ପୃଥିବୀର ପ୍ରାୟ ସମସ୍ତ ଭାଷାର ମୂଳ ଅକ୍ଷର ହେଉଛି 'ଅ' । ପିଲାଟିଏ ଜନ୍ମ ହେଲାକ୍ଷଣି 'ଅ' ବୋଲି କାନ୍ଦି ଦୁନିଆଁକୁ ତାର ଉପସ୍ଥିତି ଜଣାଇ ଦିଏ । ତେଣୁ ଅ ହେଉଛି ସବୁ ଧ୍ୱନିମାନଙ୍କ ମଧ୍ୟରୁ ପ୍ରଥମ ଏବଂ ଆମେ ଜାଣୁ ଯେ, ଅନୁଭୂତି ମାନଙ୍କର କ୍ରମରେ ଜାଗ୍ରତ-ଅବସ୍ଥା-ଜୀବ ହେଉଛି ସର୍ବ ପ୍ରଥମ, କାରଣ ସ୍ୱପ୍ନଦ୍ରଷ୍ଟାର ଜାଗ୍ରତ ଅବସ୍ଥାରେ ଯାହାସବୁ ଛାପ ଗ୍ରହଣ ହୋଇଥାଏ, ସ୍ୱପ୍ନ ତା'ର ପ୍ରକ୍ଷେପଣ ମାତ୍ର ।

ସମସ୍ତ ଧ୍ୱନିରେ 'ଅ' ବ୍ୟାପ୍ତ ହୋଇଥିବାରୁ ଏହି ସର୍ବବ୍ୟାପକତ୍ୱ ମଧ୍ୟ ତୁଳନାର ବିଷୟ ହୋଇପାରେ । ସେହିପରି, ବୈଶ୍ୱାନର ସମଗ୍ର ବିଶ୍ୱରେ ବ୍ୟାପ୍ତ, ଶ୍ରୁତିଙ୍କର ଏହି ଉକ୍ତି, "ଏହି ବୈଶ୍ୱାନର-ଆତ୍ମାଙ୍କର ମସ୍ତକ ହେଲା ଆକାଶ"ରୁ ଏହା ସ୍ୱତଃ-ପ୍ରତିଭାତ ।

ଏଠାରେ, ଉପନିଷଦ୍‌ରେ ଏହି ଅଭିନ୍ନତାର ଜ୍ଞାତାଙ୍କର ପ୍ରଶଂସା କରାଯାଇଛି । ଶାସ୍ତ୍ରରେ କୁହାଯାଇଛି ଯେ, ଯିଏ ଏକଥା ଜାଣନ୍ତି, ଯିଏ ତାଙ୍କର ଜାଗ୍ରତ ପୁରୁଷ ଓଁ ଅକ୍ଷରର ଅ ସହିତ ତାଦାତ୍ମ୍ୟ ସ୍ଥାପନ କରନ୍ତି, ତାଙ୍କର ସମସ୍ତ କାମନା ପରିପୂର୍ଣ୍ଣ ହୁଏ ଏବଂ ନିଜ ସମୟରେ ବହୁତ ବିଖ୍ୟାତ (ସମୁନ୍ନତ), ସମ୍ମାନିତ, ଭକ୍ତିର ଯୋଗ୍ୟ ତଥା ପ୍ରଶଂସିତ ବ୍ୟକ୍ତିତ୍ୱ ହୋଇ ଜଣେ ପ୍ରଖ୍ୟାତ ନାଗରିକ ହୁଅନ୍ତି । କୁହାଯାଇଥିବା ଆଧ୍ୟାତ୍ମିକ ପ୍ରୟୋଗ ତତ୍ପରତାର ସହ ଅଭ୍ୟାସ କରିବାକୁ ଶିଷ୍ୟମାନଙ୍କୁ ଉତ୍ସାହିତ କରିବା ପାଇଁ ଏହା ହେଉଛି ଉପନିଷଦ୍‌ମାନଙ୍କର ସାଧାରଣ ଶୈଳୀ ଏବଂ କୌଶଳ । ଆଧ୍ୟାତ୍ମିକ ସାଧନା ସମ୍ବନ୍ଧରେ ଶିଷ୍ୟମାନଙ୍କୁ କହିବାବେଳେ ମହତ୍ତର ଲାଭ ପାଇଁ ସେମାନେ ଏହି ପ୍ରତିଶ୍ରୁତି ଦେଇ ଥାଆନ୍ତି ।

ଏହାକୁ ଏକ ଇତର, ପୂର୍ବାବଧାରିତ ମତ ଭାବରେ ବିଚାର କରି ଆମର ଏପରି କହିବାକୁ ଇଚ୍ଛା ହୋଇପାରେ ଯେ, ଶିଷ୍ୟମାନଙ୍କୁ ଉତ୍ସାହିତ କରିବାକୁ ଏହା ହେଉଛି ଋଷି ମାନଙ୍କର ଏକ ଅମାର୍ଜିତ ଉପାୟ । କିନ୍ତୁ ଆଧୁନିକ ଯୁଗ ଏବଂ ତା'ର ମନୋବିଜ୍ଞାନ ସମ୍ବନ୍ଧରେ ଆମେ ଯାହା ଯତ୍‌ସାମାନ୍ୟ ଜାଣୁ, ସେଥିରୁ ନିଶ୍ଚିତ ଭାବରେ କହି ପାରିବା ଯେ, ଦୈନନ୍ଦିନ କାର୍ଯ୍ୟରେ ଏହି ଅଭ୍ୟାସ ନିଶ୍ଚିତ ଭାବରେ ମାନବୀୟ ବ୍ୟକ୍ତିତ୍ୱର ବିକାଶ କରିବ । ମନରେ ନିୟମିତ ଭାବରେ ଓଁ ଜପ କରି ଜଣେ ସାଧକ ନିଜଠାରେ ଥିବା ଜାଗ୍ରତ ପୁରୁଷର ଧ୍ୟାନ କଲେ ନିଶ୍ଚିତ ଭାବରେ ତାଙ୍କ ମନ ଓ ବୁଦ୍ଧିର ବିକାଶ ଘଟିବ ଏବଂ ସେହି ଆତ୍ମବିକାଶ ଫଳ ସ୍ୱରୂପ ତାର ବୈୟକ୍ତିକ ଜାଗ୍ରତ ପୁରୁଷ ଏକ ସମତୁଲ ଆକର୍ଷଣୀୟ ସକ୍ରିୟତାକୁ ପ୍ରସ୍ଫୁଟିତ କରିବ ।

ବର୍ତ୍ତମାନର ପ୍ରତିଯୋଗିତାମୂଳକ ଏବଂ ଲୋଭ-ପୂର୍ଣ୍ଣ ଦୁନିଆରେ ଏପରି ଏକ ବ୍ୟକ୍ତିତ୍ୱ ନିଶ୍ଚିତ ଭାବରେ ମହାନ ସଫଳତା ଲାଭ କରିବ, ଏକଥା ବୁଝାଇବା ପାଇଁ କୌଣସି ବ୍ୟକ୍ତି ବିଶେଷଙ୍କୁ ଜଣେ ମହାନ୍ ଦାର୍ଶନିକଙ୍କ ଆବଶ୍ୟକତା ନାହିଁ । ଏପରି ନିଷ୍ଠାପର ଏବଂ ନିରବଚ୍ଛିନ୍ନ ଚେଷ୍ଟା ଜଣେ ସାଧାରଣ ବ୍ୟକ୍ତିକୁ ମହାନ ପ୍ରତିଭାରେ ପରିଣତ କରିପାରିବ। ଆମର ନକାରାତ୍ମକତା ଯୋଗୁଁ ଆମେ ବିଷାଦଗ୍ରସ୍ତ ଏବଂ ଅପାରଗ ହୋଇଯାଉ। ମନୋବୈଜ୍ଞାନିକ ଦୁର୍ବଳତା ଏବଂ ମାନସିକ ବ୍ୟତିବ୍ୟସ୍ତତାକୁ ଜୟ କରିବା ପାଇଁ ଥରେ କାହାକୁ ପ୍ରଶିକ୍ଷିତ କରି ପାରିଲେ, ତା'ର ସମସ୍ତ ମାନସିକ ଚାପ ଏବଂ ଅବଦମନରୁ ଆମେ ତା'କୁ ମୁକ୍ତ କରିପାରିବା ଏବଂ ଜଣେ ମହାନ୍ ଶକ୍ତିଶାଳୀ, ଯୋଗ୍ୟ, ବୁଦ୍ଧିମାନ ଏବଂ ଦୁଃସାହସୀ ବ୍ୟକ୍ତି ଭାବରେ ସେ ନିଜକୁ ପ୍ରତିଷ୍ଠିତ କରି ପାରିବ । ତେଣୁ, ଜୀବନର ସମସ୍ତ କ୍ଷେତ୍ରରେ ନିଶ୍ଚିତ ସଫଳତା ପାଇଁ ସେ ସ୍ୱାଭାବିକ ଭାବେ ପରିଚିତ ହେବ ।

**ସ୍ୱପ୍ନସ୍ଥାନସ୍ତୈଜସ ଉକାରୋ ଦ୍ୱିତୀୟା**
**ମାତ୍ରୋତ୍କର୍ଷାଦୁଭୟତ୍ୱାଦ୍‌ବୋତ୍କର୍ଷତି ହ ବୈ**
**ଜ୍ଞାନସନ୍ତତିଂ ସମାନଶ୍ଚ ଭବତି**
**ନାସ୍ୟାବ୍ରହ୍ମବିତ୍ କୁଳେ ଭବତି ୟ ଏବଂ ବେଦ ॥୧୦॥**

ସ୍ୱପ୍ନ-ସ୍ଥାନଃ = ସ୍ୱପ୍ନରେ କାମ କରିବାର ସ୍ଥାନ ପାଇ, ତୈଜସଃ = ତୈଜସ, ଉ କାରଃ ଦ୍ୱିତୀୟା ମାତ୍ରା = ଉ ହେଉଛି ଦ୍ୱିତୀୟ ଅକ୍ଷର, ଉତ୍କର୍ଷତା = ଉତ୍କର୍ଷ ଯୋଗୁଁ, ବା ଉଭୟତ୍ୱାତ୍ = କିମ୍ବା ମଧ୍ୟବର୍ତ୍ତୀ ସ୍ଥାନ ଯୋଗୁଁ, ଉତ୍କର୍ଷତି ହ ବୈ = ଏହିପରି ଭାବରେ ସେ ଉତ୍କର୍ଷତା ଲାଭ କରେ, ଜ୍ଞାନ-ସନ୍ତତିମ୍ = ତା'ର ଜ୍ଞାନର ପରିସର, ସମାନଃ = ସମସ୍ତଙ୍କ ପ୍ରତି ସମାନ, ଚ ଭବତି = ଏବଂ ହୁଏ, ନ = ନା, ଅସ୍ୟ = ଏହିଠାରେ, ଅବ୍ରହ୍ମବିତ୍ = ବ୍ରହ୍ମ ସମ୍ବନ୍ଧରେ ଅଜ୍ଞ, କୁଳେ = ପରିବାରରେ, ଭବତି = ହୁଏ, ୟଃ = ସେହି ଜଣକ, ଏବମ୍ = ଏହିପରି , ବେଦ = ଯିଏ ଧ୍ୟାନ କରେ (ଜାଣେ)।

*ସ୍ୱପ୍ନାବସ୍ଥାର କାର୍ଯ୍ୟକ୍ଷେତ୍ର ଥିବା ତୈଜସ ହେଉଛି 'ଓଁ' ର ଦ୍ୱିତୀୟ ଅକ୍ଷର ଅଟେ। ଏହା ତା'ର ଉତ୍କର୍ଷତା ଯୋଗୁଁ ବା ଉଭୟର ମଧ୍ୟବର୍ତ୍ତୀ ହୋଇଥିବା ଯୋଗୁଁ । ଏହାକୁ ଜାଣିଥିବା ବ୍ୟକ୍ତି ଜ୍ଞାନରେ ଉତ୍କର୍ଷତା ଲାଭ କରେ ଏବଂ ସମସ୍ତଙ୍କ ଦ୍ୱାରା ସମାନ ବ୍ୟବହାର ପାଏ ଏବଂ ତାର ସନ୍ତତିମାନଙ୍କ ମଧ୍ୟରେ କେହି ବ୍ରହ୍ମ-ଅଜ୍ଞାନୀ ହୁଅନ୍ତି ନାହିଁ ॥୧୦॥*

ପ୍ରତୀକ ଉପାସନାର କୁଶଳତା ଚାଲୁ ରଖି, 'ଓଁ' ର ଦ୍ୱିତୀୟ ଅକ୍ଷର 'ଉ' ଧ୍ୱନିରେ ସୁଚିନ୍ତିତ ଅଧ୍ୟାସ କଣ ହେବ ବୋଲି ଏଠାରେ ବିଶଦ ଭାବରେ ଆମକୁ କୁହାଯାଇଛି । ସୂକ୍ଷ୍ମ ଶରୀର ସହିତ ତାଦାତ୍ମ୍ୟର ଫଳ ସ୍ୱରୂପ ସୃଷ୍ଟ ଜୀବକୁ ସ୍ୱପ୍ନଦ୍ରଷ୍ଟା କୁହାଯାଏ । ଏହା ସୂକ୍ଷ୍ମ ପଦାର୍ଥର ଆଭ୍ୟନ୍ତରୀଣ ଜଗତରେ ସ୍ୱପ୍ନର ଅନୁଭୂତି ଲାଭ କରି ଆନନ୍ଦମତ୍ତ ହୁଏ । ଓଁ ର ଦ୍ୱିତୀୟ ଅକ୍ଷର 'ଉ' ଉପରେ ଏହାର ଅଧ୍ୟାସ କରିବା କଥା ।

ଉପନିଷଦ୍‌ମାନେ ଉଭୟଙ୍କ ମଧ୍ୟରେ ଯେଉଁ ସାଧାରଣ ବୈଶିଷ୍ଟ ଦେଖାଇଛନ୍ତି, ତାହା ହେଲା 'ଉତ୍କର୍ଷତା', ଉ ଅକ୍ଷର 'ଅ' ଅକ୍ଷରର ପରେ ଆସେ । ତେଣୁ ଏହି ଉତ୍କର୍ଷତା । ସେହିପରି ତୈଜସକୁ ଜାଗ୍ରତପୁରୁଷ ଅପେକ୍ଷା ଉତ୍କର୍ଷ କୁହାଯାଏ, କାରଣ, ଜାଗ୍ରତ ଅବସ୍ଥାର ଅନୁଭୂତି ହେଉଛି ସ୍ୱପ୍ନର ପୂର୍ବବର୍ତ୍ତୀ । ବିଷୟ ଜଗତରେ ବିଶ୍ୱ ତାର ଅନୁଭୂତି ଲାଭ କରିବା ପରେ ବାହ୍ୟ ଜଗତର ଛାପ ମାନସିକ ବଳୟରେ ସାଇତି ରଖେ, ଏବଂ ସ୍ୱପ୍ନଦ୍ରଷ୍ଟା ପାଇଁ, ସ୍ୱପ୍ନର ମିଥ୍ୟା ଜଗତ ସୃଷ୍ଟି କରିବା ପାଇଁ ଏହି ପ୍ରଭାବ ଭୂତ ପରି ଦୃଶ୍ୟ ହୁଏ ।

ଏଥିରେ ତୁଳନାର ଦ୍ୱିତୀୟ ବିଷୟ ହେଲା, ଉଭୟେ 'ମଧ୍ୟବର୍ତ୍ତୀ ସ୍ଥାନ' ଅଧିକାର କରନ୍ତି, 'ଉ'ଅକ୍ଷର ହେଉଛି 'ଅ' ଏବଂ 'ମ'ର ମଧ୍ୟବର୍ତ୍ତୀ, ସେହିପରି ସ୍ୱପ୍ନାବସ୍ଥା ଜାଗ୍ରତ ଏବଂ ସୁଷୁପ୍ତ ଅବସ୍ଥାର ମଝିରେ ଆସିଥାଏ ।

ଓଁ ଜପର 'ଉ' ଧ୍ୱନି ଉପରେ ଧ୍ୟାନ କରି 'ଉ' ଏବଂ ସୂକ୍ଷ୍ମ ଶରୀରର ତାଦାତ୍ମ୍ୟ ରକ୍ଷାକରି, ମନ ଏବଂ ବୁଦ୍ଧିକୁ ଏପରି ଏକ ଅନନ୍ୟ ଅସାଧାରଣ, ଅତୀବ ପୂର୍ଣ୍ଣାଙ୍ଗ ଅବସ୍ଥାକୁ ବିକଶିତ କଲେ, ନିଶ୍ଚିତ ଭାବରେ ଉତ୍କର୍ଷ ଜ୍ଞାନ ଲାଭ କରି ହେବ ଏବଂ ଜଗତରେ ନିଜକୁ ମହାନ ପ୍ରତିଭା ଭାବରେ ପ୍ରମାଣିତ କରି ହେବ । ଏପରିକି, ବର୍ତ୍ତମାନର ଏହି ପ୍ରତିଯୋଗିତାମୂଳକ ଏବଂ ଲୋଲୁପତା ଭରା ଦୁନିଆରେ ମଧ୍ୟ ଅଧିକତର ବୁଦ୍ଧିମତ୍ତାକୁ ସମ୍ମାନ ଦିଆ ଯାଇଥାଏ ।

ବୈଦିକ ଯୁଗରେ ସାଧାରଣ ଜନତାର ମଧ୍ୟ ଆଧ୍ୟାତ୍ମିକ ପୂର୍ଣ୍ଣାଙ୍ଗତା ସମ୍ବନ୍ଧରେ ଯଥେଷ୍ଟ ଜ୍ଞାନ ଥିଲା ଏବଂ ସେତେବେଳକାର ଆର୍ଯ୍ୟ ସଂସ୍କୃତି ମୁଖ୍ୟତଃ ଜୀବନର ଆଧ୍ୟାତ୍ମିକ ମୂଲ୍ୟବୋଧ ଉପରେ ପର୍ଯ୍ୟବେକ୍ଷିତ ଥିଲା । ତେଣୁ ଓଁ ମନ୍ତ୍ର ଉପରେ ନିୟମିତ ଧ୍ୟାନ କଲେ ଜଣେ ଗୃହସ୍ଥର ସନ୍ତତି ଶୁଦ୍ଧ ଏବଂ ଆଧ୍ୟାତ୍ମିକ ଭାବରେ ସୁସଂସ୍କୃତ ରହିବ ବୋଲି ପ୍ରତିଶ୍ରୁତି ଦେବା ସେ ଯୁଗରେ ଥିଲା ମହାନ୍ ପ୍ରେରଣାଦାୟକ ଘଟଣା ।

ଏପରିକି, ବର୍ତ୍ତମାନ ସୁଦ୍ଧା ଆମେ ଦେଖିବାକୁ ପାଉ ଯେ ଜଣେ ଇଞ୍ଜିନିୟର ବାପା ତାର ଅନ୍ତତଃ ଜଣେ ହେଲେ ପୁଅ ଇଂଜିନିୟର ହେଉ ବୋଲି ଚାହେଁ । ଏହା ମଧ୍ୟ ଦେଖାଯାଏ ଯେ, ଜଣେ ବାପା ଯଦି କୌଣସି ନିର୍ଦ୍ଦିଷ୍ଟ ପେଶାରେ ସଫଳ ହୋଇଥାଏ, ଯଥା ଆଇନ୍ ବା ଡାକ୍ତରୀ, ତାର ପିଲାମାନେ ସେହି ପେଶା ପ୍ରତି ଆଗ୍ରହ ପ୍ରକାଶ କରିଥାନ୍ତି । ମଣିଷଠାରେ ଦେଖା ଦେଉଥିବା ଏହି ମନୋବୈଜ୍ଞାନିକ ବଂଶାନୁକ୍ରମିକତାର ଅନୁସରଣ କରି ଉପନିଷଦ୍ କହିଛନ୍ତି ଯେ, ଶାସ୍ତ୍ରର ଏପରି ବିଦ୍ୱାନ ଏବଂ ପଣ୍ଡିତଙ୍କ ପରିବାରରେ ସାଂସ୍କୃତିକ ସ୍ତରରେ ନ୍ୟୁନ ହୋଇ କେହି ରହିବେ ନାହିଁ ।

**ସୁଷୁପ୍ତସ୍ଥାନଃ ପ୍ରାଜ୍ଞୋ ମକାରସ୍ତୃତୀୟା ମାତ୍ରା**
**ମିତେରପୀତେର୍ବା ମିନୋତି ହ ବା**
**ଇଦଂ ସର୍ବମପୀତିଶ୍ଚ ଭବତି**
**ୟ ଏବଂ ବେଦ ॥୧୧॥**

ସୁଷୁପ୍ତ ସ୍ଥାନଃ = ଅନୁଭୂତିର ସୁଷୁପ୍ତି ଅବସ୍ଥା, ପ୍ରାଜ୍ଞଃ = ପ୍ରାଜ୍ଞ, ମକାରଃ ତୃତୀୟ ମାତ୍ରା = ମ ହେଉଛି ତୃତୀୟ ଅକ୍ଷର, ମିତେଃ = ଏକ ମାପ ହୋଇଥିବାରୁ, ବା ଅପିତେ = କିମ୍ବା ବିଘଟନ ବା ବିଲୀନ ଅବସ୍ଥା, ମିନୋତି ହ ବା = ସେ ଏହି ତାଦାତ୍ମ୍ୟ ପ୍ରକୃତରେ ଜାଣନ୍ତି, ଇଦମ୍ ସର୍ବମ୍ = ଏହି ସମସ୍ତ, ଅପୀତିଃ = ଜଗତର କାରଣ ହୋଇଥିବାରୁ, ଚ ଭବତି = ଏବଂ ହୁଏ, ୟଃ = ସେ ଯିଏ, ଏବମ୍ = ଏହିପରି ଭାବରେ, ବେଦ = ଜାଣେ, ଧ୍ୟାନ କରେ ।

*ସୁଷୁପ୍ତ ଅବସ୍ଥା ଯାହାର କାର୍ଯ୍ୟକ୍ଷେତ୍ର, ସେହି ପ୍ରାଜ୍ଞ ହେଉଛି ଓଁ ର ତୃତୀୟ ଅକ୍ଷର, କାରଣ ଏହା ହେଉଛି ଉଭୟ ମାପକ ଏବଂ ଯାହାଠାରେ ସମସ୍ତେ ଏକ ହୁଅନ୍ତି । ପ୍ରାଜ୍ଞ ଏବଂ 'ମ'ର ଏହି ତାଦାତ୍ମ୍ୟ ଜାଣିଥିବା ବ୍ୟକ୍ତି ସଜୀବ ଏବଂ ନିର୍ଜୀବ ମାନଙ୍କ ବାସ୍ତବ ସ୍ୱରୂପ ଜାଣିବାରେ ସମର୍ଥ ହୁଅନ୍ତି ଏବଂ ସମସ୍ତଙ୍କର ଆତ୍ମା ହୋଇଥିବା ଅନୁଭବ କରନ୍ତି ॥୧୧॥*

ଶେଷ ଦୁଇ ଶ୍ଳୋକର ଆଲୋଚନା ଭଲ ଭାବରେ ବୁଝି ପାରିଥିବା ଶିଷ୍ୟଙ୍କ ପାଇଁ ଓଁ ରେ 'ମ' ଧ୍ୱନି ଏବଂ ସୁଷୁପ୍ତର ତାଦାତ୍ମ୍ୟ ସ୍ପଷ୍ଟ ହୋଇଯିବ । ଏଠାରେ ମଧ୍ୟ 'ମ' ଏବଂ ସୁଷୁପ୍ତ ମଧ୍ୟରେ ଥିବା ସାଧାରଣ ଦୁଇଟି ବୈଶିଷ୍ଟ୍ୟ ବିଷୟରେ କୁହା ଯାଇଛି ।

ସଂସ୍କୃତରେ 'ମିତି' ଶବ୍ଦର ଅର୍ଥ ହେଉଛି 'ମାପ' ବା 'ପରିମାଣ' । କୌଣସି ତରଳ ଦ୍ରବ୍ୟର ପରିମାଣ ଜାଣିବା ପାଇଁ ଗୋଟିଏ 'ମାପକ'ର ବ୍ୟବହାର କରାଯାଇଥାଏ ଏବଂ ମାପ ହୋଇ ନ ଥିବା ତରଳ ପଦାର୍ଥକୁ ମାପକ ପାତ୍ରରେ ଢାଳି ତା'ର ମାପ

କରାଯାଇଥାଏ। ମାପିବାର ଏହି ପ୍ରଣାଳୀରେ ମାପକ ପାତ୍ର ଦୃଷ୍ଟିରେ ତରଳ ପଦାର୍ଥ ଦ୍ୱାରା ସେ ପୂର୍ଣ୍ଣ ହୁଏ ଏବଂ ତାହାକୁ ପୁଣି ଶୂନ୍ୟ କରାଯାଏ ।

ସେହିପରି, 'ଓଁ' ରେ ମ ଧ୍ୱନି, ଏବଂ ଜୀବନରେ ଚେତନାର ସୁଷୁପ୍ତ ଅବସ୍ଥା-ଉଭୟଙ୍କୁ ମାପକ ଉପକରଣ ସହିତ ତୁଳନା କରାଯାଏ । କଥାଟି ଏହିପରି - ଓଁ ର ଉଚ୍ଚାରଣରେ 'ଅ' ଏବଂ 'ଉ' ଅକ୍ଷର, ଶେଷ ଧ୍ୱନି 'ମ' ରେ ମିଶି ଯାଆନ୍ତି ଏବଂ ଆମେ ପୁଣି ଓଁ ଉଚ୍ଚାରଣ କଲେ 'ମ' ରୁ 'ଅ' ଏବଂ 'ଉ' ଧ୍ୱନି ଆସିବା ପରି ମନେ ହୁଏ। ସେହିପରି, ଚେତନାର ସୁଷୁପ୍ତ ଅବସ୍ଥାରେ ଉଭୟ ଜାଗ୍ରତ ଅବସ୍ଥା ଏବଂ ସ୍ୱପ୍ନ ଅବସ୍ଥାର ଅନୁଭୂତି ଏକ ଚୈତନ୍ୟଘନ ଅବସ୍ଥାକୁ ଘନୀଭୂତ ହେବା ପରି ମନେ ହୋଇଥାଏ। ଏବଂ ଏହି ଚୈତନ୍ୟଘନ ଅବସ୍ଥାରୁ ଜାଗୃତ ହେଲେ, ଜାଗ୍ରତ ଅବସ୍ଥା ଏବଂ ସ୍ୱପ୍ନାବସ୍ଥା ପ୍ରକଟ ହେବାପରି ମନେ ହୁଏ । ଏହି ଦୃଷ୍ଟିରୁ ଏଠାରେ ଉଭୟ 'ମ' ଏବଂ ସୁଷୁପ୍ତ ଅବସ୍ଥାକୁ ମାପକ ଉପକରଣ ସହିତ ତୁଳନା କରା ଯାଇଛି ।

ଓଁ ର ଶେଷ ଅକ୍ଷର ଏବଂ ସୁଷୁପ୍ତ ଅବସ୍ଥା ମଧ୍ୟରେ ଅନ୍ୟ ଯେଉଁ ସାଧାରଣ ଲକ୍ଷଣ ରହିଛି, ତାହା ହେଲା ଉଭୟଙ୍କଠାରେ ପୂର୍ବ ବିଦ୍ୟ ବହୁବିଧତା ଏବଂ ପ୍ରଭେଦ ମିଶି ଯାଇ ଗୋଟିଏ ହୋଇ ଯାଆନ୍ତି।

ଏହି ତାଦାତ୍ମ୍ୟ ବୁଝି ପାରିବା ବ୍ୟକ୍ତି ସମସ୍ତ ଅର୍ଥ ମାପି (ବିଶ୍ଳେଷଣ କରି)ବସ୍ତୁ ଜଗତର ପ୍ରଭେଦ ଓ ଅନ୍ତର ଏବଂ ବାହାରେ ଘଟୁଥିବା ସଂଘଟଣାଦି ବିଚାର କରିପାରେ ଓ ବୁଝିପାରେ। ପୁନଶ୍ଚ ସେ, ନିଜ ଭିତରେ ସମସ୍ତ କଥା ଦେଖିବାକୁ ଏବଂ ବୁଝିବାକୁ ସମର୍ଥ ହୋଇଯାଏ। ଜ୍ଞାନର ବିଷୟ ଯାହାହେଲେ ମଧ୍ୟ, ଯେତେ କଷ୍ଟସାଧ୍ୟ ଏବଂ କ୍ଲିଷ୍ଟ ହେଲେ ମଧ୍ୟ କୌଣସି ଜ୍ଞାନ ତାର ଅବୋଧ୍ୟ (ଅଜ୍ଞେୟ) ହୋଇ ରହେ ନାହିଁ, କୌଣସି ପରିସ୍ଥିତି ତା'ର ବୋଧଶକ୍ତି ବାହାରେ ରହେ ନାହିଁ ।

ନିମ୍ନୋକ୍ତ ଶ୍ଳୋକ ସବୁ କାରିକାରୁ -

**ବିଶ୍ୱସ୍ୟାତ୍ୱବିବକ୍ଷାୟାମାଦିସାମାନ୍ୟମୁତ୍କଟମ୍ ।**

**ମାତ୍ରା ସଂପ୍ରତିପତ୍ତୌ ସ୍ୟାଦାପ୍ତିସାମାନ୍ୟମେବ ଚ ॥୧୯॥**

ବିଶ୍ୱସ୍ୟ = ବିଶ୍ୱର, ଅତ୍ୱ-ବିବକ୍ଷାୟାମ୍ = ଅ ସହିତ ତାଦାତ୍ମ୍ୟ, ଆଦି = ଆଦି, ଆରମ୍ଭ, ସାମାନ୍ୟମ୍ = ସାଦୃଶ୍ୟ, ଉତ୍କଟମ୍ = ପ୍ରତ୍ୟକ୍ଷ, ମାତ୍ରା = ଅକ୍ଷର, ସଂପ୍ରତି ପତ୍ତୌ = ସମ୍ବନ୍ଧୀୟ, ସ୍ୟାତ୍ = ହୁଏ, ଆପ୍ତି-ସାମାନ୍ୟମ୍ = ବ୍ୟାପ୍ତିର ସାଦୃଶ୍ୟ, ଏବ ଚ = ମଧ୍ୟ, ଏବଂ ।

*ବିଶ୍ୱ ଏବଂ 'ଅ' ଧ୍ୱନିର ଏକତ୍ୱର ଲକ୍ଷଣ ହେଲା ଉଭୟେ ଆଦି ତଥା ସର୍ବବ୍ୟାପକ ॥୧୯॥*

ଓଁ ର ଧ୍ୟାନ ସମ୍ବନ୍ଧରେ ଋଷି ଉପନିଷଦ୍‌ରେ ନିର୍ଦ୍ଦେଶ ଦେଇଛନ୍ତି । ଏଠାରେ ଗୌଡ଼ପାଦ ସଂକ୍ଷେପରେ ତା'ର ଅର୍ଥ ପ୍ରକାଶ କରିଛନ୍ତି ।

ଗୌଡ଼ପାଦ ଉପନିଷଦ୍‌ର ମନ୍ତ୍ରମାନଙ୍କୁ ସଂକ୍ଷେପରେ ପ୍ରକାଶ କରିବାର ଚେଷ୍ଟା କରୁଥିଲେ ହେଁ ଉପନିଷଦ୍‌ର ଦୃଢୋକ୍ତିକୁ ସାମାନ୍ୟ ବଦଳାଇଥିବା ପରି ମନେ ହୁଏ । ଉପନିଷଦ୍‌ରେ (ମନ୍ତ୍ର-୯) 'ଅ' ର ଧ୍ୱନି ଏବଂ ଜାଗ୍ରତ ଅବସ୍ଥାର ଜୀବର ସାଧାରଣ ବୈଶିଷ୍ଟ୍ୟ ବର୍ଣ୍ଣନା କଲାବେଳେ ଋଷି ଜଣାଇଛନ୍ତି ଯେ, ସେମାନଙ୍କ ମଧ୍ୟରେ ସାଧାରଣ ସାଦୃଶ୍ୟ ହେଲା ପ୍ରଥମ ହେବା ବା ସେମାନଙ୍କ ମଧ୍ୟରୁ ପ୍ରତ୍ୟେକେ ପ୍ରଥମ ଏବଂ 'ସର୍ବବ୍ୟାପୀ' ହୋଇଥିବାରୁ । କିନ୍ତୁ ଏହି ଶ୍ଳୋକରେ ବିଶ୍ୱ 'ଅ' ସହ ସମାନ ବୋଲି ଘୋଷଣା କରାଯାଇଛି ଯେହେତୁ ପ୍ରତ୍ୟେକେ 'ଆଦି ଓ ସର୍ବବ୍ୟାପକ' ।

ଗୌଡ଼ପାଦ ଏବଂ ଉପନିଷଦ୍ ମଧ୍ୟରେ ଏହି ପ୍ରଭେଦ ପାଇଁ କେତେକ ସମାଲୋଚକ ମନେ କରନ୍ତି ଯେ, ପ୍ରଥମେ କାରିକା ଲେଖା ହୋଇଥିଲା ଏବଂ ତାପରେ ଉପନିଷଦ୍‌ର ଗଦ୍ୟ ମନ୍ତ୍ର। ଏକଥା ଠିକ୍ ନୁହେଁ । ଆମର ପବିତ୍ର ଦେଶରେ ପରମ୍ପରା ଗତ ବିଶ୍ୱାସ ବିରୁଦ୍ଧରେ ଏପରି ଏକ ଭୁଲ୍ ସିଦ୍ଧାନ୍ତ ପାଇଁ ଯଥେଷ୍ଟ ଯୁକ୍ତି ଅନ୍ତତଃ ନାହିଁ । ଉପନିଷଦ୍‌ରେ 'କିମ୍ବା'ର ବ୍ୟବହାର 'ଏବଂ' ପରି ଦୃଢ ।

କାରିକାକାରଙ୍କର କାର୍ଯ୍ୟ ହେଲା, ଉପନିଷଦୀୟ ଉକ୍ତି ସେସବୁର ମହାନ ଅର୍ଥ ଏବଂ ପରାମର୍ଶର ତାତ୍ପର୍ଯ୍ୟ ଦିଗରେ ପାଠକମାନଙ୍କର ଧ୍ୟାନ ଆକର୍ଷଣ କରିବା । ସାଧାରଣତଃ ଜଣେ ଅତି ମନୋଯୋଗୀ ଶିଷ୍ୟ ମଧ୍ୟ ଆକ୍ଷରିକ ଅର୍ଥରେ, 'କିମ୍ବା'ର ଅର୍ଥ ହୁଏତ 'ବିକଳ୍ପ' ବୋଲି ମାତ୍ର ବୁଝିପାରିବ । ଏହା ଗୋଟିଏ ଅବ୍ୟୟ ପରି ଦୃଢ ବୋଲି ହୁଏତ ସେ ସହଜରେ ବୁଝିପାରିବ ନାହିଁ ।

ତେଣୁ ଗୌଡ଼ପାଦ, ଜଣେ ଉପଯୁକ୍ତ କାରିକାକାର ଭାବରେ, ଉପନିଷଦ୍‌ର ଭିନ୍ନ ମନେ ହେଉଥିବା ଗୋଟିଏ ଉକ୍ତିରେ ବଡ଼ ସ୍ପଷ୍ଟ ଭାବରେ ତାର ତାତ୍ପର୍ଯ୍ୟ ପ୍ରକାଶ କରିଛନ୍ତି। ତେଣୁ ଉପନିଷଦ୍ କାରିକାର ଅନେକ ପରେ ଲେଖା ହୋଇଛି ବୋଲି ମତ ପୋଷଣ କରିବା ଏବଂ କାରିକା ଉପନିଷଦ୍‌ର ପୂର୍ବରୁ ବୋଲି କହିବା ଘୋଡ଼ା ସାମନାରେ ଗାଡ଼ି ଏବଂ ଚାଳକକୁ ରଖିବା ପରି ହେବ । ତେବେବି, କେତେକ ସମାଲୋଚକ ଏପରି କରିଛନ୍ତି।

**ତୈଜସସ୍ୟୋତ୍ୱବିଜ୍ଞାନ ଉତ୍କର୍ଷୋ ଦୃଶ୍ୟତେ ସ୍ଫୁଟମ୍ ।**

**ମାତ୍ରାସଂପ୍ରତିପତ୍ତୌ ସ୍ୟାଦୁଭୟତ୍ୱଂ ତଥାବିଧମ୍ ॥୨୦॥**

ତୈଜସସ୍ୟ = ତୈଜସର, ଉତ୍ୱ-ବିଜ୍ଞାନ = 'ଉ' ସହିତ ତାଦାତ୍ମ୍ୟ କରି, ଉତ୍କର୍ଷ = ସେମାନଙ୍କର ଉତ୍କର୍ଷତା, ଦୃଶ୍ୟତେ = ଦେଖାଯାଏ, ସ୍ଫୁଟମ୍ = ପରିଷ୍କାର ଭାବରେ, ମାତ୍ରା= ଅକ୍ଷର, ସଂପ୍ରତପତ୍ତୌ = ସମ୍ପର୍କୀୟ, ସ୍ୟାତ୍ = ଅଟେ, ଉଭୟତ୍ୱମ୍ = (ସେମାନଙ୍କର) ମଧ୍ୟବର୍ତ୍ତୀ ଅବସ୍ଥା, ତଥା ବିଧମ୍ = ସେହିପରି ମଧ୍ୟ ।

*'ଉତ୍କର୍ଷତା' ସାଧାରଣ ବୈଶିଷ୍ଟ୍ୟ ହୋଇଥିବାରୁ ଓଁ ରେ 'ଉ' ଏବଂ ତୈଜସର ସ୍ୱରୂପ ଏକାପରି ବୋଲି ସ୍ପଷ୍ଟ ବୁଝିହୁଏ । ଏପରି ତାଦାତ୍ମ୍ୟ କରିବାର ଅନ୍ୟ ଏକ କାରଣ ହେଲା, 'ଉଭୟେ ମଝିରେ ଅଛନ୍ତି' ॥୨୦॥*

**ମକାରଭାବେ ପ୍ରାଜ୍ଞସ୍ୟ ମାନସାମାନ୍ୟମୁତ୍କଟମ୍।**

**ମାତ୍ରାସଂପ୍ରତିପତ୍ତୌ ତୁ ଲୟସାମାନ୍ୟମେବ ଚ ॥୨୧॥**

ମକାରଭାବେ = 'ମ' ହୋଇଯାଏ, ପ୍ରାଜ୍ଞସ୍ୟ = ପ୍ରାଜ୍ଞର, ମାନ-ସାମାନ୍ୟମ୍ = ଏକ ମାପ ହୋଇଥିବାର ସାଦୃଶ୍ୟ, ଉତ୍କଟମ୍ = ସ୍ପଷ୍ଟ ହୁଏ, ମାତ୍ରା =ଅକ୍ଷର, ସଂପ୍ରତିପତ୍ତୌ = ସମ୍ପର୍କୀୟ, ତୁ = କିନ୍ତୁ, ଯେତେବେଳେ, ଲୟ ସାମାନ୍ୟମ୍ = ଲୟ ହେବାର ସାଦୃଶ୍ୟ ଥିବା ଯୋଗୁଁ, ଏବ ଚ = ଏବଂ ମଧ୍ୟ ।

*ମ ଏବଂ ପ୍ରାଜ୍ଞ ଉଭୟ ହେଉଛନ୍ତି ମାପ । ଏହା ଉପରେ ସେମାନଙ୍କର ଏକତ୍ୱ ପ୍ରତିଷ୍ଠିତ। ଏପରି ତାଦାତ୍ମ୍ୟର ଅନ୍ୟ ଏକ କାରଣ ହେଲା ପ୍ରାଜ୍ଞ ଏବଂ 'ମ୍' ରେ ସମସ୍ତେ ଏକ ହୋଇଯିବା ॥୨୧॥*

**ତ୍ରିଷୁ ଧାମସୁ ଯସ୍ତୁଲ୍ୟଂ ସାମାନ୍ୟଂ ବେତ୍ତି ନିଶ୍ଚିତଃ**

**ସଃ ପୂଜ୍ୟଃ ସର୍ବଭୂତାନାଂ ବନ୍ଦ୍ୟଶ୍ଚୈବ ମହାମୁନିଃ ॥୨୨॥**

ତ୍ରିଷୁ ଧାମସୁ = ତିନୋଟି ଅବସ୍ଥାରେ, ଯତ୍ = ଯାହା, ତୁଲ୍ୟମ୍ = ସାଦୃଶ୍ୟ, ସାମାନ୍ୟମ୍ = ସାଧାରଣ, ବେତ୍ତି = ଜାଣେ, ନିଶ୍ଚିତ = ନିଶ୍ଚିତ ଭାବରେ, ସଃ = ତାହା(ବ୍ୟକ୍ତି), ପୂଜ୍ୟଃ = ପୂଜନୀୟ, ସର୍ବଭୂତାନାମ୍ = ସବୁପ୍ରାଣୀ, ବନ୍ଦ୍ୟଃ = ବନ୍ଦନୀୟ, ଚ-ଏବ = ଏବଂ ମଧ୍ୟ, ମହାମୁନିଃ = ମହାନ୍ ମୁନି ।

*ତିନୋଟି ଅବସ୍ଥାର ସାଧାରଣ ବୈଶିଷ୍ଟ୍ୟ ଜଣ ବୋଲି ନିଃସନ୍ଦେହରେ ଜାଣିଥିବା ବ୍ୟକ୍ତି ସମସ୍ତଙ୍କ ପୂଜ୍ୟ ଏବଂ ବନ୍ଦନୀୟ ହୁଏ, ଏବଂ ସେ ହିଁ ପ୍ରକୃତରେ ମହାନ ମୁନି ॥୨୨॥*

ପୂର୍ବୋକ୍ତ ଚାରିଗୋଟି ଶ୍ଳୋକର ଭାଷ୍ୟ ଇଚ୍ଛାକରି ଦିଆଯାଇ ନାହିଁ, କାରଣ ଉପନିଷଦ୍‌ରେ ଏମାନଙ୍କର ଅନୁରୂପ ଗଦ୍ୟ ମନ୍ତ୍ରର ଆଲୋଚନା କଲାବେଳେ ଏହାର ବିଶଦ ବ୍ୟାଖ୍ୟା କରା ଯାଇସାରିଛି ।

**ଅକାରୋ ନୟତେ ବିଶ୍ୱମୁକାରଶ୍ଚାପି ତୈଜସମ୍ ।**

**ମକାରଶ୍ଚ ପୁନଃ ପ୍ରାଜ୍ଞଂ ନାମାତ୍ରେ ବିଦ୍ୟତେ ଗତିଃ ॥୨୩॥**

ଅକାରଃ = ଅ ଅକ୍ଷର, ନୟତେ = ଲାଭ କରେ, ବିଶ୍ୱମ୍ = ବୈଶ୍ୱାନରଙ୍କୁ, ଉକାରଃ ଚ ଅପି = ଏବଂ 'ଉ' ଅକ୍ଷର ମଧ୍ୟ, ତୈଜସମ୍ = ତୈଜସଙ୍କୁ, ମକାରଃ = ମ ଅକ୍ଷର, ଚ ପୁନଃ = ଏବଂ ପୁଣି, ପ୍ରାଜ୍ଞମ୍ = ପ୍ରାଜ୍ଞଙ୍କୁ, ନ = ନୁହେଁ, ଅମାତ୍ରେ = ଅମାତ୍ରା କ୍ଷେତ୍ରରେ, ବିଦ୍ୟତେ = ଥାଏ, ଗତିଃ = ଲାଭ କରିବା ।

*ସୁବିକଶିତ ଜାଗ୍ରତ ଅବସ୍ଥା ବିଶ୍ୱ ପ୍ରାପ୍ତ କରିବା ପାଇଁ ଧ୍ୟାନକାରୀଙ୍କୁ 'ଅ'ଅକ୍ଷର ଧ୍ୱନି ସାହାଯ୍ୟ କରେ, 'ଉ'ର ଧ୍ୟାନକାରୀ ସୁବିକଶିତ ତୈଜସ୍ (ମନଏବଂ ବୁଦ୍ଧି) ଲାଭ କରେ ଏବଂ 'ମ'ଉପରେ ଧ୍ୟାନ କରୁଥିବା ବ୍ୟକ୍ତି ପ୍ରାଜ୍ଞ ହୁଏ । ତୁରୀୟରେ, ପ୍ରାପ୍ତ ହେବା ପାଇଁ କିଛି ନ ଥାଏ ॥୨୩॥*

ଓଁ ର ତିନୋଟି ଅକ୍ଷର ଅ, ଉ, ମ ଉପରେ ଧ୍ୟାନ କଲେ, ଉପନିଷଦ୍‌ରେ ପ୍ରତ୍ୟେକ ମନ୍ତ୍ର ଦ୍ୱାରା ପ୍ରତିଶ୍ରୁତ ଯାହା ଲାଭ ମିଳିବ, ଏହି ଶ୍ଳୋକରେ ସଂକ୍ଷେପରେ ତାହା ଦିଆଯାଇଛି । ଓଁ ର ଧ୍ୱନି ବିହୀନ ତୁରୀୟ ଅଂଶ ଉପରେ ଧ୍ୟାନ କଲେ ଭୌତିକ ଲାଭର ପରିଚ୍ଛିନ୍ନ ଜଗତରେ ଧ୍ୟାନକାରୀ କୌଣସି ନିର୍ଦ୍ଦିଷ୍ଟ ଲାଭ ପାଇ ପାରିବ ନାହିଁ । ତେବେ

ଏହାର ଆଧାତ୍ମିକ ଅନୁକମ୍ପା ହେଉଛି ସର୍ବୋତ୍ତମ, ଅସୀମ । ପରବର୍ତ୍ତୀ ଉପନିଷଦ୍ ମନ୍ତ୍ରରେ ଏହା ସ୍ପଷ୍ଟ କରା ହୋଇଛି ।

ଏଠାରେ ମାଣ୍ଡୁକ୍ୟ ଉପନିଷଦ୍‌ର ଅନ୍ତିମ ମନ୍ତ୍ର ଦିଆ ଯାଉଛି -

**ଅମାତ୍ରଶ୍ଚତୁର୍ଥୋଽବ୍ୟବହାର୍ଯ୍ୟଃ ପ୍ରପଞ୍ଚୋପଶମଃ**

**ଶିବୋଽଦ୍ୱୈତ ଏବମୋଙ୍କାର ଆତ୍ମୈବ**

**ସଂବିଶତ୍ୟାତ୍ମନାତ୍ମାନଂ**

**ୟ ଏବଂ ବେଦ ॥୧୨॥**

**॥ ଇତି ମାଣ୍ଡୁକ୍ୟୋପନିଷଦ୍ ସମାପ୍ତ ॥**

ଅମାତ୍ର = ମାତ୍ରାହୀନ(ଅକ୍ଷରହୀନ ତୁରୀୟ), ଚତୁର୍ଥଃ = ଚତୁର୍ଥ, ତୁରୀୟ, ଅବ୍ୟବହାର୍ଯଃ = ବ୍ୟବହାର ଯୋଗ୍ୟ ହେବାର ଅତୀତ, ପ୍ରପଞ୍ଚ-ଉପଶମଃ = ପ୍ରପଞ୍ଚ (ବିଶ୍ୱ)ରୁ ମୁକ୍ତ, ଶିବଃ = ଶିବ, ମଙ୍ଗଳମୟ, ଅଦ୍ୱୈତଃ = ଅଦ୍ୱୈତ,ଏବମ୍ = ଏହିପରି, ଓଁ କାରଃ = ଓଁ କାର, ଆତ୍ମା ଏବ = କେବଳ ଆତ୍ମା, ସଂବିଶନ୍ତି = ପ୍ରବେଶ କରେ, ମିଳିତ ହୋଇଥାଏ, ଆତ୍ମନା = (ତାର ନିଜ) ଆତ୍ମା ମଧ୍ୟରେ, ଆତ୍ମାନମ୍ = (ତାର ନିଜର ପରମ) ଆତ୍ମା ଭିତରକୁ, ୟଃ = ତାହା, ଏବମ୍ = ଏହିପରି, ବେଦ = ଯିଏ ଜାଣେ ।

*ଯାହାର କୌଣସି ପାଦ ନାହିଁ, ସିଏ ଧ୍ୱନିହୀନ, ବୁଦ୍ଧିଗମ୍ୟ ନୁହେଁ, ସମସ୍ତ ଇନ୍ଦ୍ରିୟର ଅତୀତ, ଯାହାଠାରେ ପ୍ରପଞ୍ଚର ବିରତି ହୋଇଛି, ଯିଏ ଶିବ ଏବଂ ଅଦ୍ୱୈତ ଓଁ, ତାହା ଚତୁର୍ଥ ଏବଂ ନିଶ୍ଚିତ ଭାବରେ ଆତ୍ମା-ସଦୃଶ । ଏକଥା ଜାଣୁଥିବା ବ୍ୟକ୍ତିର ଆତ୍ମା ପରମ ଆତ୍ମାଙ୍କ ସହିତ ମିଶିଯାଏ - ବ୍ୟଷ୍ଟି ସମଷ୍ଟିରେ ବିଲୀନ ହୁଏ ॥୧୨॥*

ମାଣ୍ଡୁକ୍ୟ ଉପନିଷଦ୍ ମନ୍ତ୍ର ଏହିଠାରେ ଶେଷ ହେଲା ।

ଏପର୍ଯ୍ୟନ୍ତ ଉପନିଷଦ୍‌ରେ ଓଁ ର ବିଭିନ୍ନ ମାତ୍ରା ଓ ତା' ଉପରେ ପ୍ରକ୍ଷେପିତ ହେଉଥିବା ବିଶେଷ ଅଧ୍ୟାସ ସବିଶେଷ ବର୍ଣ୍ଣନା କରାଯାଉଥିଲା । କିନ୍ତୁ ଅ ଉ ମ ଧ୍ୱନି ଉଚ୍ଚାରଣ କରି ଓଁ ଜପର ଶେଷରେ, ଓ ତା' ପର ଓଁ ଉଚ୍ଚାରଣ କରିବା ପୂର୍ବରୁ ନିଶ୍ଚିତ ଭାବରେ ଆନନ୍ଦପୂର୍ଣ୍ଣ ନୀରବତାର ମୁହୂର୍ତ୍ତଟିଏ ରହିବ । ବିନା ବିଚାରରେ ପବିତ୍ର ମନ୍ତ୍ରର ଜପ କରୁଥିବା ଲୋକମାନେ ଏହି ନୀରବତା ସମ୍ବନ୍ଧରେ ସାଧାରଣତଃ ଅନୁଧ୍ୟାନ କରିପାରନ୍ତି ନାହିଁ । ଧ୍ୟାନକର୍ତ୍ତା କ୍ରମାନ୍ୱୟରେ ଓଁ ଜପ କରୁଥିବାବେଳେ ଦୁଇଟି ଓଁ ମଝିରେ ନୀରବତା

ରହିବା ଅପରିହାର୍ଯ୍ୟ – ଏହାକୁ ଆମେ ଧରି ନ ପାରିଲେ ବି 'ଓଁ' ର ସମସ୍ତ ତାତ୍ପର୍ଯ୍ୟ ଏବଂ ଏହି ଅନନ୍ତ ନୀରବତା ଉପରେ ଧ୍ୟାନ କରିବାର ସମସ୍ତ ମଙ୍ଗଳ ସମ୍ବନ୍ଧରେ ଶିଷ୍ୟଙ୍କୁ ବ୍ୟାଖ୍ୟା କରିବା ପାଇଁ ଋଷି ବର୍ତ୍ତମାନ ଚେଷ୍ଟା କରିଛନ୍ତି ।

ଉପନିଷଦ୍ ମନ୍ତ୍ରମାନଙ୍କରେ ମୂଳରୁ ଆମେ ଦେଖିଛେ ଯେ, ଆମଠାରେ ଥିବା ଚୈତନ୍ୟ ଶରୀର ସହିତ ତାଦାତ୍ମ୍ୟ ସ୍ଥାପନ କରି ଭୌତିକ ଜଗତର ଅବଲୋକନ କରେ ଏବଂ ଜାଗ୍ରତ ପୁରୁଷ ଭାବରେ ଅନୁଭୂତି ଲାଭ କରେ । ପୁନଶ୍ଚ, ଶରୀର ଏବଂ ଇନ୍ଦ୍ରିୟ ବିଷୟରୁ ଧ୍ୟାନ ଅପସାରଣ କରି, ସୂକ୍ଷ୍ମ ଶରୀର ସହିତ ତାଦାତ୍ମ୍ୟ ସ୍ଥାପନ କରି ଏହା ଅର୍ନ୍ତଜଗତର ଅନୁଭୂତି ଲାଭ କରିବା ପରି ମନେ ହୁଏ, ଏବଂ ଏହିପରି ଭାବରେ ଆମଠାରେ ଥିବା 'ସ୍ୱପ୍ନଦ୍ରଷ୍ଟା'ର ଅନୁଭୂତି ଲାଭ କରେ । ପୁଣି ମିଥ୍ୟାଜ୍ଞାନର ଏହି ଦୁଇଟି କ୍ଷେତ୍ରରୁ ସେମାନଙ୍କର କାରଣ ପରମସତ୍ୟଙ୍କ ଅଜ୍ଞାନକୁ ଅପସାରିତ ହେଲେ 'ସୁଷୁପ୍ତି'ର ସେହି ପରମ ଅଜ୍ଞାନ ଅବସ୍ଥାରେ ଆମେ ଚେତନାର ତୃତୀୟ ସ୍ତରର ଅନୁଭୂତି ଲାଭ କରୁ । ଏହି ଅବସ୍ଥାରେ ହିଁ ଆମେ ପ୍ରତିଦିନ ଆନନ୍ଦରେ ବିଚରଣ କରୁ ।

ବର୍ତ୍ତମାନ ଆମକୁ କୁହାଯାଇଛି ଯେ, ପରମ ସତ୍ୟ, 'ତୁରୀୟ' ନାମକ ଚତୁର୍ଥ ଅବସ୍ଥା ଉପରେ ବିଶ୍ୱ, ତୈଜସ୍ ଏବଂ ପ୍ରାଜ୍ଞ ଅଧ୍ୟସ୍ତ ଅଟନ୍ତି । ଏହି ତୁରୀୟ ଅବସ୍ଥା ହେଉଛି ଶାଶ୍ୱତ ଏବଂ ଚିରନ୍ତନ (ସନାତନ) ନିର୍ବିକଳ୍ପ ଜ୍ଞାନ ଏବଂ ତତ୍ତ୍ୱତଃ ଏହା ଆନନ୍ଦ ବ୍ୟତୀତ ଅନ୍ୟ କିଛି ନୁହେଁ ।

ଏ ପର୍ଯ୍ୟନ୍ତ ବ୍ୟାଖ୍ୟା କରାଯାଇଥିବା ଧ୍ୟାନ ପ୍ରକ୍ରିୟାର ଲକ୍ଷ୍ୟ ହେଉଛି ଓଁ ର ବିଭିନ୍ନ ଅକ୍ଷରରେ ବିଶ୍ୱ, ତୈଜସ ଏବଂ ପ୍ରାଜ୍ଞକୁ ଦେଖି ପାରିବା । ବର୍ତ୍ତମାନ ଗୁରୁ ଯାହା ନିର୍ଦ୍ଦେଶ ଦେଉଛନ୍ତି ତାହା ହେଲା – ଓଁ ର ତୁରୀୟର ଅଂଶ ଏବଂ ଏହା ହିଁ ଧ୍ୟାନ ସାଧନାର ଲକ୍ଷ୍ୟ। ଏହା ଆମଠାରେ ଥିବା ଶୁଦ୍ଧ ଆତ୍ମା ।

ଦୁଇଟି ଓଁ ମଧ୍ୟସ୍ଥ ବିରାମରେ ଆବଶ୍ୟକୀୟ ନିଶବ୍ଦତା ରହିବା ଜରୁରୀ । ଏହା ବୋଧଗମ୍ୟ ନୁହେଁ, କାରଣ ସେହି ନିଶବ୍ଦତାରେ ଇନ୍ଦ୍ରିୟ ରୂପକ ଆମର କୌଣସି ଉପାଧି କାମ କରିପାରିବେନାହିଁ । ଇନ୍ଦ୍ରିୟମାନେ ନିଶବ୍ଦତାରେ କୌଣସି ଅନୁଭୂତି ମଧ୍ୟ ଗ୍ରହଣ କରି ପାରିବେ ନାହିଁ । ମନ ଏହାକୁ ବୁଝିପାରିବ ନାହିଁ ଏବଂ ବ୍ୟବହାର ହେଉନ ଥିବା ନିଶବ୍ଦତା ପ୍ରତି ମନର ଅବୋଧତା ବୁଝି ହୁଏ । ଆମର ଇନ୍ଦ୍ରିୟମାନେ ଯଦି ଓଁ ବା ତୁରୀୟକୁ ବୋଧ କରିପାରିବେ ନାହିଁ ଏବଂ ମନ ଏହାକୁ ବୁଝିପାରିବ ନାହିଁ, ସ୍ୱାଭାବିକଭାବେ ଏହା ଏକ ବିଷୟ ହୋଇ ରହିବ ନାହିଁ ଏବଂ ଏହି ଅବସ୍ଥା ନିଶ୍ଚୟ ଆନନ୍ଦଦାୟକ ହେବ;

କାରଣ ନଶ୍ୱର ବହୁବିଧତା ଯୋଗୁଁ ହିଁ ଦୁନିଆରେ ବିକ୍ଷେପ ଦେଖା ଦେଇଥାଏ । ଏବଂ ଅଖଣ୍ଡ, ଶାଶ୍ୱତ ସନ୍ତୋଷ ଏବଂ ସ୍ଥିରତା ପାଇବାର ଭ୍ରାନ୍ତ ଧାରଣାରେ ଆମେ ଏହି ବିକ୍ଷେପରେ ପଡ଼ି ଥାଉ । ଏହା ସହ, ଭୟ, ହୃତ୍ସ୍ପନ୍ଦନ ଏବଂ ଅସନ୍ତୋଷ ରହେ ।

ପୂର୍ବବର୍ଣ୍ଣିତ ଏହି ନିଃଶବ୍ଦ ଓଁ କୁ ତୁରୀୟର ଅନୁଭୂତି ଭାବରେ ବିଚାର କରିବା ହେଉଛି ମହାନ୍ ଗୁରୁଙ୍କର ଉପଦେଶ । ତେଣୁ ନିଃଶବ୍ଦ ଓଁ ସମ୍ବନ୍ଧରେ ବର୍ତ୍ତମାନ ସୁଦ୍ଧା ଲକ୍ଷ୍ୟ କରା ଯାଇଥିବା ତାଙ୍କର ଅନୁସରଣ କରି ତୁରୀୟର ଧାରଣା ପରିକଳ୍ପନା କରିବାକୁ ଶିଷ୍ୟମାନଙ୍କୁ ଉପଦେଶ ଦିଆଯାଇଛି। ଏହା ପୂର୍ବରୁ ୯ମ ମନ୍ତ୍ରରେ, ନେତିବାଚକ (ନିଷେଧର)ଭାଷାରେ  ଗୁରୁଙ୍କ ଦ୍ୱାରା ଏହା ବିସ୍ତାରିତ ଭାବେ ଆଲୋଚିତ ହୋଇଛି ।

ଏପରି ଭାବରେ ଓଁ ର ଧ୍ୟାନ କଲେ ଧ୍ୟାନକର୍ତ୍ତା ଯାହାସବୁ ଲାଭ ପାଇବେ, ପୂର୍ବବର୍ତ୍ତୀ  ମନ୍ତ୍ରମାନଙ୍କରେ ତା'ର ପ୍ରତିଶ୍ରୁତି ଦିଆଯାଇଛି। ଏଠାରେ ମଧ୍ୟ ଗୁରୁ ଶିଷ୍ୟଙ୍କୁ ଜଣାଇଛନ୍ତି ଯେ ନିଃଶବ୍ଦ ଦିଗକୁ ନିୟମିତ ଭାବରେ ଧ୍ୟାନ କଲେ ଜୀବାତ୍ମା ଶାଶ୍ୱତ, ଅବିନଶ୍ୱର  ପରମାତ୍ମାଙ୍କଠାରେ ଲୀନ ହୋଇଯିବ । ଏଠାରେ ଜାଗ୍ରତପୁରୁଷ କିମ୍ବା ମନ ବା ବୁଦ୍ଧିର ବିକାଶ ପରି ଜାଗତିକ ଲାଭ ନାହିଁ । ଏହାର ଅର୍ଥ ସ୍ୱତଃ ପ୍ରକାଶିତ, କାରଣ ଆମେ ଯାହାର ଧ୍ୟାନ କରୁ ତାହା ନିଜେ ପ୍ରପଞ୍ଚ ଜଗତର ଉର୍ଦ୍ଧ୍ୱରେ । ଆମେ ଏହାର ଧ୍ୟାନ କରୁଥିବାବେଳେ, ସ୍ୱାଭାବିକଭାବେ,ସେଥିରୁ ଆମେ କୌଣସି ଲାଭ ପାଇ ପାରିବା ନାହିଁ। କିନ୍ତୁ ଧ୍ୟାନ କଦାପି ନିଷ୍ଫଳ ହୁଏ ନାହିଁ । ଧ୍ୟାନକର୍ତ୍ତା ଯାହାର ଧ୍ୟାନ କରେ ନିଜେ ତାହା ହିଁ ହୋଇଯାଏ, ଏହା ହେଉଛି ଶାଶ୍ୱତ ନିୟମ। ତେଣୁ, ଏହି ଉଦାହରଣରେ ଆମେ ଦେଖିବାକୁ ପାଉ ଯେ, ତାର ଅଧ୍ୟସ୍ତକୁ ଏବଂ ତତ୍ଜନିତ ମିଥ୍ୟା ଅହଂ ଚେତନାକୁ ଅଦ୍ୱିତୀୟ, ସର୍ବବ୍ୟାପୀ, ପୂର୍ଣ୍ଣାଙ୍ଗ ସତ୍ୟଙ୍କ ସହିତ ଲୀନ ହୋଇଯିବାକୁ ଏହି ଧ୍ୟାନ ସୁଗମ କରିଦିଏ ।

ଅନ୍ୟାନ୍ୟ ଉପନିଷଦ୍‌ମାନଙ୍କରେ ମଧ୍ୟ ଏହି ଧାରଣାଟିକୁ ବାରମ୍ବାର ଦୋହରା ଯାଇଛି। ଅତୀତ ବା ଭବିଷ୍ୟତ ବ୍ୟତିରେକେ, ମାତ୍ର ମୁହୂର୍ତ୍ତକ ପାଇଁ ଧ୍ୟାନର ତୀବ୍ର ଆବେଗର ଚରମାବସ୍ଥାରେ ରହିବା ପାଇଁ ମହାନ ଋଷି ସାଧକଙ୍କୁ ଚାପ ଦେବାର ଅଦମ୍ୟ ଚେଷ୍ଟା କରିଥିବା ପରି ମନେ ହୁଏ । ସମୟର ଅତୀତ ହୋଇ ସ୍ୱାଧୀନ ଭାବରେ ଜୀବନର ମାତ୍ର ମୁହୂର୍ତ୍ତକ ପାଇଁ ବାସ କରିବାର ଏହା ପ୍ରଚେଷ୍ଟା । ଏହି ମୁହୂର୍ତ୍ତକର ଆଧେୟ ହେଉଛି ଅସୀମର ଆଧେୟ ।

ଅସୀମ ଏବଂ ଶାଶ୍ୱତ ସେଠାରେ ବା ଅନ୍ୟ କୌଣସି ସମୟରେ ନାହାନ୍ତି । ତାହା ଏହିଠାରେ ଏବଂ ବର୍ତ୍ତମାନ ଅଛନ୍ତି । ଅସୀମ ଭାବରେ ଜୀବନ ଯାପନ କରିବା ନିମିତ୍ତ ଆମ ଜୀବନର ପ୍ରତ୍ୟେକଟି ମୁହୂର୍ତ୍ତ ହେଉଛି ଦିବ୍ୟ ଏବଂ ପବିତ୍ର ଅବସର । କିନ୍ତୁ ଆମେ ଏପରି ଭାବରେ ଜୀବନଯାପନ କରୁ ନାହୁଁ । ଆମେ ହୁଏତ ଜୀବନର ବିତିଯାଇଥିବା ମୃତ ସମୟକୁ ଅଣ୍ଡାଳି ହେଉଛୁ କିମ୍ବା ଆଶା ଏବଂ ଆକାଂକ୍ଷାର ଅନ୍ୱେଷଣରେ ଜୀବନର ଅପହଞ୍ଚ ଭବିଷ୍ୟତ ଇଲାକାରେ ନିରନ୍ତର ଘୂରି ବୁଲୁଛୁ ।

ପର ପର ଦୁଇଟି ଓଁ ମଧ୍ୟରେ ଥିବା ନିଃଶବ୍ଦତାକୁ ଧରି ରଖିବାର ଚେଷ୍ଟା ସମୟରେ ଆମର ମନ ଏବଂ ବୁଦ୍ଧି ସ୍ଥିର, ତୀକ୍ଷ୍ଣ ଏବଂ ଏକାଗ୍ର ହୋଇଯାଏ। ଏହିପରି ଭାବରେ ଧ୍ୟାନାସନରେ ଧୀରେଧୀରେ ଆମେ ସମୟର ଶେଷ ସୀମାକୁ ଚାଲି ଯାଉ । ଧ୍ୟାନାବସ୍ଥାରେ ସେଠାରୁ ଆମେ ନିଜକୁ ଶାଶ୍ୱତକୁ ଉନ୍ନୀତ କରି ତାଙ୍କ ସହିତ ଏକାକାର ହୋଇପାରୁ । ଏହି ତୀର୍ଥଯାତ୍ରାର ଯେକୌଣସି ସମୟରେ – ମଣିଷ ଯଦି ତାର ନଶ୍ୱରତା, ସସୀମତା, ଦୁଃଖ ଏବଂ ନିରାଶର ଅନ୍ତ କରିବାକୁ ଚାହେଁ ତେବେ ଆଜି ନ ହେଲେ ବି କାଲି ଏହାକୁ ଲାଭ କରିବାକୁ ହେବ । ସେହିଠାରେ ହିଁ କେବଳ ଆମେ ନିଜକୁ ପୂର୍ଣ୍ଣାଙ୍ଗ, ସର୍ବଜ୍ଞ ଏବଂ ଶକ୍ତିଶାଳୀ ଭାବରେ ଆବିଷ୍କାର କରି ପାରିବା – ସେହି ଜଗତରେ ହିଁ କେବଳ ଦୀର୍ଘ ନିଃଶ୍ୱାସ ଅର୍ଥହୀନ, ସେଠାରେ ଲୁହର ଉପସ୍ଥିତି ରହେ ନାହିଁ !

ଏହିଠାରେ ମାଣ୍ଡୁକ୍ୟ ଉପନିଷଦ୍ ଶେଷ ହୋଇଛି । ସମଗ୍ର ଗ୍ରନ୍ଥର ବାକିସବୁ ହେଉଛି ଶ୍ରୀ ଗୌଡ଼ପାଦଙ୍କର କାରିକା । ସେଠାରେ ସେ ଉପନିଷଦ୍‌ର ସ୍ପଷ୍ଟ ଏବଂ ଶକ୍ତିଶାଳୀ ପରିପ୍ରକାଶର ଗଭୀର ତାତ୍ପର୍ଯ୍ୟ ଏବଂ ଲୁକ୍‌କାୟିତ ବିଷୟର ବିକାଶ କରିଛନ୍ତି। ମାଣ୍ଡୁକ୍ୟର ଋଷି ଏହି ମହାନ୍ କାବ୍ୟରେ ଶାସ୍ତ୍ରର ସମଗ୍ର ଭିତ୍ତିଚିତ୍ରକୁ ସାରାଂଶ ଭାବରେ ବାରଗୋଟି କ୍ଷୁଦ୍ର ଖଣ୍ଡରେ, ବାରଗୋଟି ମାଣ୍ଡୁକ୍ୟ ମନ୍ତ୍ର ଭାବରେ ଆମ ପାଇଁ ପରିବେଷଣ କରିଛନ୍ତି । ଆହୁରି ବିଶଦତା ଭିତରକୁ ଗତି କରିବା ସମୟରେ ଗୌଡ଼ପାଦ ଶିଷ୍ୟମାନଙ୍କର କିପରି ଉପକାର କରିଛନ୍ତି ଏବଂ ଏହି କଷ୍ଟସାଧ୍ୟ ରାସ୍ତାରେ କାରିକା ଆମକୁ ବାଟ ନ ଦେଖାଇଥିଲେ ମାଣ୍ଡୁକ୍ୟର ତାତ୍ପର୍ଯ୍ୟ ସମ୍ବନ୍ଧରେ ଆମର ଜ୍ଞାନ କେତେ ଦୁର୍ବଳ ହୋଇଥାନ୍ତା, ତାହା ଆମେ ଦେଖି ପାରିବା ।

ଏଠାରେ ପୁଣି କାରିକା -

**ଓଁକାରଂ ପାଦଶୋ ବିଦ୍ୟାତ୍ ପାଦା ମାତ୍ରା ନ ସଂଶୟଃ।**
**ଓଁକାରଂ ପାଦଶୋ ଜ୍ଞାତ୍ୱା ନ କିଞ୍ଚିଦପି ଚିନ୍ତୟେତ୍ ॥୨୪॥**

ଓଁକାରଂ = ଓଁ ଅକ୍ଷର, ପାଦଶଃ = ପାଦ ପାଦ, ବିଦ୍ୟାତ୍ = ଜାଣିବା ଉଚିତ୍, ପାଦାଃ = (ଚାରି) ପାଦ, ମାତ୍ରାଃ = (ଚାରି) ଅକ୍ଷର, ନ ସଂଶୟ = ସନ୍ଦେହ ନାହିଁ, ଓଁକାରମ୍ = ଓଁକାର, ପାଦଶଃ = (ଚାରି) ପାଦ ଭାବରେ, ଜ୍ଞାତ୍ୱା = ଜାଣି, ନ = ନାହିଁ, କିଞ୍ଚିତ୍-ଅପି = ଯାହା କିଛି ହେଲେ ବି, ଚିନ୍ତୟେତ୍ = ଭାବିବା କଥା ।

*ଓଁ ଅକ୍ଷରକୁ ପାଦେ ପାଦେ କରି ଜାଣିବା କଥା । ଏଥିରେ କୌଣସି ସନ୍ଦେହ ନାହିଁ ଯେ ଆତ୍ମାଙ୍କର (ଅଂଶ) ପଦ, ଓଁ ରେ ଥିବା ଅକ୍ଷରମାନଙ୍କ ସହ ସମାନ । ଏହିପରି ଭାବରେ ସମଗ୍ର ତାତ୍ପର୍ଯ୍ୟ ବୁଝି ପାରିଲେ ଅନ୍ୟ କୌଣସି କଥା ଚିନ୍ତା କରାଯାଇ ପାରିବ ନାହିଁ ॥୨୪॥*

ଶାସ୍ତ୍ରରେ ତତ୍ତ୍ୱର ବ୍ୟାଖ୍ୟା କରାଯାଇ ପରମସତ୍ୟଙ୍କର ବ୍ୟାଖ୍ୟା ଦିଆଯାଇ ନ ଥାଏ, କିନ୍ତୁ ପ୍ରକରଣରେ ଦର୍ଶନର କେତେକ କଷ୍ଟକର ଦିଗର କେବଳ ବ୍ୟାଖ୍ୟା କରାଯାଇ ନ ଥାଏ, ବରଂ ସେହି ରାସ୍ତାରେ ନିଜର ସୁରକ୍ଷା ପାଇଁ ସାଧକକୁ ସିଧାସଳଖ ରାସ୍ତା ଦେଖାଇ ଦିଆଯାଇଥାଏ । ପ୍ରକରଣ ଗ୍ରନ୍ଥ ହିସାବରେ, ଏହି ଅଧ୍ୟାୟର ଅନ୍ତିମ ଶ୍ଳୋକରେ, ଓଁ ଉପରେ ଧ୍ୟାନ କରାଯିବା ସମ୍ପର୍କରେ ବିଶଦ ବ୍ୟାଖ୍ୟା କରିଛନ୍ତି ।

ବର୍ତ୍ତମାନ ସୁଦ୍ଧା ମନ୍ତ୍ର ଏବଂ ସେସବୁର ବ୍ୟାଖ୍ୟା ଆମକୁ ଜଣେ ସାଧକର ବ୍ୟକ୍ତିତ୍ୱର ଦିଗ ଏବଂ ଓଁ ଧ୍ୱନିର ପାଦ ସମ୍ବନ୍ଧରେ ଦର୍ଶାଇ ସାରିଛି । ବ୍ୟକ୍ତିଠାରେ ଆତ୍ମାଙ୍କର ପ୍ରତିନିଧିତ୍ୱ କରୁଥିବା ଓଁ ର ନିଃଶବ୍ଦ ପାଦ ମଧ୍ୟ ଆମେ ପାଇ ପାରିଛୁ । ଗୌଡ଼ପାଦ ସାଧକକୁ ବର୍ତ୍ତମାନ ତା'ର ନିର୍ଦ୍ଦେଶ ଦେଉଛନ୍ତି ।

ଗୁରୁ ସୂଚନା ଦେଉଛନ୍ତି ଯେ, ଧ୍ୟାନାସନରେ ଶିଷ୍ୟ ଅନବରତ ଓଁ ର ମାନସିକ ଜପ କରି ଚାଲିବ ଏବଂ ଜପ କରିବା ସମୟରେ ଅକ୍ଷରର ଧ୍ୱନିର ଉତ୍ଥାନ-ପତନ ଏବଂ ବିଲୀନ ହେବା ପ୍ରତି ଲକ୍ଷ୍ୟ ରଖିବ । ଅ, ଉ ଏବଂ ମ ଧ୍ୱନିର ଉତ୍ଥାନ ହେବା ସହିତ ସେ ଜାଗ୍ରତ, ସ୍ୱପ୍ନ ଦ୍ରଷ୍ଟା ଏବଂ ସୁଷୁପ୍ତର ଅଧ୍ୟାସ କରିବ ଏବଂ ପରିଶେଷରେ ଅ କୁ ଉ ଏବଂ ଉ କୁ ମ ରେ ଲୀନ କରିଦେଇ ଜାଗ୍ରତ ଅବସ୍ଥାକୁ ସ୍ୱପ୍ନରେ ଏବଂ ସ୍ୱପ୍ନାବସ୍ଥାକୁ ସୁଷୁପ୍ତିରେ ମିଶେଇ ଦେବ - ଦୁଇଟି ଓଁ ର ମଧ୍ୟବର୍ତ୍ତୀ ନିଃଶବ୍ଦତା ସହିତ ତାଦାତ୍ମ୍ୟ କରିବ।

ଏହା ସହଜ କାମ ନୁହେଁ। ଏହା ହେଉଛି ସୂକ୍ଷ୍ମତମ ଏବଂ ଅତୀବ କଷ୍ଟକର ପଥ । ଏଥିପାଇଁ ଯଥେଷ୍ଟ ପ୍ରସ୍ତୁତି ଦରକାର । ଏହି ଯେଉଁ ମାନସିକ ଏବଂ ବୌଦ୍ଧିକ ପ୍ରସ୍ତୁତି – ପରବର୍ତ୍ତୀ ଶ୍ଳୋକରେ ଗୁରୁ ବ୍ୟାଖ୍ୟା କରିବେ । ବର୍ତ୍ତମାନ ପାଇଁ ଆମେ ଏତିକି ବୁଝିବା ଦରକାର ଯେ, ଅନ୍ତରର ଏହି ନିଃଶବ୍ଦତାରେ ପଦାର୍ପଣ କରି ଆଉ ନୂତନ ଭାବନାର ଉଦୟ ନକରିବା ପାଇଁ ଶିଷ୍ୟ ନିଜେ ଚେଷ୍ଟା କରିବେ । ସେହି ନିଃଶବ୍ଦତାରେ ବିଲୀନ ହୋଇ ସେଠାରେ ରହିବା ତାଙ୍କର ଲକ୍ଷ୍ୟ ହେବା ଦରକାର । ପୁରାତନ ସଂସ୍କାରର ବିଷାକ୍ତ ଆବର୍ଜନାରୁ ନୂତନ ଭାବନାର ଉଦୟ ପାଇଁ ଦୁଷ୍ଟ ମନ ସହିତ ସକ୍ରିୟ ଭାବରେ ସହଯୋଗ ନକରି ସେ ଯେତେ ସମୟ ରହି ପାରିବେ, ରହିବେ । ଅବଚେତନକୁ ଶ୍ୱାସରୁଦ୍ଧ କରିବାକୁ ହେବ । ଚେତନ ମନକୁ ସ୍ଥିର ଏବଂ ଦୃଢ ରଖିବାକୁ ହେବ । ଅନ୍ୟ କିଛି ଚିନ୍ତା କରିବାକୁ ହେବ ନାହିଁ ।

**ଯୁଞ୍ଜୀତ ପ୍ରଣବେ ଚେତଃ ପ୍ରଣବୋ ବ୍ରହ୍ମ ନିର୍ଭୟମ୍ ।**
**ପ୍ରଣବେ ନିତ୍ୟଯୁକ୍ତସ୍ୟ ନ ଭୟଂ ବିଦ୍ୟତେ କ୍ୱଚିତ୍ ॥୨୫॥**

ଯୁଞ୍ଜୀତ = ସ୍ଥିର କରି ରଖିବା କରକାର, ପ୍ରଣବେ = ଓଁ କାରଠାରେ, ଚେତଃ = ମନ, ପ୍ରଣବଃ = ଓଁ କାର, ନିର୍ଭୟମ୍ ବ୍ରହ୍ମ = ନିର୍ଭୟ ବ୍ରହ୍ମ, ପ୍ରଣବେ = ଓଁକାର ଠାରେ, ନିତ୍ୟ ଯୁକ୍ତସ୍ୟ = ନିତ୍ୟଯୁକ୍ତ, ବିଦ୍ୟତେ ନ ଭୟମ୍ = ଭୟ ନଥାଏ, କ୍ୱଚିତ୍ = କୌଣସି ସ୍ଥାନରୁ ।

*ଓଁ ନାଦରେ ମନକୁ ବୁଡ଼ାଇ ଦିଅ, ଓଁ ଧ୍ୱନି ସହିତ ମନର ତାଦାତ୍ମ୍ୟ କର, ଓଁ ହେଉଛି ଚିର-ନିର୍ଭୟ ବ୍ରହ୍ମ । ଓଁ ଠାରେ ନିତ୍ୟଯୁକ୍ତ ହୋଇଥିବା ବ୍ୟକ୍ତି କୌଣସି ପ୍ରକାର ଭୟ ପାଇବେ ନାହିଁ ॥୨୫॥*

ପ୍ରଥମରୁ ଆମେ ଦେଖି ସାରିଛୁ ଯେ, ଆଧ୍ୟାତ୍ମିକ ସାଧନାରେ ନୂତନ ଚିନ୍ତାର ଉଦୟ ସଂକ୍ରାନ୍ତରେ ଶୃଙ୍ଖଳା ପାଳନ ଏବଂ ମନର ଚିନ୍ତା-ପ୍ରବାହକୁ ନିୟନ୍ତ୍ରଣରେ ରଖିବା ଦରକାର ଅଟେ । ନିରନ୍ତର ଜପ କରି ଓଁ ବ୍ୟତୀତ ଅନ୍ୟ ସବୁ ବିଜାତୀୟ ଚିନ୍ତା-ପ୍ରବାହକୁ ବାଦ ଦେଇ ମନ ଏପରି ଭାବରେ ଏକାଗ୍ର ହେଲେ ତାହା ଓଁ ର କମ୍ପନ ସହିତ ଏକୀଭୂତ ହୋଇଯାଏ କିମ୍ବା ସେଥିରେ ମିଶିଯାଏ ।

ଗୋଟିଏ ନିର୍ଦ୍ଦିଷ୍ଟ ଚିନ୍ତା ମନରେ ଯେତେ ଥର ଉଦୟ ହୁଏ, ତାର ଅନୁଭୂତି ମଧ୍ୟ ସେହି ପରିମାଣରେ ସ୍ପଷ୍ଟ ହୋଇଥାଏ । ମନେକର ଗୋଟିଏ ଚିନ୍ତା ଆମ ମନକୁ କୋଡ଼ିଏ ହଜାର ଥର ଆସୁଛି ଏବଂ ଆଉ ଗୋଟିଏ ଚିନ୍ତା ଦଶହଜାର ଥର ଆସୁଛି ।

ତାହାହେଲେ ପୂର୍ବର ଚିନ୍ତାଟି ପରବର୍ତ୍ତୀ ଚିନ୍ତା ଅପେକ୍ଷା ଦୁଇଗୁଣ ସ୍ପଷ୍ଟ ଅନୁଭୂତ ହେବ । ତେଣୁ, ଦୁନିଆର ସମସ୍ତ ଅନୁଭୂତି ମଧ୍ୟରେ ଆମେ ନିଜ ବିଷୟରେ ଯେତେ ଜାଣୁ, ଅନ୍ୟ କୌଣସି ବିଷୟରେ ସେତେ ଜାଣୁ ନାହିଁ । ନିଜ ବିଷୟରେ ଆମେ ଯେପରି ଭାବରେ ବୁଝି ପାରୁ, ତାହା ହିଁ ହେଉଛି ସର୍ବୋତ୍ତମ ଜ୍ଞାନ । 'ମୁଁ' ଭାବଟି ବରାବର ଆମ ମନରେ ଦେଖା ଦେଉଥିବାରୁ ଏପରି ହୋଇଥାଏ ।

ତେଣୁ 'ମୁଁ' ଭାବ ମନରେ ଯେପରି ଦେଖାଯାଏ, ସେହିପରି ଭାବରେ ଓଁ ର ଜପ କରାଗଲେ, ଆମେ ନିଜକୁ, ଆମର ଅହଂଭାବକୁ ଜାଣିବା ପରି 'ଓଁ' ଚିନ୍ତାର ଗହନ ଅନୁଭୂତି ପାଇପାରିବା । ମନ ଓଁ ସହିତ ଯୁକ୍ତ ହେବା କଥା କାରିକାରେ ଯାହା କୁହାଯାଇଛି, ଏହା ହେଉଛି ସେହି ଧାରଣା ।

ଓଁ ବ୍ରହ୍ମ ହୋଇଥିବାରୁ (କିପରି ଓ କାହିଁକି ତା'ର ବ୍ୟାଖ୍ୟା କରାଯାଇ ସାରିଛି), ମନ ଓଁ ସହିତ ଯୁକ୍ତ ହେଲେ ଓଁ ର ଅନୁଭୂତି ହେବ ବ୍ରହ୍ମାନୁଭୂତି । ଏହିପରି ଭାବରେ ସର୍ବବ୍ୟାପୀ, ଶାଶ୍ୱତ ଏବଂ ସର୍ବଜ୍ଞ ସତ୍ୟଙ୍କର ଅନୁଭୂତି ହେଲେ, ମୁଁ ଆତ୍ମା ବ୍ୟତୀତ ଅନ୍ୟ କିଛି ନୁହେଁ ବୋଲି ଅନୁଭବ କଲେ, ତା'ପରଠାରୁ ସମସ୍ତ ବିବିଧତାର ଅଧିଷ୍ଠାନର ମୋପାଇଁ କୌଣସି ଭୟ ରହିବ ନାହିଁ । କାରଣ 'ଅନ୍ୟ' କିଛି ଦ୍ୱାରା ହିଁ ଭୟର ଉଦୟ ହୁଏ । ଅଦ୍ୱିତୀୟ ଠାରେ ଅନ୍ୟ କିଛି ନ ଥାଏ । ଏହିପରି ଏକାକୀ ହିଁ ଥିବା ବ୍ୟକ୍ତି ନିଜେ ଅନ୍ୟ କାହାଦ୍ୱାରା ଭୟଭୀତ ହେବ ନାହିଁ ।

ପୁନଶ୍ଚ, ଭୟ ହେଉଛି ଏକ ମାନସିକ ବିକ୍ଷେପ । ମନ ଥିଲେ ହିଁ ଚିନ୍ତା-ବିକ୍ଷେପ ହେବ । ମୋର ହାତର, କିମ୍ବା ଗୋଡ଼ର, କିମ୍ବା ନାକର କିଛି ଚିନ୍ତା ନଥାଏ । ମନର ଚରାଭୂଇଁରେ ଭାବନା ସବୁ ଉଦୟ ହୋଇ ପୁଷ୍ଟ ହୁଅନ୍ତି । ମନ ଓଁ ସହିତ ଯୁକ୍ତ ହେଲେ, ଗୋଟିଏ ଭାବନାର ମନ, ମନ ହୋଇ ନ ଥିବାରୁ, ସେହି ବ୍ୟକ୍ତିଠାରେ ମାନସିକ ଜଟିଳତାର ଭୟ ରହି ପାରିବ ନାହିଁ ।

ଆତଙ୍କ ନାମକ ମାନସିକ ଆବେଗର ସୀମିତ ଅର୍ଥକୁ ଏଠାରେ ଭୟ କୁହାଯାଇ ନାହିଁ। ବରଂ ଏଥିରେ ରହିଛି ଆମର ସମସ୍ତ ବିକ୍ଷେପ ଏବଂ ଇଚ୍ଛା, କାମନା ଏବଂ ଆଶା-ଭୟ ଏହି ସମସ୍ତର ମୂଳ କାରଣ ହୋଇପାରେ* । ଉଦାହରଣ ସ୍ୱରୂପଃ ଆମ ପାଖରେ

---

* 'ଭୀଷାସ୍ମଦ୍ ବାତଃପବତେ'- ତୈତ୍ତିରିୟ ଉପନିଷଦ୍‌ର ଦ୍ୱିତୀୟ ବଲ୍ଲୀ ଉପରେ ସ୍ୱାମୀଜୀଙ୍କ ବ୍ୟାଖ୍ୟା ଦେଖନ୍ତୁ।

ପଇସା ନ ଥିଲେ କ'ଣ ହେବାର ଭୟ ସହିତ ଟଙ୍କାକୁ ଭଲ ପାଇବାର ସିଧାସଳଖ ସମ୍ବନ୍ଧ ଅଛି । ଖାଦ୍ୟ, ଆଶ୍ରୟ ଏବଂ ବସ୍ତ୍ରର ଚାହିଦାକୁ ସାଧାରଣତଃ ଜୀବନର ପ୍ରାଥମିକ ଆବଶ୍ୟକତା ଭାବରେ ବିଚାର କରାଯାଏ। ଏସବୁର ପରିପ୍ରକାଶ ସେହି ମୂଳଉତ୍ସ ଭୟରୁ ହିଁ ଅଟେ । ଆଶ୍ରୟ ନ ଥିବାର ଭୟରୁ ଆଶ୍ରୟଟିଏର ଚାହିଦା ଦେଖାଦିଏ, କ୍ଷୁଧାର ଭୟରୁ ଖାଦ୍ୟର ଚାହିଦା ଦେଖାଦିଏ, ଉଲଗ୍ନ ରହିବାର ଭୟରୁ ଲୁଗାପଟାର ଚାହିଦା ଦେଖା ଦେଇଥାଏ ।

ଓଁ ର ସ୍ପନ୍ଦନ ଏବଂ ଏହାର ଅର୍ଥରେ ମନ ସ୍ଥିରକରି ରଖାଯାଇ ପାରିଲେ ଜୀବନର ଦୁଃଖ, ସସୀମତାରୁ ରକ୍ଷା ମିଳି ପାରିବ।

**ପ୍ରଣବୋ ହ୍ୟପରଂ ବ୍ରହ୍ମ ପ୍ରଣବଶ୍ଚ ପରଃ ସ୍ମୃତଃ।**

**ଅପୂର୍ବୋଽନନ୍ତରୋଽବାହ୍ୟୋଽନପରଃ ପ୍ରଣବୋଽବ୍ୟୟଃ ॥୨୬॥**

ପ୍ରଣବଃ = ଓଁ କାର, ହି = ବାସ୍ତବରେ, ଅପରମ୍ ବ୍ରହ୍ମ = ଅପର ବ୍ରହ୍ମ, ଚ ପ୍ରଣବଃ = ଏବଂ ଓଁ କାର, ପରଃ = ପରଂବ୍ରହ୍ମ, ସ୍ମୃତଃ = ପରିଚିତ, ବିଦିତ, ଅପୂର୍ବଃ = ପୂର୍ବରୁ ନଥିବା, ଅନନ୍ତରଃ = ଅନ୍ତର(ଭିତର)ନ ଥାଇ, ଅବାହ୍ୟଃ = ବାହ୍ୟ (ବାହାର)ନ ଥାଇ, ଅନପରଃ = କାର୍ଯ୍ୟ (ଫଳ) ନ ଥାଇ, ପ୍ରଣବଃ = ଓଁ କାର, ଅବ୍ୟୟଃ = ବ୍ୟୟ ନ ଥାଇ ।

*ଓଁ ନିଶ୍ଚିତ ଭାବରେ ଅପର ବ୍ରହ୍ମ ଏବଂ ଏହାକୁ ପରମ୍ ବ୍ରହ୍ମ ବୋଲି ମଧ୍ୟ କୁହାଯାଇଛି। ପ୍ରଣବର କୌଣସି ପୂର୍ବ କାରଣ ନାହିଁ, ଏହାର ପର କୌଣସି କାର୍ଯ୍ୟ ମଧ୍ୟ ନାହିଁ, ଏହାର ଭିତରେ ବା ବାହାରେ କିଛି ନାହିଁ, କୌଣସି କାର୍ଯ୍ୟ ସହିତ ଏହାର ସମ୍ପର୍କ ନାହିଁ ଏବଂ ଏହା ଅବ୍ୟୟ ॥୨୬॥*

ଗୌଡ଼ପାଦ, ବଶିଷ୍ଠ ଏବଂ ଅନ୍ୟ ପୁରାତନ ପନ୍ଥୀ ବେଦାନ୍ତୀମାନଙ୍କ ବ୍ୟତୀତ ନୂତନ ପନ୍ଥା ଦୃଶ୍ୟ ଜଗତର କିଛିଟା ବାସ୍ତବତା ସ୍ୱୀକାର କରିଥାଏ । ଦୃଶ୍ୟ ଜଗତକୁ ସେମାନେ ଅପର ବ୍ରହ୍ମ ବୋଲି କହନ୍ତି । ଏହାର ଗୁଣ, କର୍ମ ଏବଂ ଧର୍ମ ଇତ୍ୟାଦି ମାଧ୍ୟମରେ ପରମ ବ୍ରହ୍ମ ବ୍ୟକ୍ତ ହୋଇଥିବା ପରି ମନେ ହୁଏ । ବେଦାନ୍ତରେ ଉପାସକର ଉପାସନା ପାଇଁ ଉପାଧି ଅପର ବ୍ରହ୍ମ ହୋଇଥାଏ । ଅପର ବ୍ରହ୍ମ ପରବର୍ତ୍ତୀ ବୈଦାନ୍ତିକ ଭାଷାରେ ସଗୁଣ ବ୍ରହ୍ମଭାବରେ ପରିଚିତ ହେଲେ। ଗୌଡପାଦ ଏବଂ ବଶିଷ୍ଠଙ୍କ ଦ୍ୱାରା ଆରମ୍ଭ ଏବଂ ପରିଚାଳିତ ହୋଇଥିବା ବେଦାନ୍ତର ପୁରାତନ ପନ୍ଥା ଅପର ବ୍ରହ୍ମଙ୍କୁ ଗ୍ରହଣ କରେ ନାହିଁ ଏବଂ ତାହା କେବେ ବି ବ୍ୟକ୍ତ ହୋଇନାହାନ୍ତି ବୋଲି ଜୋର ଦେଇ କହେ।

ଏହି ଅଜାତବାଦୀଙ୍କ ମତରେ ଖମ୍ବ ଏବଂ ଭୂତ ମଧ୍ୟରେ କୌଣସି ସମ୍ପର୍କ ସ୍ଥିର କରାଯାଇ ପାରିବ ନାହିଁ। ଭୂତଟି କୌଣସି ମତେ ଖମ୍ବର ନ୍ୟୂନତର ପରିପ୍ରକାଶ ନୁହେଁ। ଅପରପକ୍ଷେ, ଶଙ୍କର ଏବଂ ତାଙ୍କ ଅନୁଗାମୀଙ୍କ ଦ୍ୱାରା ପ୍ରତିଷ୍ଠିତ ଆଧୁନିକ ବେଦାନ୍ତବାଦ ବ୍ୟକ୍ତ ଜଗତରେ ଆନୁପାତିକ ସତ୍ୟତା ସ୍ୱୀକାର କରେ ନାହିଁ। ବହୁବିଧ ଜଗତ କୌଣସି ଭାବରେ ବି ସତ୍ୟ ବୋଲି ଶଙ୍କର ବିଶ୍ୱାସ କରୁ ନ ଥିଲେ। ଅଭ୍ୟାସରେ ଏହି ଦୁଇଟି ପନ୍ଥା, ପରସ୍ପର ସହିତ ପ୍ରତିଯୋଗିତା କରୁଥିବା କୌଣସି ସିଦ୍ଧାନ୍ତର ଉପସ୍ଥାପନ କରନ୍ତି ନାହିଁ, ବାସ୍ତବରେ ସେମାନେ ପରସ୍ପରର ପରିପୂରକ । ବ୍ୟକ୍ତ ସତ୍ୟତା ମଧ୍ୟ ଦେଇ ସାଧକକୁ ଅବ୍ୟକ୍ତ ଏବଂ ଶାଶ୍ୱତ ସତ୍ୟକୁ ମାର୍ଗଦର୍ଶନ କରାଇବା ହିଁ ହେଉଛି ଶଙ୍କରଙ୍କର ପ୍ରଚେଷ୍ଟା ।

ଏହି ଶ୍ଳୋକରେ ଗୌଡ଼ପାଦ ଯେଉଁ ଧାରଣା ଉପରେ ଜୋର ଦେଇଛନ୍ତି ତାହା ହେଲା– ପ୍ରଣବ ବା ଓଁ ପର ବ୍ରହ୍ମ ପରମସତ୍ୟଙ୍କର ପ୍ରତିନିଧିତ୍ୱ କେବଳ କରନ୍ତି ନାହିଁ,ବରଂ ବ୍ୟକ୍ତ ସତ୍ୟପରି ମନେ ହେଉଥିବା ଅପର ବ୍ରହ୍ମଙ୍କର ମଧ୍ୟ। ସର୍ବବ୍ୟାପୀ ଶୁଦ୍ଧ ଚୈତନ୍ୟ, ସମସ୍ତ ଜୀବନ ଏବଂ କାର୍ଯ୍ୟକଳାପର ଉତ୍ସ ଶାଶ୍ୱତ ସତ୍ୟଙ୍କୁ କାରିକାକାର ଏଠାରେ ସାବଧାନତାର ସହିତ ମନୋନୀତ ଶବ୍ଦରେ ଦ୍ୱିତୀୟ ପଂକ୍ତିରେ ନିର୍ଦ୍ଦେଶ କରିଛନ୍ତି । ଏହି ଶବ୍ଦମାନଙ୍କ ମଧ୍ୟରୁ ଅନେକ ଶବ୍ଦ ଶାସ୍ତ୍ରୀୟ ସାହିତ୍ୟ ମନେ ପକାଇ ଦିଏ, ଏଥିରେ ସନ୍ଦେହ ନାହିଁ । ପଦ ମାନଙ୍କର ତାତ୍ପର୍ଯ୍ୟର ନିବିଡ଼ ଭାବରେ ସମୀକ୍ଷା କଲେ ବ୍ୟବହୃତ ଭାଷାର ସୌନ୍ଦର୍ଯ୍ୟ, ମୋହକତା ଏବଂ ଶକ୍ତି ପ୍ରକାଶ ପାଇବ ।

**ଅପୂର୍ବ** – ବ୍ରହ୍ମଙ୍କ ପୂର୍ବରୁ କିଛି ନାହିଁ, ଅର୍ଥାତ୍ ସେ କାରଣବିହୀନ ଯାହା ଜନ୍ମ ହୋଇଥାଏ, ବା ଯାହାକୁ ତିଆରି କରାଯାଏ, ତାର ପୂର୍ବରୁ କିଛି ଗୋଟେ କାରଣ ଥାଏ। ବ୍ରହ୍ମଙ୍କର କାରଣ ନାହିଁ । ଏହା ଅଜନ୍ମା, ଏହା ଅବିକାରୀ ଏବଂ ଅମର । ଏହାଙ୍କର ପୂର୍ବରୁ କିଛି ନ ଥିଲେ ବି, ସାଧକର ମନରେ ସନ୍ଦେହ ଦେଖାଦେଇପାରେ ଯେ କାରଣବିହୀନ ବ୍ରହ୍ମ ନିଜେ ତାଙ୍କ କାର୍ଯ୍ୟର କାରଣ ହୋଇଥିବେ । ବ୍ରହ୍ମଙ୍କଠାରେ କୌଣସି କାର୍ଯ୍ୟର ନାସ୍ତି କରି–ସୃଷ୍ଟିର ନାସ୍ତି କରି, ଅତି ସରଳ ମନେ ହେଉଥିବା 'ଅନପର' ଶବ୍ଦରେ ତାର ବିପରୀତ ଅଭିମତ, ସମର୍ଥନ କରାଯାଇଛି । ଅନପରର ଅର୍ଥ ହେଲା – କାର୍ଯ୍ୟ ଭାବରେ ପରେ ତା'ଠାରୁ କିଛି ଉଦ୍ଭବ ନ ହେବା ।

**ଅନନ୍ତର** – ତା ବ୍ୟତୀତ ଅନ୍ୟ କିଛି ନ ଥିବା –ଏହି ପଦ ଦ୍ୱାରା ଗୌଡ଼ପାଦ ସୂଚାଇ ଦେଉଛନ୍ତି ଯେ, ସର୍ବବ୍ୟାପୀ ସତ୍ୟଙ୍କଠାରେ ତାଙ୍କ ବ୍ୟତୀତ କିଛି ନାହିଁ, ତାଙ୍କ ଠାରେ ବିଜାତୀୟ ବସ୍ତୁ କିଛି ନାହିଁ ଯେ, ତାଙ୍କର ଅଦ୍ୱୈତ ଏବଂ ଶାଶ୍ୱତ ସ୍ୱରୂପକୁ ଊଣା

କରିଦେବ ବା ପରିଛିନ୍ନ କରିଦେବ । ତାଙ୍କ ବାହାରେ ତାଙ୍କ ବ୍ୟତୀତ ଅନ୍ୟ କିଛି ନାହିଁ। ସେ ଏକୀଭୂତ ଘନ ଏବଂ ତାଙ୍କ ଭିତରେ କୌଣସି ବିଭେଦୀକରଣ ନାହିଁ ।

ଏପରି ସତ୍ୟ ଯଦି ଅଛନ୍ତି, ଯାହାଙ୍କଠାରେ କୌଣସି କାରଣ ନାହିଁ ଏବଂ ସେ କିଛି କାର୍ଯ୍ୟର କାରଣ ନୁହଁନ୍ତି । ଏପରି ଏକ ସତ୍ୟ, ଯାହାଙ୍କଠାରେ କୌଣସି ବିଭେଦ/ପ୍ରଭେଦ ନାହିଁ, ତାଙ୍କ ବ୍ୟତୀତ ତାଙ୍କ ଠାରେ କିଛି ହେଲେ ନାହିଁ । ପାଦ ବିହୀନ ସେହି ସତ୍ୟ ନିଶ୍ଚିତ ଭାବରେ ଅବ୍ୟୟ ହେବ।

**ସର୍ବସ୍ୟ ପ୍ରଣବୋ ହ୍ୟାଦିର୍ମଧ୍ୟମନ୍ତରସ୍ତଥୈବ ଚ।**

**ଏବଂ ହି ପ୍ରଣବଂ ଜ୍ଞାତ୍ୱା ବ୍ୟଶ୍ନୁତେ ତଦନନ୍ତରମ୍ ॥୨୭॥**

ସର୍ବସ୍ୟ = ସମସ୍ତଙ୍କର, ପ୍ରଣବ = ଓଁ କାର, ହି ଆଦିଃ = ପ୍ରକୃତରେ ହେଉଛି ଆଦି (ଆରମ୍ଭ), ମଧ୍ୟମ୍ = ମଧ୍ୟ, ଅନ୍ତଃ = ଅନ୍ତ, ତଥା ଏବ ଚ = ଏବଂ ମଧ୍ୟ, ଏବ୍ମ = ଏହିପରି, ହି = ନିଶ୍ଚିତ ଭାବରେ, ପ୍ରଣବମ୍ = ଓଁ କାର, ଜ୍ଞାତ୍ୱା = ଜାଣି, ବ୍ୟଶ୍ନୁତେ = ଲାଭ କରେ, ପ୍ରାପ୍ତ କରେ; ତତ୍ = ତାହା(ଓଁ କାର), ଅନନ୍ତରମ୍ = ତତ୍କ୍ଷଣାତ୍।

*ଓଁ ନିଶ୍ଚିତଭାବରେ ହେଉଛି ସବୁର ଆଦି, ମଧ୍ୟ ଏବଂ ଅନ୍ତ । ଓଁ କୁ ଏପରି ଭାବରେ ଜାଣିଲେ, ଜଣେ ନିଶ୍ଚିତ ଭାବରେ ତତ୍କ୍ଷଣାତ୍ ସେହି ପରମସତ୍ୟଙ୍କୁ ଲାଭ କରିବ ॥୨୭॥*

ଗୋଟିଏ ଖମ୍ବକୁ ଜଣେ ଭୂତ ବୋଲି ଭୂଲ ବୁଝିବା ବେଳେ ଭୂତର ପ୍ରତ୍ୟେକଟି ଅଂଶରେ ଖମ୍ବ ବ୍ୟତୀତ ଅନ୍ୟ କିଛି ସତ୍ୟତା ନଥାଏ ଏବଂ ସମଗ୍ର ଭୂତ ଖମ୍ବ ବ୍ୟତୀତ ଅନ୍ୟ କିଛି ନୁହେଁ । ଅଧିଷ୍ଠାନ ଭାବରେ ଭୂତର ପ୍ରତ୍ୟେକଟି ଅଂଶ ଖମ୍ବ ହିଁ ଏବଂ ଭୂତ ମଧ୍ୟ ଖମ୍ବରୁ ହିଁ ଉଦ୍ଭବ ହୋଇଥାଏ। ଆମେ ଭୂତର କଳ୍ପନାରେ ଥିବା ପର୍ଯ୍ୟନ୍ତ ଖମ୍ବ ଉପରେ ଭୂତର ଭ୍ରମ ଧାରଣା ରହିଯାଏ ଏବଂ ପରେ ଖମ୍ବକୁ ଜାଣିବା ପରେ ଭୂତ ଦୃଶ୍ୟ ଅପସରିଯାଏ । ଏହା ସେହି ଖମ୍ବରେ ଲୀନ ହୋଇଯାଏ । ଠିକ୍ ସେହିପରି ଭାବରେ (ଆଦି), ପାଳନ ଏବଂ ଲୟ (ଅନ୍ତ) ପଛରେ ଏକକାଳୀନ ଭାବେ ପରମ-ସତ୍ୟ ବ୍ରହ୍ମଙ୍କର ପ୍ରତୀକ ପ୍ରଣବ ବିଦ୍ୟମାନ।

ଏହିପରି ଭାବରେ ଜନ୍ମ, ବୃଦ୍ଧି ଏବଂ କ୍ଷୟର ତିନୋଟି ଦୃଶ୍ୟ ମାଧ୍ୟମରେ ଜୀବନର ସମଗ୍ର ଲୀଳାର ଅଧିଷ୍ଠାନ 'ଓଁ' ବୋଲି ଜାଣିବା ପରେ ଜ୍ଞାତା ବ୍ରହ୍ମ ହୋଇ ଯାଏ । ବେଦାନ୍ତରେ ଏବଂ ଜୀବନର ଅନ୍ୟାନ୍ୟ କ୍ଷେତ୍ରରେ ଜାଣିବାର ଅର୍ଥରେ ଅନେକ ପ୍ରଭେଦ

ରହିଛି । ବେଦାନ୍ତରେ ଜାଣିବାର ଅର୍ଥ ହେଉଛି ହୃଦୟଙ୍ଗମ କରିବା ବା ହୋଇଯିବା । ଏହା ବୌଦ୍ଧିକ ଅବଧାରଣା ନୁହେଁ କିମ୍ବା ଅଧ୍ୟୟନ ବା ଚିନ୍ତାର ପରିଣାମ ନୁହେଁ । ତେଣୁ କେବଳ ବୁଝିବା ବା ଶିକ୍ଷା କରିବା ଦ୍ୱାରା ବୈଦାନ୍ତିକ ଶିଷ୍ୟ ପୂର୍ଣ୍ଣତା ଲାଭ କରିବ ନାହିଁ । ଏଥିପାଇଁ ଅଧ୍ୟବସାୟର ସହିତ ନିରନ୍ତର ଧ୍ୟାନ କରି, ଧୀରେ ଧୀରେ ଏବଂ ସ୍ଥିର ଭାବରେ ଶୁଦ୍ଧ ମନ ଏବଂ ବୁଦ୍ଧିକୁ ଶୁଦ୍ଧ ସଚେତନତା ଓ ସର୍ବବ୍ୟାପକ ମହତ୍ତର ସ୍ତରକୁ ଉତ୍ଥିତ କରାଇବାକୁ ହେବ । ବେଦାନ୍ତରେ ଜାଣିବାର ଅର୍ଥ ହେଉଛି 'ଆତ୍ମାନୁଭୂତି' ଲାଭ କରିବା ।

**ପ୍ରଣବଂ ହୀଷ୍ଵରଂ ବିଦ୍ୟାତ୍ ସର୍ବସ୍ୟ ହୃଦି ସଂସ୍ଥିତମ୍ ।**

**ସର୍ବବ୍ୟାପୀନମୋଙ୍କାରଂ ମତ୍ୱା ଧୀରୋ ନ ଶୋଚତି ॥୨୮॥**

ପ୍ରଣବ ହି ଇଶ୍ୱରଂ = ପ୍ରକୃତରେ ଓଁ କାର ହିଁ ଈଶ୍ୱର, ବିଦ୍ୟାତ୍ = ଜାଣିବା ଉଚିତ୍, ସର୍ବସ୍ୟ = ସମସ୍ତଙ୍କର, ହୃଦି = ହୃଦୟ, ସଂସ୍ଥିତମ୍ = ଯିଏ ବିଦ୍ୟମାନ, ସର୍ବବ୍ୟାପିନଂ = ଯିଏ ସର୍ବବ୍ୟାପୀ , ଓଁକାରମ୍ = ଓଁକାର, ମତ୍ୱା = ଜାଣି, ଧୀରଃ = ବିବେକୀ, ନ ଶୋଚତି = ଶୋଚନା କରେ ନାହିଁ ।

*ଓଁ କୁ ସମସ୍ତଙ୍କ ହୃଦୟରେ ସ୍ଥିତ ସାକ୍ଷାତ୍ ଈଶ୍ୱର ବୋଲି ଜାଣ, ଓଁ ସର୍ବବ୍ୟାପୀ ବୋଲି ହୃଦୟଙ୍ଗମ କରିଥିବା ବିବେକୀ କେବେ ବି ଶୋଚନା କରେ ନାହିଁ ॥୨୮॥*

ସମଗ୍ର ଅଧ୍ୟାୟଟିରେ ଓଁ ର ତାତ୍ପର୍ଯ୍ୟ ଏବଂ ପରିସର ବ୍ୟାଖ୍ୟା କରାଯାଇଛି । ଜାଗ୍ରତ, ସ୍ୱପ୍ନ ଏବଂ ସୁଷୁପ୍ତ ଅବସ୍ଥାର ଅନୁଭୂତିର ପ୍ରତୀକ ମଧ୍ୟ ଓଁ । ଏହାର ନିଶବ୍ଦ ଅଂଶ ତୁରୀୟ ବା ଆତ୍ମାଙ୍କର ପ୍ରତିନିଧିତ୍ୱ କରେ । ତେଣୁ ସମସ୍ତ ସଜୀବ ପ୍ରାଣୀଙ୍କ ହୃଦୟରେ ଓଁ କାର୍ଯ୍ୟରତ ବୋଲି ଇଙ୍ଗିତ କରିବା ଗୌଡ଼ପାଦଙ୍କ ପାଇଁ ସ୍ୱାଭାବିକ । ନାରଦ ଭକ୍ତିସୂତ୍ର ଏବଂ ଭକ୍ତିର ଅନ୍ୟାନ୍ୟ ସିଦ୍ଧାନ୍ତରେ ଈଶ୍ୱର ଅନ୍ତର୍ଯ୍ୟାମୀ ବୋଲି ବିଚାର କରାଯାଇଛି । ତେଣୁ, ଏଠାରେ ଆମକୁ କୁହାଯାଇଛି ଯେ ଓଁ ହେଉଛନ୍ତି ଈଶ୍ୱର, ସମସ୍ତଙ୍କ ମନରେ ସର୍ବଦା ବିଦ୍ୟମାନ । ଏହିଠାରେ ଗୀତା ମନେପଡ଼େ ।

ଈଶ୍ୱରଙ୍କୁ ସବୁ ନାମ ରୂପରେ ଦେଖି ପାରିବା ହେଉଛି ଆତ୍ମାନୁଭବ ବା ପୂର୍ଣ୍ଣାଙ୍ଗତାର ଦୃଷ୍ଟି । ପୂର୍ଣ୍ଣତା ସର୍ବତ୍ର ପୂର୍ଣ୍ଣତା ହିଁ ଦେଖିପାରେ । ଆମଠାରେ ଥିବା ପୂର୍ଣ୍ଣତାର ଅନୁଭୂତି ହେଉଛି ସର୍ବବ୍ୟାପୀ ପୂର୍ଣ୍ଣତାର ଅନୁଭୂତି । ତେଣୁ ଜ୍ଞାନୀଙ୍କ ଦୃଷ୍ଟିରୁ ଏସବୁ ହେଉଛି ଛନ୍ଦବଦ୍ଧ, ଏସବୁ ହେଉଛି ସୁସଙ୍ଗତି, ଏସବୁ ହେଉଛି ସୌନ୍ଦର୍ଯ୍ୟ । ଅସଙ୍ଗତି ମାଧ୍ୟମରେ

ବି ସେ ସୁସଙ୍ଗତି ଦେଖି ପାରନ୍ତି, କୁରୂପ ମାଧ୍ୟମରେ ସୌନ୍ଦର୍ଯ୍ୟ ଦେଖିପାରନ୍ତି, ଦୁଃଖ (ଅପୂର୍ଣ୍ଣତା) ମାଧ୍ୟମରେ ପୂର୍ଣ୍ଣାଙ୍ଗତାର ଆନନ୍ଦ ପାଇ ପାରନ୍ତି ।

ସେ ଯାହା ଦେଖିଲେ ବି, ତା'ଭିତରେ ଆନନ୍ଦମୟ ସତ୍ୟଙ୍କୁ ଦେଖିପାରନ୍ତି । ତେଣୁ, ସର୍ବବ୍ୟାପୀ ବ୍ରହ୍ମ ଭାବରେ ଓଁ ର ତାତ୍ପର୍ଯ୍ୟ ବୁଝିପାରି ଜ୍ଞାନୀଜନ ଜୀବନର କୌଣସି ପରିସ୍ଥିତିରେ ଦୁଃଖ ଅନୁଭବ କରନ୍ତି ନାହିଁ । ଅତି ବିକଶିତ ବିବେକଶୀଳ ବୁଦ୍ଧିର, ଉଭୟ ବାହ୍ୟ ଓ ଅନ୍ତରରେ ଏପରି ବିବେକସମ୍ପନ୍ନ ଉପଲବ୍ଧି ହୋଇପାରିବ । ତେଣୁ ଶ୍ରୁତି କହିଛନ୍ତି ଯେ, ଏପରି ଜ୍ଞାନୀଙ୍କର କୌଣସି ଦୁଃଖ ହୁଏ ନାହିଁ । ବେଦାନ୍ତ ହେଉଛି ଯୁକ୍ତି ଏବଂ ତର୍କର ବନ୍ଧୁର କ୍ଷେତ୍ର ଦେଇ ପୂର୍ଣ୍ଣାଙ୍ଗତାକୁ ଯାଇଥିବା ମାର୍ଗ ।

**ଅମାତ୍ରୋଽନନ୍ତମାତ୍ରଶ୍ଚ ଦ୍ୱୈତସ୍ୟୋପଶମଃ ଶିବଃ ।**
**ଓଁକାରୋ ବିଦିତୋ ୟେନ ସ ମୁନିର୍ନେତରୋ ଜନଃ ॥୨୯॥**

ଅମାତ୍ରଃ = ନିଃଶବ୍ଦ ଓଁକାର, ଚ ଅନନ୍ତ ମାତ୍ରଃ = ଏବଂ ଅନନ୍ତ ଧ୍ୱନି ସହିତ, ଦ୍ୱୈତସ୍ୟ = ଦ୍ୱୈତର, ଉପଶମଃ = ଉପଶମରୁ ମୁକ୍ତ, ଶିବଃ = ଶିବ, ମଙ୍ଗଳମୟ; ଓଁ କାରଃ ବିଦିତଃ = ଯାହାଙ୍କୁ ଓଁ କାର ଜଣା, ୟେନ = ଯାହାଙ୍କ ଦ୍ୱାରା, ସଃ = ତାହା, ମୁନିଃ = ମୁନି, ନ = ନାହିଁ, ନୁହେଁ; ଇତରଃ = ଅନ୍ୟ କିଛି, ଜନଃ = ବ୍ୟକ୍ତି ।

*ଅମାତ୍ର ଏବଂ ବହୁମାତ୍ର (ନିଃଶବ୍ଦ ଏବଂ ଅନନ୍ତଶବ୍ଦ) ବୋଲି ଓଁ କୁ ଯିଏ ଜାଣନ୍ତି, କୌଣସି ଦ୍ୱୈତ ଭାବର ନିଷେଧ କରି ଯିଏ ଚିର ଶାନ୍ତ, ସେ ହିଁ ପ୍ରକୃତରେ ମୁନି, ଆଉ କେହି ନୁହେଁ ॥୨୯॥*

ଅମାତ୍ରର ଅର୍ଥ ହେଲା ନିଃଶବ୍ଦ ଓଁ କୁ ଦର୍ଶାଉଥିବା ତୁରୀୟ । ମାତ୍ର ଅର୍ଥାତ୍ ମାପ, ଯାହାର ମାପ ଅନନ୍ତ ତାକୁ ଅନନ୍ତ ମାତ୍ର କୁହାଯାଏ । ଅର୍ଥାତ୍ କୌଣସି ମାପଦଣ୍ଡ ଦ୍ୱାରା ଏହାଙ୍କର ବ୍ୟାପ୍ତିକୁ ମାପି ହେବ ନାହିଁ ଯେ, ଏହା ବା ତାହା ବୋଲି କହି ହେବ - ଶଙ୍କର ଏକଥା କହିଛନ୍ତି । ଏହା ସର୍ବ ଶିବ ବା ମଙ୍ଗଳମୟ, କାରଣ ତାଙ୍କଠାରେ ସମସ୍ତ ପ୍ରତିଯୋଗିତାମୂଳକ ବହୁବିଧ ଜଗତ ବା ଭ୍ରାନ୍ତ ନାମ ରୂପ ଅପସରି ଯାଇଛି । ତେଣୁ ତା'ପରଠାରୁ ଜଣେ ନିଜକୁ ସର୍ବବ୍ୟାପୀ ଚୈତନ୍ୟ ବୋଲି ଅନୁଭବ କରେ । ଏବଂ ଏହାଙ୍କ ଠାରେ ଆଉ ଅଧିକା କୌଣସି ସୁଖ ବା ଶୁଭ-ଅଶୁଭ ନ ରହିବା ସ୍ୱାଭାବିକ ।

କେବଳ ଓଁକୁ ଧ୍ୱନି ଭାବେ ନୁହେଁ, ବରଂ ଓଁ ଦ୍ୱାରା ନିର୍ଦ୍ଦେଶିତ ସତ୍ୟକୁ ଯିଏ ଜାଣେ, ସେ ପ୍ରକୃତରେ ମନନଶୀଳ ମୁନି ଓ ଜ୍ଞାନ ଏବଂ ଈଶ୍ୱରାନୁଭୂତି ଲାଭ କରିଥିବା ପ୍ରକୃତ ସନ୍ଥ। ପୁସ୍ତକୀୟ ଜ୍ଞାନ ଏହି ଉପଲବ୍ଧି ପ୍ରଦାନ କରିପାରିବ ବୋଲି ଭୂଲ ବୁଝୁଥିବା ଶିଷ୍ୟମାନଙ୍କୁ ଆର୍ଶିବାଦ କରିବା ପାଇଁ ଗୌଡ଼ପାଦ ଏଠାରେ ଉଦ୍ଦେଶ୍ୟମୂଳକ ଭାବେ 'ଅନ୍ୟକେହି ବି ନୁହେଁ' ବୋଲି ଜଣାଇ ଦେଇଛନ୍ତି। ଯେତେ ବୁଦ୍ଧିମାନ ହେଲେ ବି, ନିଜ ସମୟରେ ଏବଂ ସ୍ଥାନରେ ଯେତେ ସମ୍ମାନିତ ହେଲେ ବି, ପାଣ୍ଡିତ୍ୟ ଯୋଗୁଁ, ଅଗ୍ନିବର୍ଷୀ ଭାଷଣ ଯୋଗୁଁ, ପ୍ରଭାବଶାଳୀ ଲେଖା ଯୋଗୁଁ କିମ୍ବା ବୈଦାନ୍ତିକ ସିଦ୍ଧାନ୍ତ ସମ୍ବନ୍ଧରେ ଆକର୍ଷଣୀୟ ପାଣ୍ଡିତ୍ୟ ଯୋଗୁଁ କେହି ଈଶ୍ୱରତ୍ୱ ଦାବୀ କରି ପାରିବେ ନାହିଁ ।

ପବିତ୍ର ଅକ୍ଷର 'ଓଁ' ଦ୍ୱାରା ସୂଚୀତ ସର୍ବବ୍ୟାପୀ, ନିର୍ବିକଳ୍ପ ସତ୍ୟ ବ୍ୟତୀତ ସେ ନିଜେ ଅନ୍ୟ କିଛି ନୁହେଁ ବୋଲି ପୁନରାବିଷ୍କାର କରିପାରିଥିବା ବ୍ୟକ୍ତି ହିଁ କେବଳ ଜଣେ ସାଧୁ, ସନ୍ଥ। ଏହା ସହିତ ଗୌଡ଼ପାଦ ମାଣ୍ଡୁକ୍ୟର ପ୍ରଥମ ଅଧ୍ୟାୟର କାରିକା ସମାପ୍ତ କରିଛନ୍ତି।

# ଦ୍ୱିତୀୟ ଅଧ୍ୟାୟ

## ବୈତଥ୍ୟ ପ୍ରକରଣ

(ବିଷୟ ଜଗତର ସତ୍ୟତା ସମ୍ବନ୍ଧରେ)

ଏହି ଅଧ୍ୟାୟରେ ଗୌଡ଼ପାଦ ବିବିଧତାପୂର୍ଣ୍ଣ ଜଗତର ଭ୍ରମାତ୍ମକ ସ୍ୱରୂପ ସମ୍ବନ୍ଧରେ ଆଲୋଚନା କରୁଛନ୍ତି । ଏହି ଅଧ୍ୟାୟ ଏବଂ ଏହାର ପୂର୍ବବର୍ତ୍ତୀ ଅଧ୍ୟାୟ ମଧ୍ୟରେ ସାହିତ୍ୟିକ ସଂଯୋଗ ଏବଂ ଅନୁକ୍ରମ ବର୍ଣ୍ଣନା କରି ଶ୍ରୀଶଙ୍କର କହିଛନ୍ତି, "ପ୍ରଥମ ଅଧ୍ୟାୟରେ ଦ୍ୱୈତ ନାହିଁ ବୋଲି କୁହାଯାଇଥିଲେ ମଧ୍ୟ, ଏହା କେବଳ ଆଗମ (ଶାସ୍ତ୍ର)ର ଭାଷା ମାଧ୍ୟମରେ କୁହାଯାଇଛି । ସେହି ଏକା ଭ୍ରାନ୍ତିକୁ ଯୁକ୍ତି ଏବଂ ତର୍କ ଦ୍ୱାରା ସମର୍ଥନ କରିବାକୁ ଦ୍ୱିତୀୟ ଅଧ୍ୟାୟ ଲେଖାଯାଇଛି ।" ଦ୍ୱୈତର ସମସ୍ତ ଭ୍ରାନ୍ତ ସ୍ୱରୂପକୁ ଯୁକ୍ତି ମାଧ୍ୟମରେ ପ୍ରମାଣ କରିବା ପାଇଁ ଏହି ପ୍ରକରଣ ଚେଷ୍ଟା କରିଛି ।

ଜାଗ୍ରତ ଅବସ୍ଥାର ଅନୁଭୂତିକୁ ସ୍ୱପ୍ନାବସ୍ଥାର ଅନୁଭୂତି ସହିତ ତୁଳନା କରିବା ଏବଂ ଏହି ଦୁଇ ଅବସ୍ଥାର ଆପାତ ପ୍ରତୀୟମାନ ଅନୁଭୂତି ମଧ୍ୟରେ ବାସ୍ତବରେ ପ୍ରଭେଦ ନାହିଁ ବୋଲି ସ୍ପଷ୍ଟ  ଏବଂ ଯୁକ୍ତି ସଙ୍ଗତ ନିଷ୍ପତି ଦେଖାଇବା ହେଉଛି ଏହି ଅଧ୍ୟାୟର ମୁଖ୍ୟ ପ୍ରଚେଷ୍ଟା । ଜାଗ୍ରତ ଅବସ୍ଥା ଯଦି ସତ୍ୟ ହୁଏ, ସ୍ୱପ୍ନାବସ୍ଥାର ଅନୁଭୂତି ମଧ୍ୟ ସମାନ ଭାବରେ ସତ୍ୟ । ଆମେ ଯଦି ସ୍ୱୀକାର କରିବା ଯେ, ସ୍ୱପ୍ନ ହେଉଛି ଏକ ଭ୍ରାନ୍ତି, ତେବେ ଜାଗ୍ରତ ଅବସ୍ଥାର ଅନୁଭୂତି ମଧ୍ୟ ସେହି ପରିମାଣରେ ଭ୍ରାନ୍ତ ହେବ । ଏହି ବିଷୟଟି ପ୍ରମାଣ କରିବା ପାଇଁ ଗୌଡ଼ପାଦ  ନାନାପ୍ରକାର ଯୁକ୍ତିସଙ୍ଗତ ତର୍କ ଏବଂ ଚୈତନ୍ୟର ଏହି ଦୁଇଟି ଅବସ୍ଥାରେ ଅନୁଭୂତ ହେଉଥିବା ଜୀବନର ଗହନ ବିବୃତି ଦେଇଛନ୍ତି ।

ସ୍ୱପ୍ନାବସ୍ଥା ମିଥ୍ୟା ଏବଂ ଭ୍ରାନ୍ତ ବୋଲି ଆମେ ସହଜରେ ସ୍ୱୀକାର କରୁ । କିନ୍ତୁ ଜାଗ୍ରତ ଅବସ୍ଥା ମଧ୍ୟ ମିଥ୍ୟା ଏବଂ ଭ୍ରାନ୍ତ ବୋଲି କୁହାଗଲେ ସ୍ୱାଭାବିକ ଭାବେ ଆମେ ଇତସ୍ତତଃ ହେଉ, କାରଣ ଆମେ ଜୀବନର ଏକପାଖିଆ ଦୃଷ୍ଟିକୋଣ ସହିତ ବହୁତ ଅଭ୍ୟସ୍ତ । ସାଧାରଣତଃ ଆମ ପାଇଁ ଜୀବନର ଅର୍ଥ ହେଉଛି କେବଳ ଜାଗ୍ରତାବସ୍ଥାର ଅନୁଭୂତି ।

ଜୀବନସାରା ଦିନରାତି ଆମେ ଚେତନାର ତିନୋଟି ସ୍ତରରେ ଜୀବନଯାପନ

କରୁଥିଲେ ସୁଦ୍ଧା ଜାଗ୍ରତାବସ୍ଥା ବ୍ୟତୀତ ଜୀବନର ଅନ୍ୟ ସବୁ ସ୍ତରକୁ ଏବଂ ସେମାନଙ୍କର ଅନୁଭୂତିର କ୍ଷେତ୍ରକୁ ଉପେକ୍ଷା କରିଥାଉ । ଜୀବନର ସମସ୍ତ ବିଶ୍ଳେଷଣ ଏବଂ ମୂଲ୍ୟାୟନରେ ଏହା ସତ୍ୟ । ଏକମାତ୍ର ଜାଗ୍ରତ ଅବସ୍ଥାର ଅନୁଭୂତିର ମାନଦଣ୍ଡ ଦ୍ୱାରା ହିଁ ଆମେ ଜୀବନକୁ ମାପି ଥାଉ । ତେଣୁ ଗୌଡ଼ପାଦଙ୍କ ସିଦ୍ଧାନ୍ତ ଆମକୁ ବିଚିତ୍ର ମନେ ହୁଏ ।

ଦୟାଳୁ ଓ ସତ୍ୟାର୍ଥୀ ଗୌଡପାଦଙ୍କର ଏହା ନିଜସ୍ୱ ଯୁକ୍ତି । ଦର୍ଶକମାନଙ୍କୁ ଆମୋଦିତ କରିବା ଦାର୍ଶନିକଙ୍କର କାମ ନୁହେଁ । ସାଧାରଣ ଲୋକଙ୍କର ଜୀବନର ମୂଲ୍ୟବୋଧକୁ ଯଥାର୍ଥ ବୋଲି କହିବା ମଧ୍ୟ ତାଙ୍କର କାମ ନୁହେଁ । କୌଣସି ସମୟରେ ପ୍ରଚଳିତ ଜୀବନର ମିଥ୍ୟା ଦୃଷ୍ଟିକୋଣକୁ ଦାର୍ଶନିକ ସମର୍ଥନ କରି ପାରିବ ନାହିଁ । ତାଙ୍କର ଲକ୍ଷ୍ୟ ହେଲା ସତ୍ୟାନୁଭବ କରିବା ଏବଂ ଅନ୍ୟମାନଙ୍କୁ ତାହା କରାଇବା । ସିଦ୍ଧାନ୍ତ ଯେତେ ବିରକ୍ତିକର ମନେହେଲେ ମଧ୍ୟ, ତତ୍କାଳୀନ ବିଶ୍ୱାସର ପରିପ୍ରେକ୍ଷୀରେ ଯେତେ ଅପ୍ରଚଳିତ ମନେହେଲେ ମଧ୍ୟ ଦାର୍ଶନିକ କୌଣସି ବାହ୍ୟ ନିୟମନିଷ୍ଠାର ପାଳନ କରନ୍ତିନାହିଁ । ଦୁନିଆଁକୁ ସେ ନିଜର ଉପଲବ୍ଧି ଏବଂ ଚଳନ୍ତି ଅନୁଭୂତି ଜଣାଇ ଦିଅନ୍ତି । ଏ ବିଷୟରେ ଧାରଣା କରିପାରିଲେ, ସମ୍ପୂର୍ଣ୍ଣ ଦ୍ୱୈତବାଦୀ ମଧ୍ୟ ଅଦ୍ୱୈତବାଦୀଙ୍କର ସାଲିସ୍ ବିହୀନ ଦୃଷ୍ଟିକୋଣ ଏବଂ ସାହସିକତାକୁ ଭଲ ଭାବରେ ବୁଝିପାରିବେ ।

ମାଣ୍ଡୁକ୍ୟ ଉପନିଷଦ୍‌ରେ ଜୀବନର ଯେପରି ବିଶଦ ବର୍ଣ୍ଣନା ମିଳେ, ପୃଥିବୀର ଅନ୍ୟ କୌଣସି ଦର୍ଶନ ସାହିତ୍ୟରେ ସେପରି ଦେଖାଯାଏ ନାହିଁ । ମାନବ ଇତିହାସର ଯେକୌଣସି ସମୟରେ ଏହି ଧାରଣା ଅନନ୍ୟ ନୁହେଁ, ସାରା ବିଶ୍ୱର ଦାର୍ଶନିକ ମାନେ ମଝିରେ ମଝିରେ ଏହା ଉପରେ ବିଚାର କରିଛନ୍ତି । ଏହି ବିଚାର ଜାଗ୍ରତ ଅବସ୍ଥାର ବାସ୍ତବତାକୁ ନେଇ ।

ଆମର ଶାସ୍ତ୍ରରେ ରାଜା ଜନକଙ୍କର କାହାଣୀ ଅଛି । ସେ ସ୍ୱପ୍ନ ଦେଖିଲେ ଯେ, ସେ ଏକ ଦୁର୍ଭିକ୍ଷ-ପ୍ରପୀଡ଼ିତ ସ୍ଥାନର ବ୍ୟକ୍ତି ଏବଂ ନିଦ ଭାଙ୍ଗିଯିବାରୁ ସେ ଚିନ୍ତା କଲେ- ସେ କଣ ସତରେ ଜଣେ ସ୍ୱପ୍ନ ଦ୍ରଷ୍ଟା, ଜାଗ୍ରତ ଅବସ୍ଥାରେ ପହଞ୍ଚି ନିଜକୁ ରାଜା ଭାବରେ ଦେଖୁଛନ୍ତି, କିମ୍ବା ସ୍ୱପ୍ନରେ ନିଜକୁ ରାଜା ଭାବରେ ଦେଖୁଥିବା ସେହି ଦରିଦ୍ର ବ୍ୟକ୍ତିଟି ! ସେହିପରି ଜଣେ ପ୍ରାଚୀନ ଚୀନ୍ ସନ୍ଥଙ୍କ ସମ୍ବନ୍ଧରେ କାହାଣୀ ଅଛି । ସେ କହିଲେ, "କାଲି ମୁଁ ସ୍ୱପ୍ନରେ ଗୋଟିଏ ପ୍ରଜାପତି ହୋଇ ଯାଇଥିଲି । ବର୍ତ୍ତମାନ ମୁଁ ଜାଣେ ନାହିଁ ଯେ, ମୁଁ କଣ ଗୋଟିଏ ପ୍ରଜାପତି, ମଣିଷ ହୋଇଯିବାର ସ୍ୱପ୍ନ ଦେଖୁଛି, କିମ୍ବା ମୁଁ ପ୍ରକୃତରେ ଜଣେ ମଣିଷ, ଯିଏ ଗୋଟିଏ ପ୍ରଜାପତି ହୋଇଯିବାର ସ୍ୱପ୍ନ ଦେଖୁଛି !"

ଏହି ଅଧ୍ୟାୟରେ, ଚେତନାର ଏହି ଦୁଇ ସ୍ତରରେ ଆମର ଅଭିଜ୍ଞତା ବିଷୟରେ ବୁଝିବାକୁ ଆମେ ଯେତେ ବେଶୀ ଚେଷ୍ଟା କରିବା, ସ୍ୱପ୍ନାବସ୍ଥାର ଅଭିଜ୍ଞତା ଅପେକ୍ଷା ସତ୍ୟ ପରି ମନେ ହେଉଥିବା ଜାଗ୍ରତ ଅବସ୍ଥାର ଅଭିଜ୍ଞତାକୁ ସମର୍ଥନ କରିବାରେ ସେତେ ବିଶେଷ ଯୁକ୍ତି ପାଇ ପାରିବା ନାହିଁ ।

**ବୈତଥ୍ୟଂ ସର୍ବଭାବାନାଂ ସ୍ୱପ୍ନ ଆହୁର୍ମନୀଷିଣଃ ।**

**ଅନ୍ତଃସ୍ଥାନାତ୍ତୁ ଭାବାନାଂ ସଂବୃତତ୍ୱେନ ହେତୁନା ॥୧॥**

ବୈତଥ୍ୟଂ = ଅସତ୍ୟ, ଭ୍ରାନ୍ତି, ସର୍ବ-ଭାବାନାମ୍ = ସବୁ ବସ୍ତୁ ମଧ୍ୟରୁ, ସ୍ୱପ୍ନେ = ସ୍ୱପ୍ନରେ, ଆହୁଃ ମନୀଷିଣଃ = ଜ୍ଞାନୀଜନ କହିଛନ୍ତି, ଅନ୍ତଃ ସ୍ଥାନାତ୍ = ଶରୀର ଭିତରେ ଥିବା, ତୁ = ଯେହେତୁ, ଭାବାନାମ୍ = ବସ୍ତୁ ସବୁ, ସଂବୃତତ୍ୱେନ = ସ୍ଥାନ (ଆକାଶ)ର ସଙ୍କୋଚନ, ହେତୁନା = କାରଣରୁ ।

*ଶରୀରର ଅଭ୍ୟନ୍ତରରେ ରହିଥିବାରୁ ଏବଂ ଏକ ସୀମାବଦ୍ଧ ସ୍ଥାନରେ ଥିବାରୁ ସ୍ୱପ୍ନର ସମସ୍ତ ବସ୍ତୁ ଭ୍ରାନ୍ତି ବୋଲି ଜ୍ଞାନୀଜନ କହନ୍ତି ॥୧॥*

ଭ୍ରାନ୍ତି ବା ମିଥ୍ୟାର ଏହି ଅଧ୍ୟାୟ ଆରମ୍ଭ କରି ଗୌଡ଼ପାଦ ତାଙ୍କର ମହାନ୍ ପ୍ରବନ୍ଧରେ କହିଛନ୍ତି ଯେ, ପ୍ରତୀୟମାନ ଅନୁଭୂତିର ସ୍ୱପ୍ନ ଜଗତ ପରି ଜାଗ୍ରତ ଜଗତ ମଧ୍ୟ ଅସତ୍ୟ ଏବଂ ଭ୍ରାନ୍ତ । ବହୁବିଧ ଜଗତର ଭ୍ରାନ୍ତ ସ୍ୱରୂପ ସମ୍ବନ୍ଧରେ ଶୁଦ୍ଧ, ନ୍ୟାୟସଙ୍ଗତ ଯୁକ୍ତି ଦ୍ୱାରା ପ୍ରମାଣ କରିବାକୁ ଏହି ଅଧ୍ୟାୟରେ ମହାନ୍ ଗୁରୁ ଚେଷ୍ଟା କରିଛନ୍ତି । କିନ୍ତୁ ପୂର୍ବ ଅଧ୍ୟାୟରେ ମୁଖ୍ୟତଃ ପ୍ରାଚୀନ ଋଷିଙ୍କର ଶାସ୍ତ୍ରୀୟ ଘୋଷଣା ମାଧ୍ୟମରେ ସେହି ଉପସଂହାର କରାଯାଇଥିଲା ।

ଜାଗ୍ରତ ଅବସ୍ଥା ଏବଂ ସ୍ୱପ୍ନ ଅବସ୍ଥା ମଧ୍ୟରେ କିଛି ପ୍ରଭେଦ ନଥିବାର ଦର୍ଶାଇବାରେ ଗୌଡ଼ପାଦ ହିନ୍ଦୁ ଦାର୍ଶନିକମାନଙ୍କର ପ୍ରାଚୀନ ପରମ୍ପରା ଅନୁସରଣ କରଛନ୍ତି ।

ହିନ୍ଦୁଶାସ୍ତ୍ର ଅଧ୍ୟୟନର ଏହା ଏକ ପବିତ୍ର ପରମ୍ପରା । ଯେକୌଣସି ବିଶ୍ୱସ୍ତ ଏବଂ ନିର୍ଭରଯୋଗ୍ୟ ଗୁରୁଙ୍କର ବ୍ୟକ୍ତିଗତ ଲେଖା ଭାବରେ ଦାର୍ଶନିକ ସତ୍ୟର ଘୋଷଣା କରାଯାଉ ନ ଥିଲା । ବର୍ତ୍ତମାନର ଦାର୍ଶନିକମାନେ ନିଜକୁ ସ୍ୱତ୍ୱାଧିକାରୀ ଭାବରେ ଦାର୍ଶନିକ ସିଦ୍ଧାନ୍ତର ଘୋଷଣା କରୁଥିବାର ଦେଖାଯାଏ । ଅନେକେ ନିଜର ବ୍ୟକ୍ତିଗତ ଅନୁଭୂତିର ଆଧାରରେ ସେମାନଙ୍କ ମତର ଘୋଷଣା କରନ୍ତି । ଏହା ପ୍ରମାଣସିଦ୍ଧ କାରଣ ଭାବରେ ହିନ୍ଦୁ ଚିନ୍ତାଧାରାରେ ଗ୍ରହଣ କରାଯାଏ ନାହିଁ । ଏହା ଜଣେ ବ୍ୟକ୍ତିଙ୍କର ଅନୁଭୂତି- କେବଳ

ଏତିକି ମାତ୍ର ହିଁ ସେହି ଦର୍ଶନକୁ ଗ୍ରହଣ କରିବା ବା ଅନୁମୋଦନ କରିବା ପାଇଁ ଯଥେଷ୍ଟ ନୁହେଁ, କାରଣ ଜଗତର ଅସତ୍ୟତା ଯଦି ଗୌଡ଼ପାଦଙ୍କ ପରି ଲୋକଙ୍କର ହୁଏ, ସାଧାରଣ ଲୋକର ଅନୁଭୂତିରେ ଜଗତ ହେଉଛି ସତ୍ୟ । ତେଣୁ ଏହା ମହାନ୍ ଗୁରୁଙ୍କର ଅନୁଭୂତି ବୋଲି କହିବା ବଦଳରେ ସେହି ଉକ୍ତିର ଯଥାର୍ଥତା ପାଇଁ ଅଧିକ ପ୍ରମାଣ ଦେବାକୁ ହେବ ।

କୌଣସି ବ୍ୟକ୍ତିବିଶେଷଙ୍କର ଅନୁଭୂତି ଗ୍ରହଣ କରାଗଲେ ଅନ୍ୟ କେହି ବ୍ୟକ୍ତିଙ୍କର ଅନୁଭୂତି ମଧ୍ୟ ସମାନ ଭାବରେ ଗ୍ରହଣୀୟ ହେବ । ଜଣକ ଅପେକ୍ଷା ଅନ୍ୟ ଜଣଙ୍କୁ ଆମେ କାହିଁକି ବେଶୀ ପସନ୍ଦ କରୁ, ତା'ର କାରଣ ଭଲ ଭାବରେ ବୁଝିବା ଦରକାର । ତେଣୁ ଶାସ୍ତ୍ରରେ ମଧ୍ୟ ଆମେ ପ୍ରାୟ ଗୁରୁ ଶିଷ୍ୟଙ୍କୁ ଉପଦେଶ ଦେଉଥିବା ଦେଖିବାକୁ ପାଉ, "ଏହା ମୁଁ ମୋ ଗୁରୁଙ୍କ ପାଖରୁ ଶିକ୍ଷା କରିଥିଲି ଏବଂ ସେ ତାଙ୍କ ଗୁରୁଙ୍କ ପାଖରୁ ଏହା ଶିକ୍ଷା କରିଥିଲେ ବୋଲି କହିଥିଲେ ।" ତେଣୁ ଗୁରୁ-ଶିଷ୍ୟ ପରମ୍ପରା ମାଧ୍ୟମରେ ଯେଉଁ ସବୁ ଘୋଷଣା ଆମ ପାଖେ ପହଞ୍ଚିଛି, ତାହା ହିଁ କେବଳ ଶାସ୍ତ୍ରୀୟ ଭାବରେ ଆମେ ଗ୍ରହଣ କରୁ । ଏହି ପରମ୍ପରାକୁ ଗ୍ରହଣ କରି ପ୍ରାରମ୍ଭିକ ମନ୍ତ୍ରରେ ଗୌଡ଼ପାଦ କହିଛନ୍ତି, ପ୍ରାଚୀନ ବିଜ୍ଞମାନେ ଘୋଷଣା କରିଛନ୍ତି ଯେ, ସ୍ୱପ୍ନ-ଜଗତର ବିଷୟ ଅସତ୍ୟ । ଏହି ଘୋଷଣାର ନିଜସ୍ୱ ଯୁକ୍ତି ଏବଂ ନ୍ୟାୟ ରହିଛି । ଏହି ମନ୍ତ୍ରରେ ଯେଉଁ ଯୁକ୍ତି ଦିଆଯାଇଛି, ତାହା ଚୂଡ଼ାନ୍ତ ଅଟେ ।

ଅନ୍ତଃ ସ୍ଥାନାତ୍ ତୁ - ଭିତରେ ଅବସ୍ଥିତ ହୋଇଥିବାରୁ ! ସ୍ୱପ୍ନ ଅବାସ୍ତବ ବୋଲି ପ୍ରାଚୀନ ଋଷିମାନେ ଯେଉଁ କାରଣ ଦେଇଛନ୍ତି, ତାହା ହେଲା- ସ୍ୱପ୍ନାବସ୍ଥାରେ ଶରୀର ଭିତରେ ହିଁ ସ୍ୱପ୍ନର ଜଗତ ଦେଖାଯାଏ । ମଣିଷ ଆଖି ବୁଜି ଦେଇଥାଏ, ଜାଗ୍ରତ ଅବସ୍ଥା ବା ତା'ର ଶରୀର ସମ୍ବନ୍ଧରେ ମଧ୍ୟ ସେ ସଚେତନ ନ ଥାଏ । ଚୈତନ୍ୟର ଏପରି ଅବସ୍ଥାରେ ସ୍ୱପ୍ନ ତା'ର ବିଷୟ ନେଇ ଆସିଥାଏ । ସେସବୁ ଶରୀର ଭିତରେ ଦେଖାଯିବା ସ୍ୱାଭାବିକ । ମଣିଷର ଶିର ଅଭ୍ୟନ୍ତରରେ, ସ୍ୱପ୍ନରେ ଦେଖା ଯାଉଥିବା ଗାଡ଼ି ମଟର, କୋଠା ବାଡ଼ି, ପାହାଡ଼-ପର୍ବତ-ନଦୀ ବା ଜୀବଜନ୍ତୁଙ୍କ ପାଇଁ ମୁଖ୍ୟତଃ ଜାଗା ନାହିଁ ବୋଲି ଆମେ ଜାଣୁ । ସ୍ୱପ୍ନରେ ଅନୁଭୂତ ହେଉଥିବା ବିଶାଳ ଆକାରର ବଡ଼ ବଡ଼ ପଦାର୍ଥ ବସ୍ତୁ କଥା ଥାଉ,ବାସ୍ତବରେ କେରାଏ ବାଳ ପାଇଁ ମଧ୍ୟ ସେଠାରେ ସ୍ଥାନ ନାହିଁ ।

ସଂବୃତତ୍ୱେନ - ପରିମିତ ଜାଗାରେ ଥିବାରୁ! ସ୍ୱପ୍ନ ଜଗତ ଅବାସ୍ତବ ବୋଲି କହିବାର ଅନ୍ୟ ଗୋଟିଏ କାରଣ ଏଠାରେ ଦିଆଯାଉଛି । ମାନବ ହୃଦୟ ଯେପରି ଗଠିତ ହୋଇଛି, ସେଥିରେ ସ୍ୱପ୍ନରେ ଦେଖା ଯାଉଥିବା ବସ୍ତୁମାନଙ୍କ ପାଇଁ ସ୍ଥାନ ନାହିଁ ।

ତେଣୁ, ଯେଉଁ ବସ୍ତୁ ବାସ୍ତବ ପରି ଏବଂ ସେଠି ଥିବା ପରି ଆମେ ଅନୁଭବ କରୁ, ସେସବୁ ସେଠି ନ ଥିବା ସ୍ୱାଭାବିକ ।

**ଅଦୀର୍ଘତ୍ୱାଚ୍ଚ କାଲସ୍ୟ ଗତ୍ୱା ଦେଶାନ୍ନ ପଶ୍ୟତି ।**
**ପ୍ରତିବୁଦ୍ଧଶ୍ଚ ବୈ ସର୍ବସ୍ତସ୍ମିନ୍‌ଦେଶେ ନ ବିଦ୍ୟତେ ॥୨॥**

ଅଦୀର୍ଘତ୍ୱାତ୍ = ସୀମିତ ହୋଇଥିବାରୁ, ଚ = ପୁନଶ୍ଚ, କାଲସ୍ୟ = ସମୟ, ଗତ୍ୱା = ଯାଇସାରି, ଦେଶାନ୍ = (ସ୍ୱପ୍ନରେ) ସ୍ଥାନସବୁ, ନ ପଶ୍ୟତେ = ଦେଖନ୍ତି ନାହିଁ, ପ୍ରତିବୁଦ୍ଧଃ = ନିଦ ଭାଙ୍ଗିବା ପରେ, ଚ = ପୁଣି, ନ ସର୍ବ ବୈ = ପ୍ରକୃତରେ ସମସ୍ତେ ନୁହେଁ, ତସ୍ମିନ୍ ଦେଶେ = (ସ୍ୱପ୍ନର) ସେହି ଯାଗାରେ, ବିଦ୍ୟତେ = ଦେଖା ଦିଏ (ନିଜକୁ ଦେଖେ) ।

*ସମୟର ସଂକ୍ଷିପ୍ତତା ଯୋଗୁଁ ନିଜେ ଯାଇ ସ୍ୱପ୍ନର ବସ୍ତୁ ସବୁକୁ ଦେଖିବା ସ୍ୱପ୍ନଦ୍ରଷ୍ଟା ପାଇଁ ସମ୍ଭବ ନୁହେଁ । ନିଦ ଭାଙ୍ଗିବା ପରେ ମଧ୍ୟ ସ୍ୱପ୍ନଦ୍ରଷ୍ଟା ସ୍ୱପ୍ନର ଦେଖିଥିବା ଯାଗାରେ ନିଜକୁ ଦେଖେ ନାହିଁ ॥୨॥*

ସଂସ୍କୃତରେ ଦର୍ଶନ ଗ୍ରନ୍ଥମାନଙ୍କର ରଚୟିତାଙ୍କ ସମ୍ଭାବ୍ୟ ଦୃଷ୍ଟିକୋଣ ପାଠକମାନେ ଭଲଭାବରେ ବୁଝିବା ପାଇଁ ସେମାନେ ପ୍ରାୟତଃ ଏକ ସୁସ୍ଥ ପରମ୍ପରାର ଅନୁସରଣ କରିଥାନ୍ତି । ଦାର୍ଶନିକ ଯେଉଁ ମତର ଉପସ୍ଥାପନ କରିଥାନ୍ତି, ତା ବିରୁଦ୍ଧରେ କିଛି ଅଭିଯୋଗ ଉଠିପାରେ ଭାବି ସାଧାରଣତଃ ଏହା କରାଯାଇଥାଏ ଏବଂ ସ୍ୱଗତୋକ୍ତି କଲା ପରି ଦାର୍ଶନିକ ନିଜେ ସେହି ଅଭିଯୋଗର ଉତ୍ତର ଦେଇଥାନ୍ତି । ପ୍ରଥମ ଶ୍ଳୋକ ବିରୁଦ୍ଧରେ କେହି ଉଠାଇଥିବା ସମ୍ଭାବ୍ୟ ପ୍ରତିବାଦର ଉତ୍ତର ଆମେ ଏହି ଶ୍ଳୋକରେ ଦେଖିବାକୁ ପାଉ ।

ସ୍ୱପ୍ନର ବସ୍ତୁ ସବୁ ରହିବା ପାଇଁ ହୃଦୟରେ ଯଥେଷ୍ଟ ସ୍ଥାନ ନଥିବାରୁ ସ୍ୱପ୍ନ ଅସତ୍ୟ ବୋଲି ପ୍ରମାଣ କରିବାକୁ ଗୌଡ଼ପାଦ ପୂର୍ବବର୍ତ୍ତୀ ଶ୍ଳୋକରେ ଚେଷ୍ଟା କରିଛନ୍ତି । ପ୍ରତିପକ୍ଷଙ୍କ ମତରେ ଏହି ଯୁକ୍ତି ସତ୍ୟ ନୁହେଁ । ପ୍ରତିପକ୍ଷଙ୍କ ମତ ହେଲା, ସ୍ୱପ୍ନଦ୍ରଷ୍ଟା ତାର ହୃଦୟରେ ସ୍ୱପ୍ନର ବସ୍ତୁ ସବୁକୁ ଦେଖେ ନାହିଁ, କିନ୍ତୁ ଦୂରବର୍ତ୍ତୀ ସ୍ଥାନ ଏବଂ ଅଞ୍ଚଳର ବସ୍ତୁକୁ ସ୍ୱପ୍ନରେ ଦେଖେ । ତେଣୁ ସ୍ୱପ୍ନଦ୍ରଷ୍ଟା ଯଦି ସୀମିତ ପରିସର (ସ୍ଥାନ)ରେ ପ୍ରବେଶ କରିପାରିବ, ତେବେ ସ୍ୱପ୍ନର ବସ୍ତୁ ସବୁ ନିଶ୍ଚିତ ଭାବରେ ସେଠାରେ ରହିପାରିବେ ।

ସ୍ୱପ୍ନଦ୍ରଷ୍ଟା ଦୀର୍ଘ ଯାତ୍ରା କରି ଦୂରରେ ରହୁଥିବା ଲୋକଙ୍କୁ ଦେଖା କରି ପାରୁଥିବାବେଳେ ସ୍ୱପ୍ନ ମିଥ୍ୟା ବୋଲି ଆମେ କାହିଁକି ଗ୍ରହଣ କରିବା ? ଏହି ପ୍ରତିବାଦର ଉତ୍ତରରେ ଗୌଡ଼ପାଦ ଯୁକ୍ତି ଦେଇଛନ୍ତି ଯେ – 'ସ୍ୱପ୍ନ-ସତ୍ୟତା' ଅନୁଭବ କରିବା ପାଇଁ

ସ୍ୱପ୍ନଦ୍ରଷ୍ଟା ତାର ଶରୀରର ବାହାରେ ଦୂରବର୍ତ୍ତୀ ସ୍ଥାନକୁ ସଶରୀରେ ଯାଏ ନାହିଁ, କାରଣ, ମଣିଷ ଶୋଇ ପଡ଼ିବା ସାଙ୍ଗେ ସାଙ୍ଗେ ଶହ ଶହ ମାଇଲ ଦୂରବର୍ତ୍ତୀ ସ୍ଥାନର ସ୍ୱପ୍ନାନୁଭୂତି ଲାଭ କରିବାର ଦେଖା ଯାଇଛି। ସମୟ ହିସାବରେ ଏହି ଅନୁଭୂତି ସତ୍ୟ ହୋଇ ପାରିବ ନାହିଁ, କାରଣ ଦୂରବର୍ତ୍ତୀ ସ୍ଥାନର ଅନୁଭୂତି ଜଣାଇବା ପାଇଁ ଜାଗ୍ରତ ଏବଂ ସ୍ୱପ୍ନାବସ୍ଥାର ମଧ୍ୟବର୍ତ୍ତୀ ସମୟ ଖୁବ୍ ସ୍ୱଳ୍ପ ।

ପୁନଶ୍ଚ, ସ୍ୱପ୍ନରେ ଖାଉ ଖାଉ ନିଦ ଭାଙ୍ଗିଗଲା ବୋଲି ନିଦ ଭାଙ୍ଗିବା ପରେ କୌଣସି ସ୍ୱପ୍ନଦ୍ରଷ୍ଟାକୁ ଖାଇବା ଘରେ ଥିବାର ଏ ପର୍ଯ୍ୟନ୍ତ ଦେଖାଯାଇ ନାହିଁ । ସ୍ୱପ୍ନରେ ନିଜକୁ ସେ ଉତ୍ତର ମେରୁ ବା ପଡ଼ୋଶୀର ଘରେ ଥିବାର ଦେଖୁଥିଲେ ମଧ୍ୟ ନିଦ ଭାଙ୍ଗିଗଲେ ସେ ନିଜକୁ ତାର ଶୋଇବା ଘରେ ଥିବାର ଦେଖିପାରେ । ବିରୋଧର ମୁହାଁମୁହିଁ ହେବା ପାଇଁ ଗୌଡ଼ପାଦ ଏପରି ଭାବରେ ଚେଷ୍ଟା କରି କହିଛନ୍ତି ଯେ, ସ୍ୱପ୍ନରେ ଆମେ ବହୁତ ଦୂରକୁ ଯିବାର ଅନୁଭୂତି ଲାଭ କଲେ ମଧ୍ୟ, ବାସ୍ତବରେ ଏହା ଆମ ହୃଦୟର ଏକ ଅନୁଭୂତି, ଏବଂ ସ୍ୱପ୍ନଟି ଅବାସ୍ତବ ହେବା ସ୍ୱାଭାବିକ । ତେଣୁ ସ୍ଥାନ ଏବଂ କାଳର ବାସ୍ତବତାକୁ ବିଶ୍ୱାସ କରୁଥିବା ଲୋକମାନେ ସ୍ୱପ୍ନ ଜଗତର ଭ୍ରାନ୍ତ ସ୍ୱରୂପକୁ ସ୍ୱୀକାର ନ କରି ରହି ପାରିବେ ନାହିଁ ।

**ଅଭାବଶ୍ଚ ରଥାଦୀନାଂ ଶ୍ରୂୟତେ ନ୍ୟାୟପୂର୍ବକମ୍।**

**ବୈତଥ୍ୟଂ ତେନ ବୈ ପ୍ରାପ୍ତଂ ସ୍ୱପ୍ନ ଆହୁଃ ପ୍ରକାଶିତମ୍ ।।୩।।**

ଅଭବଃ = ସତ୍ତାହୀନ (ଅସତ୍ୟ), ଚ = ପୁଣି, ରଥ ଆଦୀନାମ୍ = ରଥ ଇତ୍ୟାଦିର, ଶ୍ରୂୟତେ = ଶ୍ରୁତି(ଉପନିଷଦ) ଘୋଷଣା କରେ, ନ୍ୟାୟ ପୂର୍ବକମ୍ = ନ୍ୟାୟପୂର୍ବକ, ବୈତଥ୍ୟମ୍ = ଅସତ୍ୟ (ବିଷୟମାନଙ୍କର) ଭ୍ରାନ୍ତ ସ୍ୱରୂପ, ତେନ = ବିଷୟର, ବୈ = ତେଣୁ, ପ୍ରାପ୍ତମ୍ = (ତର୍କ ଦ୍ୱାରା) ପ୍ରତିଷ୍ଠିତ, ସ୍ୱପ୍ନେ = ସ୍ୱପ୍ନରେ, ଆହୁଃ = (ଜ୍ଞାନୀଜନ) କହନ୍ତି, ପ୍ରକାଶିତମ୍ = ପ୍ରକାଶିତ।

*ବିଚାର ଓ ତର୍କର ଦୃଢ ଆଶ୍ରୟ ନେଇ ଶ୍ରୁତି ମଧ୍ୟ କହିଛନ୍ତି- ସ୍ୱପ୍ନଦ୍ରଷ୍ଟା ସ୍ୱପ୍ନରେ ଦେଖୁଥିବା ରଥ ଇତ୍ୟାଦିର ସ୍ଥିତି ନ ଥାଏ । ପୁଣି, ଦ୍ରଷ୍ଟାମାନେ କହିଛନ୍ତି ଯେ, ସ୍ୱପ୍ନାନୁଭୂତିର ଭ୍ରାନ୍ତ ସ୍ୱରୂପ ସମ୍ବନ୍ଧରେ ଶ୍ରୁତି ନିଜେ ମଧ୍ୟ କହିଛନ୍ତି ଏବଂ ବିଚାର ଓ ତର୍କ ମାଧ୍ୟମରେ ତା'ର ପ୍ରତିପାଦନ କରିଛନ୍ତି ।।୩।।*

ବୃହଦାରଣ୍ୟକ ଉପନିଷଦ୍‌ରେ କୁହାଯାଇଛି ଯେ, ସ୍ୱପ୍ନରେ ଦେଖାଯାଉଥିବା ରଥ ଏବଂ ଅନ୍ୟାନ୍ୟ ବାହନ ସତ୍ୟ ନୁହେଁ । ସ୍ୱପ୍ନ ପ୍ରକୃତରେ ଅସତ୍ୟ- ଏକଥା ଆମ ମନରେ ପୂରାଇବା ପାଇଁ ଗୌଡ଼ପାଦ ଏଠାରେ ଶାସ୍ତ୍ରର ଉଦ୍ଧୃତି ଦେଇଛନ୍ତି । ସ୍ୱପ୍ନର ସତ୍ୟତାରେ ବିଶ୍ୱାସ କରୁଥିବା ଲୋକଙ୍କ ପାଇଁ ଏହା ତାଙ୍କ ଉତ୍ତରର ବିସ୍ତାର ।

ଏହି ବିଷୟ ସମ୍ବନ୍ଧରେ ଚିନ୍ତା କରୁଥିବା ଏବଂ ଜଗତର ବିଷୟର ବିଶ୍ଳେଷଣ କରୁଥିବା ଦ୍ରଷ୍ଟାମାନେ ଏଥିରୁ ନିରାସକ୍ତ ହୋଇ ମତ ଦେଇଛନ୍ତି ଯେ, ଯେଉଁ ସବୁ ବିଷୟ ଦେଖାଯାଏ, ତାହା ମିଥ୍ୟା ଏବଂ ଭ୍ରାନ୍ତ। ବ୍ରହ୍ମ ଜ୍ଞାନାବଳୀରେ ଶ୍ରୀଶଙ୍କର ମଧ୍ୟ ନିର୍ଦ୍ଦିଷ୍ଟ ଭାବରେ ଏହି ଧାରଣା ବ୍ୟକ୍ତ କରିଛନ୍ତି। ସେ କହିଛନ୍ତି ଯେ, ସମସ୍ତ ପଦାର୍ଥକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରିବ - ଦୃଶ୍ୟ ଏବଂ ଦ୍ରଷ୍ଟା । ବେଦାନ୍ତ ମତରେ ଦ୍ରଷ୍ଟା ହିଁ ସତ୍ୟ ଏବଂ ଦୃଶ୍ୟ ଅଧ୍ୟାସ । ତେଣୁ କେବଳ ସ୍ୱପ୍ନ ମାତ୍ର ଭ୍ରାନ୍ତି ନୁହେଁ, ବରଂ ଇନ୍ଦ୍ରିୟମାନଙ୍କ ମାଧ୍ୟମରେ ମନ ଉପଲବ୍ଧି କରି ପାରୁଥିବା ଜାଗ୍ରତ ଅବସ୍ଥାର ସମସ୍ତ ବସ୍ତୁ ମିଥ୍ୟା, କାରଣ, ସେମାନଙ୍କୁ ମଧ୍ୟ ଉପଲବ୍ଧି କରି ହୁଏ । ଏହି ଦୃଷ୍ଟିରୁ ଶରୀର, ମନ, ବୁଦ୍ଧି ମଧ୍ୟ ଉପଲବ୍ଧ ବସ୍ତୁ ଏବଂ ତେଣୁ ସେମାନେ ମଧ୍ୟ ଆତ୍ମାରେ ଅଧ୍ୟାସିତ ଅସତ୍ୟ ବସ୍ତୁ।

**ଅନ୍ତଃସ୍ଥାନାତ୍ତୁ ଭେଦାନାଂ ତସ୍ମାତ୍‌ଜାଗରିତେ ସ୍ମୃତମ୍ ।**

**ଯଥା ତତ୍ର ତଥା ସ୍ୱପ୍ନେ ସଂବୃତତ୍ୱେନ ଭିଦ୍ୟତେ ॥୪॥**

ଅନ୍ତଃ ସ୍ଥାନାତ୍ = ଶରୀର ଭିତରେ ଅବସ୍ଥିତ, ତୁ = ଅନ୍ତତଃ, ଭେଦାନାମ୍ = ବିଭିନ୍ନ ବସ୍ତୁ, ତସ୍ମାତ୍ = ତେଣୁ, ଜାଗରିତେ = ଜାଗ୍ରତ ଅବସ୍ଥାରେ, ସ୍ମୃତମ୍ = ଥିବାର ପ୍ରତୀୟମାନ ହୁଏ, ଯଥା = ଯେପରି, ତତ୍ର = ସେଠାରେ (ଜାଗ୍ରତଠାରେ), ତଥା = ଏବଂ ସେହିପରି, ସ୍ୱପ୍ନେ = ସ୍ୱପ୍ନରେ, ସଂବୃତତ୍ୱେନ = ସ୍ଥାନର ସୀମିତତା ଯୋଗୁଁ, ଭିଦ୍ୟତେ = ପ୍ରଭେଦ ହୁଏ।

*ସେମାନେ ଅଛନ୍ତି ବୋଲି ପ୍ରତୀୟମାନ ହେଉଥିବାରୁ ସ୍ୱପ୍ନରେ ଅବଗତ ହେଉଥିବା ବିଭିନ୍ନ ବସ୍ତୁ ଅସତ୍ୟ । ସେହି କାରଣରୁ ଜାଗ୍ରତ ଅବସ୍ଥାରେ ଦେଖା ଯାଉଥିବା ବସ୍ତୁ ମଧ୍ୟ ଅସତ୍ୟ ବୋଲି ଧରାଯାଏ । ଜାଗ୍ରତାବସ୍ଥା ପରି ସ୍ୱପ୍ନାବସ୍ଥାରେ ମଧ୍ୟ ବସ୍ତୁର ସ୍ୱରୂପ ଏକାପରି ରହେ । ଏକମାତ୍ର ପ୍ରଭେଦ ହେଲା- ଶରୀର ଭିତରେ ଦେଖାଯାଉଥିବାରୁ ସ୍ୱପ୍ନର କ୍ଷେତ୍ରରେ ସ୍ଥାନ (ପରିସର) ସୀମିତ ॥୪॥*

ପୂର୍ବ ଶ୍ଳୋକର ପରିପ୍ରେକ୍ଷୀରେ ପାଠ କଲେ ଏହି ଶ୍ଳୋକଟି ଯଥେଷ୍ଟ ସହଜ ହେବ, କାରଣ ପ୍ରଥମ ଶ୍ଳୋକର ବ୍ୟାଖ୍ୟା ସମୟରେ ଏ ବିଚାର ପ୍ରକାଶ କରାଯାଇ

ସାରିଛି । କିନ୍ତୁ ଏଠାରେ ଲକ୍ଷ୍ୟ କରାଯାଇପାରିବ ଯେ, ଏହି ଶ୍ଳୋକ ସମ୍ବନ୍ଧରେ ଶ୍ରୀଶଙ୍କରଙ୍କର ଟୀକାରେ ଗୋଟିଏ ସୁନ୍ଦର ତର୍କ ରହିଛି ।

ତାହା ଏହିପରି, ଜାଗ୍ରତ ଅବସ୍ଥାରେ ଦୃଶ୍ୟ ହେଉଥିବା ବସ୍ତୁ ଅସତ୍ୟ, ପ୍ରତିଜ୍ଞା- ଏହାକୁ ପ୍ରତିପାଦନ କରିବାକୁ ହେବ କାରଣ ସେମାନେ ପ୍ରତୀୟମାନ; ହେତୁ-ଆଧାର- ସ୍ୱପ୍ନରେ ଦେଖାଯାଉଥିବା ଜିନିଷ ପରି, ଦୃଷ୍ଟାନ୍ତ- ସ୍ୱପ୍ନରେ ଦେଖାଯାଉଥିବା ବସ୍ତୁ ମିଥ୍ୟା ହେବା ପରି ଜାଗ୍ରତ ଅବସ୍ଥାରେ ଦେଖା ଦେଉଥିବା ବସ୍ତୁ ମଧ୍ୟ ମିଥ୍ୟା ହେବ, କାରଣ ସେମାନେ ଦେଖାଯାଇଥାନ୍ତି; ଉପନୟ- ପ୍ରତିପାଦନ କରିବାକୁ ଥିବା ଏବଂ ଦୃଷ୍ଟାନ୍ତ ମଧ୍ୟରେ ସଂପର୍କ- ତେଣୁ ଜାଗ୍ରତ ଅବସ୍ଥାରେ ମଧ୍ୟ ବସ୍ତୁମାନଙ୍କୁ ଅସତ୍ୟ ବୋଲି କୁହାଯାଇଛି; ନିଗମନ – ପୁନରାବୃତ୍ତି-ଶଙ୍କର ତାଙ୍କ ଯୁକ୍ତିରେ ଯେଉଁ ତର୍କ ସଙ୍ଗତ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି, ତାହା ହେଲା- "ପ୍ରତୀୟମାନତା ଏବଂ ତତ୍‌ଜନିତ ଭ୍ରାନ୍ତି ଉଭୟଙ୍କ ପାଇଁ ସମାନ ।

**ସ୍ୱପ୍ନଜାଗରିତସ୍ଥାନେ ହ୍ୟେକମାହୁର୍ମନୀଷିଣଃ ।**
**ଭେଦାନାଂ ହି ସମତ୍ୱେନ ପ୍ରସିଦ୍ଧେନୈବ ହେତୁନା ॥୫॥**

ସ୍ୱପ୍ନ = ସ୍ୱପ୍ନ, ଜାଗରିତ = ଜାଗ୍ରତ, ସ୍ଥାନେ = ଅବସ୍ଥା, ହି-ଏକମ୍ = ପ୍ରକୃତରେ ଏକାପରି, ଆହୁଃ ମନୀଷିଣଃ = ଜ୍ଞାନୀ ଜନ କହନ୍ତି, ଭେଦାନାମ୍ = ବିଭିନ୍ନ ବସ୍ତୁର, ହି = କାରଣରୁ, ସମତ୍ୱେନ = ସାମ୍ୟ, ପ୍ରସିଦ୍ଧେନ = ପ୍ରସିଦ୍ଧ, ଏବ = ମଧ୍ୟ, ହେତୁନା = ଆଧାର, କାରଣ ।

*ଜାଗ୍ରତ ଏବଂ ସ୍ୱପ୍ନ ଅବସ୍ଥାରେ ଉପଲବ୍ଧ ହେଉଥିବା, ବିବିଧ ବସ୍ତୁର ସାମ୍ୟତା ଓ ସୁବିଦିତ ଆଧାର ଯୋଗୁଁ ଏହି ଦୁଇ ଅବସ୍ଥା ଏକାପରି ବୋଲି ଜ୍ଞାନୀଜନ କହନ୍ତି ॥୫॥*

ଜ୍ଞାନୀଜନଙ୍କର ପୂର୍ବଲବ୍ଧ ଅନୁମାନର ସିଦ୍ଧାନ୍ତକୁ ଏହି କାରିକାରେ ସ୍ପଷ୍ଟ କରାଯାଇଛି । ଉଭୟ ସ୍ୱପ୍ନ ଓ ଜାଗ୍ରତ ଅବସ୍ଥାରେ ବିଷୟାନୁଭୂତି, ଦ୍ରଷ୍ଟା-ଦୃଶ୍ୟର ସମ୍ପର୍କ ଉପରେ ଆଧାରିତ । ବେଦାନ୍ତର ସିଦ୍ଧାନ୍ତ ହେଲା ବସ୍ତୁ (ଦୃଶ୍ୟ)ଜଗତ ଆତ୍ମାଙ୍କ ଉପରେଏକ ଅଧ୍ୟାସ ମାତ୍ର (ଆତ୍ମାଙ୍କ ଉପରେ ଆରୋପ କରାଯାଇଛି) ଏବଂ ଅଧିଷ୍ଠାନରୁ ଅଲଗା ହୋଇ ଏହାର କୌଣସି ସ୍ୱାଧୀନ ସ୍ଥିତି ନାହିଁ । ଏପରି ହୋଇଥିବାରୁ ଦେଖା ଯାଉଥିବା ସମସ୍ତ ପଦାର୍ଥ ମନର ମାୟା ଛଡ଼ା କିଛି ନୁହେଁ । ଆତ୍ମା ହିଁ କେବଳ ଶାଶ୍ୱତ, ସର୍ବବ୍ୟାପୀ ସତ୍ୟ ।

**ଆଦାବନ୍ତେ ଚ ଯନ୍ନାସ୍ତି ବର୍ତମାନେଽପି ତତ୍ତଥା ।**

**ବିତଥୈଃ ସଦୃଶାଃ ସନ୍ତୋଽବିତଥା ଇବ ଲକ୍ଷିତାଃ ॥୬॥**

ଆଦୌ = ଆରମ୍ଭରେ, ଚ ଅନ୍ତେ = ଏବଂ ଅନ୍ତରେ(ଶେଷରେ), ଯତ୍ = ଯାହା, ନ ଅସ୍ତି = ନାହିଁ, ବର୍ତମାନେ = ବର୍ତ୍ତମାନରେ, ଅପି = ମଧ୍ୟ, ତଥା = ତେଣୁ, ବିତଥୈଃ = ମାୟା (ଅସତ୍ୟ ବସ୍ତୁ), ସଦୃଶାଃ = ଏକାପରି, ସନ୍ତଃ = ହେଲେ ବି, ଇବ ଅବିତଥାଃ = ସତ୍ୟ ପରି, ଲକ୍ଷିତାଃ = ଧରାଯାଏ ।

*ଯାହା ଆରମ୍ଭରେ ନଥିଲା ଏବଂ ଶେଷରେ ନାହିଁ, ବର୍ତ୍ତମାନ ମଧ୍ୟ ତାହା ନ ରହିବା କଥା । ଏସବୁ (ଦୃଶ୍ୟ) ଭ୍ରାନ୍ତି ପରି, ଯଦିଓ ଏସବୁକୁ ସତ୍ୟ ବୋଲି ବିଚାର କରାଯାଏ ॥୬॥*

ଜାଗ୍ରତ ଅବସ୍ଥାରେ ପ୍ରତୀୟମାନ ବସ୍ତୁ ସବୁ ଅସତ୍ୟ– ଏହି ଶ୍ଳୋକରେ ଗୌଡ଼ପାଦ ଏହାର ଅନ୍ୟ ଏକ କାରଣ ଦେଉଛନ୍ତି । ଯାହା ଆରମ୍ଭରେ ନ ଥିଲା, ଶେଷରେ ମଧ୍ୟ ରହିବ ନାହିଁ । ତାହା ମଧ୍ୟ (ମଝି)ରେ ରହିବ ବୋଲି ବି କହିହେବ ନାହିଁ । ଉଦାହରଣ ସ୍ୱରୂପ ! ଖଣ୍ଡେ ଦଉଡ଼ିକୁ ସାପ ବୋଲି ଜଣେ ଭୁଲ ବୁଝିବାବେଳେ ଭୁଲ୍ ବୁଝିବା ପୂର୍ବରୁ ସାପ ଦଉଡ଼ିରେ ନ ଥିଲା, ଏବଂ ପରେ ଦଉଡ଼ିକୁ ଠିକ୍ ଭାବରେ ଚିହ୍ନିଲେ ବି ସାପ ରହିବ ନାହିଁ । ଆରମ୍ଭରେ ଯାହା ନ ଥିଲା ଏବଂ ଯଥାର୍ଥ ଜ୍ଞାନରେ ଯାହା ଅପସରି ଯାଏ, ତାକୁ ମନର ମାୟା (ଭ୍ରାନ୍ତି) ଭାବରେ ବିଚାର କରାଯାଏ ।

ସେହିପରି ଜାଗ୍ରତ ଅବସ୍ଥାର ଦୃଶ୍ୟ ମଧ୍ୟ ଏକ ମାୟା । ଆତ୍ମାନୁଭବୀମାନେ ଜାଗ୍ରତ ଅବସ୍ଥାର ମାୟା-ସ୍ୱରୂପ ବିଷୟରେ ଜାଣିଥାନ୍ତି ଏବଂ ଆତ୍ମାନୁଭୂତିର ଅବସ୍ଥା ଦୃଷ୍ଟିରୁ ଗୌଡ଼ପାଦ ଏଠାରେ କହିଛନ୍ତି ଯେ, ଜାଗ୍ରତ ଅବସ୍ଥାର ସମସ୍ତ ଦୃଶ୍ୟ ବସ୍ତୁ ହେଉଛି ମାୟା ଏବଂ ସେମାନେ ଏକ ଦୀର୍ଘ ସ୍ୱପ୍ନ ପ୍ରସ୍ତୁତ କରନ୍ତି ।

**ସପ୍ରୟୋଜନତା ତେଷାଂ ସ୍ୱପ୍ନେ ବିପ୍ରତିପଦ୍ୟତେ।**

**ତସ୍ମାଦାଦ୍ୟନ୍ତବତ୍ତ୍ୱେନ ମିଥ୍ୟୈବ ଖଲୁ ତେ ସ୍ମୃତାଃ ॥୭॥**

ସପ୍ରୟୋଜନତା = ଆବଶ୍ୟକତା, ତେଷାମ୍ = ସେହି ବସ୍ତୁମାନଙ୍କର, ସ୍ୱପ୍ନେ = ସ୍ୱପ୍ନରେ, ବିପ୍ରତିପଦ୍ୟତେ = ଖଣ୍ଡନ କରାଯାଏ, ତସ୍ମାତ୍ = ତେଣୁ, ଆଦି-ଅନ୍ତବତ୍-ତ୍ୱେନ = ସେସବୁର ଗୋଟିଏ ଆଦି ଥାଏ ଏବଂ ଅନ୍ତ ଥାଏ, ମିଥ୍ୟା-ଏବ = ନିଃସନ୍ଦେହ ମିଥ୍ୟା, ଖଲୁ = ବାସ୍ତବରେ, ତେ = ସେମାନେ, ସ୍ମୃତାଃ = ଧରା ଯାଆନ୍ତି, ବିଚାର କରା ଯାଆନ୍ତି।

*ଜାଗ୍ରତ ଅବସ୍ଥାର ବସ୍ତୁ ଯେ ଜୀବନରେ ଆମର ଆବଶ୍ୟକତା ପୂରଣ କରେ, ତାହା ସ୍ୱପ୍ନର ଅନୁଭୂତିରେ ସ୍ୱୀକୃତ ହୁଏ ନାହିଁ । ସେମାନେ ନିଃସନ୍ଦେହରେ ମାୟା କାରଣ ସେମାନେ- ଉଭୟ ଜାଗ୍ରତ ଓ ସ୍ୱପ୍ନର (ବସ୍ତୁର)-ଏକ ଅନ୍ତ ରହିଛି ॥୭॥*

ଏଠାରେ, ସତ୍ ସଙ୍ଗରେ କେହି ଜଣେ ବୋଧେ ପ୍ରତିବାଦ କରି ଗୋଟିଏ ସନ୍ଦେହ ପ୍ରକାଶ କରିଛନ୍ତି । ଜାଗ୍ରତ ଅବସ୍ଥା ସତ୍ୟ ବୋଲି ସେ ବିଶ୍ୱାସ କରନ୍ତି । ତେଣୁ ଜାଗ୍ରତ ଅବସ୍ଥାର ଦୃଶ୍ୟମାନ ପ୍ରପଞ୍ଚ ମିଥ୍ୟା ବୋଲି ଗୁରୁ କହିବାରୁ ସେ ଖୁବ୍ ଚମକି ପଡ଼ିଛନ୍ତି । ଜାଗ୍ରତ ଅବସ୍ଥାର ବସ୍ତୁ ଜଗତର ଏକ ବିଶେଷ ଗୁଣ ଅଛି, ଯାହା ଦ୍ୱାରା ସ୍ୱପ୍ନର ଭ୍ରମାତ୍ମକ ବିଷୟ ତୁଳନାରେ ତା'କୁ ସତ୍ୟ ବୋଲି ବିଚାର କରାଯାଇ ପାରିବ । ଏହାର ପ୍ରମାଣ ପାଇଁ ସେ ଆଉ ଗୋଟିଏ ଯୁକ୍ତି ଦେଖାଇଛନ୍ତି ।

ପ୍ରତିବାଦକଙ୍କ ମତରେ- ଖାଦ୍ୟ, ପାନୀୟ ଏବଂ ବାହାନ ଇତ୍ୟାଦି ଜାଗ୍ରତ ଅବସ୍ଥାର ପଦାର୍ଥମାନଙ୍କର କେତେକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ପୂରଣ କରି ପାରିବାର କ୍ଷମତା ଅଛି ! ଜାଗ୍ରତ ଅବସ୍ଥାର ଖାଦ୍ୟ କ୍ଷୁଧା ନିବାରଣ କରି ପାରିବ ଏବଂ ବାହାନ ବାସ୍ତବରେ ଆମକୁ ଆମ ପ୍ରିୟତମାର ଘରକୁ ନେଇଯାଇ ପାରିବ । ସ୍ୱପ୍ନରେ ଦେଖିଥିବା ବସ୍ତୁମାନଙ୍କ ଦ୍ୱାରା ଏପରି ହୋଇ ପାରି ନ ଥାଏ ।

ତେଣୁ ପ୍ରତିବାଦକଙ୍କର ମତ ହେଲା ସ୍ୱପ୍ନର ବସ୍ତୁମାନଙ୍କ ତୁଳନାରେ ଜାଗ୍ରତ ଅବସ୍ଥାରେ ଦେଖା ଦେଉଥିବା ବସ୍ତୁଗୁଡ଼ିକ ସତ୍ୟ ।

ଗୌଡ଼ପାଦ ଏଠାରେ କହିଛନ୍ତି ଯେ, ଏହି ଯୁକ୍ତି ମିଥ୍ୟା, କାରଣ ଜାଗ୍ରତ ଅବସ୍ଥାର ପଦାର୍ଥମାନଙ୍କର ଉପଯୋଗିତା ସ୍ୱପ୍ନରେ ଅସ୍ୱୀକାର ହୁଏ ।

ଜାଗ୍ରତ ଅବସ୍ଥାର ଖାଦ୍ୟର ଜାଗ୍ରତ କ୍ଷୁଧା ନିବାରଣ ପାଇଁ ନିଶ୍ଚୟ କ୍ଷମତା ଅଛି, ଏଥିରେ ସନ୍ଦେହ ନାହିଁ । କିନ୍ତୁ ଜାଗ୍ରତ ଅବସ୍ଥାରେ ଯେଉଁ ସନ୍ତୋଷ ମିଳିଥାଏ, ସ୍ୱପ୍ନରେ

ତାର ଅସ୍ୱୀକାର ହୋଇଥାଏ । ପେଟପୂରା ଭୋଜନ କରି ସାରିବାର ଘଣ୍ଟାକ ମଧ୍ୟରେ ଭୋକରେ ପେଟ ଜଳୁଥିବାର ଏବଂ ଦୁର୍ଭିକ୍ଷ ଅବସ୍ଥାରେ ପଡ଼ିଥିବାର ଅନୁଭୂତି ସ୍ୱପ୍ନରେ ହୋଇ ପାରିବ । ସନ୍ତୋଷ ଲାଭ କରିବା ପାଇଁ ଜାଗ୍ରତ ଅବସ୍ଥାରେ ଯେଉଁ ଖାଦ୍ୟ ପରଷି ଦିଆ ଯାଇଥିଲା, ସ୍ୱପ୍ନ ଅବସ୍ଥାରେ ତାହା ବେକାର ଏବଂ ଅକ୍ଷମ ହୋଇଗଲା । ସ୍ୱପ୍ନାବସ୍ଥାରେ ଖାଦ୍ୟର କ୍ଷୁଧା ନିବାରଣ କରିବାର କ୍ଷମତା ରହିଲା ନାହିଁ । ସେହିପରି, ଏକଥା ମଧ୍ୟ ସତ୍ୟ ଯେ, ସ୍ୱପ୍ନର କ୍ଷୁଧା ନିବାରଣ ପାଇଁ ସ୍ୱପ୍ନର ଖାଦ୍ୟ ସମାନ ଭାବରେ ସମର୍ଥ । ସ୍ୱପ୍ନଦ୍ରଷ୍ଟାର ସ୍ୱପ୍ନ-ସନ୍ତୋଷ ସୃଷ୍ଟି କରିବାରେ ତାହା ସ୍ୱପ୍ନ-ଉଦ୍ଦେଶ୍ୟ ସାଧନ କରିଥାଏ ।

ତେଣୁ ଉପଲବ୍ଧ ସବୁ ବସ୍ତୁ ଭ୍ରାନ୍ତ ବୋଲି ସ୍ୱୀକାର କରାଯାଏ, କାରଣ ସେମାନଙ୍କର ଉଭୟ ଆଦି ଏବଂ ଅନ୍ତ ଅଛି । ସ୍ୱପ୍ନରେ ମିଳୁଥିବା ଭ୍ରମାତ୍ମକ ସନ୍ତୋଷ ଜାଗ୍ରତ ଅବସ୍ଥାରେ ନ ଥାଏ । ଜାଗ୍ରତ ଅବସ୍ଥାର ଉଦ୍ଦେଶ୍ୟ ସାଧନ କରୁଥିବା ଜାଗ୍ରତ ଅବସ୍ଥାର ବସ୍ତୁ ବା ବିଷୟ ସ୍ୱପ୍ନାବସ୍ଥାରେ ସମାନ ଭାବରେ ଅନୁପସ୍ଥିତ ରହେ । ତେଣୁ ଉଭୟ କେବଳ ମିଥ୍ୟା ହିଁ ହୋଇ ପାରନ୍ତି । ସ୍ୱପ୍ନ ଜଗତର ବସ୍ତୁ ଯେପରି ଅସତ୍ୟ, ଜାଗ୍ରତ ଅବସ୍ଥାର ବସ୍ତୁ ମଧ୍ୟ ସେହିପରି ଅସତ୍ୟ ।

**ଅପୂର୍ବଂ ସ୍ଥାନିଧର୍ମୋ ହି ଯଥା ସ୍ୱର୍ଗନିବାସିନାମ୍ ।**

**ତାନୟଂ ପ୍ରେକ୍ଷତେ ଗତ୍ୱା ଯଥୈବେହ ସୁଶିକ୍ଷିତଃ ॥୮॥**

ଅପୂର୍ବଂ = ଅପୂର୍ବ, ଅନନ୍ୟ; ସ୍ଥାନି-ଧର୍ମ = ଏକ ନିର୍ଦ୍ଦିଷ୍ଟ ଅବସ୍ଥାରେ ଦ୍ରଷ୍ଟାର ଧର୍ମ, ହି = ପ୍ରକୃତରେ, ଯଥା = ଯେପରି, ସ୍ୱର୍ଗ ନିବାସିନାମ୍ = ସ୍ୱର୍ଗ ନିବାସୀ, ତାନ୍ = ଏହି ସବୁ, ଅୟମ୍ = ଏହା, ପ୍ରେକ୍ଷତେ = ଦେଖେ, ଅନୁଭବ କରେ; ଗତ୍ୱା = ଯାଇ, ଯଥା ଏବ = ଯେପରି, ଇହ = ଏଠାରେ (ଏହି ଜଗତରେ), ସୁଶିକ୍ଷିତଃ = ସୁଶିକ୍ଷିତ ବ୍ୟକ୍ତି ।

*ସ୍ୱପ୍ନଦ୍ରଷ୍ଟା ଯେଉଁ ଅସାଧାରଣ ବିଷୟ ଦେଖେ, ଜାଗ୍ରତ ଅବସ୍ଥାରେ ତାହା ଦେଖାଯାଏ ନାହିଁ । ସ୍ୱପ୍ନଦ୍ରଷ୍ଟାର ମନର ସେହି ସମୟର ବ୍ୟାବହାରିକ ଅବସ୍ଥା ଯୋଗୁଁ ହିଁ ବିଷୟର ଏହି ଅପୂର୍ବତା ହୋଇଥାଏ, ଏଥିରେ ସନ୍ଦେହ ନାହିଁ । ଜଣେ ବିଜ୍ଞ ବ୍ୟକ୍ତି ବିଭିନ୍ନ ସ୍ଥାନକୁ ଯାଇ ସେହି ସ୍ଥାନର ବସ୍ତୁ ଦେଖିବା ପରି ସ୍ୱପ୍ନଦ୍ରଷ୍ଟା ସ୍ୱପ୍ନାବସ୍ଥା ସହିତ ସାଙ୍ଗ ହୋଇ ସେହି ସବୁ ବସ୍ତୁ ଅନୁଭବ କରିଥାଏ ॥୮॥*

ବେଦାନ୍ତରେ ଦୃଷ୍ଟାନ୍ତ ନ୍ୟାୟସଙ୍ଗତ ନୁହେଁ ବୋଲି ବିରୋଧ ହୁଏ । ଜାଗ୍ରତ ଅବସ୍ଥା ସ୍ୱପ୍ନ ପରି ଅବାସ୍ତବ ବୋଲି ବେଦାନ୍ତ ପ୍ରମାଣ ଦିଏ । ବିରୋଧୀଙ୍କ ପାଇଁ ମଧ୍ୟ ସ୍ୱପ୍ନ ହେଉଛି ଅବାସ୍ତବ, କିନ୍ତୁ ଜାଗ୍ରତାବସ୍ଥାକୁ ସ୍ୱପ୍ନ ସହିତ ସମ୍ପୂର୍ଣ୍ଣଭାବେ ତୁଳନା କରାଯାଇ

ପାରିବ ନାହିଁ, କାରଣ ତାଙ୍କ ମତରେ ସ୍ୱପ୍ନରେ ଅନେକାନେକ ପ୍ରକାର ବସ୍ତୁର ବିଚିତ୍ର ଅନୁଭୂତି ଆମେ ଲାଭ କରୁ। ସଶରୀର ଆକାଶରେ ଉଡ଼ିବା, ଚାରିଗୋଟି ଶୁଣ୍ଢ ଥିବା ହାତୀ ବା ପାଞ୍ଚମୁଣ୍ଡିଆ ସଁବାଳୁଆ ଦେଖିଥିବାର ଆମ ସାଙ୍ଗଙ୍କର ବିଚିତ୍ର ଅନୁଭୂତିର ଉଦାହରଣ ଦିଆଯାଇ ପାରେ । ତେଣୁ କଥାଟି ହେଲା, ସ୍ୱପ୍ନ ହେଉଛି ଅବାସ୍ତବ ଏବଂ ସ୍ୱପ୍ନରେ ଦେଖିଥିବା ଜିନିଷ ପ୍ରକୃତରେ ଏତେ ବିଚିତ୍ର ଯେ ତାହା ସତ୍ୟ ହୋଇ ପାରିବ ନାହିଁ । କିନ୍ତୁ ଜାଗ୍ରତ ଅବସ୍ଥା ଜିନିଷର ଏକ ଛନ୍ଦ ଲୟ ଅଛି ଏବଂ ତାର ପ୍ରକୃତି ଅନୁସାରେ ଏହା ହୋଇଥାଏ । ତେଣୁ ଜାଗ୍ରତ ଅବସ୍ଥାର ଜିନିଷର ସ୍ୱପ୍ନାନୁଭୂତି ସହିତ ତୁଳନା କରିବା ଠିକ୍ ହେବ ନାହିଁ ।

ଏହି ବିରୋଧ ପାଇଁ ଗୌଡ଼ପାଦଙ୍କ ଉତ୍ତର ଅକାଟ୍ୟ। ସେ କହିଛନ୍ତି ଯେ, ସ୍ୱପ୍ନାବସ୍ଥାରେ ଦେଖା ଯାଉଥିବା ବିଚିତ୍ର ଦୃଶ୍ୟ ପାଇଁ ସ୍ୱପ୍ନଦ୍ରଷ୍ଟାର ଅଦ୍ଭୁତ ଅବସ୍ଥା ହିଁ ଦାୟୀ। ସ୍ୱପ୍ନଦ୍ରଷ୍ଟା ଶରୀରଠାରୁ ତାଦାତ୍ମ୍ୟ ହଟେଇ ନେଇ ମାନସିକ ଏବଂ ବୌଦ୍ଧିକ କୋଷ ସହିତ ତାଦାତ୍ମ୍ୟ ସ୍ଥାପନ କରିଥାଏ। ଏହା ମଧ୍ୟ ତା'ର ବୁଦ୍ଧିର ଅଧିକାଂଶ ଭାଗ ଅଚେତନ ଅବସ୍ଥାରେ, ନିଦ୍ରାର ଜଡ଼ ଅବସ୍ଥାରେ ଥିବାବେଳେ ହୁଏ ।

ଏପରି, ମନର ବିବେକ ବିଚାର ଶକ୍ତି ବହୁତ କମ୍ ଥିବାବେଳେ ତାହା ବୁଲିବାକୁ ବାହାରେ । ବାସ୍ତବରେ ଏହା ହେଉଛି ଦୀର୍ଘ ଦିନ ଧରି ବନ୍ଧା ହୋଇ ରହିଥିବା କୁକୁରଟିଏ ଖସିଯାଇ କିଛି ଖୋଜି ବୁଲୁଥିବା ପରି । ମନ, ଏଠାରେ ମାନସିକ ପ୍ରଭାବକୁ ଦେଖିପାରେ – ଏହି ଦେଖିବା ଉପରେ ବିବେକ ଶକ୍ତିର ନିୟନ୍ତ୍ରଣ ବା ଶାସନ ନ ଥାଏ । ମଣିଷଠାରେ ଥିବା ବିବେକ-ବିଚାର ଶକ୍ତି କୌଣସି ବାଧାବିଘ୍ନ ନ ପାଇବା ହେଉଛି ସ୍ୱପ୍ନର ବିଚିତ୍ର ସବୁ ଦୃଶ୍ୟ ବୋଲି ବ୍ୟାଖ୍ୟା କରାଯାଇଥାଏ । ଅର୍ଥାତ୍ ନିଜ ଜଗତର ଅସାଧାରଣ ବା ଅପୂର୍ବ ଅବସ୍ଥା ଯୋଗୁଁ ସ୍ୱପ୍ନଦ୍ରଷ୍ଟା ବିଚିତ୍ର ଦୃଶ୍ୟ ଦେଖିଥାଏ।

ଏହିପରି ଭାବରେ, ଶରୀର ସହିତ ତାଦାତ୍ମ୍ୟ କରି ଜୀବ ଜାଗ୍ରତ ଜଗତର ଅନୁଭୂତି ଲାଭ କରେ, ସ୍ୱପ୍ନାବସ୍ଥା ସହିତ ତାଦାତ୍ମ୍ୟ କରି ସ୍ୱପ୍ନଦ୍ରଷ୍ଟା ହୁଏ – ଚେତନାର ସେହି ସ୍ତରକୁ ଯାଇ ସେ ସ୍ୱପ୍ନ ଜଗତର ବିଚିତ୍ର ଦୃଶ୍ୟ ଦେଖେ ।

ଏକ ଅନୁରୂପ ଉଦାହରଣ ଦ୍ୱାରା ଏହାକୁ ବଡ଼ ସୁନ୍ଦର ଭାବେ ବୁଝେଇ ଦିଆଯାଇଛି – ଜଣେ ବ୍ୟକ୍ତି ପର୍ଯ୍ୟଟନ କରିବାକୁ ଯାଇ ଗୋଟିଏ ବିଦେଶ ଭୂଇଁରେ ପହଞ୍ଚି ସେହି ଦୁନିଆର ବିଚିତ୍ର ଅବସ୍ଥା ଏବଂ ବ୍ୟବହାର ଅନୁଭବ କରେ । ଆମର ଜୀବ ସେହିପରି ଜାଗ୍ରତ, ସ୍ୱପ୍ନ ଏବଂ ସୁଷୁପ୍ତି ଜଗତରେ ବୁଲିବୁଲି ଏହି ସବୁ ଜଗତ ବିଷୟରେ ଅନୁଭୂତି

ଲାଭ କରେ । ସଂକ୍ଷେପରେ ସ୍ୱପ୍ନ ଜଗତ ଯେତିକି ଅବାସ୍ତବ, ଜାଗ୍ରତ ଜଗତ ମଧ୍ୟ ସେତିକି ଅବାସ୍ତବ ବୋଲି ବେଦାନ୍ତୀଙ୍କର ଘୋଷଣାକୁ ଖଣ୍ଡନ କରିବା ପାଇଁ ଉଦ୍ଦିଷ୍ଟ ଯୁକ୍ତି ଯଥେଷ୍ଟ ଶକ୍ତିଶାଳୀ ନୁହେଁ ।

**ସ୍ୱପ୍ନବୃତ୍ତାବପି ତ୍ୱନ୍ତଶ୍ଚେତସା କଳ୍ପିତଂ ତ୍ୱସତ୍ ।**

**ବହିଶ୍ଚେତୋଗୃହୀତଂ ସଦ୍ଦୃଷ୍ଟଂ ବୈତଥ୍ୟମେତୟୋଃ ॥୯॥**

ସ୍ୱପ୍ନ-ବୃତ୍ତୌ = ସ୍ୱପ୍ନାବସ୍ଥାରେ; ଅପି = ମଧ୍ୟ; ତୁ = ଏହା; ଅନ୍ତଃ = ଭିତରେ; ଚେତସା = ମନ ଦ୍ୱାରା; କଳ୍ପିତମ୍ = କଳ୍ପନା କରାଯାଏ; ତୁ ଅସତ୍ =ପ୍ରକୃତରେ ଅସତ; ବହିଃ = ବାହାରେ; ଚେତଃ = ମନଦ୍ୱାରା; ଗୃହୀତମ୍ =ଯାହା ଅନୁଭବ କରାଯାଏ; ସତ୍ = ସତ; ବାସ୍ତବ, ଦୃଷ୍ଟମ୍ = ଦେଖି (ଜାଗ୍ରତ ହୋଇ); ବୈତଥ୍ୟମ୍ = ଭ୍ରାନ୍ତି, ଅବାସ୍ତବତା; ଏତୟୋଃ = ଏ ଦୁହିଙ୍କର ।

**ଜାଗ୍ରଦ୍‌ବୃତ୍ତାବପି ତ୍ୱନ୍ତଶ୍ଚେତସା କଳ୍ପିତଂ ତ୍ୱସତ୍ ।**

**ବହିଶ୍ଚେତୋଗୃହୀତଂ ସଦ୍‌ଯୁକ୍ତଂ ବୈତଥ୍ୟମେତୟୋଃ ॥୧୦॥**

ଜାଗ୍ରଦ୍-ବୃତ୍ତୌ = ଜାଗ୍ରତ ଅବସ୍ଥାରେ; ଅପି = ମଧ୍ୟ; ତୁ = ଏହା; ଅନ୍ତଃ = ଭିତରେ; ଚେତସା = ମନ ଦ୍ୱାରା; କଳ୍ପିତଂ = କଳ୍ପନା କରାଯାଏ; ତୁ ଅସତ୍ = ପ୍ରକୃତରେ ଅସତ୍; ବହିଃ = ବାହାରେ; ଚେତଃ = ମନଦ୍ୱାରା; ଗୃହୀତମ୍ = ଅନୁଭୂତି ହୁଏ; ସତ୍ = ସତ; ବାସ୍ତବ; ଯୁକ୍ତମ୍ = ଯୁକ୍ତି ସଂଗତ; ବୈତଥ୍ୟମ୍ = ଭ୍ରାନ୍ତି, ଅବାସ୍ତବତା; ଏତୟୋଃ = ଉଭୟଙ୍କର ।

*ସ୍ୱପ୍ନରେ ମଧ୍ୟ ସ୍ୱପ୍ନଦ୍ରଷ୍ଟା ତା'ର ମନ ଭିତରେ ଯାହା କଳ୍ପନା କରେ ତାହା ଅବାସ୍ତବ ଏବଂ ମନର ବାହାରେ ସେ ଯାହା ଉପଲବ୍ଧି କରେ, ତାହା ସତ୍ୟ ପରି ମନେ ହୁଏ । କିନ୍ତୁ ପ୍ରକୃତରେ ଏହି ଉଭୟ ଅନୁଭବ ହେଉଛି ଅବାସ୍ତବ କାରଣ ଉଭୟ ହେଉଛନ୍ତି ସ୍ୱପ୍ନର । ସେହିପରି, ଜାଗ୍ରତ ଅବସ୍ଥାରେ ମଧ୍ୟ ମନ ଭିତରେ ଯାହା କଳ୍ପନା କରାଯାଏ ତାହା ଅବାସ୍ତବ ବୋଲି ବିଚାର କରାଯାଏ ଏବଂ ମନ ଦ୍ୱାରା ବାହାରେ ଯାହା ଅନୁଭୂତ ହୁଏ ବାସ୍ତବ ପରି ଜଣାପଡ଼େ । କିନ୍ତୁ ପ୍ରକୃତରେ ଏହି ଉଭୟ ସମାନ ଭାବରେ ଅବାସ୍ତବ ବୋଲି ଯୁକ୍ତିସଙ୍ଗତ ଭାବେ ବିଚାର କରାଯାଇପାରେ ॥୯-୧୦॥*

ଏହି ଦୁଇଟି ଶ୍ଳୋକ ସହିତ ଗୌଡ଼ପାଦ ଜୀବନର ଦୁଇଟି ଦିଗ ଅର୍ଥାତ୍ ବସ୍ତୁ ଜଗତ ଏବଂ ଭାବନା ଜଗତ ସମ୍ବନ୍ଧରେ ଜଣାଉଛନ୍ତି । ସ୍ୱପ୍ନରେ ମଧ୍ୟ ସ୍ୱପ୍ନଦ୍ରଷ୍ଟାର ଭାବନା ଏବଂ ବସ୍ତୁର ନିଜସ୍ୱ ଜଗତ ଥାଏ । ସ୍ୱପ୍ନ ଜଗତରେ ସ୍ୱପ୍ନଦ୍ରଷ୍ଟା ସ୍ୱପ୍ନରେ ଦେଖୁଥିବା

ସ୍ୱପ୍ନର ବସ୍ତୁ ଜଗତକୁ ବାସ୍ତବ ବୋଲି ବିଚାର କରେ; ଏବଂ ନିଜର କଳ୍ପନା ଏବଂ ଭାବନାକୁ ଅବାସ୍ତବ (ଅସତ) ବୋଲି ଗ୍ରହଣ କରେ । ଏହି ଦୁଇ ଶ୍ଳୋକରେ ଅସତକୁ ସତ୍ତାହୀନ ଭାବରେ ବୁଝିବାକୁ ହେବ ନାହିଁ। ଏହାର ଅର୍ଥ କେବଳ 'ମିଥ୍ୟା' । ମନରେ ଲଡ୍ଡୁର ଚିନ୍ତା କରିବା ତୁଳନାରେ ଖାଇବା ଟେବୁଲରେ ତୁମ ସାମନାରେ ଗୋଟିଏ ପ୍ଲେଟରେ ରଖାଯାଇଥିବା ଲଡ୍ଡୁ ବାସ୍ତବ (ସତ) । ଏହିପରି ଭାବରେ କାରିକାକାର ଏଠାରେ ଭାବନା ଜଗତ ଓ ବସ୍ତୁ ଜଗତ ମଧ୍ୟରେ ସ୍ପଷ୍ଟ ପ୍ରଭେଦ ଦେଖାଇଛନ୍ତି ।

ସ୍ୱପ୍ନରେ ମଧ୍ୟ ବସ୍ତୁ ଜଗତ ଏବଂ ଭାବନା ଜଗତ ଅଛି ବୋଲି ସେ ପ୍ରଭେଦ ଦ୍ୱାରା ଦେଖାଉଛନ୍ତି । ସ୍ୱପ୍ନ ଥିବା ପର୍ଯ୍ୟନ୍ତ ସ୍ୱପ୍ନ ବିଷୟ ସତ (ବାସ୍ତବ) ବୋଲି ସ୍ୱପ୍ନଦ୍ରଷ୍ଟା ଗ୍ରହଣ କରେ ଏବଂ ସେଠାରେ ମଧ୍ୟ କଳ୍ପନା ଏବଂ ଭାବନା ଜଗତ ଅସତ୍ୟତାକୁ ଉପେକ୍ଷା କରେ। କିନ୍ତୁ ନିଦ ଭାଙ୍ଗିଗଲେ ଉଭୟ ଜଗତ ସମ୍ବନ୍ଧୀୟ ତାର ନିଜର ଚିନ୍ତା ପ୍ରକୃତରେ ମିଥ୍ୟା-ସ୍ୱପ୍ନ ବ୍ୟତୀତ ଏସବୁ ଅନ୍ୟ କିଛି ନୁହେଁ ବୋଲି ବୁଝି ପାରେ ।

ସେହିପରି ଜାଗ୍ରତ ଅବସ୍ଥାରେ ମଧ୍ୟ ବାହାରେ ଗୋଟିଏ ଜଗତର ଅନୁଭୂତି ହୁଏ। ଏହି ଜଗତ ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁ ନେଇ ଗଠିତ ଏବଂ ଆମର ଆବେଗ ଓ ଭାବନାର ଜଗତଟିଏ ବି ଅଛି, ଯାହା ଦ୍ୱାରା ଆମେ ଭୌତିକ ଜଗତ ପ୍ରତି ବ୍ୟକ୍ତିଗତ ମୂଲ୍ୟବୋଧ ଆରୋପ କରିଥାଉ। ଜଣେ ସାଧାରଣ ବ୍ୟକ୍ତି ସ୍ୱୀକାର କରିବ ଯେ, ତା'ର କଳ୍ପନା ମନର ଫୁତ୍କାର ମାତ୍ର। ତେଣୁ ଏହା ଅସତ୍(ମିଥ୍ୟା)। ତଥାପି କଳ୍ପନା ଜଗତ ସହିତ ତୁଳନା କରି ବାହ୍ୟ ଜଗତ ଅଧିକ ବାସ୍ତବ ବୋଲି ସେ ମନେ କରେ। ପ୍ରକୃତରେ ନିର୍ବିକଳ୍ପ ସତ୍ୟ ଦୃଷ୍ଟିରୁ ବିଚାର କଲେ ଉଭୟ ଜାଗ୍ରତ ଅବସ୍ଥାର ବସ୍ତୁଜଗତ ଏବଂ ଭାବନାଜଗତ ତଥା ସ୍ୱପ୍ନ ଅବସ୍ଥାର ବସ୍ତୁ ଜଗତ ଏବଂ ଭାବନା ଜଗତ ସମାନ ଭାବରେ ଅସତ୍ୟ।

ଜାଗ୍ରତ ଅବସ୍ଥାର ଅନୁଭୂତିରେ ସୂକ୍ଷ୍ମ ପ୍ରଭେଦ କରୁଥିବା ବାସ୍ତବବାଦୀଙ୍କର ଯୁକ୍ତିର ଉତ୍ତରରେ ଏହି ଶ୍ଳୋକ । ସେମାନଙ୍କ ମତରେ ଜାଗ୍ରତ ଅବସ୍ଥା ଉଭୟ "ବାସ୍ତବ" ବିଷୟଜଗତ ଏବଂ "ଅବାସ୍ତବ"ଆବେଗଜଗତ ନେଇ ଗଠିତ । ତା'ର ଉତ୍ତର ଦେଇ ଗୌଡ଼ପାଦ ଏଠାରେ ଦେଖାଇଛନ୍ତି ଯେ, ସ୍ୱପ୍ନଜଗତରେ ମଧ୍ୟ 'ଅସତ୍ୟ'ର ଏକ ଅନୁଭୂତି ଯୋଗ୍ୟ ଅନ୍ତର ଜଗତ ଅଛି। ସ୍ୱପ୍ନଦ୍ରଷ୍ଟାର ଭାବନା ଏବଂ ଆବେଗ ନେଇ ଏହା ଗଠିତ। ଯଦି ସ୍ୱପ୍ନରେ ତୁମ ଦ୍ୱାରା ଅନୁଭୂତ ସତ୍ ଓ ଅସତ୍ ଜଗତ ମିଥ୍ୟା ହୁଏ ତେବେ ଜାଗ୍ରତ ଅବସ୍ଥାରେ 'ସତ୍'ବୋଲି ଅନୁଭୂତ ଭୌତିକ ଜଗତ ଓ 'ଅସତ୍' ବୋଲି ଅନୁଭୂତ ଭାବନା ଜଗତ ମଧ୍ୟ ସମାନ ଭାବରେ ମିଥ୍ୟା।

**ଉଭୟୋରପି ବୈତଥ୍ୟଂ ଭେଦାନାଂ ସ୍ଥାନୟୋର୍ୟଦି ।**

**ଏତାନ୍ ବୁଧ୍ୟତେ ଭେଦାନ୍ କୋ ବୈ ତେଷାଂ ବିକଳ୍ପକଃ ॥୧୧॥**

ଉଭୟୋଃ = ଉଭୟ, ଅପି = ମଧ୍ୟ, ବୈତଥ୍ୟଂ = ଅସତ୍, ଭେଦାନାମ୍ = ଦେଖା ଯାଉଥିବା ବିଷୟ, ସ୍ଥାନୟୋଃ = ଦୁଇ ଅବସ୍ଥାରେ, ଅର୍ଥାତ୍ ଜାଗ୍ରତ ଏବଂ ସ୍ୱପ୍ନାବସ୍ଥାରେ (ଗ୍ରହଣୀୟ); ଯଦି = ଯଦି, କଃ = କିଏ, ଏତାନ୍ = ଏହି ସବୁ, ବୁଧ୍ୟତେ = ଜାଣେ, ଅନୁଭବ କରେ; ଭେଦାନ୍ = ବିଷୟସବୁ, କଃ ବୈ = କିଏ ପ୍ରକୃତରେ, ତେଷାମ୍ = ସେମାନଙ୍କର, ବିକଳ୍ପକଃ = କଳ୍ପନାକାରୀ ।

*ଉଭୟ ସ୍ୱପ୍ନ ଏବଂ ଜାଗ୍ରତ ଅବସ୍ଥାରେ ଅନୁଭୂତ ବସ୍ତୁ ଯଦି ଅସତ୍ ହୁଏ, କିଏ ଏହି ଅସତ୍ ପଦାର୍ଥର ଅନୁଭବକରେ ଏବଂ ବାସ୍ତବରେ କିଏ ସେମାନଙ୍କୁ କଳ୍ପନା କରେ ॥୧୧॥*

ଏହି ପୂରା ଶ୍ଳୋକଟିରେ ଅସ୍ୱୀକାରର ଭାଷା ରହିଛି । ସମସ୍ୟାଟି ହେଲା- ବେଦାନ୍ତୀମାନେ କହିବା ପରି ବସ୍ତୁଜଗତ ଏବଂ ଭାବନାଜଗତ ଯଦି ସ୍ୱପ୍ନରେ ଏବଂ ଜାଗ୍ରତ ଅବସ୍ଥାରେ ମଧ୍ୟ ଅସତ୍ ହୁଏ, ତାହା ହେଲେ ବସ୍ତୁ ଜଗତ ଏବଂ ଭାବନା ଜଗତକୁ ଜାଣିବା ପରି କେହି ଜଣେ ଥିବ । ଅସ୍ୱୀକାରରେ ଏହି ସମସ୍ୟା ଉଠେ ଯେ, ପ୍ରତ୍ୟେକ ଜିନିଷ ଯଦି ଅସତ୍, ତେବେ ଏସବୁକୁ ଜାଣୁଥିବା କେହି ସତ୍ ନିଶ୍ଚୟ ଥିବେ । ତାହା ହେଲେ ବିଷୟର ଜ୍ଞାତା, ଅନୁଭୂତିର ଅନୁଭବ କର୍ତ୍ତା ଏବଂ ଭାବନାର ଜ୍ଞାତା କିଏ ? ଏହାର ତାତ୍ପର୍ଯ୍ୟ ହେଲା, ଏ ସବୁ ପଛରେ ଥିବା କୌଣସି ସତ୍ୟର ଅସ୍ତିତ୍ୱ ସମ୍ବନ୍ଧରେ ବେଦାନ୍ତୀମାନେ ଯଦି ବ୍ୟାଖ୍ୟା କରିପାରିବେ ନାହିଁ, ତେବେ ସେମାନେ ତାଙ୍କ ନିଜର ଆତ୍ମାର ଅସ୍ୱୀକାର କରିବେ, ଏହା ନାହିଁ ବୋଲି କହିବେ । ମନେ ରଖିବା ପାଇଁ ବା ଜାଣିବା ପାଇଁ କୌଣସି ବିଷୟ ଥିଲେ ହିଁ ସ୍ମୃତି କାମ କରିପାରିବ, ଜ୍ଞାନ ଲାଭ କରିହେବ । ମନେରଖିବା ପାଇଁ ଏବଂ ଅନୁଭବ କରିବା ପାଇଁ ଯଦି କେହି ଜଣେ ନ ଥିବ, ସ୍ମୃତି କାମ କରି ପାରିବନାହିଁ । ଜ୍ଞାତ ବସ୍ତୁର ଜ୍ଞାନ ପାଇଁ ଜଣେ ସମର୍ଥଜ୍ଞାତା ନ ଥିଲେ, ବିଷୟମାନଙ୍କର ସମ୍ବନ୍ଧରେ ଜ୍ଞାନ ସମ୍ଭବ ହେବନାହିଁ । ତେଣୁ ଅସତ୍ ଜଗତରେ ଜ୍ଞାତା ବା ଦ୍ରଷ୍ଟା କିଏ ବୋଲି ଅସ୍ୱୀକାରରେ ପଚରାଯାଇଛି । ସାଧାରଣ ବୁଦ୍ଧିରେ ସାଧାରଣ ସତ୍ୟକୁ ଯେଉଁମାନେ ସଂପୂର୍ଣ୍ଣ ସତ୍ୟ ଭାବରେ ସାଧାରଣ ଭାବେ ଗ୍ରହଣ କରନ୍ତି, ସେମାନେ ବେଦାନ୍ତୀଙ୍କର ଆଧାରକୁ ଅସ୍ୱୀକାର କରନ୍ତି ଓ ଆହ୍ୱାନ ଦିଅନ୍ତି ।

**କଳ୍ପୟତ୍ୟାତ୍ମନାତ୍ମାନମାତ୍ମା ଦେବଃ ସ୍ୱମାୟୟା ।**

**ସ ଏବ ବୁଧ୍ୟତେ ଭେଦାନିତି ବେଦାନ୍ତନିଶ୍ଚୟଃ ॥୧୨॥**

କଳ୍ପୟତି = କଳ୍ପନା କରେ, ଆତ୍ମନା = ନିଜ ଦ୍ୱାରା, ଆତ୍ମାନମ୍ = ଆତ୍ମା ନିଜ ଠାରେ, ଦେବଃ ଆତ୍ମା = ନିଜେ ଜ୍ୟୋତିର୍ମୟ ଆତ୍ମା, ସ୍ୱମାୟୟା = ନିଜର ମାୟା ମାଧ୍ୟମରେ, ସଃ = ତାହା (ଆତ୍ମା), ଏବ = ମଧ୍ୟ, ବୁଧ୍ୟତେ = ଅନୁଭବ କରେ, ଭେଦାନ୍ = ବିଷୟସବୁ, ଇତି = ଏହିପରି, ବେଦାନ୍ତ-ନିଶ୍ଚୟଃ = ବେଦାନ୍ତର ନିଶ୍ଚିତ ସିଦ୍ଧାନ୍ତ ।

*ବେଦାନ୍ତ ଦର୍ଶନର ନିଶ୍ଚିତ ସିଦ୍ଧାନ୍ତ ହେଲା, ଜ୍ୟୋତିର୍ମୟ ଆତ୍ମା ନିଜର ମାୟା ଶକ୍ତି ମାଧ୍ୟମରେ ନିଜ ଦ୍ୱାରା ନିଜଠାରେ ସମସ୍ତ ବିଷୟର ଏବଂ ଉଭୟ ବାହ୍ୟ ଏବଂ ଅନ୍ତର ଜଗତରେ ପରିଚ୍ଛିନ୍ନ ଅନୁଭୂତିର କଳ୍ପନା କରେ । ସେ ହିଁ କେବଳ ଏହିପରି ସୃଷ୍ଟ ଜଗତର ଜ୍ଞାତା ॥୧୨॥*

ଗତ ଶ୍ଳୋକରେ ଆମେ ଦେଖିଛୁ ଯେ, ଅସ୍ୱୀକାରରେ ଗୋଟିଏ ପ୍ରଶ୍ନ ଉଠିଛି । ପ୍ରଶ୍ନଟି ହେଲା- ବାହାରେ ବା ଭିତରେ ଥିବା ବହୁବିଧ ଜଗତର ପ୍ରକାଶକ ବା ଜ୍ଞାତା ବା ଅନୁଭବୀ କିଏ ? ଗୌଡ଼ପାଦ ଏହି ଶ୍ଳୋକରେ ତା'ର ଉତ୍ତର ଦେଉଛନ୍ତି ଯେ, ପରମ ସତ୍ୟ, ଆତ୍ମାଙ୍କ ଉପରେ ବହୁବିଧ ଜଗତ ଏକ ଭ୍ରାନ୍ତ ଅଧ୍ୟାସ ବୋଲି ବେଦାନ୍ତରେ ବ୍ୟାଖ୍ୟା କରାଯାଇଛି । ଶୁଦ୍ଧ ଚୈତନ୍ୟ ଆତ୍ମା ନିଜ ଭ୍ରାନ୍ତିରେ ଭ୍ରାନ୍ତ ହୋଇ ବହୁବିଧ ଜଗତ(ପ୍ରପଞ୍ଚ)ର ପ୍ରକ୍ଷେପଣ କରନ୍ତି । ପ୍ରକ୍ଷେପିତ ଜଗତ ତାଙ୍କ ବ୍ୟତୀତ ଅନ୍ୟ କିଛି ନୁହେଁ କାରଣ ଆତ୍ମା ଅବିନଶ୍ୱର ଓ ସର୍ବବ୍ୟାପୀ ଅଟେ ।

ଭ୍ରାନ୍ତିରେ ଆମ ଦ୍ୱାରା ବହୁବିଧ ଜଗତର ପରିକଳ୍ପନାକୁ ହଠାତ୍ ବୁଝିବା ଆମପାଇଁ ହୁଏତ କଷ୍ଟକର ହୋଇପାରେ । ସ୍ୱପ୍ନରେ ଆମର ଅନୁଭୂତିର ବିଶ୍ଳେଷଣ କଲେ ଏହି କଳ୍ପନା ଆମ ପାଇଁ ସହଜ ହୋଇଯାଏ । ନିଜକୁ (ନିଜର ଜାଗ୍ରତ ଅବସ୍ଥାକୁ) ଭୁଲିଯିବାର ମୁହୂର୍ତ୍ତରେ ହିଁ ସ୍ୱପ୍ନଦ୍ରଷ୍ଟାର କାର୍ଯ୍ୟକଳାପ ଆରମ୍ଭ ହୋଇଯାଏ । ବାହ୍ୟଜଗତରେ ଅନୁଭୂତ ବସ୍ତୁମାନଙ୍କର ଅନୁଭବ ସ୍ୱପ୍ନରେ ପାଇବା ନିମନ୍ତେ ନିଜକୁ ସ୍ୱପ୍ନାବସ୍ଥାରେ ପ୍ରକ୍ଷେପିତ କରିବାର କ୍ଷମତା ତା ପାଖକୁ ଅନ୍ୟ କେଉଁଠାରୁ ଆସି ନ ଥାଏ । ଏହା ତା'ଠାରେ ଥିବା ଏକ ସ୍ୱାଭାବିକ କ୍ଷମତା, ଯାହା ଦ୍ୱାରା ସେ ଭ୍ରମିତ ହୁଏ ।

ନିଜକୁ ଭ୍ରମିତ କରିବାର କ୍ଷମତାର ବଶବର୍ତ୍ତୀ ହୋଇ ସେ ତା'ର ସ୍ୱରୂପ ଭୁଲିଯାଏ ଏବଂ ଶୂନ୍ୟ ଜଗତକୁ ଯାଇ ସ୍ୱପ୍ନାବସ୍ଥାର ଚେତନାର ଭ୍ରାନ୍ତ ବହୁ-ବିଧତାର ଅନୁଭବ

କରେ। ଏହିପରି ଭାବରେ, ସ୍ୱପ୍ନରେ ସେ ବିଶ୍ୱାସକରେ ଯେ ସେ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଅଛି ଏବଂ ନିର୍ଦ୍ଦିଷ୍ଟ ବିଷୟରୁ ସୃଷ୍ଟ ପରିସ୍ଥିତି ତାକୁ ଘେରି ରହିଛି। କିନ୍ତୁ ଯେଉଁଠି ସେ ବାସ କରୁଛି, ତାହା ଯାହା ହେଲେ ବି, ସ୍ୱପ୍ନ ବିଷୟର ପ୍ରତ୍ୟେକଟି ଅଂଶ ବାସ୍ତବରେ ତା ବ୍ୟତୀତ ଅନ୍ୟ କିଛି ନୁହେଁ, ସ୍ୱପ୍ନ ଜଙ୍ଗଲର ବୃକ୍ଷ-ଲତା, ମାଟି ତଳେ ଥିବା ସ୍ୱପ୍ନ ପଥର, ସ୍ୱପ୍ନ ନଦୀର ପାଣି, ସ୍ୱପ୍ନ ବନ୍ଧୁ ଏବଂ ଶତ୍ରୁ, ସ୍ୱପ୍ନର ଜୀବଜନ୍ତୁ,ଏପରିକି ସ୍ୱପ୍ନରେ ଆମେ ଦେଖିଥିବା ଆକାଶ, ଜହ୍ନ, ତାରାର ପ୍ରତ୍ୟକଟି ଅଂଶ ମଧ୍ୟ ସ୍ୱପ୍ନଦ୍ରଷ୍ଟାର ନିଜର ମନ ବ୍ୟତୀତ ଅନ୍ୟ କିଛି ନୁହେଁ।

ସେହିପରି ଜାଗ୍ରତ ଅବସ୍ଥାରେ ମଧ୍ୟ ସତ୍ୟର ଅବବୋଧ ନ ହେଲେ, ନିଜ ସ୍ୱରୂପର ଅଜ୍ଞାନତାରେ, ଜାଗ୍ରତ ପୁରୁଷ ନିଜକୁ ସତ୍ୟ ମନେ ହେଉଥିବା ଏକ ଭୌତିକ-ଜଗତକୁ ପ୍ରକ୍ଷେପିତ କରେ। ଏହା ଜାଗ୍ରତ ଅବସ୍ଥା ଥିବା ପର୍ଯ୍ୟନ୍ତ ସଂଘଟିତ ହୁଏ । କିନ୍ତୁ ବାସ୍ତବତାରେ ବାହ୍ୟ ଜଗତର ପ୍ରତ୍ୟେକ ବିଷୟ ବା ବସ୍ତୁ ସର୍ବବ୍ୟାପୀ ସତ୍ୟଙ୍କ ବ୍ୟତୀତ ଅନ୍ୟ କିଛି ନୁହେଁ। ବହୁବିଧତା ଅଦ୍ୱୈତ ସତ୍ୟଙ୍କ ଉପରେଏକ ଅଧ୍ୟାସ ମାତ୍ର।

ପ୍ରଥମ ଥର ପାଇଁ ଗୌଡ଼ପାଦ ଏହି ଶ୍ଳୋକରେ ଜାଗ୍ରତ ଅବସ୍ଥାରେ ଅନୁଭୂତ ବହୁବିଧ ଜଗତ ସମ୍ବନ୍ଧରେ ଗୋଟିଏ ବ୍ୟାଖ୍ୟା ଦେଇଛନ୍ତି। ସାଧାରଣତଃ ମାଣ୍ଡୁକ୍ୟ ଉପନିଷଦ୍‌ର ସିଦ୍ଧାନ୍ତ ଏବଂ କାରିକାରେ ବିକଶିତ ବିଷୟର ହେଉଛି, ପ୍ରତୀୟମାନ ସୃଷ୍ଟ ଜଗତ ଏକ ଭ୍ରାନ୍ତି ମାତ୍ର ଏବଂ ତ୍ରିକାଳରେ ଏହା ଅସତ୍ୟ ଓ ଅବାସ୍ତବ। କିନ୍ତୁ କଦବା-କ୍ୱଚିତ୍, ଗୌଡ଼ପାଦ ମଧ୍ୟ ଅଭିମାନ ତ୍ୟାଗ କରି ଆମର ବୁଝିବା ସ୍ତରକୁ ଓହ୍ଲାଇ ଆସି ବହୁବିଧ-ଜଗତଟିକୁ ଚିହ୍ନି ପାରିଛନ୍ତି ଏବଂ ଏହା କିପରି ଭାବରେ ଆମକୁ ଭ୍ରାନ୍ତିଯୋଗୁଁ ଦେଖା ଦେଇଥିବ ତାହା ବୁଝାଇଛନ୍ତି ।

ଆମ ସାହିତ୍ୟରେ ଏ ଶ୍ଳୋକଟି ଖୁବ୍ ପ୍ରସିଦ୍ଧ, ତେଣୁ ଗ୍ରନ୍ଥକାର, ପଣ୍ଡିତ ଏବଂ ଦାର୍ଶନିକଙ୍କ ଦ୍ୱାରା ବାରମ୍ବାର ଉଦ୍ଧୃତ କରାଯାଇଥାଏ।

ସୃଷ୍ଟିର ସିଦ୍ଧାନ୍ତରେ ବ୍ୟାଖ୍ୟା କରାଯାଇଥିବା ଅଭିପ୍ରାୟରେ ଏହି ପ୍ରଶ୍ନଟି ତଥାପି ଅନୁତ୍ତରିତ ହୋଇ ରହିଯାଏ-"ଏହି ବହୁବିଧ ଭ୍ରାନ୍ତିର ଦ୍ରଷ୍ଟା, ଜ୍ଞାତା ଏବଂ ଉପଭୋକ୍ତା କିଏ ? "ଗୌଡ଼ପାଦ ଏଠାରେ କହିଛନ୍ତି-'କେବଳ ସେ ହିଁ " । କେବଳ, ଶୁଦ୍ଧ-ଚୈତନ୍ୟ ଆତ୍ମା ହିଁ ଜ୍ଞାତା । ଏହି ଭ୍ରାନ୍ତି ଅନ୍ତରରେ ହେଉ ବା ବାହାରେ, ଆମ ଭିତରେ ଥିବା ଚୈତନ୍ୟ-ତତ୍ତ୍ୱଙ୍କ ଦ୍ୱାରା ହିଁ ସମସ୍ତ ବିଷୟ ପ୍ରକାଶିତ ହୋଇଥାଏ ।

କହିବାକୁ ଗଲେ,ଏହି ବିଷୟ ସଂକ୍ରାନ୍ତରେ ଉପନିଷଦ୍‌ରେ ଅସଂଖ୍ୟ ଦୃଢ଼ୋକ୍ତି ରହିଛି । ସେସବୁରେ କୁହାଯାଇଛି ଯେ, ଶୁଦ୍ଧ-ଚୈତନ୍ୟଙ୍କଠାରୁ ପାଇଥିବା ଆଲୋକରେ ହିଁ ସବୁ କିଛି ଆଲୋକିତ ହୁଏ । ସୂର୍ଯ୍ୟ, ଚନ୍ଦ୍ର, ତାରାମାନେ ମଧ୍ୟ ପରମ-ସତ୍ୟଙ୍କର ଆଲୋକଦ୍ୱାରା ସ୍ୱର୍ଗଲୋକରେ ଉଦ୍ଭାସିତ ହୁଅନ୍ତି । ଆମେମାନେ ମଧ୍ୟ ଆମର ଚେତନା ଦ୍ୱାରା ସୂର୍ଯ୍ୟଙ୍କର ଆଲୋକକୁ ପ୍ରକାଶିତ କରୁ, କାରଣ ରାସ୍ତାକଡ଼ରେ ପଡିଥିବା ଜଣେ ମୃତ ବ୍ୟକ୍ତିର ଆଖି ଖୋଲାଥିଲେ ମଧ୍ୟ ସେ ସୂର୍ଯ୍ୟଙ୍କୁ ଦେଖି ପାରିବ ନାହିଁ । ତେଣୁ ଯେଉଁ ଶରୀରରୁ ଜୀବନ ବାହାରି ଯାଇଛି, ତା ପାଇଁ ସୂର୍ଯ୍ୟ ଅଦୃଶ୍ୟ ହୋଇଯାଆନ୍ତି । ଆମ ସମସ୍ତଙ୍କର ଜୀବନ ଚାଲିଗଲେ ସୂର୍ଯ୍ୟ, ଚନ୍ଦ୍ର ଏବଂ ତାରା ମାନଙ୍କର ମଧ୍ୟ କୌଣସି ମୂଲ୍ୟ ରହିବ ନାହିଁ । ଚୈତନ୍ୟ ହିଁ ସବୁ ଯାଗାରେ ପ୍ରକାଶ-ତତ୍ତ୍ୱ ।

ତେଣୁ ବେଦାନ୍ତରେ କୁହାଯାଇଥିବା ଗ୍ରହଣୀୟ ସିଦ୍ଧାନ୍ତ ହେଉଛି- ଆମଠାରେ ଥିବା ଜୀବନର ଚେତନ-ତତ୍ତ୍ୱ ହେଉଛି ପୃଥିବୀର ସମସ୍ତ ବାହ୍ୟ ଇନ୍ଦ୍ରିୟଗ୍ରାହୀ ବିଷୟର ଜ୍ଞାତା, ଏବଂ ବିଭିନ୍ନ ଚିନ୍ତା, ଆବେଗ ଏବଂ ଧାରଣା ଇତ୍ୟାଦିର ଅନ୍ତରସ୍ଥ ପ୍ରବାହ । ଚୈତନ୍ୟର ଆଲୋକରେ ହିଁ ଆମର ସ୍ୱପ୍ନଜଗତ ଉଦ୍ଭାସିତ ହୁଏ । ପୁନଶ୍ଚ ଏହି ଆତ୍ମାଲୋକ ହିଁ ଆମର ଜାଗ୍ରତାବସ୍ଥାରେ ଦିନର ସମସ୍ତ ବାହ୍ୟ ଆଲୋକକୁ ପ୍ରକାଶିତ କରିଥାଏ ।

**ବିକରୋତ୍ୟପରାନ୍ ଭାବାନନ୍ତଶ୍ଚିତ୍ତେ ବ୍ୟବସ୍ଥିତାନ୍ ।**

**ନିୟତାଂଶ୍ଚ ବହିଶ୍ଚିତ୍ତ ଏବଂ କଳ୍ପୟତେ ପ୍ରଭୁଃ ॥୧୩॥**

ବିକରୋତି = ତା'ଠାରେ ବିକାର ହୁଏ, ତାହା ସୃଷ୍ଟି କରେ, ଅପରାନ୍ = ପାର୍ଥିବ(ସ୍ୱପ୍ନ), ଭାବାନ୍ = ବିଷୟସବୁ, ଅନ୍ତଃ ଚିତ୍ତେ = ମନଭିତରେ, ବ୍ୟବସ୍ଥିତାନ୍ = ଥାଇ, ଯାହା ଅଛି; ନିୟତାନ୍ ଚ = ନିୟତ ବିଷୟ ମଧ୍ୟ; ବହିଃ ଚିତ୍ତଃ = ବାହ୍ୟମୁଖୀ ମନ, ଏବଂ = ଏହିପରି ଭାବରେ, କଳ୍ପୟତେ = ଏହା କଳ୍ପନା କରେ, ପ୍ରଭୁଃ = ଈଶ୍ୱର, ଆତ୍ମା ।

*ବାସନା ବା ସଂସ୍କାର ବା କାମନା(ଇଚ୍ଛା) ରୂପେ ପ୍ରଭୁ- ଆତ୍ମାଙ୍କ ମନରେ ଉଭୟ ବାହ୍ୟ ଏବଂ ଅନ୍ତରସ୍ଥ ଜଗତର ପାର୍ଥିବ ବିଷୟ ଥାଏ, ଯାହାକୁ ସେ ବହିର୍ମୁଖୀ ମନରେ ବିଭିନ୍ନ ପ୍ରକାରେ କଳ୍ପନା କରନ୍ତି । ଠିକ୍ ସେହିପରି ଭାବରେ ଆତ୍ମା ଅର୍ନ୍ତମୁଖୀ ମନା ହୋଇ ବିଭିନ୍ନ ଭାବନା ଓ ବସ୍ତୁ ମାନଙ୍କୁ ନିଜ ମନରେ କଳ୍ପନା କରନ୍ତି ॥୧୩॥*

ଆମ ଭିତରେ ଭ୍ରାନ୍ତ ଜଗତର ସାକ୍ଷୀ, ଜ୍ଞାତା ଏବଂ ଦ୍ରଷ୍ଟା କିଏ ବୋଲି ବ୍ୟାଖ୍ୟା ଚାଲୁ ରଖି ଗୌଡ଼ପାଦ ଏଠାରେ କହୁଛନ୍ତି ଯେ ଆତ୍ମା ହିଁ ଦ୍ରଷ୍ଟା । ବେଦାନ୍ତର ଛାତ୍ର

ଭାବରେ ଆମେ ଏଠାରେ ଗୋଟିଏ ଗୁରୁତର ଭୁଲ ଧାରଣା ପ୍ରତି ସ୍ପଷ୍ଟ ହେବା। ଏହି ଶ୍ଳୋକରେ କୁହାଯାଇଛି ଯେ, "ମନକୁ ବହିର୍ମୁଖୀ କରିଥିବା ଆତ୍ମା", ବାସ୍ତବରେ ଆତ୍ମାଙ୍କର ମନ ନାହିଁ। ଆତ୍ମାଙ୍କ ଉପରେ ମନର ଅଧ୍ୟାସ କରାଯାଇଛି ଏବଂ ବହିର୍ମୁଖୀ ମନ ହିଁ ହେଉଛି ଇନ୍ଦ୍ରିୟଭୋଗ୍ୟ ବସ୍ତୁପୂର୍ଣ୍ଣ ବହୁବିଧ ଜଗତର ଦ୍ରଷ୍ଟା । ଆତ୍ମା ସର୍ବବ୍ୟାପୀ ।ଏହାର ଅର୍ଥ କେବଳ ଏତିକି ଯେ, ମନ ଏବଂ ବୁଦ୍ଧିଦ୍ୱାରା ପରିଚ୍ଛିନ୍ନ ବୋଧ ହେଉଥିବା ଆତ୍ମା ଅର୍ଥାତ୍ ଜୀବ ହିଁ ତା'ମନର ପ୍ରିଜିମ୍ ଦେଇ ଜଗତକୁ ଦେଖେ ଏବଂ ବହୁବିଧ ପରି ମନେ ହେଉଥିବା ଜଗତର ଚାକ୍ଷୁସ କରେ ।

ତେଣୁ ମନ-ବୁଦ୍ଧି ଉପାଧି ସହିତ ତାଦାତ୍ମ୍ୟ କରି ଆତ୍ମା ପରିଚ୍ଛିନ୍ନ, ଅହଙ୍କାରୀ ଜୀବ ହୋଇଯାଆନ୍ତି। ବାସନାର ଆବରଣ ମଧ୍ୟ ଦେଇ ଜଗତକୁ ଦେଖୁଥିବା ଜୀବ ତା ଭିତରେ ବହୁବିଧ ଜଗତର ଚାକ୍ଷୁସ କରେ; ନିଜର ପସନ୍ଦ-ଅପସନ୍ଦ, ଭଲପାଇବା-ଘୃଣା କରିବା ଏବଂ ଅନ୍ୟାନ୍ୟ ଅନେକ ପ୍ରକାରର ଆବେଗ ଉପରେ ଅଧ୍ୟାସ କରି ଅନୁଭୂତି ଆହରଣ କରେ। ଏହି ସମସ୍ତ ଭ୍ରାନ୍ତ ଅନୁଭୂତିକୁ ଆମେ ଜାଗ୍ରତ ଅବସ୍ଥାର ଜୀବନ ବୋଲି କହୁ। ପ୍ରକୃତରେ, ଚୈତନ୍ୟ-ତତ୍ତ୍ୱ ନ ରହିଲେ, ନିଜେ ମନ ବା ଶରୀର ବହୁବିଧ ଜଗତଟିଏ ସୃଷ୍ଟି କରି ପାରିବେନାହିଁ ଏବଂ ସେଥିରୁ କୌଣସି ଅଭିଜ୍ଞତା ଆହରଣ କରି ପାରିବେ ନାହିଁ। ଭ୍ରାନ୍ତି ଏବଂ ଭ୍ରାନ୍ତ ଅନୁଭୂତିର ମୂଳ ଭିତ୍ତି ହେଲେ ଶୁଦ୍ଧ-ଚୈତନ୍ୟ ।

ବାସ୍ତବରେ,ଏହି ବହିର୍ମୁଖୀତା ହିଁ ହେଉଛି ବିବିଧତାର କାରଣ। ଅନ୍ୟ ଉପନିଷଦ୍‌ମାନଙ୍କରେ ମଧ୍ୟ ଏହି ଧାରଣା ବଡ଼ସୁନ୍ଦର ଭାବରେ ପ୍ରକାଶ କରାଯାଇଛି। ବିଶେଷ କରି କେନୋପନିଷଦ୍‌ରେ କୁହାଯାଇଛି ଯେ, ବହିର୍ମୁଖୀ ଦୃଷ୍ଟି ହେଉଛି ବ୍ୟକ୍ତିର ଭ୍ରାନ୍ତିର କାରଣ। ତେଣୁ 'ଅନ୍ତର୍ଦୃଷ୍ଟି'ଦ୍ୱାରା ହିଁ ସ୍ୱାଭାବିକ ଭାବେ ଏହା ଦୂର ହୋଇପାରିବ। ବାହ୍ୟ-ଜଗତରୁ ଦୃଷ୍ଟି ଅପସାରଣ କରି, ଶରୀର-ମନ-ବୁଦ୍ଧିରୁ ସଚେତନତା ଦୂରେଇ ନେଲେ ଆମର ଚୈତନ୍ୟ ଆତ୍ମ-ସଚେତନତାର ଅବସ୍ଥାରେ ପହଞ୍ଚିବ, ଚୈତନ୍ୟ ସେଠାରେ କେବଳ ନିଜ ବିଷୟରେ ହିଁ ସଚେତନ ହେବ। ଏହାକୁ ଆତ୍ମାନୁଭୂତି କୁହାଯାଏ ଏବଂ ଏହା ଦ୍ୱାରା ହିଁ ଭ୍ରାନ୍ତିର ବହୁବିଧ ଜଗତର ବୋଧ ଆଉ ରହିବ ନାହିଁ ।

**ଚିତ୍ତକାଲା ହି ୟେଽନ୍ତସ୍ତୁ ଦ୍ୱୟକାଲାଶ୍ଚ ୟେ ବହିଃ ।**
**କଳ୍ପିତା ଏବ ତେ ସର୍ବେ ବିଶେଷୋ ନାନ୍ୟହେତୁକଃ ॥୧୪॥**

ଚିତ୍ତ-କାଲାଃ = ଭାବନା ଥିବା ପର୍ଯ୍ୟନ୍ତ ଯାହା ଥାଏ, ହି = ପ୍ରକୃତରେ, ୟେ = ସେହି ସବୁ(ବିଷୟ), ଅନ୍ତଃ = (ଯାହା ସବୁ) ଭିତରେ ଥାଏ, ତୁ = ଯେହେତୁ,କିନ୍ତୁ; ଦ୍ୱୟ କାଲାଃ = ଯାହା ଦୁଇ କାଳରେ ଥାଏ, ୟେ ଚ ବହିଃ = ବାହାରେ ଥିବା (ସେହି ବସ୍ତୁ)ମଧ୍ୟ, କଳ୍ପିତା ଏବଃ = କେବଳ କଳ୍ପନା ମାତ୍ର, ତେ ସର୍ବେ = ସେମାନେ ସମସ୍ତେ, ବିଶେଷଃ = ସେମାନଙ୍କର ବିଶେଷତ୍ୱ, ନ-ଅନ୍ୟ-ହେତୁକଃ = ଅନ୍ୟ କୌଣସି କାରଣ ପାଇଁ ନୁହେଁ ।

*ଭାବନାର ଅନ୍ତ ପର୍ଯ୍ୟନ୍ତ ମନରେ ଅବଗତ ସେସବୁ ବସ୍ତୁ ଓ ତତ୍ ସହିତ ସମୟର ଅନ୍ତରକୁ ନିଶ୍ଚିତ କରୁଥିବା ବାହ୍ୟଜଗତର ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁ- ଉଭୟେ ଅସତ୍(ତୁଚ୍ଛ କଳ୍ପନା ମାତ୍ର) । ଏ ଦୁଇ ଭିତରେ ପ୍ରଭେଦ ଦର୍ଶାଇବା ପାଇଁ ଅନ୍ୟ କିଛି ସ୍ୱତନ୍ତ୍ର ଭିତ୍ତି ନାହିଁ ॥୧୪॥*

ବେଦାନ୍ତରେ ବିଶ୍ୱାସ  କରୁ ନ ଥିବା ବ୍ୟକ୍ତି ଏଠାରେ ଯେଉଁ ପ୍ରତିବାଦ ଉଠାନ୍ତି, ତାହା ହେଲା – ଜାଗ୍ରତ ଅବସ୍ଥାର ବସ୍ତୁ-ଜଗତ ଏବଂ ସ୍ୱପ୍ନାବସ୍ଥାର ବସ୍ତୁଜଗତ ମଧ୍ୟରେ ତଥାପି ସ୍ପଷ୍ଟ ପ୍ରଭେଦ ରହିଛି । ଏମାନଙ୍କର ମତରେ ଅନ୍ତରର ଭାବନା ଜଗତ ଗୋଟିଏ କାଳର ଅଧୀନ  ହେଲା ବେଳେ ବାହାରର ଭାବନା-ଜଗତ ଦୁଇଟି କାଳ ମଧ୍ୟରେ ଆବଦ୍ଧ ।

ସେମାନଙ୍କର ଯୁକ୍ତି ହେଲା – ଭାବନାଟିଏ ମନରେ ରହିପାରେ ଏବଂ ଏହା ମନରେ ରହିଥିବା ପର୍ଯ୍ୟନ୍ତ ହିଁ ଆମେ ଏହାକୁ ଜାଣିପାରୁ । କିନ୍ତୁ ବାହ୍ୟ ବସ୍ତୁ କ୍ଷେତ୍ରରେ କେହି ଜାଣୁ କି ନ ଜାଣୁ ଅନ୍ୟ ଏକ କାଳ ପର୍ଯ୍ୟନ୍ତ ତାହା ରହିଥାଏ । ଉଦାହରଣ ସ୍ୱରୂପ:- ସ୍ୱପ୍ନ ଦେଖୁଥିବା ବେଳେ, ସ୍ୱପ୍ନ ଦେଖୁଥିବା ପର୍ଯ୍ୟନ୍ତ ହିଁ ଏହା ରହିଥାଏ ବୋଲି କୁହାଯାଏ, କିନ୍ତୁ ବାହ୍ୟ ଜଗତରେ (ସେହି) ଏକ ନିର୍ଦ୍ଦିଷ୍ଟ କାଳରେ କୌଣସି ବସ୍ତୁର ଅବସ୍ଥିତି ଅନ୍ୟ ଏକ ବସ୍ତୁର ଅବସ୍ଥାନ କାଳ ସହ ତୁଳନାତ୍ମକ ଭାବେ ରହିଥାଏ । ଆମେ କହି ପାରିବା ଯେ,'ଟାଉନ୍‌ବସ୍ ପହଞ୍ଚିବା ପର୍ଯ୍ୟନ୍ତ ମି. ସୁନ୍ଦର ରହିବେ'। ଏଠାରେ ମି.ସୁନ୍ଦରଙ୍କର ବିଦା ହେବା ଅନ୍ୟ ଗୋଟିଏ କାଳ ଉପରେ ନିର୍ଭର କରୁଛି, ଅର୍ଥାତ୍ ଟାଉନ୍ ବସ୍‌ର ପହଞ୍ଚିବା ଉପରେ ଏବଂ ଟାଉନ୍‌ବସ୍ ଅନ୍ୟ ଏକ ସମୟରେ ପହଞ୍ଚିବ। ଏହିପରି ଭାବରେ ବୈଦାନ୍ତିକ ଚିନ୍ତାଧାରାର ପ୍ରତିବାଦକାରୀ ଜାଗ୍ରତ ଅବସ୍ଥାର ବସ୍ତୁ ଜଗତ ଏବଂ ସ୍ୱପ୍ନାବସ୍ଥାର ବସ୍ତୁ ଜଗତ ମଧ୍ୟରେ ଜୀରାରୁ ଶିରା କାଢ଼ିବା ପରି ପ୍ରଭେଦ ଦେଖାନ୍ତି ।

ସେମାନଙ୍କ ମତରେ, ଜାଗ୍ରତ ଅବସ୍ଥାର ଜଗତ ଅଧିକତର ବାସ୍ତବ କାରଣ ଏହା ଦୁଇଟି କାଳ ଉପରେ ନିର୍ଭର କରେ। ଅର୍ଥାତ୍ ସମୟର ଦୁଇଟି ଦିଗକୁ ନେଇ ତାହା ବାଖ୍ୟା କରାଯାଇପାରିବ, ଅଥଚ ସ୍ୱପ୍ନକ୍ଷେତ୍ରରେ ଏହା କେବଳ ମନରେ ହିଁ ରହିଯାଏ। ଗୌଡପାଦ ବିନା ସଂକୋଚରେ ଏହି ଉଦ୍ଭଟ ଯୁକ୍ତିକୁ ପ୍ରତ୍ୟାଖ୍ୟାନ କରିଦେଇଛନ୍ତି। କାରଣ ଏହା ପାଇଁ କୌଣସି ଗୁରୁତ୍ୱପୂର୍ଣ୍ଣ ଉତ୍ତର ନାହିଁ। ସେ କହିଛନ୍ତି ଯେ, ଜାଗ୍ରତ ଅବସ୍ଥାର ବସ୍ତୁକୁ ବ୍ୟାଖ୍ୟା କରୁଥିବା (ବର୍ଣ୍ଣନା କରୁଥିବା) ପରି ମନେ ହେଉଥିବା ଦୁଇଟି କାଳ ମନର କଳ୍ପନା ବ୍ୟତୀତ ଅନ୍ୟ କିଛି ନୁହେଁ। ସ୍ୱପ୍ନ ପରି ଏହା ମନର ଏକ ଧାରଣା ମାତ୍ର। ଜାଗ୍ରତ ଅବସ୍ଥାର ଜଗତ ଏବଂ ସ୍ୱପ୍ନାବସ୍ଥାର ଜଗତ ମଧ୍ୟରେ ପ୍ରଭେଦର ଯଥାର୍ଥତା ପ୍ରତିପାଦନ କରିବା ପାଇଁ ଏହି ପ୍ରତିବାଦର ବିଶେଷ ଭିତ୍ତି ନାହିଁ ବୋଲି ସେ କହିଛନ୍ତି।

**ଅବ୍ୟକ୍ତା ଏବ ୟେଽନ୍ତସ୍ତୁ ସ୍ଫୁଟା ଏବ ଚ ୟେ ବହିଃ।**
**କଳ୍ପିତା ଏବ ତେ ସର୍ବେ ବିଶେଷସ୍ତ୍ୱିନ୍ଦ୍ରିୟାନ୍ତରେ ॥୧୫॥**

ଅବ୍ୟକ୍ତା ଏବ = ଅବ୍ୟକ୍ତ ମଧ୍ୟ, ୟେ = ସେହି ସବୁ (ସ୍ୱପ୍ନ ବିଷୟ), ଅନ୍ତଃ = (ଯାହାସବୁ)ଭିତରେ ଅଛି, ତୁ = କିନ୍ତୁ, ସ୍ଫୁଟାଃ ଏବ = ବ୍ୟକ୍ତ ମଧ୍ୟ, ଚ = କିନ୍ତୁ, ୟେ = ସେହି ସବୁ (ବିଷୟ), ବହିଃ = ବାହାରେ ଅଛନ୍ତି, କଳ୍ପିତାଃ = କଳ୍ପନା,ଏବ = କେବଳ, ତେ ସର୍ବେ = ସେସବୁ, ବିଶେଷଃ = ବିଶେଷତା, ତୁ = କିନ୍ତୁ, ଇନ୍ଦ୍ରିୟ ଅନ୍ତରେ = ଇନ୍ଦ୍ରିୟରେ ପ୍ରଭେଦ।

*ମନ ଭିତରେ ମାତ୍ର ଥିବା କଳ୍ପନାର ବିଷୟ ଯାହାକୁ ଅବ୍ୟକ୍ତ କୁହାଯାଏ ଓ ତତ୍ ସହିତ ବାହାରେ ବ୍ୟକ୍ତ ଅବସ୍ଥାରେ ଉପଲବ୍ଧ ହେଉଥିବା ଭୌତିକ ବସ୍ତୁ - ଉଭୟ ତୁଚ୍ଛ କଳ୍ପନା ଅଟନ୍ତି । ଉଭୟଙ୍କ ମଧ୍ୟରେ ଏକମାତ୍ର ପ୍ରଭେଦ କେବଳ ଇନ୍ଦ୍ରିୟମାନଙ୍କରେ ରହିଛି, ଯେଉଁ ଇନ୍ଦ୍ରିୟ ମାଧ୍ୟମରେ ବାହ୍ୟ ଜଗତର ବୋଧ ହେବାପରି ମନେ ହୁଏ ॥୧୫॥*

ବାହ୍ୟ ଭୌତିକ-ଜଗତ ଏବଂ ଅନ୍ତରସ୍ଥ ଭାବନା-ଜଗତ ମଧ୍ୟରେ ପ୍ରଭେଦ ଦେଖାଇବା ପାଇଁ ପ୍ରତିପକ୍ଷ ବର୍ତ୍ତମାନ ଆଉ ଗୋଟିଏ ଯୁକ୍ତି ଉଠାଉଛନ୍ତି। ତାଙ୍କ ମତରେ ଏହି ଦୁଇଟିକୁ ତୁଳନା କଲେ, ସେମାନଙ୍କ ମଧ୍ୟରେ ନିଶ୍ଚିତ ଏକ ପ୍ରଭେଦ ଦେଖାଯିବ। ସେହି ପ୍ରଭେଦ ହେଲା ଭାବନା-ଜଗତ ଅବ୍ୟକ୍ତ ଅବସ୍ଥାରେ ଥିବାବେଳେ ବାହାରର ବସ୍ତୁ-ଜଗତ ପୂର୍ଣ୍ଣରୂପେ ବ୍ୟକ୍ତ। ତେଣୁ ପ୍ରତିପକ୍ଷ ଯୁକ୍ତି କରିବା ପରି ମନେହୁଏ ଯେ, ଭାବନାର ସ୍ୱପ୍ନ-ଜଗତ ଅପେକ୍ଷା ବାହ୍ୟଜଗତ ଅଧିକ ବାସ୍ତବ ।

ବ୍ୟକ୍ତ ହେଉ ବା ଅବ୍ୟକ୍ତ – ଉଭୟ କେବଳ କଳ୍ପନା ମାତ୍ର ବୋଲି କହି ଗୌଡ଼ପାଦ ଏଠାରେ ଆପତ୍ତିର ଉତ୍ତର ଦେଇଛନ୍ତି। ଆମ ଜୀବନରେ ଅନୁଭୂତ ହେଉଥିବା ବ୍ୟକ୍ତ ଏବଂ ଅବ୍ୟକ୍ତର ଏହି ପ୍ରଭେଦ କେବଳ ଇନ୍ଦ୍ରିୟ ମାନଙ୍କର ଖେଳ ଯୋଗୁଁ। ଭିତରେ ଥିବା ଭାବନା ଅବ୍ୟକ୍ତ ଅବସ୍ଥାରେ ଥାଏ ଏବଂ ସେହି ଭାବନା ଜ୍ଞାନେନ୍ଦ୍ରିୟ ଦ୍ୱାରା ପ୍ରକାଶିତ ହେଲେ ବ୍ୟକ୍ତ ହୋଇଯାଏ । ସ୍ୱପ୍ନର ବିଷୟ ଦେଖିବାବେଳେ ସେସବୁ ଅସ୍ପଷ୍ଟ କୁହୁଡ଼ିଆ ଏବଂ ଢାଙ୍କି ହୋଇଥିବା ପରି ମନେ ହୋଇଥାଏ। କାରଣ ସ୍ୱପ୍ନଦ୍ରଷ୍ଟାର ବୁଝିପାରିବାର ଇନ୍ଦ୍ରିତୟ, ବୁଦ୍ଧିର ନିୟନ୍ତ୍ରଣ ନ ଥିବା ମନ ବ୍ୟତୀତ ଅନ୍ୟ କିଛି ନୁହେଁ ।

ଅନ୍ୟ ପକ୍ଷରେ, ତାର ବିପରୀତ ଜାଗ୍ରତ ଅବସ୍ଥାର ବିଷୟ ଖୁବ୍ ସ୍ୱଚ୍ଛ, ସ୍ପଷ୍ଟ ଏବଂ ବାସ୍ତବ ପରି ମନେ ହୋଇଥାଏ। ଏହାର କାରଣ ହେଲା, ଜାଗ୍ରତ ପୁରୁଷ ବ୍ୟବହାର କରୁଥିବା ଇନ୍ଦ୍ରିୟମାନଙ୍କର ବିଶେଷତ୍ୱ। ଶକ୍ତିଶାଳୀ, ଜାଗ୍ରତ ବୁଦ୍ଧି ଦ୍ୱାରା ପରିଚାଳିତ ଇନ୍ଦ୍ରିୟ ମାଧ୍ୟମରେ ସେ ବାହ୍ୟ-ଜଗତକୁ ଜାଣିଥାଏ । ସ୍ୱାଭାବିକ ଭାବେ ଏପରି ଏକ ଶକ୍ତିଶାଳୀ ବୁଦ୍ଧି ଦ୍ୱାରା ପରିଚାଳିତ ଇନ୍ଦ୍ରିୟ ଏକ ସ୍ପଷ୍ଟ ଏବଂ ପୂର୍ଣ୍ଣାଙ୍ଗ ଚିତ୍ର ପ୍ରଦାନ କରିବେ- ଯାହାକୁ ଆମେ ଅଧିକ ବାସ୍ତବ ବୋଲି ଭାବୁ। ବାସ୍ତବରେ ଉଭୟ ସ୍ୱପ୍ନାବସ୍ଥାର ବସ୍ତୁ ଏବଂ ଜାଗ୍ରତବସ୍ଥାର ବିଷୟ ସମାନ ଭାବରେ ସ୍ଥାୟୀ ମନର କଳ୍ପନା ମାତ୍ର ହୋଇଥିବାରୁ ଉଭୟେ ସମାନ ଭାବରେ ଭ୍ରାନ୍ତ।

**ଜୀବଂ କଳ୍ପୟତେ ପୂର୍ବଂ ତତୋ ଭାବାନ୍ ପୃଥକବିଧାନ୍।**
**ବାହ୍ୟାନାଧାତ୍ମିକାଂଶ୍ଚୈବ ଯଥାବିଦ୍ୟସ୍ତଥାସ୍ମୃତିଃ ॥୧୬॥**

ଜୀବମ୍ = ଜୀବ, କଳ୍ପୟତେ = (ଆତ୍ମା) ପ୍ରକ୍ଷେପଣ କରେ, କଳ୍ପନାକରେ, ପୂର୍ବମ୍ = ପ୍ରଥମ, ତତଃ = ତା'ପରେ, ଭାବାନ୍ = ବସ୍ତୁ, ପୃଥଗ୍ ବିଧାନ୍ = ବିଭିନ୍ନ ବସ୍ତୁ, ବାହ୍ୟାନ୍ = ବାହ୍ୟ, ଆଧାତ୍ମିକାନ୍ = ଆତ୍ମିକ, ବ୍ୟକ୍ତିଗତ; ଚ ଏବ = ଏବଂ ମଧ୍ୟ, ଯଥା = ଯେପରି ଅଛି, ବିଦ୍ୟଃ = ଜ୍ଞାନ, ତଥା = ସେହିପରି, ସ୍ମୃତିଃ = ସ୍ମୃତି ।

*ପ୍ରଥମେ ଜୀବଭାବନା ପ୍ରକ୍ଷେପିତ ହୁଏ । ତା'ପରେ ବିଭିନ୍ନ ବସ୍ତୁଗତ ଓ ବିଷୟଗତ ସତ୍ତାର କଳ୍ପନା ଅନୁଧାବନ କରେ। ଜ୍ଞାନ ଯେଉଁପରି, ତାର ସ୍ମୃତି ମଧ୍ୟ ସେହିପରି ॥୧୬॥*

ବର୍ତ୍ତମାନ ପ୍ରଶ୍ନ ଉଠେ, ବସ୍ତୁଗତ ଓ ବିଷୟଗତ ଜଗତରୁ ତିଆରି ସବୁକିଛି ଯଦି କଳ୍ପନାରୁ ତିଆରି ହୋଇଛି, ତେବେ ଏହି କଳ୍ପନାର ଉତ୍ସ କଣ ? ଭ୍ରାନ୍ତ ସ୍ୱପ୍ନ ଜଗତ ଅପେକ୍ଷା ଜାଗ୍ରତ ଅବସ୍ଥାର ଜଗତ ଅଧିକ ବାସ୍ତବ ନୁହେଁ – ଏହି ବୈଦାନ୍ତିକ ଯୁକ୍ତିକୁ

ପ୍ରତିବାଦୀ ବର୍ତ୍ତମାନ ଗ୍ରହଣ କରି ନେଇଥିବା ପରି ମନେହୁଏ । ସେ ବର୍ତ୍ତମାନ ବୈଦାନ୍ତିକ ଦୃଷ୍ଟିକୋଣ ବୁଝିବାର ଚେଷ୍ଟା କରୁଛି । ସେ ପଚାରୁଛି, "ହେ ବେଦାନ୍ତୀ, ତୁମେ ଯାହା କହୁଛ, ଆମର ବସ୍ତୁଗତ ଓ ବିଷୟଗତ ଜଗତ ଯଦି କେବଳ ମନର କଳ୍ପନା ମାତ୍ର, ସେହି କଳ୍ପନାର ଉତ୍ସ କଣ ? ଏହା କେବଳ ମନ ହୋଇ ନ ପାରେ, କାରଣ ମନ ନିର୍ଜୀବ, ଜଡ଼ ଏବଂ ମୃତ ବ୍ୟତୀତ ଅନ୍ୟ କିଛି ନୁହେଁ । ଏହା ଆତ୍ମା ମଧ୍ୟ ହୋଇ ନ ପାରେ, କାରଣ ଆତ୍ମା ହେଉଛି ଜ୍ଞାନ ଏବଂ ଜ୍ଞାନରେ ଭ୍ରାନ୍ତି(ଅଜ୍ଞାନ) ରହି ପାରିବ ନାହିଁ।

ପ୍ରତିବାଦର ଉତ୍ତର ଦେଇ ଗୌଡ଼ପାଦ କହୁଛନ୍ତି ଯେ, ପ୍ରଥମତଃ ଆତ୍ମା ଉପରେ ଜୀବାତ୍ମା ଭାବନାର କଳ୍ପନା କରା ଯାଇଥାଏ । ଏହି ଅହଂକୈନ୍ଦ୍ରିକ ଧାରଣା ପରିଚ୍ଛିନ୍ନତାର ଭାବରୁ ସୃଷ୍ଟି ହୁଏ ଯେତେବେଳେ ମନର ଉତ୍‌ଥାନ ହୁଏ ଏବଂ ଭାବନାର ପ୍ରବାହରେ ଚେତନାର ପ୍ରତିଫଳନ ହୁଏ । ଚେତନାର ମାଧ୍ୟମ- ଭାବନା ପ୍ରବାହ ଅନୁସାରେ ଅହଂ କୈନ୍ଦ୍ରିକ ସତ୍ତା ବାସ୍ତବ ପରି ପ୍ରତୀୟମାନ ହୋଇ ନିଜର ଦୃଷ୍ଟିକୋଣ, ସ୍ୱଭାବ, ସ୍ୱରୂପ ଏବଂ ବ୍ୟବହାରରେ ପରିବର୍ତ୍ତିତ ହୁଏ । ମନର ହ୍ରଦରେ ଆତ୍ମାଙ୍କର ପ୍ରତିଫଳନ ହେଉଛି ଅହଂ (ଜୀବ)। ଏହି ଜୀବ ହିଁ ଭୋକ୍ତା ଏବଂ କର୍ତ୍ତା, ସେ ହିଁ ବଦ୍ଧ ଏବଂ ମୁକ୍ତ, ସେ ହିଁ ସାଧକ ଏବଂ ସିଦ୍ଧ ।

ଆତ୍ମାଙ୍କ ଉପରେ ଏହି ଜୀବାତ୍ମା ଭାବନାକୁ ସ୍ୱୀକାର କଲେ, ସେହି ଭ୍ରାନ୍ତିରୁ ଅନେକ ଭ୍ରାନ୍ତି ସୃଷ୍ଟି ହୁଏ । ପ୍ରତ୍ୟେକଟି ଅଧିକତର ଖରାପ ହୁଏ ଏବଂ ଆମର ସ୍ୱସ୍ୱରୂପରୁ ଆମକୁ ଆହୁରି ଦୂରକୁ ନେଇଯାଏ । ଏସବୁର ଅନ୍ତିମ ବିଶ୍ଳେଷଣରେ ଜଣାପଡ଼େ ଯେ, ମନ ଏବଂ ଇନ୍ଦ୍ରିୟ ମାଧ୍ୟମରେ ଆମ ଭିତରେ ଥିବା ଜୀବାତ୍ମା ନାମ ଏବଂ ରୂପର ତା ନିଜର ଏକ ସ୍ୱପ୍ନ-ଜଗତକୁ ଦେଖେ। ଏସବୁ ମଣିଷର ପୂର୍ବର ବାସନା ଦ୍ୱାରା ସ୍ଥିର କରାଯାଇଥାଏ। ଯେପରି ଜ୍ଞାନ, ତାର ସ୍ମୃତି ମଧ୍ୟ ସେହିପରି ବୋଲି ଗୌଡ଼ପାଦ ସ୍ପଷ୍ଟ ଭାବରେ କହିବାବେଳେ ଏହି କଳ୍ପନା ବଡ଼ ସୂକ୍ଷ୍ମ ଭାବରେ ସୂଚୀତ ହୁଏ ।

ଏହା ଏକ ମହାନ ମନୋବୈଜ୍ଞାନିକ ସତ୍ୟ। ଏଥିରେ ଅନେକ ତାତ୍ପର୍ଯ୍ୟ ଗୋପନୀୟ ଭାବରେ ସଞ୍ଚିତ ହୋଇ ରହିଛି ।

ପରିଣାମତଃ, ଆମକୁ ଆମର କାମ ସହିତ ବାନ୍ଧି ଦେଉଥିବା ଜଞ୍ଜିରକୁ ବ୍ୟାଖ୍ୟା କରିବାକୁ ଗୋଟିଏ ଉଦାହରଣ ନିଆଯାଉ- ସିନେମା ବିଷୟରେ କେବେ ବି ଶୁଣି ନ ଥିବା ଗାଁ ର ଜଣେ ଲୋକର ଅନେକ କିଛି କାମନା ରହିଛି । କିନ୍ତୁ ତାର କାମନା ଭିତରେ ସିନେମା ଯିବାର ଇଚ୍ଛା କଦାପି ନ ଥିବ। ଯେପରି କି ଦିଲ୍ଲୀରେ ରହି ଆମର ଅନେକ ଇଚ୍ଛା ଥାଇପାରେ, କିନ୍ତୁ ସ୍କେଟିଙ୍ଗ୍ କରିବାର ଇଚ୍ଛା ମୋଟେ ନ ଥିବ।

ଗାଁ ର ସେହି ଲୋକଟିକୁ ଯଦି ସହରକୁ ଅଣାଯିବ ଏବଂ ସିନେମା କଥା ସେ ବାରମ୍ବାର ଶୁଣିବ, ତେବେ ସିନେମା ବିଷୟରେ ତାର ଜ୍ଞାନ ହେବ । ତା'ପରେ ଏହା ଅନୁଭବ କରିବା ପାଇଁ ସେ ସିନେମା ହଲକୁ ଯିବ ଏବଂ ଏହାର "ମନୋରଞ୍ଜନ ଜ୍ଞାନ"ର ଧାରଣା ନେଇ ଫେରିବ। ତା'ପରେ "ସିନେମା ଜ୍ଞାନ" ଦ୍ୱାରା ଉତ୍ସାହିତ ହୋଇ, ଆନନ୍ଦ ଲାଭ କରିବା ପାଇଁ ସେ ସିନେମା ଘରକୁ ଯିବ। ଏହିପରି ଭାବରେ ଅନୁଭୂତ ଜ୍ଞାନ ଦ୍ୱାରା ତାର ସ୍ମୃତି ନିୟନ୍ତ୍ରିତ ଏବଂ ପରିଚାଳିତ ହେବ।

ଅଚିରେ ସେ କାରଣ ଏବଂ କାର୍ଯ୍ୟ ଭାବରେ ସିନେମା ଯିବା ଏବଂ ସନ୍ତୋଷ ଲାଭ କରିବାକୁ ଯୋଗ କରି ଦେବ। ପରେ ଯେତେବେଳେ ସେ କାର୍ଯ୍ୟଟି (ସନ୍ତୋଷ) ପାଇବାକୁ ଚାହିଁବ, କାରଣ (ସିନେମା ଦେଖିବା) ଆଣିବାକୁ ଚେଷ୍ଟା କରିବ ଏବଂ ସେଥିରୁ ଆଶାନୁରୂପ ପରିଣାମ (ସନ୍ତୋଷ) ଦେଖାଦେବା ପର୍ଯ୍ୟନ୍ତ କାରଣକୁ ଆଣିବା ପାଇଁ ଚେଷ୍ଟା କରି ଚାଲିଥିବ।

ଉତ୍ତମ ଖାଦ୍ୟ ଆମକୁ କିପରି ସନ୍ତୋଷ ଦେବ, ସେ ସମ୍ବନ୍ଧରେ ଆମର ଧାରଣା ଥାଏ। ସେହିପରି ଖାଦ୍ୟ ତିଆରି କରି ସନ୍ତୋଷ ଲାଭ କରିବା ପାଇଁ 'ଖାଦ୍ୟର ଜ୍ଞାନ'ଏବଂ 'ସନ୍ତୋଷ'ର ଜ୍ଞାନର ଧାରଣା କଠୋର ପରିଶ୍ରମ କରି, ଉପାର୍ଜନ କରି, ସଞ୍ଚୟ କରି, ଖାଦ୍ୟ ପ୍ରସ୍ତୁତ କରିବା ପାଇଁ ଆମକୁ ପ୍ରୋତ୍ସାହିତ କରେ । ଯେକୌଣସି ବିଷୟର କାମନା-ପ୍ରଣୋଦିତ କାର୍ଯ୍ୟ ଏବଂ ପ୍ରତ୍ୟେକ ବିଷୟର କାମନା ପାଇଁ ଏହା ସତ୍ୟ। ବାସ୍ତବରେ ଯେପରି ଜ୍ଞାନ, ତାର ସ୍ମୃତି ମଧ୍ୟ ସେପରି କଥାଟି ସ୍ପଷ୍ଟ। କୌଣସି ଜିନିଷର ଜ୍ଞାନ ନ ରହିଲେ ତାର ସ୍ମୃତି ହେବ ନାହିଁ । ଆମର ସ୍ମୃତି ଅନୁସାରେ ଆମର ଜ୍ଞାନ ହୋଇଥାଏ ।

**ଅନିଶ୍ଚିତା ଯଥା ରଜ୍ଜୁରନ୍ଧକାରେ ବିକଳ୍ପିତା ।**

**ସର୍ପଧାରାଦିଭିର୍ଭାବୈସ୍ତଦ୍ୱଦାତ୍ମା ବିକଳ୍ପିତଃ ॥୧୭॥**

ଅନିଶ୍ଚିତା = ସ୍ପଷ୍ଟଭାବେ ଜାଣିହୋଇ ନ ଥାଏ, ଯଥା = ଯେପରି, ରଜ୍ଜୁଃ = ଖଣ୍ଡେ ଦଉଡ଼ି, ଅନ୍ଧକାରେ = ଅନ୍ଧାରରେ, ବିକଳ୍ପିତା = କଳ୍ପନା କରାଯାଏ, ସର୍ପ-ଧାରା-ଆଦିଭିଃ = ଗୋଟିଏ ସାପ ପରି, ପାଣିର ଗୋଟିଏ ଧାର ପରି, ଭବୈଃ = ନାନା ପ୍ରକାର ଜିନିଷ, ତଦ୍‌ବତ୍ = ସେହିପରି ଭାବରେ, ଆତ୍ମା = ଆତ୍ମା, ବିକଳ୍ପିତଃ = କଳ୍ପନା କରାଯାଏ ।

*ଖଣ୍ଡେ ଦଉଡ଼ିର ପ୍ରକୃତ ସ୍ୱରୂପ ଜଣା ନ ଥିଲେ ଅନ୍ଧାରରେ ଗୋଟିଏ ସାପ, ପାଣିର ଧାରଟିଏ ଇତ୍ୟାଦି ପରି ଦଉଡିକୁ କଳ୍ପନା କରାଯାଏ । ସେହିପରି ଆତ୍ମାଙ୍କୁ ମଧ୍ୟ ବିଭିନ୍ନ ଭାବରେ କଳ୍ପନା କରାଯାଏ ॥୧୭॥*

ଜୀବ-ଭାବର କଳ୍ପନା ହିଁ ଅନ୍ୟ ସମସ୍ତ କଳ୍ପନା ଏବଂ ଭାବନାର ଉତ୍ସ ବୋଲି କୁହାଯାଏ। ତାହା ହେଲେ ଜୀବ-ଭାବର କାରଣ କଣ ?

ବେଦାନ୍ତର ବିଖ୍ୟାତ ଉଦାହରଣ ଦ୍ୱାରା ଏହାର ଉତ୍ତର ଦିଆ ଯାଇଛି । ଖଣ୍ଡେ ଦଉଡ଼ିର ସ୍ୱରୂପ ବିଷୟରେ ଆମର ନିର୍ଦ୍ଦିଷ୍ଟ ଜ୍ଞାନ ନ ଥିଲେ, ଅନ୍ଧାରରେ ଆମେ ତାକୁ ସାପଟିଏ ବୋଲି ଭାବୁ । ବର୍ତ୍ତମାନ ସାପର ରୂପ ଏବଂ ଆକାର ହେଉଛି ମନର କଳ୍ପନା ମାତ୍ର, ଏବଂ ଦଉଡ଼ିର ବାସ୍ତବତା ଉପରେ ଏହି ଭାବନାର ଅଧ୍ୟାସ କରାଯାଇଥାଏ । ତେଣୁ ଏହା ସାପ ପରି ଦେଖାଯିବାବେଳେ, ସେହି ଦଉଡ଼ି ଅନ୍ୟ ଜଣକୁ ବାଡ଼ି ଖଣ୍ଡେ ଏବଂ ତୃତୀୟ କାହାକୁ ପାଣି ଧାରଟିଏ, ଚତୁର୍ଥ କାହାକୁ ଭୂମିରେ ଫାଟଟିଏ ପରି ଦେଖା ଯାଇପାରେ । ଦଉଡ଼ି ସମ୍ବନ୍ଧୀୟ ଅଜ୍ଞାନ ହେଉଛି ଏହି ସବୁ କଳ୍ପନାର କାରଣ । ଦଉଡ଼ି ସମ୍ବନ୍ଧରେ ଆମେ ସଠିକ୍ ଭାବେ ଜାଣିଥିଲେ ଏହା ଅନ୍ୟ ସବୁ ବସ୍ତୁ ବୋଲି ଆମର ମିଥ୍ୟା ଜ୍ଞାନ ହେବ ନାହିଁ ।

ସେହିପରି ଆତ୍ମାଙ୍କୁ ଜୀବ, ପ୍ରାଣୀ, ମନ, ବୁଦ୍ଧି, ଶରୀର ଇତ୍ୟାଦି ନାନା ଭାବରେ କଳ୍ପନା କରାଯାଇଥାଏ । ସଞ୍ଚିତ ହୋଇ ରହିଥିବା ଅଜ୍ଞାନରେ ଆତ୍ମାଙ୍କ ଉପରେ ଆମେ ସୁଖଦୁଃଖ, ଜ୍ଞାନ-ଅଜ୍ଞାନ, ସଫଳତା-ବିଫଳତା, ଆଶା-ହତାଶା ଇତ୍ୟାଦି ଗୁଣର ଅଧ୍ୟାସ କରିଥାଉ। ବାସ୍ତବରେ ଶୁଦ୍ଧ ଚୈତନ୍ୟ ଆତ୍ମାଙ୍କଠାରେ ଏସବୁ କୌଣସି ଗୁଣ ନାହିଁ । ଆତ୍ମାଙ୍କ ଉପରେ ଏହା କେବଳ ଅଧ୍ୟାସ ମାତ୍ର।

ସର୍ବବ୍ୟାପୀ ଆତ୍ମାଙ୍କର ଶୁଦ୍ଧ ସ୍ୱରୂପର ଅଜ୍ଞାନ ଯୋଗୁଁ ଏସବୁ ମିଥ୍ୟା ଧାରଣା ଦେଖା ଦେଇଥାଏ । ସବୁ ଉପନିଷଦ୍‌ମାନଙ୍କରେ ଏହା ହେଉଛି ଅଭ୍ରାନ୍ତ ସିଦ୍ଧାନ୍ତ ଏବଂ ସେମାନେ ଏହାକୁ ବାରମ୍ବାର କହିଛନ୍ତି । ଆତ୍ମାଙ୍କୁ ସ୍ୱୟଂର ଶାଶ୍ୱତ ସ୍ୱରୂପରେ ଥରେ ଜାଣିବା ପରେ ଜନ୍ମ, ବୃଦ୍ଧି, ରୋଗ, କ୍ଷୟ, ମୃତ୍ୟୁ ଇତ୍ୟାଦି ଧାରଣା କଦାପି ଆତ୍ମାଙ୍କର ନୁହେଁ, ବରଂ ତାଙ୍କ ଉପରେ ଅଧ୍ୟାସ କରାଯାଇଥିବାର  ଜଣା ପଡ଼ିବ।

ମସୃଣ ତ୍ୱଚା, ଚକଚକିଆ ଶରୀର, ଭୟଙ୍କର ଫଣା ଏବଂ ବିଷାକ୍ତ ଜିଭ - ଏସବୁ ହେଉଛି ଅଧ୍ୟାସ କରା ଯାଇଥିବା ସାପର, ଦଉଡ଼ିର ନୁହେଁ । ଦଉଡ଼ିକୁ ସାପ ଭାବରେ ଦେଖିଲେ ଦଉଡି ତିଳେମାତ୍ର ବିରୂପ ହୁଏ ନାହିଁ।

**ନିଷ୍ଚିତାୟାଂ ଯଥା ରଜ୍ଜ୍ୱାଂ ବିକଲ୍ପୋ ବିନିବର୍ତତେ ।**

**ରଜ୍ଜୁରେବେତି ଚାଦ୍ୱୈତଂ ତଦ୍‌ବତ୍ ଆତ୍ମା ବିନିଶ୍ଚୟଃ ॥୧୮॥**

ନିଷ୍ଚିତାୟାମ୍ = ବାସ୍ତବସ୍ୱରୂପ ନିଶ୍ଚିତ ହୋଇଥାଏ, ଯଥା = ଯେପରି, ରଜ୍ଜ୍ୱାମ୍ = ଦଉଡ଼ି, ବିକଲ୍ପ = ବିକଳ୍ପ (ଭ୍ରାନ୍ତି), ବିନିବର୍ତତେ = ଅଦୃଶ୍ୟ ହୋଇଯାଏ, ରଜ୍ଜୁ ଏବ = କେବଳ ଦଉଡ଼ି ହିଁ ରହେ, ଇତି = ତାହା, ଚ ଅଦ୍ୱୈତମ୍ = ଏବଂ ଅଦ୍ୱୈତ, ତଦ୍‌ବତ୍ = ସେହିପରି, ଆତ୍ମା = ଆତ୍ମା, ବିନିଶ୍ଚୟଃ = ଶୁଦ୍ଧ ଜ୍ଞାନ, ଦୃଢ଼ ବିଶ୍ୱାସର ।

*ଥରେ ଦଉଡ଼ିର ସ୍ୱରୂପ ବୁଝି ପାରିଲେ, ତା ସମ୍ବନ୍ଧରେ ଅନ୍ୟ ସବୁ ମିଥ୍ୟା ଧାରଣା ଦୂର ହୁଏ ଏବଂ ଏହା ଏକ ଅପରିବର୍ତ୍ତନୀୟ ଦଉଡ଼ି ବୋଲି ଦୃଢ଼ ବିଶ୍ୱାସ ହୁଏ । ଶୁଦ୍ଧ ଜ୍ଞାନ, ଆତ୍ମାଙ୍କର ସ୍ୱରୂପ ମଧ୍ୟ ସେହିପରି ॥୧୮॥*

ଦଉଡ଼ିର ସ୍ୱରୂପ ସମ୍ବନ୍ଧୀୟ ଭ୍ରାନ୍ତି ଥିବା ପର୍ଯ୍ୟନ୍ତ ତାହାକୁ ଗୋଟିଏ ସାପ, ଖଣ୍ଡେ ବାଡ଼ି, ପାଣି ଧାରଟିଏ କିମ୍ବା ଭୂଇଁରେ ଗୋଟିଏ ଫାଟ ବୋଲି ମିଥ୍ୟା ଜ୍ଞାନ ହୋଇଥାଏ । ମିଥ୍ୟା ଜ୍ଞାନ ବିଷୟରେ ବୁଝିପାରି, ଦଉଡ଼ିର ଜ୍ଞାନ ଲାଭ କରି ତାହାକୁ ଆାବିଷ୍କାର କଲେ ତା' ଉପରେ କରାଯାଇଥିବା ଅଧ୍ୟାସ ମୂହୁର୍ତ୍ତକରେ ଦୂର ହୋଇଥାଏ ।

ସେହିପରି, ଆତ୍ମାଙ୍କର ଆବିଷ୍କାର(ଉପଲବ୍ଧି)ରେ ତାଙ୍କ ଉପରେ କରାଯାଇଥିବା ଅଧ୍ୟାସ କୁହୁକ କାଠିରେ ଛୁଇଁ ଦେବାପରି ଉଭେଇ ଯାଏ । ଇନ୍ଦ୍ରିୟମାନଙ୍କର ବ୍ୟବହାର ତଥା ଶରୀର, ମନ, ବୁଦ୍ଧି ଇତ୍ୟାଦିରୁ ଦୃଷ୍ଟି ଅପସାରଣ କଲେ ଆମର ଚେତନାର ଉନ୍ମୀଳନ ହୁଏ । ଜ୍ଞାନ ସେହି ମୁହୂର୍ତ୍ତରେ ନିଜକୁ ନିଜେ ଉଦ୍ଭାସିତ କରେ ।

ଜୀବନର ଏହି ଶାଶ୍ୱତ, ଦିବ୍ୟ ସତ୍ୟ ଆମ ଜୀବ-ଭାବନାର ଅଧିଷ୍ଠାନ ବୋଲି ଥରେ ଜଣାପଡ଼ିଲେ, ଆମ ଭିତରେ ଥରେ ଆବିଷ୍କୃତ ହେଲେ, ମଣିଷର ନିଜ ସମ୍ବନ୍ଧରେ ବା ସାଧାରଣ ଭାବରେ ଦେଖା ଯାଉଥିବା ବହୁବିଧ ଜଗତ ସମ୍ବନ୍ଧରେ ଅଜ୍ଞାନ ରହିବ ନାହିଁ ।

**ପ୍ରାଣାଦିଭିରନନ୍ତୈଶ୍ଚ ଭାବୈରେତୈର୍ବିକଳ୍ପିତଃ ।**
**ମାୟୈଷା ତସ୍ୟ ଦେବସ୍ୟ ଯୟା ସଂମୋହିତଃ ସ୍ୱୟମ୍ ॥୧୯॥**

ପ୍ରାଣ-ଆଦିଭିଃ = ପ୍ରାଣ ପରି ଇତ୍ୟାଦି, ଅନନ୍ତୈଃ ଚ = ଏବଂ ଅସଂଖ୍ୟ, ଭାବୈଃ = ବିଭିନ୍ନ ପ୍ରକାରର, ଏତୈଃ = ଏହି ସବୁ, ବିକଳ୍ପିତଃ = କଳ୍ପନା କରାଯାଏ, ମାୟା = ମାୟା, ଅଜ୍ଞାନ, ଏଷା = ଏହା, ତସ୍ୟ = ତାହା, ଦେବସ୍ୟ = ଆତ୍ମ, ଯୟା = ଯାହାଦ୍ୱାରା, ସଂମୋହିତଃ = ମୋହିତ ହୋଇଥିବା ପରି ମନେ ହୋଇଥାଏ, ସ୍ୱୟମ୍ = ସେ ନିଜେ ।

*ପ୍ରାଣ ଇତ୍ୟାଦି ଭାବରେ ଆତ୍ମାଙ୍କୁ ଅସଂଖ୍ୟ ପ୍ରକାରରେ କଳ୍ପନା କରାଯାଇଥାଏ। ସ୍ୱପ୍ରକାଶିତ ଆତ୍ମାଙ୍କର ମାୟା ଯୋଗୁଁ ଏହା ହୋଇଥାଏ, ଯାହା (ମାୟା) ଦ୍ୱାରା, ସତେ ଯେମିତି ସେ ନିଜେ ମୋହିତ ହୋଇଯାଆନ୍ତି ॥୧୯॥*

ଭାରତରେ, ବେଦାନ୍ତ ବ୍ୟତୀତ ଅନେକ ଦର୍ଶନ ବାହ୍ୟ, ବହୁବିଧ ଜଗତର ବାସ୍ତବତାକୁ ବିଶ୍ୱାସ କରନ୍ତି । ତେଣୁ, ସୃଷ୍ଟି କିପରି ହେଲା କାହିଁକି ହେଲା ଏବଂ କେଉଁଠୁ ହେଲା ବୋଲି ପ୍ରତ୍ୟେକ ଦାର୍ଶନିକ ବ୍ୟାଖ୍ୟା କରିବାକୁ ବାଧ ହୋଇଥାନ୍ତି।

ଅତଏବ, ସୃଷ୍ଟି ଅନୁଭୂତି ଏବଂ ଆତ୍ମୋପଲବ୍ଧି ଉପାୟର ସିଦ୍ଧାନ୍ତ ବ୍ୟତୀତ କୌଣସି ଦର୍ଶନ ସମ୍ପୂର୍ଣ୍ଣ ନୁହେଁ । ବିଭିନ୍ନ ଦର୍ଶନର ଚିନ୍ତାଧାରା ଏବଂ ସେମାନଙ୍କର ବ୍ୟାଖ୍ୟାର ନାନାପ୍ରକାର ଉପାୟ ଦେଖାଇବା ପାଇଁ ଗୋଟିକ ପରେ ଗୋଟିଏ କରି ସବୁ ସୃଷ୍ଟିବାଦ ଦିଆ ଯାଇଛି । ସତ୍ୟର ପରିପ୍ରେକ୍ଷୀରେ ଏ ସବୁ ସୃଷ୍ଟିବାଦ କିପରି ଗ୍ରହଣଯୋଗ୍ୟ ନୁହଁ ତାହା ନିମ୍ନ ବିବରଣୀରୁ ଜାଣିହେବ ।

ଦ୍ୱୈତବାଦୀମାନେ କଳ୍ପନା କରିଛନ୍ତି ଯେ, ନିର୍ବିକଳ୍ପ ସତ୍ୟ, ପ୍ରାଣ, ପୁରୁଷ ଇତ୍ୟାଦି ଭାବରେ ବିଭିନ୍ନ ପ୍ରକାରର ଆକାର ଏବଂ ରୂପ ନେଇଛନ୍ତି । ଅନେକଙ୍କ ମତରେ ପ୍ରାଣ ହେଉଛି ପରମ-ସତ୍ୟଙ୍କର କ୍ରିୟାଶୀଳ ଦିଗ । ଏହିଥିରୁ ହିଁ ଜଗତର ସମସ୍ତ ଜଡ଼ ପଦାର୍ଥ ସୃଷ୍ଟି ହୋଇଛନ୍ତି। ନିର୍ବିକଳ୍ପ ସତ୍ୟରେ ଥିବା ଚେତନ ତତ୍ତ୍ୱ-ପୁରୁଷ ସମସ୍ତ ଚେତନ ଜୀବଙ୍କ ଜଗତ ସୃଷ୍ଟି କରିଛନ୍ତି। ଏହିପରି ଭାବରେ ନିର୍ବିକଳ୍ପ ସତ୍ୟଙ୍କୁ ନେଇ ଦ୍ୱୈତବାଦୀମାନେ ହଜାର ହଜାର କଳ୍ପନା କରିଛନ୍ତି । ବେଦାନ୍ତୀମାନେ ଗୋଟିଏ ମାତ୍ର ବ୍ୟାଖ୍ୟା କରନ୍ତି। ତାହା ହେଲା ବହୁବିଧ ଜଗତ ହେଉଛି ଆମର ଅଜ୍ଞାନର ଫଳ । ଏହା ଦ୍ୱାରା, ସ୍ୱୟଂ ଆତ୍ମା ହୋଇ ବି ଆମେ ନିଜେ ନିଜକୁ ମାୟା ଜାଲରେ ଛନ୍ଦି ପକାଇଛୁ ।

ବାସ୍ତବରେ ଉପନିଷଦ୍‌ରେ ମଧ୍ୟ, ସୃଷ୍ଟିବାଦର ହଜାର ହଜାର ବ୍ୟାଖ୍ୟା ଦେଖିବାକୁ ମିଳେ। କେତେକ ଶ୍ରୁତିରେ କେବଳ ତିନୋଟି ତତ୍ତ୍ୱର ଉଲ୍ଲେଖ ଥିବାବେଳେ ଅନ୍ୟ କେତେକରେ ପାଞ୍ଚୋଟି ତତ୍ତ୍ୱ ରହିଛି। ଆଉ କେତେକରେ କୁହାଯାଇଛି ଯେ, ନିର୍ବିକଳ୍ପଙ୍କଠାରେ ଏକ ବିକ୍ଷେପ ସହିତ ସୃଷ୍ଟିର ଆରମ୍ଭ ହେଲା ଏବଂ ବିବର୍ତ୍ତନର ଧାରାରେ ଆଗେଇ ଚାଲିଲା । ଅନ୍ୟ କେତେକ ଯାଗାରେ ଅନେକ ତାତ୍‌କ୍ଷଣିକ ପଦ୍ଧତିର ବ୍ୟାଖ୍ୟା କରାଯାଇଛି ।

ସୃଷ୍ଟିକୁ ମାୟା ଏବଂ ଅସଂଖ୍ୟ ପ୍ରକାରର ଅଭିବ୍ୟକ୍ତି ବୋଲି ବିଚାର କରୁଥିବା ରୀତିର ବାସ୍ତବରେ କୌଣସି ପ୍ରାଧାନ୍ୟ ନାହିଁ । ତଥାପି, ସାଧକର ସାଧନାର ପ୍ରାଥମିକ ଅବସ୍ଥାରେ କିଛି ପ୍ରକାରର ବ୍ୟାଖ୍ୟା ଦେବାକୁ ହୋଇଥାଏ । ତେଣୁ, ସାଧକର ମାନସିକତାର ଗଠନ ଅନୁସାରେ ବହୁବିଧ ଜଗତର ସୃଷ୍ଟିର ଏକ ବ୍ୟାଖ୍ୟା ଦିଆଯାଇଛି । ତା'ର କ୍ରମୋନ୍ନତିର ସେହି ଅବସ୍ଥାରେ ଏହା ତା'ପାଇଁ ଅତ୍ୟନ୍ତ ବାସ୍ତବ। ପରିଶେଷରେ ସବୁ ଉପନିଷଦ୍ ସାଧକମାନଙ୍କୁ ନିର୍ବିକଳ୍ପ ସତ୍ୟଙ୍କ ସ୍ତରକୁ ନେଇ ଯାଆନ୍ତି। ଯେଉଁଠାରୁ ବହୁବିଧ ଜଗତର ସୃଷ୍ଟି ମାୟା ଏବଂ କଳ୍ପନା ବୋଲି ଜଣା ପଡ଼ିଯାଏ ।

ପରବର୍ତ୍ତୀ ଶ୍ଳୋକଠାରୁ ଆମେ ସୃଷ୍ଟିର ପ୍ରାୟ ୩୫ଟି ବିଭିନ୍ନ ପ୍ରକାରର ଅଭିମତ ପାଇବା। ଗୌଡ଼ପାଦଙ୍କ ସମୟରେ ସେସବୁ ବହୁଳ ଭାବରେ ଥିଲା । ସେସବୁ ଆଦୌ ଦାର୍ଶନିକ ଦୃଷ୍ଟିକୋଣ ନୁହେଁ । ତା ମଧ୍ୟରୁ କେତେକ ହେଉଛି ସେ ସମୟର ଜନପ୍ରିୟ ଧାରଣା ମାତ୍ର । ସେ ସବୁକୁ କ୍ରମ ଅନୁସାରେ ସଜାଇବାରେ ଗୌଡ଼ପାଦ ଟିକିଏ ହେଲେ ଅବହେଳା କରିନାହାନ୍ତି। ତାଙ୍କ ସମୟର ପ୍ରଚଳିତ ଧାରଣାକୁ ସୁବିଧାଜନକ ଭାବେ ସେ ସଙ୍କଳିତ କରି ସମ୍ଭବତଃ ତା'ର ହିଁ ଉଲ୍ଲେଖ କରିଛନ୍ତି ।

କିନ୍ତୁ ତାତ୍ପର୍ଯ୍ୟ ଏବଂ ପ୍ରାଧାନ୍ୟ ବିହୀନ ଏହି ଅଂଶ ସମ୍ବନ୍ଧରେ ମତାମତ ଦେବାପାଇଁ ଶ୍ରୀ ଶଙ୍କରାଚାର୍ଯ୍ୟ ମଧ୍ୟ ତାଙ୍କ ବ୍ୟାଖ୍ୟାରେ ଅବହେଳା କରି ନାହାଁନ୍ତି ।

ଯାହା ହେଲେ ବି ଆମ ସମୟର ବୌଦ୍ଧିକ ସ୍ତରରେ କୌତୂହଳୀ ବ୍ୟକ୍ତି ଏହା ପାଠ କରିବାକୁ ଆଗ୍ରହୀ ହେବେ। ତେଣୁ ଉପସ୍ଥାପିତ କରାଯାଇଥିବା ବିଭିନ୍ନ ପ୍ରକାର ମତକୁ ନିକଟରୁ ଜାଣିବା ପାଇଁ ଆମେ ଚେଷ୍ଟା କରିବା। ଏହା ହୁଏତ ଗୋଟିଏ ଧାରଣା ଦେଇପାରେ ଯେ, ତତ୍‌କାଳୀନ ସମାଜକୁ ପ୍ରତାରଣା କରିବା ପାଇଁ ଏବଂ ଲୋକଙ୍କର ବିଶ୍ୱାସକୁ ନେଇ ଖେଳିବା ପାଇଁ କେତେକ ଉର୍ବର ମସ୍ତିଷ୍କ ଦ୍ୱାରା ଆଧ୍ୟାତ୍ମିକ ସାହିତ୍ୟ ରାତାରାତି ସୃଷ୍ଟି ହୋଇ ନାହିଁ। ଅନ୍ୟପକ୍ଷରେ, ପିଢ଼ି ପରେ ପିଢ଼ି, ଗଭୀର ପାଣ୍ଡିତ୍ୟ ଏବଂ

ତୀବ୍ର ଧୀ-ସମ୍ପନ୍ନ ବ୍ୟକ୍ତି ଜୀବନର ସମସ୍ୟାକୁ ଲକ୍ଷ୍ୟ କରି ବିଶ୍ଳେଷଣ କରି ସେମାନଙ୍କର ସାରା ଜୀବନ ବିତାଇ ଦେଇଛନ୍ତି- ଜୀବନର ଅର୍ଥ ଏବଂ ତାର ଲକ୍ଷ୍ୟ ସମ୍ବନ୍ଧରେ ଶେଷ-ସିଦ୍ଧାନ୍ତରେ ପହଞ୍ଚିବା ପାଇଁ ।

**ପ୍ରାଣ ଇତି ପ୍ରାଣବିଦୋ ଭୂତାନୀତି ଚ ତତ୍‌ବିଦଃ ।**
**ଗୁଣା ଇତି ଗୁଣବିଦସ୍ତତ୍ତ୍ୱାନୀତି ଚ ତତ୍‌ବିଦଃ ॥୨୦॥**

ପ୍ରାଣଃ ଇତି = ପ୍ରାଣ, ପ୍ରାଣବିଦଃ = ପ୍ରାଣର ଜ୍ଞାତା, ଭୂତାନି ଇତି = ଭୂତ ହେବାକୁ ଥିବା, ଚ ତତ୍ ବିଦଃ = ଏବଂ ସେହି (ଭୂତମାନଙ୍କର ଜ୍ଞାତା), ଗୁଣାଃ ଇତି = ଗୁଣ ହେବାକୁ ଥିବା, ଗୁଣ ବିଦଃ = ଗୁଣମାନଙ୍କର ଜ୍ଞାତା, ତତ୍ତ୍ୱାନି ଇତି = ତତ୍ତ୍ୱ ହେବାକୁ ଥିବା, ଚ ତତ୍ ବିଦଃ = ଏବଂ ତାହାର (ତତ୍ତ୍ୱମାନଙ୍କର) ଜ୍ଞାତା ।

*ପ୍ରାଣର ଜ୍ଞାତା, ଆତ୍ମାଙ୍କୁ ପ୍ରାଣ କହନ୍ତି, ଭୂତମାନଙ୍କର ଜ୍ଞାତା ଆତ୍ମାଙ୍କୁ ଭୂତ କହନ୍ତି, ଏବଂ ଗୁଣର ଜ୍ଞାତା ଆତ୍ମାଙ୍କୁ ଗୁଣ କହନ୍ତି, ଏବଂ ତତ୍ତ୍ୱର ଜ୍ଞାତା ଆତ୍ମାଙ୍କୁ ତତ୍ତ୍ୱ କହନ୍ତି ॥୨୦॥*

ଦ୍ୱୈତବାଦୀମାନେ ସୃଷ୍ଟିର ଯେଉଁ ବିଭିନ୍ନ ସିଦ୍ଧାନ୍ତର ବିଷୟରେ କହନ୍ତି ଏବଂ ସତ୍ୟଙ୍କ ବିଷୟରେ ଅସଂଖ୍ୟ ଧାରଣା ଦିଅନ୍ତି, ଗତ ଶ୍ଳୋକରେ ପ୍ରତିଶ୍ରୁତି ଅନୁସାରେ ଗୌଡ଼ପାଦ ବର୍ତ୍ତମାନ ତା'ର ହିସାବ ଦେଉଛନ୍ତି । ବହୁବିଧ ପ୍ରପଞ୍ଚର ବ୍ୟାଖ୍ୟା କରିବା ପାଇଁ ଏଠାରେ ସମୁଦାୟ ୩୫ଟି ସିଦ୍ଧାନ୍ତ ଅଛି ।

ସମଗ୍ର ଜଗତର ବିଭିନ୍ନ ନାମ ଏବଂ ରୂପ ପଛରେ ପ୍ରାଣ ହିଁ ସତ୍ୟ ବୋଲି ବୈଶେଷିକ ମାନେ ବିଶ୍ୱାସ କରନ୍ତି । ଏଠାରେ ପ୍ରାଣ ମାନେ ମଣିଷ ଶରୀରକୁ ପୋଷଣ କରୁଥିବା ନିଃଶ୍ୱାସ-ପ୍ରଶ୍ୱାସର ପବନ ନୁହେଁ। "ସାମଗ୍ରିକ ମନ" ହିରଣ୍ୟଗର୍ଭ(ସୃଷ୍ଟିକର୍ତ୍ତା) ବା ବେଦାନ୍ତରେ ଯାହାଙ୍କୁ ସୂତ୍ରାତ୍ମା କୁହାଯାଏ, ଏଠାରେ ତାହା ହିଁ ତା'ର ଦାର୍ଶନିକ ତାତ୍ପର୍ଯ୍ୟ ।

ଏହି ହିରଣ୍ୟଗର୍ଭ ବା ସାମଗ୍ରିକ ମନକୁ ଅନେକ ଏତେ ବିଶ୍ୱାସ କରନ୍ତି ଯେ, ପରମସତ୍ୟ ଭାବରେ ତାଙ୍କୁ ଉପାସନା କରନ୍ତି ଏବଂ ହିନ୍ଦୁ ଦର୍ଶନରେ ଏମାନଙ୍କୁ 'ହିରଣ୍ୟଗର୍ଭକ' କୁହାଯାଏ।

ପ୍ରତ୍ୟେକ ଶ୍ଳୋକରେ ଚାରିଗୋଟି ବିଭିନ୍ନ ସିଦ୍ଧାନ୍ତକୁ ନିର୍ଦ୍ଦେଶ କରିବା ହେଉଛି ଗୌଡ଼ପାଦଙ୍କର ନିପୁଣତା । ତେଣୁ ପ୍ରତ୍ୟେକ ଧାଡ଼ିରେ ଯୋଡ଼ିଏ ସିଦ୍ଧାନ୍ତ ଥିବାବେଳେ, ପ୍ରତ୍ୟେକ ଧାଡ଼ିର ପ୍ରତ୍ୟେକ ପାଦ ଏକ ଭିନ୍ନ ସିଦ୍ଧାନ୍ତ ଦର୍ଶାଉଥିବାର ଆମେ ଦେଖିବାକୁ ପାଉ।

ତେଣୁ, ଏହି ଶ୍ଳୋକରେ ପ୍ରଥମ ଧାଡ଼ିର ଦ୍ୱିତୀୟ ପାଦରେ ପହଞ୍ଚିଲେ ସୃଷ୍ଟି ହୋଇଥିବା ବହୁବିଧ ଜଗତ ପଛରେ ଥିବା ଚାର୍ବାକ (ବସ୍ତୁବାଦୀ) ସିଦ୍ଧାନ୍ତର ମୌଳିକତା ଦେଖିବାକୁ ମିଳେ। ସେହି ମତ ଅନୁସାରେ ସମଗ୍ର ଜଗତ ଭୂତରୁ ଉଦ୍ଭବ ହୋଇଛି । ବସ୍ତୁବାଦୀଙ୍କର ଏହି ନିର୍ଦ୍ଦିଷ୍ଟ ଗୋଷ୍ଠୀକୁ 'ଲୋକାୟତ' ଭାବରେ ଏକ ବିଶେଷ ନାମ ଦିଆଯାଇଛି । ଲକ୍ଷ୍ୟ କରାଯାଇପାରେ ଯେ, ସେମାନଙ୍କର ସ୍ୱତନ୍ତ୍ର ମୂଳ ଧାରଣାରେ ଆକାଶ ପରି ସୂକ୍ଷ୍ମ ପଦାର୍ଥକୁ ସ୍ୱୀକାର କରିବା ପାଇଁ ସେମାନେ ରାଜି ନୁହଁନ୍ତି। ତେଣୁ ଲୋକାୟତମାନଙ୍କ ପାଇଁ ଜଗତ ହେଉଛି ଚାରିଗୋଟି ଭୂତ (ତତ୍ତ୍ୱ)- ମରୁତ (ବାୟୁ), ଅଗ୍ନି (ତେଜ), ଜଳ (ଆପ) ଏବଂ ମାଟି ବା ପୃଥ୍ୱୀ (କ୍ଷିତି)ର ସମନ୍ୱୟ ମାତ୍ର।

ଅନ୍ୟପକ୍ଷରେ, ସାଂଖ୍ୟମାନେ ବିଶ୍ୱାସ କରନ୍ତି ଯେ, ତିନୋଟି ଗୁଣ- ସତ୍ତ୍ୱ, ରଜସ୍, ତମସ୍‌ର ମିଳନରୁ ଜଗତ ସୃଷ୍ଟି ହୋଇଛି। ସେମାନଙ୍କ ମତରେ ପ୍ରଳୟ ହେଉଛି ଜଗତର ବିଘଟିତ ଅବସ୍ଥା ତା'ପରେ ତିନିଗୁଣ ସନ୍ତୁଳିତ ଅବସ୍ଥାରେ ରହିଲେ ଜଗତ ଏକ ଅବ୍ୟକ୍ତ ଘନ ଅବସ୍ଥାରେ ରହେ। ଏହି ସନ୍ତୁଳନରେ ବିକ୍ଷେପ ହେଲେ ତାସ୍‌ର ଘର ପରି ସେମାନେ ଅସଂଖ୍ୟ ନାମ ରୂପକୁ ଭୁଷୁଡ଼ି ପଡ଼ନ୍ତି । ତାହାହିଁ ବହୁବିଧ ଜଗତ ସୃଷ୍ଟି କରେ ।

ଶୈବ ଭାବରେ ପରିଚିତ ଅନ୍ୟ ଗୋଟିଏ ଚିନ୍ତକ ମୁଖ୍ୟତଃ ଦକ୍ଷିଣ ଭାରତରେ ଦେଖା ଯାଆନ୍ତି । ସେମାନେ ବିଶ୍ୱାସ କରନ୍ତି ଯେ, ଆତ୍ମା, ଅବିଦ୍ୟା ଏବଂ ଶିବ – ଏହି ତିନି ତତ୍ତ୍ୱକୁ ନେଇ ପରମସତ୍ୟ ଗଠିତ ।

**ପାଦା ଇତି ପାଦବିଦୋ ବିଷୟା ଇତି ତତ୍‌ବିଦଃ।**

**ଲୋକା ଇତି ଲୋକବିଦୋ ଦେବା ଇତି ଚ ତତ୍‌ବିଦଃ ।।୨୧।।**

ପାଦାଃ ଇତି = ପାଦ ହେବାକୁ ଥିବା, ପାଦବିଦଃ = ପାଦ(ଅର୍ଥାତ୍ ବିଶ୍ୱ, ତୈଜସ୍, ଜ୍ଞ)ର ଜ୍ଞାତା, ବିଷୟାଃ ଇତି = ବିଷୟ ହେବାକୁ ଥିବା, ତତ୍‌ବିଦଃ = ତାର ଜ୍ଞାତା, ଦେବାଃ ତି = ଦେବ ହେବାକୁ ଥିବା, ଲୋକବିଦଃ = ଲୋକ(ପୃଥିବୀ ପରବର୍ତ୍ତୀ ଲୋକ ଏବଂ ସ୍ୱର୍ଗ)ର ଜ୍ଞାତା, ଦେବାଃ ଇତି = ଦେବ ହେବାକୁ ଥିବା, ଚ ତଦ୍‌ବିଦଃ = ଏବଂ ତାହାର ଜ୍ଞାତା।

*ପାଦ ବିଷୟରେ ଜାଣିଥିବା ଲୋକମାନେ ଆତ୍ମାଙ୍କୁ ପାଦ ବୋଲି କହନ୍ତି। ଯେଉଁମାନେ ଇନ୍ଦ୍ରିୟ-ବିଷୟ ସହିତ ଅଭ୍ୟସ୍ତ ସେମାନେ କହନ୍ତି ଯେ, ଇନ୍ଦ୍ରିୟ-ବିଷୟ ହିଁ କେବଳ ଜଗତର ମୌଳିକ ତତ୍ତ୍ୱ। ଯେଉଁମାନେ ଲୋକ ସହିତ ସୁପରିଚିତ, ପରମସତ୍ୟଙ୍କୁ ସେମାନେ ଲୋକ ବୋଲି ଏବଂ ଦେବକୁ ଜାଣିଥିବା ଲୋକମାନେ ଦେବଙ୍କୁ ନେଇ ମହାନ୍ ସତ୍ୟ ଗଠିତ ବୋଲି ସମାନ ଭାବରେ ଦାବୀ କରନ୍ତି ।।୨୧।।*

ଜଗତ ପଛରେ ଥିବା ପରମସତ୍ୟ ତିନି ପାଦକୁ ନେଇ ଗଠିତ ବୋଲି କେତେକ ବିଶ୍ୱାସ କରନ୍ତି । ଓଁ ଉପାସନାର ଆଲୋଚନା ବେଳେ ଏହି ପାଦ ସମ୍ପର୍କରେ ବିଶଦ ଆଲୋଚନା କରାଯାଇଛି । ଏମାନଙ୍କ ମତରେ ଚେତନାର ଜାଗ୍ରତ, ସ୍ୱପ୍ନ ଏବଂ ସୁଷୁପ୍ତ ଅବସ୍ଥାକୁ ନେଇ ପରମସତ୍ୟ ଗଠିତ ।

ବାତ୍ସ୍ୟାୟନ ଏବଂ ଅନ୍ୟମାନଙ୍କ ମତରେ ଶବ୍ଦ, ରୂପ, ଗନ୍ଧ, ସ୍ୱାଦ, ସ୍ପର୍ଶ ଇତ୍ୟାଦି ଇନ୍ଦ୍ରିୟ-ବିଷୟ ହିଁ ଅନ୍ତିମ ସତ୍ୟ ।

ପୁରାଣୀମାନଙ୍କ ପାଇଁ 'ଭୂଃ', 'ଭୁବଃ' ଏବଂ 'ସ୍ୱଃ' ନାମକ ତିନିଗୋଟି ଲୋକକୁ ନେଇ ପରମସତ୍ୟ ଗଠିତ । ବେଦର କର୍ମକାଣ୍ଡରେ ବିଶ୍ୱାସ କରୁଥିବା ମୀମାଂସକଙ୍କ ପାଇଁ ଅଗ୍ନି, ଇନ୍ଦ୍ର ଏବଂ ଏହିପରି ଦେବତାମାନେ ହେଲେ ଶାଶ୍ୱତ ସତ୍ୟ । ଏହି ଦେବତାମାନେ କର୍ମଫଳଦାତା ବୋଲି ସେମାନଙ୍କର ଧାରଣା ।

**ବେଦା ଇତି ବେଦବିଦୋ ଯଜ୍ଞା ଇତି ଚ ତତ୍‌ବିଦଃ ।**

**ଭୋକ୍ତେତି ଚ ଭୋକ୍ତୃବିଦୋ ଭୋଜ୍ୟମିତି ଚ ତତ୍‌ବିଦଃ ॥୨୨॥**

ବେଦାଃ ଇତି = ବେଦ ହେବାକୁ ଥିବା, ବେଦବିଦଃ = ବେଦର ଜ୍ଞାତା, ଯଜ୍ଞା ଇତି = ଯଜ୍ଞ ହେବାକୁ ଥିବା, ଚ ତଦ୍ ବିଦଃ = ଏବଂ ତାହାର ଜ୍ଞାତା, ଭୋକ୍ତା ଇତି = ଭୋକ୍ତା ହେବାକୁ ଥିବା, ଚ ଭୋକ୍ତୃ ବିଦଃ = ଏବଂ ଭୋକ୍ତାର ଜ୍ଞାତା, ଭୋଜ୍ୟମ୍ ଇତି = ଭୋଜ୍ୟ ହେବାକୁ ଥିବା, ଚ ତଦ୍ ବିଦଃ = ଏବଂ ତାହାର ଜ୍ଞାତା ।

*ବେଦର ଜ୍ଞାତା ତାହାକୁ ବେଦ କହନ୍ତି, ଯଜ୍ଞର ଜ୍ଞାତା ତାହାକୁ ପବିତ୍ର ଯଜ୍ଞ କହନ୍ତି, ଭୋକ୍ତାର ଜ୍ଞାତା ତା'କୁ ଭୋକ୍ତା କହନ୍ତି, ଏବଂ ଭୋଜ୍ୟ(ଭୋଗ୍ୟ)ର ଜ୍ଞାତା ତା'କୁ ଭୋଜ୍ୟ (ଭୋଗ୍ୟ) କହନ୍ତି ॥୨୨॥*

ବହୁବିଧ ଜଗତ ପଶ୍ଚାତରେ ଥିବା ପରମସତ୍ୟଙ୍କର ବ୍ୟାଖ୍ୟା କରିବାରେ ଗୌଡ଼ପାଦ ଏଠାରେ ସେ ସମୟରେ ପ୍ରଚଳିତ ଆଉ ଚାରିଗୋଟି ସିଦ୍ଧାନ୍ତର ଅବତାରଣା କରିଛନ୍ତି । ହିନ୍ଦୁ ବିଚାରର ପରମ୍ପରାରେ ବେଦିନ୍ ନାମକ ଗୋଟିଏ ଗୋଷ୍ଠୀ ଅଛି । ଏହି ଗୋଷ୍ଠୀ ମତରେ ସମଗ୍ର ବିଶ୍ୱର ମୂଳଦୁଆ ବେଦ ବ୍ୟତୀତ ଅନ୍ୟ କିଛି ନୁହେଁ । ଯଦିଓ ବୋଧାୟନ ଆଦିଙ୍କ ପରି ପଣ୍ଡିତ ଗୋଷ୍ଠୀ ବିଶ୍ୱାସ କରେ ଯେ, ଯଜ୍ଞ ହେଉଛି ସତ୍ୟ । ସେମାନଙ୍କ ମତରେ ନିଷ୍ଠା ଏବଂ ଭକ୍ତିର ସହିତ ବେଦରେ ଯେପରି କୁହାଯାଇଛି, ଠିକ୍ ସେହିପରି ଭାବରେ ଅତୀତରେ କରାଯାଇଥିବା ଯଜ୍ଞ ହିଁ ହେଉଛି ବର୍ତ୍ତମାନର ଜୀବଜଗତର ମୂଳ

କାରଣ । ଦର୍ଶନ ଅନୁସାରେ ଏହା ଠିକ୍ ନୁହେଁ । କାରଣ ପରମସତ୍ୟ ସ୍ୱ ସ୍ୱରୂପରେ ଅନନ୍ତ ହୋଇଥିବାରୁ ପରିଚ୍ଛିନ୍ନ ଦ୍ରବ୍ୟରୁ ତାଙ୍କୁ ସୃଷ୍ଟି କରାଯାଇପାରିବ ନାହିଁ । ଏହି ପରିଚ୍ଛିନ୍ନ ଦ୍ରବ୍ୟର ତିନୋଟି ମୁଖ୍ୟ ଉପାଦାନ ହେଲା, ଯେଉଁ ପଦାର୍ଥ ଅର୍ପଣ କରାଯାଏ, ଯେଉଁ ଦେବତାଙ୍କୁ ଆବାହନ କରାଯାଏ ଏବଂ ଯଜ୍ଞକର୍ତ୍ତା (ଯଜମାନ) । ସେମାନଙ୍କ ମଧ୍ୟରୁ ପ୍ରତ୍ୟେକେ ହେଉଛନ୍ତି ପରିଚ୍ଛିନ୍ନ ଏବଂ ପରିଚ୍ଛିନ୍ନ ଉପାଦାନର ସମନ୍ୱୟ ହୋଇଥିବାରୁ ଯେତେ ପବିତ୍ର ହେଲେ ମଧ୍ୟ ସେମାନେ ଅପରିଚ୍ଛିନ୍ନଙ୍କୁ ସୃଷ୍ଟି କରି ପାରିବେ ନାହିଁ ।

ସାଂଖ୍ୟ ମତରେ ପରମସତ୍ୟ ହେଉଛନ୍ତି 'ଭୋକ୍ତା' । ସେମାନଙ୍କ ମଧ୍ୟରୁ ପ୍ରତ୍ୟେକେ ହେଉଛନ୍ତି ପରିଚ୍ଛିନ୍ନ ଏବଂ ପରିଚ୍ଛିନ୍ନ ଉପାଦାନର ସମନ୍ୱୟ ହୋଇଥିବାରୁ ଯେତେ ପବିତ୍ର ହେଲେ ମଧ୍ୟ ସେମାନେ ଅପରିଚ୍ଛିନ୍ନଙ୍କୁ ସୃଷ୍ଟି କରିପାରିବେ ନାହିଁ ।

ଆଉ କେତେକ ଅଛନ୍ତି, ଯାହାଙ୍କୁ ସୂପକାର କୁହାଯାଏ । ସେମାନଙ୍କ ମତରେ ପରମସତ୍ୟ ହେଉଛନ୍ତି ଭୋଜ୍ୟ । ହୋଟେଲ ମାଲିକଙ୍କ ପାଇଁ ତାଙ୍କ ପାକଶାଳାରେ ତିଆରି ହେଉଥିବା ଖାଦ୍ୟପଦାର୍ଥ ବ୍ୟତୀତ ଅନ୍ୟ କେହି ଈଶ୍ୱର ନାହିଁ କହିବା ପରି ଏହା ହେବ ।

**ସୂକ୍ଷ୍ମ ଇତି ସୂକ୍ଷ୍ମବିଦଃ ସ୍ଥୂଳ ଇତି ଚ ତତ୍‌ବିଦଃ**
**ମୂର୍ତ୍ତ ଇତି ମୂର୍ତ୍ତବିଦୋଽମୂର୍ତ୍ତ ଇତି ଚ ତତ୍‌ବିଦଃ ॥୨୩॥**

ସୂକ୍ଷ୍ମଃ ଇତି = ସୂକ୍ଷ୍ମ ହେବାକୁ ଥିବା, ସୂକ୍ଷ୍ମବିଦଃ = ସୂକ୍ଷ୍ମର ଜ୍ଞାତା, ସ୍ଥୂଳଃ ଇତି = ସ୍ଥୂଳ ହେବାକୁ ଥିବା, ଚ ତଦ୍‌ବିଦଃ = ଏବଂ ତାହାର ଜ୍ଞାତା, ମୂର୍ତ୍ତ ଇତି = ମୂର୍ତ୍ତ (ରୂପ) ହେବାକୁ ଥିବା, ମୂର୍ତ୍ତବିଦଃ = ମୂର୍ତ୍ତର ଜ୍ଞାତା, ଅମୂର୍ତ୍ତଃ ଇତି = ଅରୂପ ହେବାକୁ ଥିବା (ସତ୍ୟ), ଚ ତଦ୍‌ବିଦଃ = ଏବଂ ତାହାର ଜ୍ଞାତା ।

*ସୂକ୍ଷ୍ମର ଜ୍ଞାତା ତାଙ୍କୁ (ପରମସତ୍ୟଙ୍କୁ) ସୂକ୍ଷ୍ମ ବୋଲି ଭାବନ୍ତି, ସ୍ଥୂଳର ଜ୍ଞାତା ତାଙ୍କୁ ସ୍ଥୂଳ କହନ୍ତି । ଯେଉଁମାନେ ମୂର୍ତ୍ତି (ରୂପ) ପୂଜା କରନ୍ତି ସେ ମୂର୍ତ୍ତିରେ ଅଛନ୍ତି ବୋଲି କହନ୍ତି ଏବଂ ଅରୂପ(ଆକାରବିହୀନ)ରେ ବିଶ୍ୱାସ କରୁଥିବା ଲୋକେ ତାଙ୍କୁ ଶୂନ୍ୟ ବୋଲି କହନ୍ତି ॥୨୩॥*

ଏହି ଶ୍ଳୋକରେ ନୈୟାୟିକଙ୍କର ମତକୁ ଇଙ୍ଗିତ କରାଯାଇଛି । ସେମାନଙ୍କ ମତରେ ଜଗତ ହେଉଛି ପରମସତ୍ୟଙ୍କର ରୂପାନ୍ତରଣ (ପରିଣାମ) । ସତ୍ୟଙ୍କର ପରିସର ଅନୁସାରେ ଏହି ରୂପାନ୍ତରଣ ସାଧାରଣତଃ ତିନି ପ୍ରକାରର ହୋଇଥାଏ- ଅଣୁ ପରିଣାମ, ମଧ୍ୟମା (ଶରୀର ଆକାରର) ପରିଣାମ ଏବଂ ବିଭୂ ପରିଣାମ । ପ୍ରଥମ ମତ ସତ୍ୟ ହେଉଛନ୍ତି

ସୂକ୍ଷ୍ମାତି ସୂକ୍ଷ୍ମ ଅନୁସାରେ ଯେକୌଣସି ରୂପରେ ବି ଏବଂ ହୃଦୟ କନ୍ଦରର ନ୍ୟୂନତମ ସ୍ଥାନ ଅଧିକାର କରିଥାନ୍ତି । ଅଣୁ ପରି ସୂକ୍ଷ୍ମ ବୋଲି କହି ଏଠାରେ ତାହା ଦର୍ଶାଯାଇଛି ।

ଲୋକାୟତମାନେ ହେଉଛନ୍ତି ବସ୍ତୁବାଦୀ । ସେମାନଙ୍କ ମଧ୍ୟରୁ କେତେକ ବିଶ୍ୱାସ କରନ୍ତି ଯେ, ପରମସତ୍ୟ ବୋଲି ଜୀବନରେ ଆମେ ଯାହା ଭାବିବା ଆବଶ୍ୟକ, ତାହା ହେଉଛି ସ୍ଥୂଳ ଶରୀର । ପରମ ସତ୍ୟଙ୍କୁ ଏହି ଭିତ୍ତିରେ ନିରୂପଣ କରୁଥିବା ଅନୁସାରେ ହିନ୍ଦୁଦର୍ଶନର ବସ୍ତୁବାଦୀମାନେ ତିନି ଶ୍ରେଣୀରେ ବିଭକ୍ତ ହୋଇପାରିବେ । କେତେକ ବିଶ୍ୱାସ କରନ୍ତି ଯେ, ଶରୀର ହେଉଛି ଆତ୍ମା । ସେମାନଙ୍କୁ ଦେହାତ୍ମାବାଦୀ କୁହାଯାଏ । ଆଉ କେତେକ ବିଶ୍ୱାସ କରନ୍ତି, ଇନ୍ଦ୍ରିୟମାନେ ହେଉଛନ୍ତି ଆତ୍ମା। ସେମାନଙ୍କୁ ଇନ୍ଦ୍ରିୟାତ୍ମାବାଦୀ କୁହାଯାଏ। ଆଉ କେତେକ ମନକୁ ଆତ୍ମା ବୋଲି ବିଶ୍ୱାସ କରନ୍ତି । ସେମାନେ ହେଉଛନ୍ତି ମନାତ୍ମାବାଦୀ।

ଆଗମରେ ବିଶ୍ୱାସ କରୁଥିବା ଆଗମିକମାନେ ଆତ୍ମାଙ୍କୁ କେତେକ ନିର୍ଦ୍ଦିଷ୍ଟ ପବିତ୍ର ରୂପରେ ଦେଖନ୍ତି- ଯଥା, ତ୍ରିଶୂଳଧାରୀ ମହେଶ୍ୱର, ଚକ୍ରଧାରୀ ବିଷ୍ଣୁ, ଧନୁର୍ଦ୍ଧାରୀ ରାମ କିମ୍ବା ବଂଶୀଧାରୀ କୃଷ୍ଣ ।

ଶୂନ୍ୟବାଦୀ ଗୋଷ୍ଠୀର ବୌଦ୍ଧମାନେ ଦୃଢ଼ ଭାବରେ ଘୋଷଣା କରିଛନ୍ତି ଆତ୍ମା ଶୂନ୍ୟ ବ୍ୟତୀତ ଅନ୍ୟ କିଛି ନୁହେଁ । ସେମାନଙ୍କ ମତରେ ଆତ୍ମା ଅବିଦ୍ୟମାନ ଶୂନ୍ୟ ଯେଉଁଠାରୁ ଏହି ସମସ୍ତ ନାମ ରୂପ ଆସିଅଛି ।

**କାଲ ଇତି କାଲବିଦୋ ଦିଶ ଇତି ଚ ତଦ୍‌ବିଦଃ ।**

**ବାଦା ଇତି ବାଦାବିଦୋ ଭୂବନାନୀତି ତଦ୍‌ବିଦଃ ॥୨୪॥**

କାଲଃ ଇତି = କାଳ ହେବାକୁ ଥିବା, କାଲ ବିଦଃ = କାଳ (ସମୟ)ର ଜ୍ଞାତା(ଗଣନା କାରୀ), ଦିଗଃ ଇତି = ଦିଗ(ଆକାଶ) ହେବାକୁ ଥିବା, ଚ ତଦ୍ ବିଦଃ = ଏବଂ ତାହାର ଜ୍ଞାତା, ବାଦ ବିଦଃ = ବାଦର ଜ୍ଞାତା (ଅର୍ଥାତ୍ ରସାୟନ ବିଦ୍ୟାବିଦ୍ ଏବଂ ଯାଦୁକର - ଯିଏ ଭାବନ୍ତି ଯେ, ଧାତୁ, ମନ୍ତ୍ର ଇତ୍ୟାଦିରେ ଅମରତ୍ୱର ରହସ୍ୟ ନିହିତ), ଭୂବନାନି ଇତି = ଭୁବ (ଜଗତ) ହେବାକୁ ଥିବା, ତଦ୍‌ବିଦଃ = ଭୁବନ (ଚଉଦ ଭୁବନ)ର ଜ୍ଞାତା, ଅର୍ଥାତ୍ ରସାୟନ ବିଦ୍ୟାବିଦ୍ ଏବଂ ଯାଦୁକରମାନେ ।

*କାଳରେ ବିଶ୍ୱାସ କରୁଥିବା ଲୋକମାନେ ଏହାଙ୍କୁ କାଳ କହନ୍ତି, ଆକାଶ (ଦିଗ)ରେ ବିଶ୍ୱାସ କରୁଥିବା ଲୋକମାନେ ଏହାଙ୍କୁ ଆକାଶ କହନ୍ତି, ରସାୟନବିଦ୍ ଏବଂ କୁହୁକ ବିଦ୍ୟାବିତ୍‌ମାନେ ବାଦ (ସେମାନଙ୍କର ବିଜ୍ଞାନ) କହନ୍ତି ଏବଂ ଭୁବନର ଜ୍ଞାତା ଏହାଙ୍କୁ ଭୁବନ କହନ୍ତି ॥୨୪॥*

ଜ୍ୟୋତିଷ ଏବଂ ଜ୍ୟୋର୍ତିବିଦ୍‌ମାନେ ବିଶ୍ୱାସ କରନ୍ତି ଯେ, 'କାଳ' ନାମକ ଶାଶ୍ୱତ ବିଷୟରୁ ଜଗତର ସୃଷ୍ଟି ହୋଇଛି ଏବଂ ଜଗତ କାଳରେ ବିଦ୍ୟମାନ, କାଳରେ ହିଁ ଲୀନ ହେବ । ତେଣୁ ସେମାନଙ୍କ ପାଇଁ ବାସ୍ତବ ବିଷୟ ହେଲା କାଳ । ଏହି ମତର ଦର୍ଶନକୁ ପ୍ରତ୍ୟାଖ୍ୟାନ କରିବାକୁ ଜଣେ ମହାନ୍ ଦାର୍ଶନିକ ହେବା ଆବଶ୍ୟକ ନାହିଁ, କାରଣ ସମସ୍ତେ ଏହା ଅନୁଭବ କରିଥିବେ ଯେ କାଳ ନିଜେ ହିଁ ହେଉଛି ପରିବର୍ତ୍ତନଶୀଳ ଏବଂ ସମସ୍ତ ପରିବର୍ତ୍ତନଶୀଳ ବିଷୟକୁ ଶାଶ୍ୱତ ଏବଂ ଅବିକାରୀ ବୋଲି କୌଣସିମତେ ବିଚାର କରାଯାଇ ପାରିବ ନାହିଁ।

ଆଉ ଗୋଟିଏ ଚିନ୍ତକଗୋଷ୍ଠୀକୁ ସ୍ୱରୋଦୟବାଦୀ ବୋଲି କୁହାଯାଏ । କେତେକ ଲୋକ ଅଛନ୍ତି, ଯେଉଁମାନେ କି ଭବିଷ୍ୟତ ବିଷୟରେ କହି ପାରନ୍ତି; ପକ୍ଷୀ, ଝିଟିପିଟି ଇତ୍ୟାଦିଙ୍କ ସ୍ୱରରୁ ଭବିଷ୍ୟତ ଓ ବର୍ତ୍ତମାନର ଇଙ୍ଗିତ ଜାଣି ପାରନ୍ତି । କେଉଁ ଦିଗରୁ ଏହି ସ୍ୱର ତାଙ୍କ ପାଖେ ପହଞ୍ଚୁଛି ବୋଲି ସେମାନେ ଜାଣି ପାରନ୍ତି ଏବଂ କିଛି ଗଣନା କରି ବିଶେଷ ଜ୍ଞାନରେ ପଦାର୍ପଣ କରନ୍ତି । ଏମାନଙ୍କ ପାଇଁ ଦିଗ ବା ଆକାଶର ଅଂଶ ହେଉଛି ବହୁବିଧ ଜୀବନର ଶାଶ୍ୱତ ଉପାଦାନ ।

କେତେକ ଅନୁବାଦକ 'ବାଦ' ଶବ୍ଦକୁ ବିବାଦ ଅର୍ଥରେ ଅନୁବାଦ କରିଛନ୍ତି । ବିଜ୍ଞାନ ଦୃଷ୍ଟିରୁ ଦେଖିଲେ ଏହା ଗ୍ରହଣୀୟ ନୁହେଁ । ବାଦକୁ ଏଠାରେ ତା'ର ପ୍ରାୟୋଗିକ

ଅର୍ଥରେ ବ୍ୟବହାର କରାଯାଇଛି ଏବଂ ଆନନ୍ଦଗିରି ଏହାକୁ ରସାୟନବିଦ୍ ଏବଂ କୁହୁକ ବିଦ୍ୟାବିତ୍‌ଙ୍କର ବିଜ୍ଞାନ ଅର୍ଥରେ ନେଇଛନ୍ତି । ଧାତୁବାଦୀ ଏବଂ ମନ୍ତ୍ରବାଦୀ ବୋଲି ବୋଲାଉଥିବା ଲୋକମାନେ ମଧ୍ୟ ଅଛନ୍ତି । ସେମାନେ ସ୍ଫଟିକ, ମନ୍ତ୍ର ଏବଂ ଚେରମୂଳିକା ଇତ୍ୟାଦି ମାଧ୍ୟମରେ କୁହୁକ ଦେଖାନ୍ତି (ଭେଲିକି ଦେଖାନ୍ତି) । ଏଠାରେ ବାଦର ଅର୍ଥ ଏମାନଙ୍କର ଏହି କୁହୁକ । ପରାରସାୟନବିଦ୍‌ଙ୍କ ପାଇଁ ତାଙ୍କର କଳା ସତତ ପରିବର୍ତ୍ତନଶୀଳ ବହୁବିଧ ଜଗତରେ ଏକମାତ୍ର ବାସ୍ତବ ବିଷୟ ।

**ମନୋ ଇତି ମନୋବିଦୋ ବୁଦ୍ଧିରିତି ଚ ତଦ୍‌ବିଦଃ ।**
**ଚିତ୍ତମିତି ଚିତ୍ତବିଦୋ ଧର୍ମାଧର୍ମୌ ଚ ତଦ୍‌ବିଦଃ ॥୨୫॥**

ମନଃ ଇତି = ହେବାକୁ ଥିବା ମନ, ମନୋ ବିଦଃ = ମନର ଜ୍ଞାତା, ବୁଦ୍ଧି ଇତି = ହେବାକୁ ଥିବା ବୁଦ୍ଧି, ଚ ତଦ୍ ବିଦଃ = ଏବଂ ତାହାର ଜ୍ଞାତା, ଚିତ୍ତମ୍ ଇତି = ହେବାକୁ ଥିବା ଚିତ୍ତ, ଚିତ୍ତ ବିଦଃ = ଚିତ୍ତ (ମନ)ର ଜ୍ଞାତା, ଧର୍ମ ଅଧର୍ମୌ = ହେବାକୁ ଥିବା ଧର୍ମ, ଚ ତଦ୍ ବିଦଃ = ଏବଂ ତାହାର ଜ୍ଞାତା ।

*ମନକୁ ବିଶ୍ୱାସ କରଥିବା ଲୋକମାନେ ମନକୁ ହିଁ ଆତ୍ମା ବୋଲି କହନ୍ତି, ଯଦିଓ ବୁଦ୍ଧିକୁ ବିଶ୍ୱାସ କରୁଥିବା ଲୋକମାନେ ବୁଦ୍ଧି ହିଁ ଆତ୍ମା ବୋଲି କହନ୍ତି । ସେହିପରି ଚିତ୍ତର ବିଶ୍ୱାସୀ ମାନେ ଚିତ୍ତକୁ ଆତ୍ମା ବୋଲି କହନ୍ତି ଏବଂ ଧର୍ମର ଓ ଅଧର୍ମର ବିଶ୍ୱାସୀମାନେ ଏହାଙ୍କୁ ହିଁ ପରମାତ୍ମା ବୋଲି କହନ୍ତି ॥୨୫॥*

ଏହି ଶ୍ଳୋକରେ ସୃଷ୍ଟିବାଦ ସମ୍ବନ୍ଧରେ ଆଉ ଚାରିଗୋଟି ପ୍ରଚଳିତ ସିଦ୍ଧାନ୍ତ ବିଷୟରେ କୁହାଯାଇଛି । ସେତେବେଳେ, ଅର୍ଥାତ୍ ଗୌଡ଼ପାଦଙ୍କ ସମୟରେ ଏହା ସବୁ ପ୍ରଚଳିତ ଥିଲା ।

ଅଜ୍ଞାନତାରେ ରମଣ କରୁଥିବା ବିକୃତ ମନର ଖିଆଲ ସତରେ ହାସ୍ୟାସ୍ପଦ । ବସ୍ତୁବାଦୀ ମାନଙ୍କର ବିଶ୍ୱାସ ମନ ହେଉଛି ଜଗତର ମହାନ ସତ୍ୟ, କାରଣ, ସେମାନଙ୍କ ମତରେ 'ମନ' ନ ଥିଲେ ଅନୁଭୂତି ଅସମ୍ଭବ ହୋଇପଡ଼ନ୍ତା । ଗୋଟିଏ ମତ ବିଶେଷ କରି ବୌଦ୍ଧମାନଙ୍କର ମତ ବିଶ୍ୱାସ କରେ ଯେ, ବୁଦ୍ଧି ହିଁ ପରମସତ୍ୟ । ସୁଷୁପ୍ତି ଅବସ୍ଥାରେ ମନ ବୁଦ୍ଧି ନ ଥାଏ ବୋଲି ସେମାନେ ଭୁଲି ଯାଆନ୍ତି । ତେଣୁ ଆତ୍ମା ବିଷୟରେ ସେମାନେ ଯାହା ଧାରଣା କରନ୍ତି, ତାହା ଅସମ୍ପୂର୍ଣ୍ଣ ।

ଆଉ ଗୋଟିଏ ବୌଦ୍ଧ ଗୋଷ୍ଠୀର ଅନୁଗାମୀ ମାନଙ୍କୁ ଯୋଗାଚାରୀ କୁହାଯାଏ । ସେମାନେ ବିଶ୍ୱାସ କରନ୍ତି ଯେ, ଚିତ୍ତ ହେଉଛି ଶାଶ୍ୱତ ଆତ୍ମା, କାରଣ ସେମାନେ କହନ୍ତି, ମନ ଇନ୍ଦ୍ରିୟ ବିଷୟକୁ ଜାଣିପାରୁଥିଲେ ବି ଏବଂ ବୁଦ୍ଧି ସେମାନଙ୍କର ବିବେକ(ପ୍ରଭେଦ) କରି ପାରୁଥିଲେ ବି, ପ୍ରକାଶ ତତ୍ତ୍ୱ 'ଚିତ୍ତ' ନ ଥିଲେ ଆମେ ଦେଖିବାର ବା ବିବେକ କରିବାର ଅନୁଭୂତି ଲାଭ କରି ପାରିବା ନାହିଁ ।

ଏହିପରି ଭାବରେ ଏହି ଶ୍ଳୋକରେ ତିନୋଟି ସ୍ପଷ୍ଟ ମତ ଦେଖିବାକୁ ମିଳେ। ବିଭିନ୍ନ ପରିମାଣରେ ସେମାନେ ସମସ୍ତେ ସେହି ଗୋଟିଏ ବସ୍ତୁବାଦୀ ଶ୍ରେଣୀ-ଭୁକ୍ତ। ସେମାନଙ୍କ ମଧ୍ୟରେ ପ୍ରଭେଦ ହେଲା- ନିଜ ନିଜର ବ୍ୟକ୍ତିଗତ ଦର୍ଶନରେ ଅନ୍ତଃକରଣର କେଉଁ ବିଷୟଟିକୁ ସେମାନେ ଆତ୍ମାର ମର୍ଯ୍ୟାଦା ଦିଅନ୍ତି। ଗୋଟିଏ ଗୋଷ୍ଠୀ ସଂକଳ୍ପ-ପ୍ରଧାନ-ମନ ଉପରେ ଜୋର ଦେଉଥିବାବେଳେ ଆଉ ଗୋଟିଏ ଗୋଷ୍ଠୀ ନିଶ୍ଚୟ-ପ୍ରଧାନ-ମନ ଉପରେ ଜୋର ଦିଏ। ତୃତୀୟଟି ଚିତ୍ତ-ପ୍ରଧାନ-ମନ ଉପରେ ଜୋର ଦିଏ ।

ଚୈତନ୍ୟ-ତତ୍ତ୍ୱରୁ ବଞ୍ଚିତ ନିର୍ଜୀବ ଏବଂ ଜଡ଼ ମନକୁ ଜାଣି ପାରିଥିବା ବ୍ୟକ୍ତି ପାଇଁ ଏମାନଙ୍କ ମଧ୍ୟରୁ କୌଣସି ଗୋଟିଏ ହେଲେ ଯୁକ୍ତି ଗ୍ରହଣୀୟ ନୁହେଁ ।

ପରିଶେଷରେ, ମୀମାଂସକଙ୍କ ଦ୍ୱାରା ଉପସ୍ଥାପିତ ଗୋଟିଏ ବାଦ ଏହି ଶ୍ଳୋକରେ ଆମେ ଦେଖିବାକୁ ପାଉ। ସେମାନଙ୍କ ପାଇଁ ଧର୍ମ ଏବଂ ଅଧର୍ମ (ପୁଣ୍ୟ ଏବଂ ପାପ) ହେଉଛି ମୂଳ ସତ୍ୟ । ତାହା ହିଁ ବିଶ୍ୱର ଭିତ୍ତି । ସେମାନଙ୍କ ମତରେ ଜଗତର ସୃଷ୍ଟି, ସ୍ଥିତି ଏବଂ ପ୍ରଳୟ ଅତୀତର ପାପ-ପୁଣ୍ୟ ଦ୍ୱାରା ନିୟନ୍ତ୍ରିତ ଏବଂ ଶୃଙ୍ଖଳିତ ହୁଏ। ସେହିପରି ବର୍ତ୍ତମାନର କାର୍ଯ୍ୟକଳାପ ମଧ୍ୟ ଭବିଷ୍ୟତ ଜଗତର ନିର୍ଦ୍ଧାରଣ କରେ ।

କିନ୍ତୁ ଆମେ ଜାଣୁ ଯେ, ପ୍ରତ୍ୟେକଟି ଧର୍ମ ଏବଂ ଅଧର୍ମ ନିଜର ଅସ୍ତିତ୍ୱ ନିମନ୍ତେ ପରସ୍ପର ଉପରେ ନିର୍ଭରଶୀଳ। ତେଣୁ ପ୍ରତ୍ୟେକ ମୁହୂର୍ତ୍ତରେ ଅନ୍ୟ ଏକ ପ୍ରତିପକ୍ଷ ଉପାଦାନ ଉପରେ ସେମାନଙ୍କର ବାସ୍ତବତା (ସତ୍ୟତା) ନିର୍ଭର କରେ । ଗୋଟିଏ ରାଜ୍ୟକୁ ଶାସନ କରୁଥିବା ଦୁଇଜଣ ରାଜାଙ୍କ ମଧ୍ୟରୁ କେହି ବି ରାଜା ବୋଲାଇ ପାରିବେନି କାରଣ ପ୍ରତ୍ୟେକେ ଅପରର ରାଜପଦକୁ ସୀମାବଦ୍ଧ କରି ଦେବେ । ତେଣୁ ପରସ୍ପର ନିର୍ଭରଶୀଳ ଯୋଡ଼ିଟିଏ କଦାପି ଶାଶ୍ୱତ ସତ୍ୟ ହୋଇପାରିବେ ନାହିଁ।

**ପଞ୍ଚବିଂଶକ ଇତ୍ୟେକେ ଷଡ୍‌ବିଂଶଇତି ଚାପରେ।**
**ଏକତ୍ରିଂଶକ ଇତ୍ୟାହୁରନନ୍ତ ଇତି ଚାପରେ ॥୨୬॥**

ପଞ୍ଚବିଂଶକଃ = ପଚିଶିଟି (ଶ୍ରେଣୀ), ଇତି = ସେହି (ସତ୍ୟ), ଏକେ = କିଛି, ଷଡବିଂଶ = ଛବିଶି (ଶ୍ରେଣୀ), ଇତି = ଏହା, ଅପରେ ଚ = ଏବଂ ଅନ୍ୟ, ଏକତ୍ରିଂଶକଃ = ଏକତିରିଶ, ଇତି = ସେହି (ସତ୍ୟ), ଆହୁଃ = କୁହାଯାଏ, ଅନନ୍ତଃ = ଅନନ୍ତ (ଶ୍ରେଣୀ), ଇତି = ସେହି (ସତ୍ୟ), ଅପରେ ଚ = ଏବଂ ଅନ୍ୟମାନେ।

*କେତେକ କହନ୍ତି ଯେ, ଆତ୍ମା ହେଉଛନ୍ତି ପଚିଶ ଶ୍ରେଣୀର, ଅନ୍ୟମାନଙ୍କ ପାଇଁ ଏହା ଛବିଶ, ଅନ୍ୟ କେତେକଙ୍କ ପାଇଁ ଏହା ଏକତିରିଶ ଏବଂ ତଥାପି ଆହୁରି କେତେକ ଭାବନ୍ତି ଯେ, ଏହି ସଂଖ୍ୟା ଅନନ୍ତ ॥୨୬॥*

ଗୌଡ଼ପାଦ ଗୋଟିଏ ଶ୍ଳୋକରେ ଏହି ଲୋକମାନଙ୍କୁ ଏକାଠି କରିଥିବା ଘଟଣାରୁ ତଥା ତାଙ୍କ ଭାଷାର ଶୈଳୀରେ କେବଳ ସଂଖ୍ୟାରେ ସେମାନଙ୍କୁ ନିର୍ଦ୍ଦେଶ କରିବା ତାଙ୍କର ବ୍ୟଙ୍ଗାତ୍ମକ ଦୃଷ୍ଟିକୁ ଦେଖାଇ ଦିଏ।

ସାଂଖ୍ୟ ମାନେ ବିଶ୍ୱାସ କରନ୍ତି ଯେ, ଶାଶ୍ୱତ ଆତ୍ମା ସର୍ବମୋଟ ପଚିଶଟି ଶ୍ରେଣୀ ନେଇ ଗଠିତ। ସେମାନଙ୍କ ମତରେ ମୂଳ ପ୍ରକୃତିରେ ବିକୃତି ହୁଏ ଏବଂ ଏହିପରି ଭାବରେ ଏହା ସହିତ ଅହଂକାର ଏବଂ ପାଞ୍ଚ ତନ୍ମାତ୍ରାର ସୂକ୍ଷ୍ମ ତତ୍ତ୍ୱ ମଣିଷର ମନ ଗଠନ କରିଥାଏ। ଏହିପରି ଭାବରେ ଆମେ ଶୋଡ଼ଷ ବିକାର ଦେଖିବାକୁ ପାଇଥାଉଁ।

ସାଂଖ୍ୟମାନଙ୍କ ପାଇଁ ମୂଳ ପ୍ରକୃତି + ଷୋଳ ବିକାର + ପୁରୁଷ, ଏମାନେ ପଚିଶଟି ଶ୍ରେଣୀ ଗଠନ କରନ୍ତି। ଏହା ହିଁ ବହୁବିଧ ଜଗତ ପଛରେ ଥିବା ଆତ୍ମା ବୋଲି ଧରାଯାଏ।

କିନ୍ତୁ ପତଞ୍ଜଳିଙ୍କ ପ୍ରତିନିଧିତ୍ୱ କରୁଥିବା ଯୋଗୀମାନେ ସାମଗ୍ରିକ ବହୁରୂପୀ ଆତ୍ମାଙ୍କଠାରେ ଆଉ ଗୋଟିଏ ବିଷୟ ଯୋଗ କରନ୍ତି। ଏହି ପଚିଶ ବିଷୟ ସହିତ ଈଶ୍ୱର ତତ୍ତ୍ୱ ଯୋଗ କରି ଆତ୍ମତତ୍ତ୍ୱ ଛବିଶଟି ବିଷୟ ନେଇ ଗଠିତ ବୋଲି କହନ୍ତି।

ପାଶୁପତ ନାମକ ଆଉଏକ ଚିନ୍ତକ ଗୋଷ୍ଠୀ ଅଛି। ସେମାନଙ୍କ ମତରେ ଆତ୍ମା ତିରିଶିଟି ବିଷୟ ନେଇ ଗଠିତ। ବାସ୍ତବରେ ପାଶୁପତଙ୍କର ଶାସ୍ତ୍ର ଅଧ୍ୟୟନ କଲେ, ଆମେ ତାଙ୍କ ଅବଧାରଣାରେ ଛବିଶଟି ବିଷୟ ଥିବାର ଦେଖିବାକୁ ପାଉଁ। ସେସବୁ ହେଲା -(୧) ଶିବ, (୨)ସୁଖ (ସଦାଶିବ), (୪) ଈଶ୍ୱର, (୫) ବିଦ୍ୟା, (୬) ପୁରୁଷ,

(୭) ମାୟା, (୮) କାଳ, (୯) ନିୟତି, (୧୦) କଳା, (୧୧)ଅବିଦ୍ୟା, (୧୨) ରାଗ, (୧୩) ଅବ୍ୟକ୍ତ, (୧୪)ମହତ, (୧୫) ଅହଂକାର, (୧୬) ମନ, (୧୭)ପାଞ୍ଚ ଜ୍ଞାନେନ୍ଦ୍ରିୟ, (୨୧) ପାଞ୍ଚ କର୍ମେନ୍ଦ୍ରିୟ, (୨୬) ୫ ତନ୍ମାତ୍ରା, (୩୧) ଏବଂ ପଞ୍ଚଭୂତ, (୩୬)। ଭଗବାନ ଗୌଡ଼ପାଦ ଏଠାରେ କେବଳ ୩୧ଟି ବିଷୟର ଉଲ୍ଲେଖ କରିଛନ୍ତି, ବୋଧହୁଏ (୮)ସମୟରୁ ରାଗ (୧୨) ବିଷୟ ଛାଡ଼ି ଦେଇଛନ୍ତି, କାରଣ ସେମାନେ (୭) ମାୟା ବ୍ୟତୀତ ଅନ୍ୟ କିଛି ନୁହଁନ୍ତି।

ଆହୁରି ଅନ୍ୟ କେତେକେ ବିଶ୍ୱାସ କରନ୍ତି ଯେ, ଆତ୍ମା ଅସଂଖ୍ୟ ଶ୍ରେଣୀ ନେଇ ଗଠିତ।

**ଲୋକାଁଲ୍ଲୋକବିଦଃ ପ୍ରାହୁରାଶ୍ରମା ଇତି ତଦ୍‌ବିଦଃ।**

**ସ୍ତ୍ରୀପୁଂନପୁଂସକଂ ଲୈଙ୍ଗା ପରାପରମଥାପରେ ॥୨୭॥**

ଲୋକାନ୍ = ଲୋକଙ୍କର , ଲୋକବିଦଃ = ଲୋକଙ୍କର ଜ୍ଞାତା, ପ୍ରାହୁଃ = କହନ୍ତି, ଆଶ୍ରମାଃ ଇତି = ହେବାକୁ ଥିବା ଆଶ୍ରମ, ତଦ୍ ବିଦଃ = ତାହାର ଜ୍ଞାତା, ସ୍ତ୍ରୀ ପୁଂ ନପୁଂସକମ୍ = ସ୍ତ୍ରୀ ପୁରୁଷ ଏବଂ ଚପୁଂସକ, ଲୈଙ୍ଗାଃ = ଲିଙ୍ଗର ଜ୍ଞାତା, ପର ଅପରମ୍ = ଉଚ୍ଚତର ଏବଂ ନିମ୍ନତର (ବ୍ରହ୍ମ), ଅଥ ଅପରେ = ଏବଂ ଅନ୍ୟମାନେ।

*ଲୌକିକମାନେ ଅର୍ଥାତ୍ ଯେଉଁମାନେ କେବଳ ଅନ୍ୟମାନଙ୍କୁ ଖୁସି କରାଇବା ଜାଣନ୍ତି, ସେମାନେ ଆତ୍ମାଙ୍କୁ ଜଗତର ତୋଷଣକାରୀ ବୋଲି କହନ୍ତି । ଯେଉଁମାନେ ଆଶ୍ରମ ବିଷୟରେ ଜାଣନ୍ତି ଏବଂ ଆଶ୍ରମର ନିୟମ ବିଶ୍ୱସ୍ତ ଭାବରେ ପାଳନ କରନ୍ତି, ସେମାନେ ଆତ୍ମାଙ୍କୁ ଆଶ୍ରମ ଭାବରେ ଜାଣନ୍ତି, ବ୍ୟାକରଣ ଶାସ୍ତ୍ରର ପଣ୍ଡିତମାନଙ୍କ ପାଇଁ ଆତ୍ମା ସ୍ତ୍ରୀ, ପୁରୁଷ, ନପୁଂସକ ଆଦି ବ୍ୟତୀତ ଅନ୍ୟ କିଛି ନୁହେଁ, ଏବଂ ଅନ୍ୟ କେତେକ ବ୍ରହ୍ମଙ୍କୁ ପରା ଏବଂ ଅପରା ବୋଲି ମନେ କରନ୍ତି ॥୨୭॥*

ଜଗତକୁ ସୁଖୀ କରିବା ପାଇଁ ନିଜର ସମସ୍ତ ଶକ୍ତି ବ୍ୟୟ କରି ଜୀବନଯାପନ କରୁଥିବା ସମାଜସେବୀ ଏବଂ ରାଜନୀତିଜ୍ଞଙ୍କ ପାଇଁ ପ୍ରତ୍ୟେକଙ୍କୁ ସୁଖୀ କରିପାରୁଥିବା ସେବା ହିଁ ହେଉଛି ଏକମାତ୍ର ସତ୍ୟ ।

ପୁରାଣ ପ୍ରସିଦ୍ଧ ଦକ୍ଷ ଏବଂ ତାଙ୍କ ପରି ଅନ୍ୟ ଆଶ୍ରମବାଦୀମାନେ ଭାବନ୍ତି ଯେ, ଏକ ନିର୍ଦ୍ଦିଷ୍ଟ ଆଶ୍ରମରେ ରହି, ନିଷ୍ଠାର ସହିତ ଆଶ୍ରମ ଧର୍ମ ପାଳନ କରିବା ହିଁ କେବଳ ସତ୍ୟ, ବହୁବିଧ କାର୍ଯ୍ୟକଳାପର ଏହି ଜଗତରେ ତାହା ହିଁ କେବଳ ସତ୍ୟ ଭାବେ ସ୍ୱୀକାର

କରିବାର ଯୋଗ୍ୟ । ବ୍ୟାକରଣ ଶାସ୍ତ୍ରଜ୍ଞଙ୍କ ପାଇଁ ସତ୍ୟ ହେଉଛି ପୁଂଲିଙ୍ଗ, ସ୍ତ୍ରୀ ଲିଙ୍ଗ ଏବଂ କ୍ଲୀବଲିଙ୍ଗ ।

ଅନ୍ୟ ଏକ ଚିନ୍ତକ ଗୋଷ୍ଠୀ ମଧ୍ୟ ଅଛନ୍ତି । ଏମାନେ ବେଦାନ୍ତୀମାନଙ୍କ ଭିତରେ ଅଛନ୍ତି ବୋଲି ଗୌଡ଼ପାଦ ଏଠାରେ ଭାବିଛନ୍ତି । ଏମାନଙ୍କ ମତରେ ସତ୍ୟଙ୍କର ଦୁଇଟି ଦିଗ ଅଛି, ନିର୍ବିକଳ୍ପ ଏବଂ ଆପେକ୍ଷିକ, ପରା ଏବଂ ଅପରା ବ୍ରହ୍ମ ।

**ସୃଷ୍ଟିରିତି ସୃଷ୍ଟିବିଦୋ ଲୟ ଇତି ଚ ତଦ୍‌ବିଦଃ**

**ସ୍ଥିତିରିତି ସ୍ଥିତିବିଦଃ ସର୍ବେ ଚେହ ତୁ ସର୍ବଦା ॥୨୮॥**

ସୃଷ୍ଟିଃ ଇତି = ସୃଷ୍ଟି ହେବାକୁ ଥିବା, ସୃଷ୍ଟିବିଦଃ = ସୃଷ୍ଟି ସମ୍ବନ୍ଧରେ ଜାଣିଥିବା ବ୍ୟକ୍ତି, ଲୟଃ ଇତି = ପ୍ରଳୟ ହେବାକୁ ଥିବା, ଚ ତଦ୍‌ବିଦଃ = ଏବଂ ଏହାର ଜ୍ଞାତା, ସ୍ଥିତିଃ ଇତି = ସ୍ଥିତି ହେବାକୁ ଥିବା, ସ୍ଥିତିବିଦଃ = ସ୍ଥିତିର ଜ୍ଞାତା, ସର୍ବେ ଚ = ଏବଂ ଏହି ସମସ୍ତ ଧାରଣା, ଇହ = ଏହି (ଆତ୍ମାରେ), ତୁ = କିନ୍ତୁ, ସର୍ବଦା = ସର୍ବଦା (କଳ୍ପନା) ।

*ସୃଷ୍ଟିବାଦୀମାନେ ସତ୍ୟଙ୍କୁ ସୃଷ୍ଟି ବୋଲି କହନ୍ତି, ପ୍ରଳୟରେ ବିଶ୍ୱାସ କରୁଥିବା ଲୋକମାନେ ଏହାଙ୍କୁ ପ୍ରଳୟ ବୋଲି ବର୍ଣ୍ଣନା କରନ୍ତି ଏବଂ ସ୍ଥିତିରେ ବିଶ୍ୱାସ କରୁଥିବା ଲୋକମାନେ ଏହାକୁ ସ୍ଥିତି ବୋଲି ବିଶ୍ୱାସ କରନ୍ତି । ଆତ୍ମାଙ୍କ ସମ୍ବନ୍ଧରେ ଏହିସବୁ ଧାରଣା ବାସ୍ତବରେ କଳ୍ପନା ବ୍ୟତୀତ ଅନ୍ୟ କିଛି ନୁହେଁ ॥୨୮॥*

ସତ୍ୟଙ୍କ ସମ୍ବନ୍ଧରେ ସେ ସମୟରେ ଅନେକ ସିଦ୍ଧାନ୍ତର ପ୍ରଚଳନ ଥିଲା । ଏହି ଅନ୍ତିମ ଶ୍ଳୋକରେ ଗୌଡ଼ପାଦ ସେସବୁର ନିରୂପଣ ଶେଷ କରିଛନ୍ତି । ପୌରାଣିକମାନେ (ପୁରାଣ ପଣ୍ଡିତ) ତିନୋଟି ସ୍ୱତନ୍ତ୍ର ଶ୍ରେଣୀରେ ବିଭକ୍ତ । କେତେକ ବିଶ୍ୱାସ କରନ୍ତି ଯେ, ପ୍ରତିମୂହୁର୍ତ୍ତରେ ସୃଷ୍ଟି ନିରନ୍ତର ଭାବେ ହୋଇ ଚାଲିଛି, ଅନ୍ୟ ଗୋଟିଏ ମତରେ ଏହା ପ୍ରଳୟର ନିରନ୍ତର ଧାରା ଏବଂ ତୃତୀୟ ମତଟି ବିଶ୍ୱାସ କରେ ଯେ, ଏହା ହେଉଛି ଏକ ଅନ୍ତରାଳ ସ୍ଥିତି । ସେହି ଅନୁସାରେ ପ୍ରତ୍ୟେକ ଗୋଷ୍ଠୀ ବିଚାର କରେ ଯେ, ସୃଷ୍ଟି, ସ୍ଥିତି ଏବଂ ପ୍ରଳୟ ହେଉଛି ବହୁବିଧ ଜଗତ ପଛରେ ଥିବା ଅନ୍ତିମ କାରଣ ।

**ଯଂ ଭାବଂ ଦର୍ଶୟେଦ୍ୟସ୍ୟ ତଂ ଭାବଂ ସ ତୁ ପଶ୍ୟତି ।**

**ତଂ ଚାବତି ସ ଭତ୍ୱାସୌ ତଦ୍‌ଗ୍ରହଃ ସମୁପୈତି ତମ୍ ॥୨୯॥**

ଯଂ ଭାବମ୍ = ଯେଉଁ ଧାରଣା ବା ବିଷୟ, ଦର୍ଶୟେତ୍ = (ଯେଉଁ ଗୁରୁ) ଉପସ୍ଥାପନ କରନ୍ତି (ଦେଖାନ୍ତି), ଯସ୍ୟ = ତାହାଙ୍କୁ, ତମ୍ ଭାବମ୍ = ସେହି ବିଷୟ ବା ଧାରଣା, ସଃ = ସେ, ତୁ = କିନ୍ତୁ, ପଶ୍ୟନ୍ତି = ଦେଖନ୍ତି, ତମ୍ = ତାହାଙ୍କୁ, ଚ ଅବତି = ଏବଂ ରକ୍ଷା କରନ୍ତି, ସଃ = ତାହା, ଭୂତ୍ୱା ଅସୌ = ତାଙ୍କ ସହିତ ଏକ ହୋଇ, ତଦ୍ ଗ୍ରହଃ = ବିଶେଷ ଧାରଣା, ସମୁପୈତି ତମ୍ = ତାଙ୍କୁ ପାଏ ।

*ଶିଷ୍ୟ ଗୁରୁପ୍ରଦତ୍ତ ଧାରଣା ହିଁ ଗ୍ରହଣ କରେ । ଆତ୍ମାଙ୍କୁ ଯିଏ ଯେପରି ଭାବରେ ଦେଖେ ସେ ସେହି ରୂପ ଗ୍ରହଣ କରନ୍ତି ଏବଂ ସେହିପରି ଭାବରେ ଜିଜ୍ଞାସାକୁ ରକ୍ଷା କରନ୍ତି । ଏହି ବିଶେଷ ଧାରଣାର ବଶବର୍ତ୍ତୀ ହୋଇ ଏହା ଏକମାତ୍ର ସତ୍ୟ ବୋଲି ସେ ଅନୁଭବ କରେ ॥୨୯॥*

ସୃଷ୍ଟି ସମ୍ବନ୍ଧୀୟ ଧାରଣା ଏବଂ ସିଦ୍ଧାନ୍ତକୁ ଏଣୁ ତେଣୁ ସଂଗ୍ରହ କରି ଗୌଡ଼ପାଦ ବର୍ତ୍ତମାନ ଏଠାରେ ସେସବୁକୁ ଏକତ୍ରିତ କରିଛନ୍ତି । ଆତ୍ମାର ଗୁଣ, ଧର୍ମ ଏବଂ ହାବଭାବ ଇତ୍ୟାଦି ସମ୍ବନ୍ଧୀୟ ବିଭିନ୍ନ ସିଦ୍ଧାନ୍ତକୁ ବିଜ୍ଞତାର ସହିତ ବିଶ୍ଳେଷଣ କରି ଏଠାରେ ଅଗ୍ରାହ୍ୟ କରାଯାଇଛି । ଯେଉଁ ଦ୍ୱୈତବାଦୀମାନେ ଏପରି ଭିତ୍ତିହୀନ ସିଦ୍ଧାନ୍ତ ସୃଷ୍ଟି କରି ତାକୁ ନେଇ ନିଜ ନିଜ ଭିତରେ କଳହ କରନ୍ତି, ସେମାନେ ଏକ ମିଥ୍ୟା ମନୋବୈଜ୍ଞାନିକ ବିଚାରଧାରାର ଶିକାର ବୋଲି ସେ କହିଛନ୍ତି ।

ଯେଉଁଠାରେ ବି ଧାରଣା ବା ବ୍ୟାଖ୍ୟାକୁ ପରମ-ସତ୍ୟ ବୋଲି ଗୁରୁ ଶିଷ୍ୟଙ୍କୁ ଜଣାଇ ଦିଅନ୍ତି ତାହାକୁ ହିଁ ଏକମାତ୍ର ସାରମର୍ମ ଆତ୍ମା ବୋଲି ଶିଷ୍ୟ ଗ୍ରହଣ କରନ୍ତି । ତା'ପରଠାରୁ ସେ ଏହି ଉପଦେଷ୍ଟା ଧାରଣାକୁ ଅନ୍ଧ ଭାବରେ ଗ୍ରହଣ କରନ୍ତି । ସତ୍ୟକୁ ବା ଅନ୍ୟ କୌଣସି ଦୃଷ୍ଟିକୋଣକୁ ଦେଖିବାକୁ ଏହି ଧର୍ମାନ୍ଧତା ତାଙ୍କୁ ଅସମର୍ଥ କରି ଦିଏ । ଏହା ହିଁ ପରମାର୍ଥ ସତ୍ୟ ବୋଲି ସେ କେବଳ ଅନୁଭବ କରନ୍ତି ନାହିଁ ବରଂ ଅନେକ କ୍ଷେତ୍ରରେ ଏହି ନିର୍ଦ୍ଦେଶିତ ପଥର ଅନୁସରଣ କରି ଏହାକୁ ହିଁ ସତ୍ୟ ଭାବେ ଅନୁଭବ କରନ୍ତି ।

ଦୁନିଆରେ ଏହାର ଅନେକ ଉଦାହରଣ ମିଳେ । ଇତିହାସ ଏପରି ତଥ୍ୟରେ ପରିପୂର୍ଣ୍ଣ । ବିଭିନ୍ନ ପ୍ରକାରର ଈଶ୍ୱର ଏବଂ ତାଙ୍କ ସମୟରେ ପ୍ରଚଳିତ ବିଭିନ୍ନ ଧର୍ମତତ୍ତ୍ୱ

ଉପରେ ଏକଦା ଲୋକମାନେ ବିଶ୍ୱାସ କରୁଥିଲେ । ଏପରିକି, ହିମାଳୟ ଉପତ୍ୟକାର ସୁଦୂର ଗ୍ରାମମାନଙ୍କରେ ଆଜି ମଧ୍ୟ ନିଜ ନିଜର ଗ୍ରାମ ଦେବତା ଅଛନ୍ତି ଏବଂ ପୁରାଣର କୌଣସି ଚରିତ୍ର ଏବଂ ଏପରିକି ବୁଦ୍ଧଙ୍କ ସହିତ ବି ସେଗୁଡ଼ିକର କୌଣସି ମେଳ ନାହିଁ। ଏପରିକି, ପ୍ରତ୍ୟେକ ଗ୍ରାମବାସୀ ସ୍ଥାନୀୟ ଦେବତାଙ୍କୁ ଭୟ କରେ ଏବଂ ଇନ୍ଦ୍ର ବା ସୂର୍ଯ୍ୟଙ୍କୁ ନିଷ୍ଠାର ସହିତ ପ୍ରାର୍ଥନା କଲେ ମରୁଡ଼ି ବା ବନ୍ୟା ସମୟରେ ନିଶ୍ଚିତ ଭାବରେ ସେମାନେ ବର୍ଷା ବା ଖରା ଦିଅନ୍ତି ବୋଲି ବିଶ୍ୱାସ କରନ୍ତି ।

ପ୍ରଗାଢ଼ ଭାବରେ କୌଣସି ଧାରଣା ପୋଷଣ କରି ତାର ଅନୁଧାବନ ଆନ୍ତରିକତାର ସହ କଲେ ମଣିଷ ଆଖି ଦୃଶିଆ ଫଳ ଲାଭ କରି ପାରିବ- ଏହା ସତ୍ୟ । "ତୁମର ଚିନ୍ତା ଅନୁସାରେ ତୁମେ ତିଆରି ହୁଅ" ଏହା ଜୀବନର ଶାଶ୍ୱତ ନିୟମ ।

ବ୍ୟକ୍ତିଗତ ଭାବରେ ଗଢ଼ିବା ବା ଭାଙ୍ଗିବା କ୍ଷମତା ଆମର ଅଛି। ଶକ୍ତିଶାଳୀ, ନ୍ୟାୟସଙ୍ଗତ ଭଲ ଚିନ୍ତା ପୋଷଣ କଲେ ଆମେ ବହୁ ପରିମାଣରେ ପରମଶାନ୍ତି ଲାଭ କରୁ। ନିରନ୍ତର ଭାବରେ ଭ୍ରାନ୍ତ ଧାରଣା ଏବଂ ଭୁଲ ଆଦର୍ଶ ବିଷୟରେ ଚିନ୍ତା କଲେ ନିଶ୍ଚିତ ଭାବରେ ଆମେ ତାହା ପୂରଣ କରିପାରିବା କିନ୍ତୁ, ତାର ଫଳାଫଳ ମଧ୍ୟ ଆମେ ଭୋଗ କରିବାକୁ ବାଧ୍ୟ ହେବା।

ଏହି ଶ୍ଳୋକରେ ଯେଉଁ ବିଜ୍ଞତା ପୂର୍ଣ୍ଣ ପର୍ଯ୍ୟବେକ୍ଷଣର ବ୍ୟାଖ୍ୟା କରାଯାଇଛି, ତାହା ହେଉଛି ଏପର୍ଯ୍ୟନ୍ତ ପ୍ରତିବାଦିତ କରାଯାଇଥିବା ବିଭିନ୍ନ ସିଦ୍ଧାନ୍ତକୁ ଜାଳି ଦେବାର ଅଗ୍ନିକଣା। ଆମ ମନରେ ଥିବା ଧାରଣାକୁ ଆତ୍ମାଙ୍କ ଉପରେ ଆମେ ଅଧ୍ୟାସ କରୁ ଏବଂ ନିଜର ଭ୍ରାନ୍ତ ଧାରଣାର ବଶବର୍ତ୍ତୀ ହୋଇ ଆମେ ଏକ ସତ୍ୟର ସମର୍ଥନ କରୁ । ରାସ୍ତା କଡରେ ଥିବା ପାନ ଦୋକାନରେ ଥିବା ଦର୍ପଣର ନିଜର କିଛି ପସନ୍ଦ-ଅପସନ୍ଦ ନାହିଁ । ତା ସାମ୍ନାରେ ଠିଆ ହୋଇଥିବା କ୍ରେତା ଏବଂ ରାସ୍ତାରେ ଯାଉଥିବା ଯାନବାହାନକୁ ସେ ତତ୍‌କ୍ଷଣାତ୍ ପ୍ରତିଫଳିତ କରେ । ତା ସାମ୍ନାରେ ଛିଡା ହୋଇ ବୋବାଳି ଛାଡୁ ଥିବା ଗଧ ଏବଂ ରାସ୍ତାରେ ଯାଉଥିବା ମଇଁଷିକୁ ମଧ୍ୟ ସେ ଠିକ୍ ଭାବରେ ପ୍ରତିଫଳିତ କରେ । ସେହିପରି, ମନର ସମସ୍ତ ପ୍ରକ୍ଷେପଣର ଅଧିଷ୍ଠାନ ହେଉଛନ୍ତି ପରମ ସତ୍ୟ ।

କିନ୍ତୁ ଅନ୍ୟପକ୍ଷରେ, ଏହି ବିକୃତ ମନର ସଂପୂର୍ଣ୍ଣ ନାଶ କରି ସଫଳତାର ସହିତ ପରମ-ସତ୍ୟଙ୍କୁ ଅନୁଭବ କରି ପାରିଲେ ତାଙ୍କର ବାସ୍ତବ ଝଲକ ଟିକିଏ ପାଇ ପାରିବା। ଶୁଦ୍ଧ ଏବଂ ସଂଗଠିତ ମନ ନେଇ ନାମ-ରୂପ ପଛରେ ପରମସତ୍ୟଙ୍କ ଅନ୍ୱେଷଣ କଲେ ଶାଶ୍ୱତ ସତ୍ୟ-ତତ୍ତ୍ୱର ଟିକିଏ ଝଲକ ପାଇ ପାରିବା । ଭୌତିକ ବ୍ୟାପାରରୁ ମୁକ୍ତି ହେଲେ

ଏହି ଅନୁଭୂତି ସୁଦୃଢ ହୁଏ । ଏହି ଅନୁଭୂତିରେ ମନର ହସ୍ତକ୍ଷେପ ନ ଥାଏ । ତେଣୁ ମନର କୌଣସି ବାସନା ସତ୍ୟଙ୍କୁ ବିକୃତ କରିପାରେ ନାହିଁ ।

ବେଦାନ୍ତ ଦ୍ୱାରା ଏହି ଧାରା ଗ୍ରହଣ କରାଯାଇ ଥିବାରୁ 'ଏକ'ଙ୍କର ବୈଦାନ୍ତିକ ଅନୁଭୂତି ସମସ୍ତ ବିତର୍କର ଅତୀତ । ଏହା ହେଉଛି ସାପ ମାଧ୍ୟମରେ ଦଉଡ଼ିକୁ ଏବଂ ପାଣି ଧାରାଟିଏ ଓ ବାଡ଼ି ଖଣ୍ଡେ ମାଧ୍ୟମରେ ଭୂଇଁରେ ଥିବା ଫାଟକୁ ଦେଖିବାର ପ୍ରଚେଷ୍ଟା । ଏହି ବହୁବିଧତା ହେଉଛି ଦଉଡ଼ିର ବା ଫାଟର ବାସ୍ତବ ରୂପ ଏବଂ ଆକାର ଉପରେ ମିଥ୍ୟା ଅଧ୍ୟାସ । ଦଉଡ଼ିକୁ ବା ଫାଟକୁ ତତ୍ତ୍ୱତଃ ଦେଖିବାକୁ ହେଲେ ଆମ ମନର ସମସ୍ତ ଭ୍ରାନ୍ତ ଧାରଣା ଦୂର କରିବାକୁ ହେବ । ସେହିପରି ମନ ଏବଂ ବୁଦ୍ଧିର ଅତୀତ ହେଲେ ହିଁ ସତ୍ୟ ବା ଆତ୍ମାଙ୍କର ବୋଧ ହେବ । ତେଣୁ ସବୁ କାଳର ସବୁ ମହାନ ଚିନ୍ତକ ବୈଦାନ୍ତିକ ସିଦ୍ଧାନ୍ତର ଶୁଦ୍ଧ ଆତ୍ମାଙ୍କର ଅନୁଭୂତି ପ୍ରକାଶ କରିଛନ୍ତି । ସୃଷ୍ଟ ବହୁବିଧ ଜଗତର କୌଣସି ସ୍ଥିତି ସେଥିରେ ନାହିଁ । ବିଶ୍ୱର ପ୍ରହେଳିକା ବୁଝିବା ପାଇଁ ଆତ୍ମାନୁଭୂତି ହିଁ ହେଉଛି ଏକମାତ୍ର ଉପାୟ ।

**ଏତୈରେଷୋଽପୃଥଗ୍‌ଭାବୈଃ ପୃଥଗେବେତି ଲକ୍ଷିତଃ ।**

**ଏବଂ ଯୋ ବେଦ ତତ୍ତ୍ୱେନ କଳ୍ପୟେତ୍-ସୋଽବିଶଙ୍କିତଃ ॥୩୦॥**

ଏତୈଃ = ଏହିସବୁ, ଏଷ = ଏଇ ଗୋଟିକ (ଆତ୍ମା), ଅପୃଥକ୍ = ପୃଥକ୍ ନୁହେଁ, ଭାବୈଃ = ପ୍ରକ୍ଷେପଣ, ପୃଥକ୍-ଏବ-ଇତି = ଯେପରି ଏହା ପୃଥକ୍ ଏବଂ ସ୍ୱତନ୍ତ୍ର, ଲକ୍ଷିତଃ = ମନେ ହୁଏ, ଏବମ୍ = ଏହିପରି, ୟଃ = ଯିଏ, ତତ୍ତ୍ୱେନ ବେଦ = ବାସ୍ତବରେ ଜାଣେ, ପ୍ରକୃତରେ ଅନୁଭବ କରେ (ବୈଦିକ ଗ୍ରନ୍ଥ ଏବଂ ତର୍କରୁ); କଳ୍ପୟେତ୍ = ବେଦର ଅର୍ଥ ବୁଝେ ବା ବ୍ୟାଖ୍ୟା କରେ, ସଃ = ତାହା, ଅବିଶଙ୍କିତଃ = କୌଣସି ଶଙ୍କା (ସନ୍ଦେହ) ନ ଥାଇ ।

*ଆତ୍ମା ଏସବୁରୁ ପୃଥକ ନ ହେଲେ ମଧ୍ୟ ପୃଥକ ଏବଂ ସ୍ୱତନ୍ତ୍ର ପରି ମନେ ହୁଏ । ଏହାର ବାସ୍ତବ ଅନୁଭୂତି ଲାଭ କରୁଥିବା ବ୍ୟକ୍ତି ହିଁ, ଦ୍ୱିଧାହୀନ ଭାବରେ ସନ୍ଦେହ ରହିତ ହୋଇ ବେଦର ଅର୍ଥ ବ୍ୟାଖ୍ୟା କରି ପାରିବ ॥୩୦॥*

ଦ୍ୱୈତବାଦୀ ଏବଂ ସେମାନଙ୍କର ଅସଂଖ୍ୟ ସିଦ୍ଧାନ୍ତ ପାଇଁ ଏକ ଉଦାର ସମର୍ଥନ ଯୋଗାଇବାକୁ ଏହି ଶ୍ଳୋକରେ ଗୌଡ଼ପାଦ ଚେଷ୍ଟା କରୁଛନ୍ତି । ପରମସତ୍ୟ ହେଉଛନ୍ତି ଏକମେବ ଅଦ୍ୱିତୀୟ ଏବଂ ଶାଶ୍ୱତ ବୋଲି ସବୁ ଉପନିଷଦ୍ ଏକମତ । ଏହି ମହାନ୍ ସତ୍ୟର ଅନୁଭୂତି ଲାଭ କରିଥିବା ଗୁରୁମାନେ ସାରା ପୃଥିବୀ ବାରମ୍ବାର ଭ୍ରମଣ କରି ନିଜର ଅନୁଭୂତି ମାଧ୍ୟମରେ ସେହି ସତ୍ୟର ପ୍ରତିପାଦନ କରିଛନ୍ତି ।

କଥାଟା ଯଦି ଏହା ହିଁ ହୁଏ, ପରମସତ୍ୟ ବହୁରୂପୀ ବୋଲି ନିଜ ନିଜ ଭିତରେ ଯୁକ୍ତି କରୁଥିବା ଦ୍ୱୈତବାଦୀଙ୍କ କଥାରେ କି ନ୍ୟାୟ ଅଛି ? ଗୌଡ଼ପାଦଙ୍କର ବ୍ୟାଖ୍ୟା ହେଲା- ଆତ୍ମା ଏହି ବହୁବିଧ ରୂପରୁ ଭିନ୍ନ ନ ହେଲେ ମଧ୍ୟ ଭିନ୍ନ ପରି ମନେ ହୁଅନ୍ତି । ସାପ ରଜ୍ଜୁଠାରୁ ଭିନ୍ନ ନୁହେଁ, ତଥାପି ଭ୍ରାନ୍ତି ସମୟରେ ସାପ ଦେଖା ଯାଉଥିବା ବେଳେ ଦଉଡ଼ି ସ୍ୱତନ୍ତ୍ର ଭାବରେ ବୋଧ ହୁଏ ନାହିଁ ।

କେବଳ ଆତ୍ମାଙ୍କର ହିଁ ସ୍ଥିତି ଅଛି, ଏହି ସତ୍ୟର ଅନୁଭୂତି ଲାଭ କରିଥିବା ବ୍ୟକ୍ତି ହେଉଛନ୍ତି ଏକମାତ୍ର ମହାନ୍ ଦ୍ରଷ୍ଟା । ସେ ହିଁ ଶାସ୍ତ୍ରର ବ୍ୟାଖ୍ୟା କରି ବୈଦିକ ଘୋଷଣାର ଅର୍ଥ କରିପାରିବେ। କେବଳ ବୌଦ୍ଧିକ କ୍ଷମତା ସମ୍ପନ୍ନ ହୋଇ ଅନ୍ୟ ଯେଉଁମାନେ ଶାସ୍ତ୍ରର ବ୍ୟାଖ୍ୟା କରିବାକୁ ବାହାରିବେ ଅତି ବେଶୀରେ ସେମାନେ ଶାସ୍ତ୍ରର ପାଠ୍ୟ ସମ୍ବନ୍ଧୀୟ ଜ୍ଞାନ ହିଁ ଲାଭ କରିବେ। ସତ୍ୟାନୁଭବୀଙ୍କ କଥାରେ ଥିବା ଦୃଢତା ପରି ସେମାନଙ୍କ ବାର୍ତ୍ତା କଦାପି ଦୃଢ ହୋଇପାରିବ ନାହିଁ । ଏଠାରେ ଗୌଡପାଦ କହିଛନ୍ତି ଯେ, ନିଜେ ଅଦ୍ୱୈତ ସତ୍ୟଙ୍କର ଅନୁଭୂତି ଲାଭ କରିଥିବା ବ୍ୟକ୍ତିମାନେ ହିଁ ବିଶ୍ୱାସର ସହିତ, ଦୃଢ ଭାବରେ ଓ ସ୍ପଷ୍ଟ ଭାବରେ ବେଦର ଉପନିଷଦ୍ ଅଧ୍ୟାୟ ସବୁ ଆଲୋଚନା କରିପାରିବେ, ବ୍ୟାଖ୍ୟା କରିପାରିବେ ଏବଂ ଶିକ୍ଷା ଦେଇ ପାରିବେ ।

**ସ୍ୱପ୍ନମାୟେ ଯଥା ଦୃଷ୍ଟେ ଗନ୍ଧର୍ବନଗରଂ ଯଥା ।**
**ତଥା ବିଶ୍ୱମିଦଂ ଦୃଷ୍ଟଂ ବେଦାନ୍ତେଷୁ ବିଚକ୍ଷଣୈଃ ॥୩୧॥**

ସ୍ୱପ୍ନମାୟେ = ସ୍ୱପ୍ନରେ ଏବଂ ମାୟା (କୁହୁକ)ରେ, ଯଥା = ଯେପରି, ଦୃଷ୍ଟେ = ଦେଖାଯାଏ, ଯଥା = ଯେପରି, ଗନ୍ଧର୍ବ-ନଗରମ୍ = ଆକାଶରେ ନଗର (କାଳ୍ପନିକ), ତଥା = ସେହିପରି, ଇଦମ୍ ବିଶ୍ୱମ୍ = ଏହି (ସମଗ୍ର) ଜଗତ, ଦୃଷ୍ଟମ୍ = ଦେଖାଯାଏ, (ମାୟା ପରି), ବେଦାନ୍ତେଷୁ = ବେଦାନ୍ତରେ, ବିଚକ୍ଷଣୈଃ = ଅନୁଭୂତି ସମ୍ପନ୍ନ ବ୍ୟକ୍ତି ।

*ଯେପରି, ସ୍ୱପ୍ନ ଏବଂ ମାୟା ଭ୍ରାନ୍ତି ବୋଲି ଜଣାଯାଏ, କିମ୍ବା, ଆକାଶରେ ନଗରଟିଏ ଥିବାର କଳ୍ପନା କରାଯାଏ, ଅନୁଭୂତି ସମ୍ପନ୍ନ ବେଦାନ୍ତୀ ମାନଙ୍କ ପାଇଁ ଏହି ସମଗ୍ର ଜଗତ ଠିକ୍ ସେହିପରି (ଗୋଟିଏ ଭ୍ରାନ୍ତି ପରି) ଦେଖାଯାଏ ॥୩୧॥*

ତର୍କ ସାହାଯ୍ୟରେ ଦ୍ୱୈତବାଦୀ ମାନଙ୍କର ଅସତ୍ୟତା ଦେଖାଇ ଦିଆ ଯାଇଛି। ବାହ୍ୟ ଜଗତରେ ବର୍ତ୍ତମାନ ଆମେ ପ୍ରକୃତରେ କଣ ଦେଖୁଛୁ ଏହି ଶ୍ଳୋକରେ ତାର ବ୍ୟାଖ୍ୟା କରିବାର ଚେଷ୍ଟା କରା ଯାଇଛି। ପ୍ରଥମ ଅଧ୍ୟାୟରେ ଶାସ୍ତ୍ର ପ୍ରମାଣ ଦ୍ୱାରା ବାହ୍ୟଜଗତକୁ ନିଷେଧ କରା ଯାଇଛି। ବହୁବିଧତାର ଅସତ୍ୟତା ପ୍ରମାଣ କରିବା ପାଇଁ

ଯୁକ୍ତିସଙ୍ଗତ କାରଣ ଏବଂ ବୌଦ୍ଧିକ ତର୍କ ଦେବା ପାଇଁ ଏହି ଅଧ୍ୟାୟର ଆରମ୍ଭରେ ପ୍ରତିଶ୍ରୁତି ଦିଆଯାଇଛି। ବହୁବିଧ ଜଗତ ଯଦି ଅସତ୍ୟ ହୁଏ, ତେବେ ଅଜ୍ଞାନ ଦ୍ୱାରା ବୋଧ ହେଉଥିବା ଏହି ଦୃଶ୍ୟ-ଜଗତ ପାଇଁ ନିଶ୍ଚୟ କିଛି ବ୍ୟାଖ୍ୟା ଥିବ ।

ଶୁଦ୍ଧ ଜ୍ଞାନର ଶାନ୍ତ ମୁହୂର୍ତ୍ତରେ, ଜୀବନର ଅନେକ ଘଟଣାରେ ଆମେ ବୁଝିପାରୁ, ଯେ ମାନସିକ ଭ୍ରମ ସମୟରେ ଆମେ ଦେଖିଥିବା ଜିନିଷ ବାସ୍ତବରେ ସତ୍ୟ ନୁହେଁ । ଅନୁଭୂତ ଜଗତ ମାନସିକ ଭ୍ରାନ୍ତି ବ୍ୟତୀତ ଅନ୍ୟ କିଛି ନୁହେଁ ବୋଲି ବେଦାନ୍ତ ବ୍ୟାଖ୍ୟା କରେ। ସାଧକର ମାନସରେ ଏହି ବିଶ୍ୱାସ ନିଶ୍ଚିତ କରିବା ପାଇଁ ଏଠାରେ ଉଦାହରଣ ଦିଆଯାଇଛି ।

ସ୍ୱପ୍ନର ମୋହରେ ଆମେ ଏପରି ଏକ ଜଗତକୁ ଭାସିଯାଉ, ବାସ୍ତବରେ ଯାହାର କିଛି ଭିତ୍ତି ନ ଥାଏ। ସ୍ୱପ୍ନ ଦେଖୁଥିବା ପର୍ଯ୍ୟନ୍ତ ସ୍ୱପ୍ନ-ଜଗତ ଆମ ପାଇଁ ବାସ୍ତବ ମନେ ହୋଇଥାଏ। ସେହିପରି କୁହୁକ କଥା ଧରାଯାଉ, କୌଣସି ଯୁକ୍ତିସଙ୍ଗତ କାରଣ ନ ଥାଇ, ସମସ୍ତ ପ୍ରାକୃତିକ ନିୟମର ବିରୁଦ୍ଧାଚରଣ କରି ଯାଦୁକର କୁହୁକ ଛଡ଼ି ଦ୍ୱାରା ଆମ ସମକ୍ଷରେ ଅଦ୍ଭୁତ ଖେଳ ଦେଖାଏ, ଏବଂ ଏହା କୁହୁକର ଛଳନା ବୋଲି ଜାଣି ଥିଲେ ମଧ୍ୟ ଏହା ପ୍ରକୃତରେ ଘଟୁଛି ବୋଲି ଆମେ ମନେ କରିଥାଉ ।

ଅନେକ ସମୟରେ ଆକାଶକୁ ଚାହିଁ (ବା ମନରେ) କେତେକ ଲୋକ ଜିନିଷରେ ପରିପୂର୍ଣ୍ଣ ଦୋକାନ, ଘର, ବିଭିନ୍ନ ସ୍ଥାନ ଏବଂ ମଣିଷ ଚଳପ୍ରଚଳ କରୁଥିବା ଗାଁ ଗଣ୍ଡା ଦେଖିପାରନ୍ତି। ଏହି ସବୁ ଦୃଶ୍ୟକୁ 'କଳ୍ପନାର ଉଆସ' ବୋଲି କୁହାଯାଏ । ଆକ୍ଷରିକ ଅର୍ଥରେ ଏବଂ ରୂପକର ଅର୍ଥରେ ଏସବୁ ଆକାଶ କୁସୁମ ବ୍ୟତୀତ ଅନ୍ୟ କିଛି ନୁହେଁ। ଏହା ମନର ପ୍ରକ୍ଷେପଣ ମାତ୍ର,- କଳ୍ପନା-ପ୍ରସୂତ ବ୍ୟତୀତ ଅନ୍ୟ କିଛି ନହେଲେ ମଧ୍ୟ ଭ୍ରାନ୍ତ ମନୁଷ୍ୟ ପାଖରେ ସେମାନେ ବାସ୍ତବ ପରି ପ୍ରତୀୟମାନ ହୁଅନ୍ତି ।

ଏହା ହେଉଛି, ଉପନିଷଦୀୟ ସାହିତ୍ୟରେ ଦର୍ଶାଯାଇଥିବା ସତ୍ୟର ଅନୁଭୂତି ଲାଭ କରିଥିବା ବ୍ୟକ୍ତିଙ୍କ ମତାମତ। ଶରୀର, ମନ ଏବଂ ବୁଦ୍ଧି ସହିତ ତାଦାତ୍ମ୍ୟର ଅତୀତ ହେଲେ ନିର୍ବିକଳ୍ପ ଚୈତନ୍ୟ ଭାବରେ ସେମାନେ ଆତ୍ମାଙ୍କୁ ପୁନରାବିଷ୍କାର କରନ୍ତି(ଜାଣି ପାରନ୍ତି)। ସେହି ଅବସ୍ଥାରେ ସେମାନଙ୍କ ପାଇଁ ବହୁବିଧ ଜଗତର ସ୍ଥିତି ନ ଥାଏ । ତେଣୁ ସମସ୍ତ ମହାନ ଦ୍ରଷ୍ଟା ଏବଂ ଉପନିଷଦ୍‌ର ଋଷିମାନେ ସମସ୍ୱରରେ କହିଛନ୍ତି ଯେ ପରମ-ସତ୍ୟଙ୍କଠାରେ ବହୁବିଧ ଜଗତ ନାହିଁ। ତଥାପି, ଶରୀର-ମନ-ବୁଦ୍ଧି ମାଧ୍ୟମରେ ବହୁବିଧ ଜଗତକୁ ଚାହିଁ ରହିଥିବା ଲୋକମାନେ ଏହାକୁ ସତ୍ୟ ଭାବରେ ଗ୍ରହଣ କରନ୍ତି ।

ସତ୍ୟ ପରି ମନେ ହେଉଥିବା ଏହି ନାମ-ରୂପ ଜଗତ ପାଇଁ କାରିକାକାର ଏଠାରେ ଗୋଟିଏ ବ୍ୟାଖ୍ୟା ଦେଇଛନ୍ତି । ସେ କହିଛନ୍ତି, ଜିନିଷ ସବୁକୁ ଦେଖୁଥିବା ହେତୁ ଜଗତ ସତ୍ୟ ବୋଲି ଆମେ କହିପାରିବା ନାହିଁ। ବୌଦ୍ଧିକ ଜିଜ୍ଞାସୁମାନଙ୍କ ପାଇଁ ଗ୍ରହଣୀୟ, ଦୃଶ୍ୟ ଜଗତର ଏକମାତ୍ର ବ୍ୟାଖ୍ୟା ହେଲା ଏହା ଏକ ଭ୍ରାନ୍ତି ମାତ୍ର- ପରମସତ୍ୟଙ୍କଠାରେ ଏହି ଭ୍ରାନ୍ତି ଅଧ୍ୟାସ କରାଯାଇଛି ଏବଂ ମନ ବୁଦ୍ଧି ରୂପକ ବିକୃତ ସାଧନ ମାଧ୍ୟମରେ ଦେଖୁଥିବା ପର୍ଯ୍ୟନ୍ତ ଏହା ଏପରି ଦେଖା ଯାଉଥିବ ।

**ନ ନିରୋଧୋ ନ ଚୋତ୍ପତ୍ତିର୍ନ ବଦ୍ଧୋ ନ ଚ ସାଧକଃ।**

**ନ ମୁମୁକ୍ଷୁର୍ନ ବୈ ମୁକ୍ତ ଇତ୍ୟେଷା ପରମାର୍ଥତା ॥୩୨॥**

ନ ନିରୋଧଃ = ପ୍ରଳୟ ନୁହେଁ, ନ ଚ ଉତ୍ପତ୍ତି = ସୃଷ୍ଟି ବା ଜନ୍ମ ମଧ୍ୟ ନାହିଁ, ନ ବଦ୍ଧ = କେହି ବଦ୍ଧ ହୋଇ ନାହାନ୍ତି, ନ ଚ ସାଧକଃ = ଏବଂ ଜ୍ଞାନର ସାଧକ କେହି ନାହାନ୍ତି, ନ ମୁମୁକ୍ଷୁଃ = ମୁକ୍ତିକାମୀ କେହି ନାହାଁନ୍ତି, ନ ବୈ ମୁକ୍ତଃ = କେହି ମୁକ୍ତ ମଧ୍ୟ ନାହାଁନ୍ତି, ଇତି-ଏଷା = ଏହା ଅଟେ, ପରମାର୍ଥତା = ପରମ ସତ୍ୟ ।

*ସେଠାରେ ପ୍ରଳୟ ନାହିଁ କିମ୍ବା ସୃଷ୍ଟି ନାହିଁ । କେହି ବନ୍ଧନରେ ପଡ଼ି ନାହାଁନ୍ତି, ଜିଜ୍ଞାସୁ ମଧ୍ୟ କେହି ନାହାଁନ୍ତି, ମୁକ୍ତିକାମୀ କେହି ନାହାନ୍ତି କିମ୍ବା ମୁକ୍ତ ହୋଇ କେହି ନାହାଁନ୍ତି। ଏହା ହିଁ କେବଳ ପରମ ସତ୍ୟ ॥୩୨॥*

ବେଦାନ୍ତରେ ଏପରି ଶ୍ଳୋକର ବିଶ୍ଳେଷଣ କରିବାକୁ ଏବଂ ତାତ୍ପର୍ଯ୍ୟ ବୁଝିବାକୁ ହିଁ ଜଣେ ସାଧାରଣ ଶିଷ୍ୟ ଗୁରୁଙ୍କର ସାହାଯ୍ୟ ଦରକାର କରିଥାଏ । ଯାହି ତାହି ଛପା ହୋଇଥିବା ଅନେକ ବହି ଆଜିକାଲି ସହଜଲବ୍ଧ ଏବଂ ରାସ୍ତାକଡରେ କିମ୍ବା ଯେକୌଣସି ରେଳବାଇ ଦୋକାନରୁ ଶାସ୍ତ୍ର ଗ୍ରନ୍ଥ କିଣି ହେବ । ବର୍ତ୍ତମାନର କେହି ଜଣେ ବୁଦ୍ଧିମାନ, ଶିକ୍ଷିତ ବ୍ୟକ୍ତି ବହିରେ ଏପରି ଗୋଟିଏ ଶ୍ଳୋକ ଦେଖିବାକୁ ପାଇଲେ ହଠାତ୍ ଏକ ଆତ୍ମଘାତୀ ଭୁଲ ବୁଝି ବସିବେ ଯେ, ସେ ନିଜେ ହିଁ କେବଳ ହେଉଛନ୍ତି ଶାଶ୍ୱତ ସତ୍ୟ । ତେଣୁ ତାଙ୍କର କିଛି କରିବାର ନାହିଁ ବା ହେବାର ନାହିଁ ।

ହୋଇଥିବା ଓ ହେଉଥିବା ପରସ୍ପର ବିରୋଧୀ ଦର୍ଶନ ସେତିକି ମାତ୍ରାରେ ବିପଦ୍‌ଜନକ ଯେତିକି ଆମର ଅପୂର୍ଣ୍ଣତାରେ ଆମେ ହେବାକୁ ବାକି ଅଛୁ । ତେଣୁ, ଗୁରୁଙ୍କର ଅନ୍ତର-ନିଃସୃତ ଏପରି ଲିପିବଦ୍ଧ ଅନୁଭୂତିକୁ ସତ୍ୟ ପଥରେ ଯାଇ ସତ୍ୟର ସନ୍ଧାନ ପାଇଥିବା ବର୍ତ୍ତମାନ ଯୁଗର ଯେକୌଣସି ଗୁରୁଙ୍କଠାରୁ ଉପଯୁକ୍ତ ମନୋଭାବ ନେଇ ବୁଝିବାକୁ ହେବ ।

ଆମକୁ ତାଙ୍କର ସମସ୍କନ୍ଧ ଭାବେ ବିଚାର କରି ଗୌଡ଼ପାଦ ଆମ ସ୍ତରକୁ ଓହ୍ଲାଇ ଆସିଛନ୍ତି । ପ୍ରତ୍ୟେକେ ତାଙ୍କ ସ୍ତରକୁ ଉଠନ୍ତୁ ବୋଲି ସେ ଚାହାଁନ୍ତି । ଗୌଡପାଦଙ୍କ ସର୍ଜନା ମାନବ ପ୍ରତି ସତ୍ୟର ଆହ୍ୱାନ ଅଟେ - ସତ୍ୟ ପଥରେ ଚାଲିବା ପାଇଁ ଓ ସତ୍ୟରେ ପହଞ୍ଚିବା ପାଇଁ । ସମଗ୍ର ପଥରେ ସତ୍ୟର ବର୍ଣ୍ଣନା ସତ୍ୟର ଇଲାକାର ସ୍ୱଭାବ ସୁଲଭ ଭାଷାରେ କରାଯାଇଛି । ତେଣୁ ଉଭୟ ଅଜ୍ଞାନର ଭାଷା ଏବଂ ସତ୍ୟର ଭାଷା ଜାଣିଥିବା ଜଣେ ବ୍ୟାଖ୍ୟାକାରଙ୍କର ପ୍ରାଞ୍ଜଳ ବ୍ୟାଖ୍ୟା ଓ ବିଶଦ ବର୍ଣ୍ଣନା ବିନା କାରିକାକୁ କେହି ସଂପୂର୍ଣ୍ଣଭାବେ ବୁଝି ପାରିବେ ନାହିଁ ।

ପରମସତ୍ୟଙ୍କ ଦୃଷ୍ଟିରୁ ଶ୍ଳୋକଟି ବାସ୍ତବରେ ଯଥାର୍ଥ । ପରମଚୈତନ୍ୟ ଲାଭ କରିଥିବା ବ୍ୟକ୍ତିଙ୍କ ପାଇଁ ପ୍ରଳୟ ନାହିଁ, ସୃଷ୍ଟି ନାହିଁ ବା ବନ୍ଧନ ନାହିଁ । ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା ପରେ କୌଣସି ପ୍ରକାରର ଅଭିଳାଷ ନାହିଁ, ଖୋଜିବା ପାଇଁ ଆଉ କିଛି ନାହିଁ, ମୁକ୍ତି ଲାଭ ହୋଇ ଯାଇଛି ବୋଲି ସନ୍ତୋଷ ନାହିଁ । ମୁକ୍ତି ରାଜ୍ୟର ବାସିନ୍ଦା ହୋଇ ବ୍ୟକ୍ତି ମାୟାର ସାଧାରଣ ସ୍ତରର ଅତୀତ ହୋଇଯାଇଥାଏ । ତେଣୁ ତା ପାଇଁ ଭ୍ରାନ୍ତ ବହୁବିଧ ଜଗତ ବା ଶାରୀରିକ, ମାନସିକ, ବୌଦ୍ଧିକ ସ୍ତରର ଅସୀମ କାମନା ନ ଥାଏ । ଆତ୍ମାନୁଭବ କରି ସେ ଆତ୍ମା ହୋଇଯାଏ ଏବଂ ଆତ୍ମା ଭାବରେ ସର୍ବବ୍ୟାପୀ ଦିବ୍ୟ ସତ୍ୟ ହୋଇଯାଏ ।

ଜୀବ ହିଁ ବନ୍ଧନ ଏବଂ ମୋକ୍ଷ ଅନୁଭବ କରିଥାଏ । ମନ ଏବଂ ବୁଦ୍ଧି ମାଧ୍ୟମରେ ହିଁ ଅସତ୍ୟର ପରିପ୍ରକାଶ ହୋଇଥାଏ । ଦେବତ୍ୱ ଲାଭ କରିଥିବା ବ୍ୟକ୍ତିଠାରେ ଏହା ବିଲୀନ ହୋଇଥିବାରୁ ତା'ଠାରେ ଜୀବଭାବ ବ୍ୟକ୍ତ ହୋଇପାରେ ନାହିଁ । ଗୋଟିଏ ସାଧନ ମାଧ୍ୟମରେ ଜୀବନୀ-ଶକ୍ତି ପ୍ରକାଶ ନ ହୋଇ ପାରିଲେ କେବଳ ସାଧନଟି କିଛି ହେଲେ ବ୍ୟକ୍ତ କରିପାରିବ ନାହିଁ । ଗୋଟିଏ ଇଲେକ୍ଟ୍ରିକ ବଲ୍‌ବର ଉଦାହରଣ ନିଆଯାଉ । ବଲ୍‌ବଟି ଗୋଟିଏ ସାଧନ ଏବଂ ତା'ଦେଇ ପ୍ରବାହିତ ବିଜୁଳିଶକ୍ତି ଆଲୋକ ଭାବରେ ବ୍ୟକ୍ତ ହୋଇଥାଏ । ସେହିପରି ମନ-ବୁଦ୍ଧି ସାଧନ ମାଧ୍ୟମରେ ପ୍ରବାହିତ ଜୀବନୀ ଶକ୍ତି ଜୀବ ଭାବରେ ବ୍ୟକ୍ତ ହୋଇଥାଏ ।

ଜୀବର ହିଁ ବନ୍ଧନ ଏବଂ ମୁକ୍ତି ଭାବ ଥାଏ । ନିର୍ବିକଳ୍ପଙ୍କ ଦୃଷ୍ଟିରୁ ଆମମାନଙ୍କ ମଧ୍ୟରୁ ପ୍ରତ୍ୟେକେ, ପ୍ରତି ମୁହୂର୍ତ୍ତରେ, ଆମର ସ୍ୱସ୍ୱରୂପ, ଶାଶ୍ୱତ ମୁକ୍ତିରେ ଅବସ୍ଥିତ । ଆତ୍ମା ପାଇଁ କୌଣସି ବନ୍ଧନ ନାହିଁ । ତେଣୁ ଆତ୍ମା ପାଇଁ କୌଣସି ମୁକ୍ତି ଲାଭ କରିବାକୁ ନ ଥିବା ସ୍ୱାଭାବିକ । ଆତ୍ମା ଚିରମୁକ୍ତ ।

କିନ୍ତୁ ଆତ୍ମା ଜଡ଼-ଉପାଧି ଭୂଷିତ ହୋଇ ସ୍ୱତନ୍ତ୍ର ଏକ ଜୀବସତ୍ତାର ଅନୁଭୂତି ଲାଭ କରେ ଏବଂ ନିଜର ବିଭିନ୍ନ ପ୍ରକ୍ଷେପଣ ଦ୍ୱାରା ବିଭିନ୍ନ ଉପାଧି ମାଧ୍ୟମରେ ଚତୁର୍ଦ୍ଦିଗରୁ ଏହା ପରିଛିନ୍ନ (ସସୀମ) ବୋଲି ସେହି ଜୀବ ହିଁ ଅନୁଭବ କରେ । ଏହି ମନ ହିଁ ନିଜର ଅବସ୍ଥା ଠିକ୍ ଭାବେ ବୁଝିପାରେ ନାହିଁ । ତେଣୁ ମନ ଏବଂ ତା'ର କଳ୍ପିତ ଜୀବ ହିଁ ମୁକ୍ତିର ସାନ୍ତ୍ୱନା ଏବଂ ପ୍ରବୋଧନା ଆଶାକରେ ।

ବିଶ୍ୱସ୍ତ ଭାବେ ଏପର୍ଯ୍ୟନ୍ତ ଏହି ତର୍କ ଶୁଣିଥିବା (ଅନୁସରଣ କରିଥିବା), ସମସ୍ତ ଆସ୍ତିକ ଓ ନାସ୍ତିକ ଜନ ଗୋଟିଏ କଥା ନିଶ୍ଚୟ ବୁଝିପାରିଥିବେ ଯେ, ବାହ୍ୟ ଏବଂ ଭିତରର ବହୁବିଧ ଜଗତ ସୃଷ୍ଟି କରୁଥିବା ନାମ ଏବଂ ରୂପ ପରମସତ୍ୟଙ୍କ ଉପରେ ପ୍ରକ୍ଷେପଣ ମାତ୍ର - ଦଉଡ଼ି ଉପରେ ସାପ ପରି। ତଥାପି ଗୋଟିଏ ସନ୍ଦେହ ରହିଯାଏ- ନାମ, ରୂପ କେବଳ ଅଧ୍ୟାସ ହୋଇଥିବା ପରି। ଅଧିଷ୍ଠାନ ମଧ୍ୟ ଅସତ୍ୟ ହୁଏ ନାହିଁ କାହିଁକି ? ଅଧିଷ୍ଠାନର ବାସ୍ତବତା ସମ୍ବନ୍ଧରେ ପ୍ରତିବାଦୀ ଏଠାରେ ସନ୍ଦେହ ପ୍ରକାଶ କରିଛନ୍ତି। ସେହି ସନ୍ଦେହ ଦୂର କରିବା ପାଇଁ ଗୌଡ଼ପାଦଙ୍କର ଏହି ଦୃଢ଼ ଏବଂ ଅଟଳ ଉକ୍ତି - "ଏହା ହିଁ ନିର୍ବିକଳ୍ପ ସତ୍ୟ ।"

ଅଧିଷ୍ଠାନ କେବଳ ଏକ ଅସତ୍ୟ, ଅସ୍ପଷ୍ଟ କଳ୍ପନା ମାତ୍ର ନୁହେଁ ବରଂ ଏହା ସମସ୍ତ କଳ୍ପନାର ଅତୀତ । ବ୍ୟକ୍ତି ସତ୍ତାକୁ ନିଶ୍ଚିହ୍ନ କରିଦେବା ଏବଂ ତା'ର ସମସ୍ତ କଳ୍ପନାକୁ ଲୋପ କରିଦେବା ହେଉଛି ସବୁ ସାଧକଙ୍କର ପ୍ରଚେଷ୍ଟା ଏବଂ ଲକ୍ଷ୍ୟ । ଚୈତନ୍ୟଙ୍କର ଆଲୋକ-ଧାରାକୁ ବିକୃତ କରିଦେଇ ପରମସତ୍ୟଙ୍କୁ ଅନ୍ୟ କିଛି ଭାବରେ ଦେଖାଉଥିବା କଳ୍ପନା ଓ ଭାବନାର କାରଣ, ମନ ଏବଂ ବୁଦ୍ଧି ଅଟନ୍ତି । ମନ ଏବଂ ବୁଦ୍ଧିର ଅତୀତ ହେଲେ କଳ୍ପନାର ସୃଷ୍ଟି ପାଇଁ କୌଣସି ସାଧନ ରହେ ନାହିଁ ଏବଂ ତେଣୁ କଳ୍ପନା, ଆବେଗ, ଭାବନା ଏବଂ ଅଧ୍ୟାସର କୁହୁଡ଼ି ମିଳେଇ ଗଲେ ପରମସତ୍ୟ ସ୍ପଷ୍ଟ ପ୍ରତିଭାତ ହେବେ ।

**ଭାବୈରସଦ୍‌ଭିରେବାୟମଦ୍ୱୟେନ ଚ କଳ୍ପିତଃ ।**
**ଭାବା ଅପ୍ୟଦ୍ୱୟେନୈବ ତସ୍ମାଦ୍ ଦ୍ୱୟତା ଶିବା ॥୩୩॥**

ଭାବୈଃ = ବିଷୟ, ଅସଦ୍‌ଭି = ଅସତ୍ୟ, ଏବ = ନିଶ୍ଚିତ ଭାବରେ, ଅୟମ୍ = ଏହି (ଆତ୍ମା), ଚ ଅଦ୍ୱୟେନ = ଏବଂ ଅଦ୍ୱୈତ ପାଇଁ, କଳ୍ପିତଃ = କଳ୍ପନା କରାଯାଏ, ଭାବାଃ ଅପି = ବିଷୟ ମଧ୍ୟ, ଅଦ୍ୱୟେନ ଏବ = ଅଦ୍ୱୈତ (ଆତ୍ମା) କେବଳ, ତସ୍ମାତ୍ = ତେଣୁ, ଅଦ୍ୱୟତା = ଅଦ୍ୱୈତ, ଶିବା = ଶୁଭ ଅଟେ।

*ଏହି ଆତ୍ମାଙ୍କୁ ଉଭୟ ଉପଲବ୍ଧି କରାଯାଉଥିବା ଅସତ୍ ବସ୍ତୁ ଏବଂ ଅଦ୍ୱୈତ ଭାବରେ ମଧ୍ୟ କଳ୍ପନା କରାଯାଇଥାଏ । ଅଦ୍ୱୈତରେ ମଧ୍ୟ ଦୃଶ୍ୟ ବସ୍ତୁର କଳ୍ପନା କରାଯାଇଥାଏ । ତେଣୁ ଅଦ୍ୱୈତ ହେଉଛନ୍ତି (ମହତ୍ତମ) ଶୁଭଙ୍କର ॥୩୩॥*

କେହି ଜଣେ ପଥିକ ମରୀଚିକାରେ ମଧ୍ୟ ଜଳ ଆଦି ଦେଖିପାରେ, କିନ୍ତୁ ସେ ସବୁରୁ କିଛି ବି ସତ୍ୟ ନୁହେଁ । ସେମାନଙ୍କ ଭିତରେ ରହିଥିବା ଏକମାତ୍ର ସତ୍ୟ ହେଲା, ମରୁଭୂମି । ସେହିପରି ଗୌଡ଼ପାଦ ଏଠାରେ କହୁଛନ୍ତି ଯେ, ଅସତ୍ ଜଗତର ଦୃଶ୍ୟମାନ ବହୁବିଧତା ଏବଂ ତତ୍ ସହିତ ପରମସତ୍ୟ ହିଁ ଅଦ୍ୱୈତ ବୋଲି ଆମର ଦାର୍ଶନିକ ଉପସଂହାର ଏହି ଉଭୟ ଧାରଣା କେବଳ କଳ୍ପନା ମାତ୍ର ।

ବାସ୍ତବରେ ପରମସତ୍ୟଙ୍କୁ କୌଣସି ଗୁଣରେ ଭୂଷିତ କରିହେବ ନାହିଁ । ପରମସତ୍ୟଙ୍କର ଗୁଣ ବା ଧର୍ମ ଦ୍ୱାରା ତାଙ୍କୁ ବ୍ୟାଖ୍ୟା କଲେ, ତାଙ୍କୁ ଗୋଟିଏ ବସ୍ତୁ ସ୍ତରକୁ ଓହ୍ଲାଇ ଦିଆଯିବ। ପରମସତ୍ୟଙ୍କର ବ୍ୟାଖ୍ୟା କରିବା ଅର୍ଥ ତାଙ୍କୁ କ୍ଷଣିକ ଓ ପରିଚ୍ଛିନ୍ନ ଏବଂ ନଶ୍ୱର ଓ ବିକାରୀ କରି ଦିଆଯିବ। ଅଦ୍ୱୈତ ଭାବରେ ପରମସତ୍ୟଙ୍କର ବର୍ଣ୍ଣନା କରିବା ହେଉଛି 'ବ୍ୟାଖ୍ୟାର୍ଥ'। ସେ ନିର୍ବିକଳ୍ପ ବୋଲି ଏହା ଆମକୁ ସୂଚାଇ ଦିଏ। ଯାହା ସବୁ ଦ୍ୱୈତ ଦେଖାଯାଏ, ସେସବୁ ଆପେକ୍ଷିକ ଭାବେ ଦେଖିଲେ ହିଁ ଅଦ୍ୱୈତ। କିନ୍ତୁ ଦ୍ୱୈତ ମିଥ୍ୟା ବୋଲି ଆମେ ବୁଝିପାରିଲେ ଅଦ୍ୱୈତର ସ୍ଥିତି ରହିବ ନାହିଁ। ପରମସତ୍ୟଙ୍କର ଅବଧାରଣା ହେଉଛି ଉଭୟ ଅଦ୍ୱୈତ ଏବଂ ବହୁବିଧତାର କଳ୍ପନାର ଉପାଦାନ। ଏହି ଉଭୟ କଳ୍ପନାକୁ ପ୍ରକାଶିତ କରୁଥିବା ସଚେତନତା ଏକ ହିଁ। ଏହି ଚୈତନ୍ୟ- ଆମ ଭିତରେ ଥିବା ଜୀବନତତ୍ତ୍ୱ ହିଁ ହେଉଛି ଶାଶ୍ୱତ, ସର୍ବବ୍ୟାପୀ ସତ୍ୟ ।

ଆମଠାରେ ଥିବା ଏହି ପରମସତ୍ୟଙ୍କର ଅନୁଭୂତି ପାଇଁ ପ୍ରଥମେ ଆମକୁ ପାର୍ଥିବ ଜଗତରୁ ଦୃଷ୍ଟି ହଟାଇ ନେବାକୁ ହେବ। ଏହା ସତ୍ୟାଭିମୁଖୀ ତୀର୍ଥଯାତ୍ରାର ସ୍ୱାଭାବିକ ପ୍ରଥମ ପଦଚଳନ ହେବ। ଇନ୍ଦ୍ରିୟ ଏବଂ ମନଦ୍ୱାରା ବୋଧଗମ୍ୟ ହେଉଥିବା ବହୁବିଧତାର

ବିପରୀତ ଏ ସବୁ ପଛରେ ବାସ୍ତବରେ ଏକ ଅଦ୍ୱୈତ ସତ୍ୟ ବିଦ୍ୟମାନ ବୋଲି ବୁଝିବାକୁ ହେବ। ଏ ପର୍ଯ୍ୟନ୍ତ ଆସିଲେ ଏକତ୍ୱ ବୋଧ କରିପାରୁଥିବା ମନ ତା'ର ପ୍ରାୟ ମୂଳ ତତ୍ତ୍ୱକୁ ଫେରିଯାଏ ଏବଂ ଏହା ହିଁ ହେଉଛି ସତ୍ୟାନୁଭୂତି ।

**ନାତ୍ମଭାବେନ ନାନେଦଂ ନ ସ୍ୱେନାପି କଥଞ୍ଚନ।**

**ନ ପୃଥଙ୍ନାପୃଥକ୍ କିଞ୍ଚିତ୍ ଇତି ତତ୍ତ୍ୱବିଦୋ ବିଦୁଃ ॥୩୪॥**

ନ = ନଥାଏ (ପ୍ରକୃତରେ), ଆତ୍ମ-ଭାବେନ = ଆତ୍ମା ସହିତ ଅଭିନ୍ନ ପରି, ଇଦମ୍ ନାନା = ଏହି ବିବିଧ ବହୁବିଧତା, ନ = ନୁହେଁ, ସ୍ୱେନ ଅପି = ସ୍ୱତନ୍ତ୍ରଭାବେ (ନିଜ ସ୍ୱରୂପରେ) ମଧ୍ୟ, କଥଞ୍ଚନ = କଦାପି, ନ = ନୁହେଁ, ପୃଥକ୍ = ପୃଥକ, ଅପୃଥକ୍ = ଅଭିନ୍ନ, ନ କିଞ୍ଚିତ୍ = କିଛି ବି (ରହେ ନାହିଁ), ଇତି = ଏହିପରି, ତତ୍ତ୍ୱ-ବିଦଃ = ବିଜ୍ଞ ଜନ (ଆକ୍ଷରିକ ଅର୍ଥରେ ସତ୍ୟଙ୍କର ଜ୍ଞାତା), ବିଦୁଃ = ଜାଣନ୍ତି, ଅନୁଭବ କରନ୍ତି ।

*ଏହି ବିବିଧ ବହୁବିଧ ଜଗତ ଆତ୍ମାଙ୍କ ସହିତ ଏକୀଭୂତ ହୋଇ ନଥାଏ, ଏହା ସ୍ୱତନ୍ତ୍ର ଭାବରେ ମଧ୍ୟ ରହି ପାରିବ ନାହିଁ । ଏହି ବହୁବିଧ ଜଗତ ବ୍ରହ୍ମଙ୍କଠାରୁ ଭିନ୍ନ ନୁହେଁ, ଅଭିନ୍ନ ମଧ୍ୟ ନୁହେଁ। ଆତ୍ମାନୁଭବୀ ଉପନିଷଦ୍‌ର ଜ୍ଞାତାମାନେ ଏକଥା କହନ୍ତି ॥୩୪॥*

କଳ୍ପିତ ଅବାସ୍ତବ ସାପ, ଦଉଡ଼ିକୁ ଛାଡ଼ି ରହିପାରିବ ନାହିଁ; ଦଉଡ଼ିଟି ସାପ ନୁହେଁ, ସାପ ବି ଦଉଡ଼ି ନୁହେଁ, ତେବେ ବି ଦଉଡ଼ି ବିନା ସାପ ରହିପାରିବ ନାହିଁ....ସାପଟି ବାସ୍ତବରେ ଦଉଡି ବ୍ୟତୀତ ଅନ୍ୟ କିଛି ନୁହେଁ । ସେହିପରି ବହୁବିଧ ଜଗତ ସତ୍ୟ ବ୍ୟତୀତ ଅନ୍ୟ କିଛି ନୁହଁ ଏବଂ ତଥାପି ଜଗତ ବାସ୍ତବ ନୁହେଁ । ସତ୍ୟ ବି ଜଗତ ନୁହଁନ୍ତି, ପୁଣି ସତ୍ୟ ନ ଥିଲେ ବହୁବିଧ ଜଗତ ରହିପାରନ୍ତା ନାହିଁ ।

ବହୁବିଧ ପାର୍ଥିବ ଜଗତକୁ ଏଠାରେ ଗୋଟିଏ ସୁନ୍ଦର ପଦ-ଇଦମ୍ (ଏହି) ଦ୍ୱାରା ସୂଚାଇ ଦିଆଯାଇଛି । ଏହି ପଦ ବଦଳରେ ଆଉ କିଛି ଦିଆଯାଇ ପାରିବ ନାହିଁ । ଇଦମ୍ ପଦ ଦ୍ୱାରା ପ୍ରାକୃତିକ ଜଗତକୁ ସୂଚାଇ ଦିଆଯାଇଛି, ଆମେ ଯାହା ବି ବୋଧ କରିପାରିବା ତାହା ଇଦମ୍ ଏବଂ ତାଦ୍ୱାରା ଆମେ ବିଷୟ ଜଗତ ସମ୍ବନ୍ଧରେ ଜ୍ଞାନ ଲାଭ କରୁଛେ ।

ପୂର୍ବ ପ୍ରବଚନରୁ ଆମେ ଜାଣିଛେ ଯେ, ସମଗ୍ର ଜଗତକୁ ଦୁଇଟି ସ୍ୱତନ୍ତ୍ର ବିଭାଗରେ ବିଭକ୍ତ କରି ହେବ - ପାର୍ଥିବଜଗତ ଏବଂ ଆତ୍ମ-ଜଗତ। ପାର୍ଥିବଜଗତ ପରମ-ସତ୍ୟଙ୍କ ଉପରେ କେବଳ ଅଧ୍ୟାସ ମାତ୍ର ଏବଂ ଆତ୍ମା ହେଉଛନ୍ତି ଏକମାତ୍ର ସତ୍ୟ ବୋଲି ଉପନିଷଦ୍‌ର

ଦ୍ରଷ୍ଟାମାନେ ଆମକୁ ବାରମ୍ବାର କହିଛନ୍ତି । ତେଣୁ 'ଏହା' ବା 'ତାହା' ଭାବରେ ଆମେ ଯାହା କିଛି ଦେଖିବା ତାହା ନିଶ୍ଚୟ ପାର୍ଥିବ ଜଗତର ଅନ୍ତର୍ଭୁକ୍ତ ହେବ ।

କେବଳ ଦୂରସ୍ଥ ପାହାଡ଼ମାଳା, ଗଛବୃକ୍ଷ, ମଣିଷ ଏବଂ ପାର୍ଥିବ ଜଗତ ଅସତ୍ୟ ବୋଲି ଭାବିବାକୁ ହେବ ନାହିଁ, 'କିନ୍ତୁ ଏ ଶରୀର' 'ଏ' କଳ୍ପନା ଏବଂ ମୋ ଠାରେ 'ଏ' ଅଜ୍ଞାନ ମଧ୍ୟ ପ୍ରକୃତରେ ଅସତ୍ୟ; ତେଣୁ ପାର୍ଥିବ ଜଗତର ଅନ୍ତର୍ଭୁକ୍ତ । ବାହ୍ୟ ପାର୍ଥିବ ଜଗତ ଅପେକ୍ଷା ଆମର ଶରୀର, ମନ ଏବଂ ବୁଦ୍ଧି ଅଧିକତର ସତ୍ୟ ବୋଲି ବିଶ୍ୱାସ କରିବାକୁ ଆମର ଇଚ୍ଛା ହୁଏ, କାରଣ ସେମାନେ ପରମସତ୍ୟ ଆତ୍ମାଙ୍କର ନିକଟବର୍ତ୍ତୀ। ତଥାପି ଜଣେ ପ୍ରକୃତ ଆତ୍ମାନୁସନ୍ଧାନୀ ଜଡ଼ ଉପାଧି ନ ଥାଇ ଆତ୍ମାଙ୍କର ଅନ୍ୱେଷଣ କଲାବେଳେ, ଅସତ୍ୟ ଭାବରେ ମନ ଏବଂ ବୁଦ୍ଧିକୁ ମଧ୍ୟ ତ୍ୟାଗ କରିବ ଏବଂ ତାକୁ ପାର୍ଥିବ ଜଗତର ଯେକୌଣସି ଅଂଶରେ ଆତ୍ମା ବ୍ୟତୀତ ଅନ୍ୟ କିଛି ଦେଖାଯିବ ନାହିଁ।

ଏହାର ମାନେ ନୁହେଁ ଯେ ଏହା ସତ୍ୟ ବୋଲି ପ୍ରଥମ ଥର ଶୁଣିବାମାତ୍ରେ ଆମେ ବିଶ୍ୱାସ କରି ନେବୁ । କାରଣ ଦ୍ୱୈତ ଭାବ ଆମ ମନର ଏତେ ଗଭୀରତାରେ ରହିଛି ଯେ ମନ ଏବଂ ବୁଦ୍ଧି ମାଧ୍ୟମରେ ଶାଶ୍ୱତ, ସର୍ବବ୍ୟାପୀ, ଅଦ୍ୱୈତ ସତ୍ୟଙ୍କର ବୋଧ ସମ୍ଭବ ନୁହେଁ ।

ତେଣୁ, ଏଠାରେ ଗୌଡ଼ପାଦ କହିଛନ୍ତି, ଏହି ପରମସତ୍ୟଙ୍କଠାରେ କୌଣସି ବହୁବିଧ ଜଗତ ନାହିଁ ଏବଂ ଦୁନିଆଁର ସବୁ ମହାନ୍ ଦ୍ରଷ୍ଟାମାନେ ବାରମ୍ବାର ଜୋର ଦେଇ କହିଛନ୍ତି, ଏପରି ଏକ ନିର୍ବିକଳ୍ପ ପୂର୍ଣ୍ଣାଙ୍ଗ ଅବସ୍ଥାକୁ ପହଞ୍ଚି ହେବ । ଏଠାରେ ଲକ୍ଷ୍ୟ କରିବା କଥା ଯେ, ସ୍ୱ-ଅନୁଭୂତିରେ ସ୍ଥିତ, ନିଜେ ଜଣେ ମହାନ୍ ଗୁରୁ ହେଲେ ମଧ୍ୟ ଏହା ତାଙ୍କର ବ୍ୟକ୍ତିଗତ ଅନୁଭୂତି ବୋଲି ନ କହି ଗୌଡ଼ପାଦ ଶାସ୍ତ୍ରର ଗୁରୁମାନଙ୍କୁ ଉଦ୍ଧୃତ କରି କହିଛନ୍ତି "ଏହା ହେଉଛି ବିଜ୍ଞଜନଙ୍କ ମତ।"

ଆମେ ପ୍ରଥମରୁ ଲକ୍ଷ୍ୟ କରିଛୁ ଯେ, କୌଣସି ଦାର୍ଶନିକଙ୍କର ନିଜର ବ୍ୟକ୍ତିଗତ ଅନୁଭୂତି ବା ମତ ଭାବରେ ଏଠାରେ କୌଣସି ଦର୍ଶନକୁ ଗ୍ରହଣ କରାଯାଇ ନାହିଁ । ହିନ୍ଦୁଶାସ୍ତ୍ରର ମହାନ୍ ପରମ୍ପରା ମାନି ଏହା ତାଙ୍କର ନିଜର ଅନୁଭୂତି ବୋଲି ନ କହି ଗୌଡ଼ପାଦ ତାଙ୍କ ମହାନ୍ ଗୁରୁମାନଙ୍କର ଉଦ୍ଧୃତି ଦେଇଛନ୍ତି।

**ବୀତରାଗଭୟକ୍ରୋଧୈର୍ମୁନିଭିର୍ବେଦପାରଗୈଃ ।**
**ନିର୍ବିକଲ୍ପୋ ହ୍ୟୟଂ ଦୃଷ୍ଟଃ ପ୍ରପଞ୍ଚପଶମୋଽଦ୍ୱୟଃ ॥୩୫॥**

ବୀତ-ରାଗ-ଭୟ-କ୍ରୋଧୈଃ = ଆସକ୍ତି (ରାଗ), ଭୟ ଏବଂ କ୍ରୋଧରୁ ମୁକ୍ତ, ମୁନିଭିଃ = ମୁନିଙ୍କ ଦ୍ୱାରା, ବେଦ-ପାରଗୈଃ = ବେଦରେ ପାରଙ୍ଗମ, ନିର୍ବିକଳ୍ପଃ = ସମସ୍ତ କଳ୍ପନାରହିତ, ହି = ପ୍ରକୃତରେ (ଅଟେ), ଅୟମ୍ = ଏହି(ଆତ୍ମା), ଦୃଷ୍ଟଃ = ଦ୍ରଷ୍ଟା, ପ୍ରପଞ୍ଚ-ଉପଶମଃ = ପ୍ରପଞ୍ଚ(ବହୁବିଧ ଜଗତ)ରୁ ମୁକ୍ତ, ଅଦ୍ୱୟଃ = ଅଦ୍ୱୈତ।

*ଆସକ୍ତି, ଭୟ ଏବଂ କ୍ରୋଧରୁ ମୁକ୍ତ, ଗଭୀର ଅଧ୍ୟୟନଶୀଳ ଏବଂ ଉପନିଷଦ୍‌ର ସତ୍ୟରେ ପ୍ରବୀଣ ପ୍ରାଚୀନ ଦ୍ରଷ୍ଟାମାନେ ନିର୍ବିକଳ୍ପ ଭାବରେ ଏହି ପରମସତ୍ୟଙ୍କର ଅନୁଭୂତି ଲାଭ କରିଛନ୍ତି । ଏହା ପ୍ରପଞ୍ଚରୁ ମୁକ୍ତ ଏବଂ ଶାଶ୍ୱତ ଅଦ୍ୱୈତ ବୋଲି ସେମାନେ ଅନୁଭବ ମଧ୍ୟ କରିଛନ୍ତି ॥୩୫॥*

ବର୍ତ୍ତମାନ ଆମେ ଯେଉଁ ଶାସ୍ତ୍ର ଅଧ୍ୟୟନ କରୁଛୁ, ତାହା ହେଉଛି ପ୍ରକରଣ ଗ୍ରନ୍ଥ। ଏହା ଶାସ୍ତ୍ର ନୁହେଁ। ଶାସ୍ତ୍ରରେ ସିଦ୍ଧାନ୍ତ ଏବଂ ଆଦର୍ଶ ବିସ୍ତାରିତ ଏବଂ ବିଶଦ ଭାବରେ ବ୍ୟାଖ୍ୟା କରାଯାଇଥାଏ, କିନ୍ତୁ ଶିଷ୍ୟମାନଙ୍କୁ ସାଧନାର ଉପାୟ ଦେବା ପାଇଁ ଗୁରୁମାନେ ପ୍ରକରଣ ଗ୍ରନ୍ଥରେ ସେହି ଶାସ୍ତ୍ରର ପାରମ୍ପରିକ ନିୟମ ମାନିବାକୁ ବାଧ ହୋଇଥାନ୍ତି।

ପୁନଶ୍ଚ ଆମେ ବାରମ୍ବାର କହିଛୁ ଯେ ଆଧ୍ୟାତ୍ମିକ ପ୍ରଚାର ପାଇଁ ଭାରତରେ ଦର୍ଶନ କେବଳ ଏକ ଅନ୍ଧ ସିଦ୍ଧାନ୍ତ ନୁହେଁ। ଦାର୍ଶନିକଙ୍କର ଦୃଷ୍ଟିକୋଣ ଯେତେ ମହାନ ଏବଂ ଉନ୍ନତ ହେଲେ ମଧ୍ୟ ଆର୍ଯ୍ୟମାନଙ୍କର ବାସ୍ତବବାଦୀ ମନ ତାହାକୁ ଦର୍ଶନ ଭାବରେ ଗ୍ରହଣ କରିବ ନାହିଁ, ଯଦି ଆଲୋଚିତ ପୂର୍ଣ୍ଣତା-ପ୍ରାପ୍ତି ପାଇଁ ସେଥିରେ ଜୀବନଧାରଣର ଏକ ପନ୍ଥା ଦିଆଯାଇ ନଥିବ। ତେଣୁ ଆତ୍ମାନୁଭୂତିର ନିଜସ୍ୱ ଉପାୟ ନ ଥିଲେ କୌଣସି ହିନ୍ଦୁ ଦର୍ଶନ ପୂର୍ଣ୍ଣାଙ୍ଗ ହୋଇ ପାରିବ ନାହିଁ ।

ଏହି ଦୃଷ୍ଟିରୁ ବିଚାର କଲେ ଆମେ ଦେଖିପାରୁ ଯେ, ଚାର୍ବାକପନ୍ଥୀ କୁହାଯାଉଥିବା ବସ୍ତୁବାଦୀମାନଙ୍କୁ ମଧ୍ୟ ହିନ୍ଦୁ ଧର୍ମର ଷଡ୍ ଦର୍ଶନରେ ଅନ୍ତର୍ଭୁକ୍ତ କରା ଯାଇଛି। କାରଣ ତାହା "ଶରୀର ହିଁ ଏକମାତ୍ର ସତ୍ୟ ଏବଂ ବିଷୟ ଉପଭୋଗ ଜୀବନର ଏକମାତ୍ର ଲକ୍ଷ୍ୟ" ଏହି ଦାର୍ଶନିକ ଦୃଷ୍ଟିଭଙ୍ଗୀ ଦେବା ସହିତ ସର୍ବାଧିକ ବିଷୟଭୋଗ ଲାଭ କରିପାରିବାର ଏକ ବିସ୍ତାରିତ ପନ୍ଥା ମଧ୍ୟ ନିର୍ଦ୍ଦେଶ କରିଛି ।

ପ୍ରକରଣ ଗ୍ରନ୍ଥର ସାହିତ୍ୟିକ ବିବରଣୀର ସ୍ୱଚ୍ଛତା ପ୍ରତି ଧ୍ୟାନ ରଖି ଗୌଡ଼ପାଦ ଏଠାରେ ବେଦାନ୍ତର ଶିଷ୍ୟଙ୍କ ପାଇଁ ଆଧ୍ୟାତ୍ମିକ ସାଧନାର ବିଶଦ ଉପଦେଶ ଦେଇଛନ୍ତି। ପ୍ରତ୍ୟେକ ଅଧ୍ୟାୟର ଶେଷ କେତୋଟି ଶ୍ଳୋକରେ ବିଶଦ ଉପଦେଶ ଦିଆଯାଇ ଯଥେଷ୍ଟ ସ୍ପଷ୍ଟ କରାଯାଇଛି। ବର୍ତ୍ତମାନ ଆଲୋଚିତ ଅଧ୍ୟାୟରେ ଏହି ଶ୍ଳୋକରୁ ଆରମ୍ଭ କରି ଚାରିଗୋଟି ଶ୍ଳୋକରେ ଗୋଟିଏ ନିର୍ଦ୍ଦିଷ୍ଟ ଉପାୟର ବ୍ୟାଖ୍ୟା କରାଯାଇଛି । ଏହି ଉପାୟ ଦ୍ୱାରା ବ୍ୟକ୍ତି ମିଥ୍ୟା ଜଗତର ଉପରକୁ ଉଠି, ତା'ପଛରେ ଥିବା ଅଦ୍ୱୈତ ସତ୍ୟଙ୍କର ଅନୁଭୂତି ଲାଭ କରିପାରିବ।

ଅନ୍ତିମ ଶ୍ଳୋକରେ, ଉପନିଷଦ୍‌ରେ ଦର୍ଶାଯାଇଥିବା ମହାନ ଲକ୍ଷ୍ୟର ଅନୁଭୂତି ଲାଭ କରି ଜଣେ ପଣ୍ଡିତଙ୍କର ଉକ୍ତି ଆମକୁ କୁହା ଯାଇଛି । ସେହି ଧାରଣାକୁ ଆଗେଇ ନେବା ସହିତ ମନ ଏବଂ ବୁଦ୍ଧିର କେତେକ ଆବଶ୍ୟକୀୟ ଗୁଣ ମଧ୍ୟ ଦିଆ ଯାଇଛି । ଋଷିମାନଙ୍କ ଦୃଷ୍ଟିକୋଣ ପର୍ଯ୍ୟନ୍ତ ଆମକୁ ଉଠାଇ ନେବାକୁ ହେଲେ ଏହି ସବୁ ଗୁଣର ବିକାଶ କରିବାକୁ ହେବ। ତାସହିତ ଏଥିରେ ମହାନ୍ ଋଷିଙ୍କର ଜୀବନର ଆଧ୍ୟାତ୍ମିକ ମୂଲ୍ୟବୋଧର ବିଶଦ ବର୍ଣ୍ଣନା ମଧ୍ୟ ରହିଛି ।

ପ୍ରାଚୀନ ଯୁଗର ଋଷିମାନେ ସମସ୍ତ ପ୍ରକାର "ଆସକ୍ତି, କ୍ରୋଧ, ଏବଂ ଭୟରୁ" ମୁକ୍ତ ଥିଲେ ବୋଲି ଏଠାରେ କୁହା ଯାଇଛି। ଅଜ୍ଞାନ ଏବଂ ଭ୍ରାନ୍ତି ହେଲା ଆମର ମାନସିକ ବିକୃତି ଆମ ଅନ୍ତର୍ଜଗତର ସମସ୍ତ ନକାରାତ୍ମକତା। ଯେକୌଣସି ସମୟରେ ଆମର ପଶୁତ୍ୱର ସଠିକ ଆକଳନ ହେଉଛି ସେହି ମୁହୂର୍ତ୍ତରେ ଆମର ଅଜ୍ଞତାର ସଠିକ ମାପ । ଆସକ୍ତି, ଘୃଣା ଇତ୍ୟାଦିରେ ମନ ଏବଂ ବୁଦ୍ଧି ମାଧ୍ୟମରେ ଆମଠାରେ ଥିବା ଅଜ୍ଞତା ଏବଂ ବିପରୀତ ଗୁଣ ଜୀବନରେ ପ୍ରକାଶିତ ହୁଏ । ଆମ ପଶୁତ୍ୱର ଘାସବଣର ମଞ୍ଜି ହେଉଛି ଆସକ୍ତି(ରାଗ)। ବାହ୍ୟ ପାର୍ଥିବ ବସ୍ତୁ ପୂରାପୂରି ସତ୍ୟ - ଆମର ଏହି ଦୃଢ଼ ବିଶ୍ୱାସରୁ କୌଣସି ଗୋଟିଏ ବସ୍ତୁ ପ୍ରତି ଆସକ୍ତି ହୋଇଯାଏ ।

ନିଜର ଛାଇକୁ ଭଲ ପାଉଥିବା ଲୋକ ଦୁନିଆଁରେ କେହି ଜଣେ ଅଛି ବୋଲି ଏପର୍ଯ୍ୟନ୍ତ ଜଣା ପଡ଼ି ନାହିଁ । ଏହାର କାରଣ ହେଲା, ଛାୟାଟି ବାସ୍ତବ ନୁହେଁ ବୋଲି ସେ ଜାଣେ । ବାହ୍ୟ ବିଷୟ ଜଗତ ଆମର ଛାଇ ପରି ଅବାସ୍ତବ ବୋଲି ବୁଝି ପାରିଲେ, ସେସବୁ ପ୍ରତି ଆମର କୌଣସି ଆସକ୍ତି ରହିବ ନାହିଁ । ଆସକ୍ତି ନ ଥିଲେ ଘୃଣା ରହିବ ନାହିଁ । ଆସକ୍ତିରୁ ହିଁ ଘୃଣାର ଜନ୍ମ । କ୍ରୋଧ ଏବଂ ଘୃଣା ସେହି ଏକା ଜାତିର । ଆସକ୍ତି ଥିବା ସ୍ଥାନରେ ଭୟ ମଧ୍ୟ ଥାଏ । ଉପନିଷଦ୍‌ର ଦାମ୍ଭିକ ଘୋଷଣା ହେଲା - ପରମସତ୍ୟ ହିଁ କେବଳ ନିର୍ଭୟ ଅବସ୍ଥା । ଅନ୍ୟ କିଛି ଥିବା ଜାଗାରେ ହିଁ ଭୟ ରହେ।

ବର୍ତ୍ତମାନ ଆମେ ଜାଣି ପାରିଛୁ ଯେ, ଭୟର ଅନ୍ତ ହେଉଥିବା ଅବସ୍ଥା ହିଁ ହେଉଛି ସୁଷୁପ୍ତିର ଆନନ୍ଦମୟ ଅବସ୍ଥା । ଏହି ଅବସ୍ଥାରେ ଘନୀଭୂତ ଏକତ୍ୱ ବ୍ୟତୀତ ଅନ୍ୟ କିଛି ଅନୁଭୂତ ହୁଏ ନାହିଁ । ଅନ୍ୟ କିଛି ଥିବା ଜାଗାରେ ଭୟ ଥାଏ । ତେଣୁ ଆସକ୍ତି, କ୍ରୋଧ ଏବଂ ଭୟ ଉପରେ ବିଜୟ ହିଁ ହେଉଛି ସାଧନାର ଅୟମାରମ୍ଭ ଏବଂ ତାହା ହିଁ ସାଧନାର ପରିପୂର୍ଣ୍ଣତା ମଧ୍ୟ ।

ତପ, ଉପବାସ, ଭକ୍ତି, ସେବା ଦ୍ୱାରା କିମ୍ବା ଆଧ୍ୟାତ୍ମିକ ପୂର୍ଣ୍ଣତାରେ ପଦାର୍ପଣ କରିବା ପାଇଁ ଅନ୍ୟ ଯେକୌଣସି ସାଧାରଣ ଜଣାଶୁଣା ଉପାୟ ଦ୍ୱାରା ଏହା ଲାଭ କରିହେବ ନାହିଁ । ଏମାନଙ୍କ ମଧ୍ୟରୁ କୌଣସିଟି ହେଲେ ଆମ ଭିତରେ ଥିବା ଅଜ୍ଞାନର ମୂଳତତ୍ତ୍ୱକୁ ନଷ୍ଟ କରି ପାରିବେ ନାହିଁ – ଯଦି ଉପନିଷଦ୍‌ର ଜ୍ଞାନ ଉପରେ ଏହା ପର୍ଯ୍ୟବେକ୍ଷିତ ହୋଇ ନ ଥିବ । ତେଣୁ ଏଠାରେ କୁହାଯାଇଛି ଯେ, ମହାନ୍ ଋଷିମାନେ ଥିଲେ ବେଦରେ ପ୍ରବୀଣ ।

ସାଧକମାନଙ୍କ ପାଇଁ ଏହି ଶ୍ଳୋକଟିରେ ଗୋଟିଏ ଖୁବ୍ ପବିତ୍ର ଏବଂ ଗୋପନୀୟ ଆଭାସ ରହିଛି ଯେ, ଜ୍ଞାନମାର୍ଗରେ ଅଗ୍ରସର କରିବା ପାଇଁ କୌଣସି ସାଧକ ଯଦି ସାହସ କରେ ତେବେ ସର୍ବପ୍ରଥମେ ସେ ଉପନିଷଦୀୟ ସାହିତ୍ୟର ଗଭୀର ଅଧ୍ୟୟନ କରି ସାଧନା ଆରମ୍ଭ କରିବା ଦରକାର ।

ସାଧକ ଉପନିଷଦ୍‌ର ଠିକ୍ ଅର୍ଥ ଯଥାର୍ଥ ଭାବରେ ବୁଝି ପାରିଲେ ଏବଂ ଧ୍ୟାନ ଓ ମନନ ଦ୍ୱାରା ଆସକ୍ତି, ଘୃଣା ଇତ୍ୟାଦି ସହଜାତ ଦୁର୍ଗୁଣ (ନକାରାତ୍ମକ ଗୁଣ) ଉପରେ ବିଜୟଲାଭ କରିପାରିଲେ ମନର ଅନିୟନ୍ତ୍ରିତ କଳ୍ପନା ଉପରେ ସେହି ପରିମାଣରେ ବିଜୟଲାଭ କରିପାରିବ । ଆମର ସମସ୍ତ ପ୍ରକାର ଅସଫଳତା ଏବଂ ଭୟ ପାଇଁ ବାସ୍ତବରେ କଳ୍ପନା ହିଁ ଦାୟୀ । କଳ୍ପନାକୁ ଜୟ କଲେ ଆମେ ମନ ଉପରେ ବିଜୟ ଲାଭ କରି ପାରିବା ଏବଂ ମନ ଉପରେ ବିଜୟର ସେହି ମୁହୂର୍ତ୍ତରେ ଆତ୍ମାନୁଭବ ହୋଇପାରିବ ।

ଅନ୍ତିମ ଶ୍ଳୋକଟିର ସଂସ୍କୃତ ଶବ୍ଦ 'ଇଦମ୍' ବହୁବିଧ ଜଗତକୁ ଦର୍ଶାଏ ଏବଂ ଦାର୍ଶନିକ ସାହିତ୍ୟରେ ତାହା ପୂର୍ଣ୍ଣାଙ୍ଗ, କଳାତ୍ମକ ଢ଼ଙ୍ଗରେ ବ୍ୟବହାର କରାଯାଇ ଥିବାର ଆମେ ଲକ୍ଷ୍ୟ କରିଛୁ । ଆତ୍ମାଙ୍କୁ ଦର୍ଶାଇବା ପାଇଁ ଏଠାରେ ଆଉ ଗୋଟିଏ ବିଚକ୍ଷଣ ଚେଷ୍ଟା ମଧ୍ୟ ଦେଖିବାକୁ ମିଳେ । ଗୌଡ଼ପାଦ ଏହି ଶ୍ଳୋକରେ ଆତ୍ମା ପଦ ବ୍ୟବହାର ନ କରି ଆତ୍ମାଙ୍କୁ ଦର୍ଶାଇବା ପାଇଁ ତାରି ସାଙ୍ଗେ ସମାନ ହେବା ପରି ଗୋଟିଏ ଶକ୍ତିଶାଳୀ ଭାବଗର୍ଭକ ପଦ ବ୍ୟବହାର କରିଛନ୍ତି: ସେ କହିଛନ୍ତି 'ଏହା'(ଅୟମ) 'ଏହି' (ଏହା –

ଅୟମ୍), ଶବ୍ଦ ଆତ୍ମାଙ୍କୁ କିପରି ଦର୍ଶାଏ ବୋଲି ପୂର୍ବରୁ ଆଲୋଚନା କରାଯାଇଛି । ଆମେ କହିଛୁ ଯେ, ଆତ୍ମା 'କର୍ତ୍ତା' ହୋଇଥିବାରୁ ଆମର ନିକଟବର୍ତ୍ତୀ ଏବଂ ତାହା ହିଁ ହେଉଛନ୍ତି ନିର୍ବିକଳ୍ପ 'ଏହା' ଯାହାଙ୍କ ପ୍ରସଙ୍ଗରେ ଏପରି କିଛି ତୁଳନାତ୍ମକ ନାହିଁ ଯେ, ଯେଉଁଠାରୁ ଆମେ ସର୍ବନାମ 'ତାହା' ଦ୍ୱାରା 'ଏହା' ଦେଖାଇ ପାରିବା ।

ଲକ୍ଷ୍ୟ କରିବା କଥା, ବସ୍ତୁ-ଜଗତକୁ (ସର୍ବନାମ ଯୁଷ୍ମାତ୍) ଦର୍ଶାଇବା ପାଇଁ ଇଦମ୍ (ଏହା) ବ୍ୟବହାର କରାଯାଇଥିଲା, ଏବଂ କର୍ତ୍ତା ଜଗତ (ସର୍ବନାମ ଅସ୍ମାତ୍)କୁ ଦର୍ଶାଇବା ପାଇଁ ଅୟମ୍ (ଏହା) ବ୍ୟବହାର କରାଯାଇଛି ।

ଶରୀର, ମନ, ବୁଦ୍ଧି ଉପରେ ସଂପୂର୍ଣ୍ଣ ବିଜୟ ମାଧ୍ୟମରେ କେନ୍ଦ୍ରର କେନ୍ଦ୍ର ଆତ୍ମାଙ୍କୁ ଅନୁଭବ କରିବା ହେଉଛି ପ୍ରକୃତ ସଫଳତା ଏବଂ ଯେକୌଣସି ଯୁଗର ମହାନ ନାୟକଙ୍କ ପାଇଁ ଏହା ସୁରକ୍ଷିତ। ଏଭେରେଷ୍ଟ ଶୃଙ୍ଗ ଆରୋହଣ କରିବା ପାଇଁ ଯେତେ ସାହାସ ଓ ପରିଶ୍ରମ ଦରକାର, ଏଥିପାଇଁ ତା'ର ହଜାର ଗୁଣ ସାହାସ ଓ ପରିଶ୍ରମ ଦରକାର । ତ୍ରିଜଗତର ସମ୍ରାଟ ହେବାପାଇଁ ଯେଉଁ ସଂଘର୍ଷ ଦରକାର, ଏହା ତୁଳନାରେ ତାହା ପିଲାଙ୍କ ଖେଳ ବୋଲି ଆମ ଶାସ୍ତ୍ରରେ କୁହାଯାଇଛି । ବିଶେଷ କରି ନାସ୍ତିକମାନଙ୍କ ମନରେ ଗୋଟିଏ ସନ୍ଦେହ ଦେଖାଯିବା ସ୍ୱାଭାବିକ ଯେ, ମନ ଏବଂ ବୁଦ୍ଧି ନାମକ ଆମର ବଳବାନ ମାନସିକ ଶକ୍ତି ଉପରେ ବିଜୟ ଲାଭ କରି କି ଲାଭ ମିଳିବ ? ଏହି ଶ୍ଳୋକରେ ଆତ୍ମାଙ୍କ ଉପରେ ଆରୋପିତ ଗୁଣରେ ତାହା ଦର୍ଶାଯାଇଛି ।

ଆତ୍ମାଙ୍କୁ ପ୍ରପଞ୍ଚ ଉପଶମଃ (ବହୁବିଧତାର ଭ୍ରାନ୍ତିରୁ ମୁକ୍ତ) ଭାବରେ ବ୍ୟାଖ୍ୟା କରାଯାଇଛି। ଉପନିଷଦ୍‌ରେ ଦର୍ଶାଯାଇଥିବା ଲକ୍ଷ୍ୟସ୍ଥଳ ଏପରି ଗୋଟିଏ ରାଜ୍ୟ ଯେ, ଆମର ଦୁଃଖ ସେଠାକୁ ପ୍ରବେଶ କରିବାର ସାହସ କରି ପାରିବ ନାହିଁ । ନିର୍ବିକଳ୍ପ ଆନନ୍ଦକୁ ବିଚଳିତ କରିବା ପାଇଁ କ୍ରନ୍ଦନର କୌଣସି ସୁଯୋଗ ନାହିଁ । ଯେଉଁ ସବୁ ମୃତ୍ୟୁ ଭୟ ଏବଂ ସସୀମତାର ବନ୍ଧନରେ ପଡ଼ି ସେ ଜୀବନର ଦୁଃଖ-ଯନ୍ତ୍ରଣା ଭୋଗ କରେ, ଆତ୍ମାଙ୍କର ପୁନରାବିଷ୍କାର କରିପାରିଲେ ସେହି ସବୁ ବନ୍ଧନ ତୁଟି ଯାଏ । ବ୍ୟକ୍ତି ନିର୍ବିକଳ୍ପ ସତ୍ତାର ଅସୀମ ଜଗତର ସ୍ୱାଧୀନତାରେ ପ୍ରବେଶ କରେ । ଆତ୍ମାଙ୍କର ଏହି ଜଗତ ଅଦ୍ୱୈତ, ଅର୍ଥାତ୍ ସତ୍ୟଙ୍କଠାରେ କୌଣସି ବହୁବିଧତାର ଧାରଣା କେବେ ବି ରହିପାରିବ ନାହିଁ । ପରମସତ୍ୟ ହେଉଛନ୍ତି ଏକମେବ ଅଦ୍ୱୈତୀୟ ।

**ତସ୍ମାଦେବଂ ବିଦିତ୍ୱୈନଂ ଅଦ୍ୱୈତେ ଯୋଜୟେତ୍ ସ୍ମୃତିମ୍ ।**
**ଅଦ୍ୱୈତଂ ସମନୁପ୍ରାପ୍ୟ ଜଡ଼ବଲ୍ଲୋକମାଚରେତ୍ ।।୩୬।।**

ତସ୍ମାତ୍ = ତେଣୁ, ଏବମ୍ ବିଦିତ୍ୱା = ଏହିପରି ଭାବରେ ଜାଣି, ଏନମ୍ = ଏହି ଆତ୍ମା, ଅଦ୍ୱୈତେ = ଅଦ୍ୱୈତ ଆତ୍ମା ଠାରେ, ଯୋଜେୟେତ୍ ସ୍ମୃତିମ୍ = ତୁମ ମନ ତାଦାତ୍ମ୍ୟ କର(ମନ ଯୋଡ଼ି ଦିଅ), ଅଦ୍ୱୈତମ୍ = (ଆତ୍ମା), ମମନୁପ୍ରାପ୍ୟ = ଉତ୍ତମ ରୂପରେ ଲାଭ କରି, ଜଡ଼ବତ୍ = ଜଡ଼ ପରି, ଲୋକମ୍ = ଦୁନିଆରେ, ଆଚରେତ୍ = ଚଳପ୍ରଚଳ କରିବ (ବଞ୍ଚିବ)।

*ତେଣୁ ଆତ୍ମାଙ୍କର ସ୍ୱରୂପ ଏପରି ବୋଲି ଜାଣି ଏହାଙ୍କ (ଅଦ୍ୱୈତଙ୍କ) ସହିତ ତୁମର ମନ ଯୋଡ଼ି ଦିଅ । ଅଦ୍ୱୈତ ସତ୍ୟଙ୍କୁ ଭଲଭାବେ ଜାଣି ଜଡ଼ ପରି ଚଳପ୍ରଚଳ କର (ଜୀବନ ଧାରଣ କର) ।।୩୬।।*

'ତେଣୁ' ପଦ ଦ୍ୱାରା ଏହି ଶ୍ଳୋକ ଏବଂ ପୂର୍ବବର୍ତ୍ତୀ ଶ୍ଳୋକର ସମ୍ପର୍କ ସ୍ପଷ୍ଟ କରି ଦିଆଯାଇଛି । ଏହି ଶ୍ଳୋକ ହେଉଛି ପୂର୍ବବର୍ତ୍ତୀ ଶ୍ଳୋକରେ ଦିଆଯାଇଥିବା ଧାରଣାର ପରିସମାପ୍ତି। ବେଦର ଆଦର୍ଶ- ମହାନ୍ ଋଷିମାନେ ନିଜର ନକାରାତ୍ମକ ଗୁଣ ଦୂର କରି ପରିପୂର୍ଣ୍ଣତାରେ ପଦାର୍ପଣ କରି ଶକ୍ତିହୀନ କଳ୍ପନାର ଯନ୍ତ୍ରଣାରୁ ଉର୍ଦ୍ଧ୍ୱରେ ଥିବା କଥା ସେମାନେ ଜାଣିପାରିଲେ । 'ତେଣୁ' ସାଧକମାନେ ନିଜକୁ ମଧ୍ୟ ଶୁଦ୍ଧ କରିବା ପାଇଁ ସାଧ୍ୟମତେ ଚେଷ୍ଟା କରିବା ଦରକାର ଏବଂ ଶାସ୍ତ୍ରରେ ଯେଉଁ ଜ୍ଞାନ ବିଷୟରେ ଜଣା ହୋଇଛି ରୀତିସଙ୍ଗତ ଭାବେ ତାର ଶିକ୍ଷା କରିବା ଉଚିତ୍ । ମନନ ଏବଂ ନିଦିଧ୍ୟାସନ ମାଧ୍ୟମରେ ଏହି ମହାନ୍ ଚିନ୍ତାଧାରା ବୁଝିପାରିଲେ, ଧ୍ୟାନକର୍ତ୍ତାର ସୂକ୍ଷ୍ମ ବ୍ୟକ୍ତିତ୍ୱ ତା'ର ଅକ୍ଷମ କଳ୍ପନା, ଭୟ, ଆସକ୍ତି ଇତ୍ୟାଦି ତ୍ୟାଗ କରେ ଏବଂ ସେହି ମୁହୂର୍ତ୍ତରେ ହିଁ ବ୍ୟକ୍ତି ସତ୍ୟାନୁଭୂତି ଲାଭ କରେ ।

ଜ୍ଞାନ ପଥର ପଥିକମାନଙ୍କ ପାଇଁ ଶାସ୍ତ୍ର ଜ୍ଞାନର ପରମ ଆବଶ୍ୟକତାକୁ ଶ୍ଳୋକଟି ସ୍ପଷ୍ଟ ଭାବରେ ନିର୍ଦ୍ଦେଶ କରିଛି । ଧର୍ମର ବିଜ୍ଞାନ ବିଷୟରେ ନ ଜାଣିଲେ ଦୃଢ଼ତାର ସହିତ ଜ୍ଞାନ ମାର୍ଗର ଅନୁସରଣ କରି ହେବ ନାହିଁ । ବାସ୍ତବରେ ଶାସ୍ତ୍ରାଧ୍ୟୟନର ପ୍ରାଧାନ୍ୟ ସମ୍ବନ୍ଧରେ ଶଙ୍କର ଏବଂ ଅନ୍ୟାନ୍ୟ ଆଚାର୍ଯ୍ୟମାନେ ବାରମ୍ବାର ଜୋର ଦେଇଛନ୍ତି ଏବଂ ସେମାନଙ୍କ ମଧ୍ୟରୁ ଅନେକେ କହନ୍ତି ଯେ, ଜ୍ଞାନ ପଥର ଯାତ୍ରୀଙ୍କ ପାଇଁ ଶାସ୍ତ୍ରାଧ୍ୟୟନ ବିଶେଷ ଭାବରେ ଆବଶ୍ୟକ।

ନ୍ୟାୟ, ତର୍କ ଏବଂ ଶାସ୍ତ୍ର ମାଧ୍ୟମରେ ପରମସତ୍ୟଙ୍କୁ ବୁଝି ନ ପାରି "ଅଦ୍ୱୈତଙ୍କଠାରେ ତୁମର ଧ୍ୟାନ କେନ୍ଦ୍ରିତ କର ।" ଅଦ୍ୱୈତ ବ୍ରହ୍ମ ସମ୍ବନ୍ଧରେ ଶ୍ରବଣ କରି ନିରନ୍ତର ଧ୍ୟାନ କଲେ, ନାମ-ରୂପ ପଛରେ ଏକ ମହାନ୍ ସତ୍ୟ ଥିବାର ସମ୍ଭାବନା ନେଇ ଆମର ଅଧିକରୁ ଅଧିକ ବୋଧ ହୁଏ। ସେହି ମହାନ୍ ସତ୍ୟ ହିଁ ଶାଶ୍ୱତ, ନିର୍ବିକଳ୍ପ ଏବଂ ଅଦ୍ୱୈତ୍ୟ । ଏହିପରି ଭାବରେ ବୁଝି, ଏହି ବୌଦ୍ଧିକ ଅବବୋଧ ସହିତ ଆମର ମାନସିକ ଏବଂ ବୌଦ୍ଧିକ ସତ୍ତା ଲୟ ରଖି ଚାଲିବା କଥା ବୋଲି ଏହି ଶ୍ଳୋକରେ କୁହାଯାଇଛି ।

ଶ୍ଳୋକର ଦ୍ୱିତୀୟ ପଂକ୍ତିଟିକୁ ସାଧାରଣତଃ ଆକ୍ଷରିକ ଅର୍ଥରେ ଗ୍ରହଣ କରାଯାଏ ଏବଂ ତଥାକଥିତ ପଣ୍ଡିତମାନେ ଏଥିରୁ ଅନେକ ଅହିତକର ପରାମର୍ଶ ଉଦ୍ଧୃତ କରନ୍ତି, ଏଥିରେ ସନ୍ଦେହ ନାହିଁ। ଉଦାହରଣସ୍ୱରୂପ, ସେମାନଙ୍କ ମତରେ ଜଣେ ଅଦ୍ୱୈତ ସତ୍ୟଙ୍କର ଅନୁଭୂତି ଲାଭ କରିବା ପରେ ତା' ପିଢ଼ିର ଲୋକଙ୍କ ପାଇଁ ଆବେଗଶୂନ୍ୟ ହୋଇଯାଏ ଏବଂ ସେହିପରି ବ୍ୟବହାର କରେ । ସମସାମୟିକ ଲୋକମାନଙ୍କୁ ମାର୍ଗଦର୍ଶନ କରାଇବା ପାଇଁ ତା'ର କୌଣସି ଅଧିକାର ରହେ ନାହିଁ ଏବଂ ତାହା ତା'ର କର୍ତ୍ତବ୍ୟ ମଧ୍ୟ ନୁହେଁ ।

ଜ୍ଞାନ, ବୈରାଗ୍ୟ ଏବଂ ପୂର୍ଣ୍ଣତାର ଗୁରୁମାନେ ଏ ସଂସାରକୁ ଆସି ପ୍ରକୃତ ଶାସ୍ତ୍ରୀୟ ଜ୍ଞାନରେ ଭକ୍ତମାନଙ୍କୁ ଉପଦେଶ ଦେବାବେଳେ, ଯେଉଁମାନଙ୍କୁ ଅସୁବିଧା ହୋଇଥିବ, ସେମାନଙ୍କ ଦ୍ୱାରା ହିଁ ଏହି ଶ୍ଳୋକଟିର ଏପରି ବ୍ୟାଖ୍ୟା କରାଯାଇଥିବ । ଏପରି ହୋଇଥିବ, କାରଣ ଲୋକମାନେ ଶାସ୍ତ୍ରର ପ୍ରକୃତ ଜ୍ଞାନ ଲାଭ କରି, ଧର୍ମର ବିଜ୍ଞାନ ଭଲ ଭାବରେ ଜାଣିଲେ, ତଥାକଥିତ ପଣ୍ଡିତମାନେ ଅଶିକ୍ଷିତ ଜନତାର ବିଶ୍ୱାସ ନେଇ ବ୍ୟବସାୟ କରିପାରିବେ ନାହିଁ ।

ବାସ୍ତବରେ, ସଂସ୍କୃତି ଜଗତକୁ ମହାନ୍ ଗୁରୁମାନଙ୍କର ଅବଦାନରେ ଇତିହାସ ପରିପୂର୍ଣ୍ଣ; ଆମେ ଯେତେ ଅଧିକ ଜାଣିବାକୁ ଚାହିଁବା, ସେତେ ଦେଖି ପାରିବା ଯେ, ଜଗତର ସଂସ୍କୃତିର ବିକାଶର ସମଗ୍ର ଇତିହାସ ହେଉଛି ଏପରି ମହାନ୍ ଆଧ୍ୟାତ୍ମିକ ଗୁରୁମାନଙ୍କର ଅବଦାନର ଇତିହାସ। ବଞ୍ଚିବା ପାଇଁ ଦୁନିଆର ଯେତେ ମହାନ ଧର୍ମ ମଣିଷକୁ ଯେଉଁ ପରମସତ୍ୟ ଏବଂ ମୂଲ୍ୟବୋଧ ଯୋଗାଇଛନ୍ତି, ସେସବୁକୁ ଫେରାଇ ନେଲେ ଯାହା ରହିବ, ତାହା ହେବ ପଶୁ ସଦୃଶ ମଣିଷଙ୍କର ଏକ ବିଶୃଙ୍ଖଳ ସମାଜ - ସେଥିରେ ପ୍ରତ୍ୟେକ ମଣିଷ ପ୍ରତ୍ୟେକଙ୍କ ସହିତ ଜଙ୍ଗଲି ଅସଭ୍ୟତାରେ ପ୍ରତିଯୋଗିତା କରୁଥିବ।

ତେବେବି, ମହାନ୍ ଗୁରୁମାନେ "ଦୁନିଆରେ ନିର୍ବୋଧ ବସ୍ତୁପରି ବ୍ୟବହାର କର" କହିବାର ତାତ୍ପର୍ଯ୍ୟ କଣ? ଅତି ବେଶୀରେ ଏହାର କେବଳ ଏତିକି ଅର୍ଥ ହୋଇପାରେ ଯେ, ତାପରଠାରୁ ଏପରି ଜଣେ ମହାନ୍ ଗୁରୁ ଦୁଃଖଦ ଜାଗତିକ ସମସ୍ୟାକୁ କୋମଳ ଆବେଗରେ ଲକ୍ଷ୍ୟ କରିବ ନାହିଁ କିମ୍ବା ପ୍ରବଳ ଉତ୍ତେଜନାରେ ସେହି ସମୟର ଦର୍ଶନକୁ ଆଲିଙ୍ଗନ କରିନେବ ନାହିଁ । ମନ ଏବଂ ବୁଦ୍ଧିର ଏପରି ଆଧିକ୍ୟ ବିନା, ପ୍ରଶାନ୍ତ ଭାବରେ ସେ ଜୀବନର ସମସ୍ୟାର ମୁହାଁମୁହିଁ ହେବ ଏବଂ ପ୍ରତ୍ୟେକଟି ସମସ୍ୟାର ଗଭୀରତାକୁ ଯିବ । ମୂଳଭୂତ ଦୋଷତ୍ରୁଟି ଏବଂ ସେମାନଙ୍କର ଆଧ୍ୟାତ୍ମିକ ଉପଚାର ସମ୍ବନ୍ଧରେ କର୍ତ୍ତୃତ୍ୱର ସହିତ, ଦୃଢ଼ ବିଶ୍ୱାସର ସହିତ ଘୋଷଣା କରିବ।

ପୁନଶ୍ଚ, ଜଣେ ଆତ୍ମାନୁଭବୀ ହେଉଛନ୍ତି ଆଧ୍ୟାତ୍ମିକ ଶକ୍ତିର ଭଣ୍ଡାର, ବହୁବିଧତାର ଜଗତରେ କିଛି ପରିବର୍ତ୍ତନ ଆଣିବା ବାସ୍ତବରେ ତାଙ୍କ ପାଇଁ କିଛି ଅସମ୍ଭବ ନୁହେଁ । ସେ ଯଦି ଭାବପ୍ରବଣ ବା ଆବେଗପ୍ରବଣ ହେବେ, ତେବେ ସେହି ପିଢ଼ିର ଲୋକମାନଙ୍କର ସାମଗ୍ରିକ ପ୍ରାରବ୍ଧରେ ଅନଧିକାର ହସ୍ତକ୍ଷେପ କରିବା ପାଇଁ ଲାଳାୟିତ ହେବେ ଏବଂ ସେପରି କଲେ ଗଡ଼ି ଚାଲିଥିବା ଦୁନିଆର ଚକ ଆଗେଇବାରେ ବାଧା ଦେବେ ।

ଭାବପ୍ରବଣତା ଟିକିଏ ସୁଯୋଗ ପାଇଲେ ଖୁବ୍ କମ୍ ସମୟ ଭିତରେ ମନକୁ ଅଧିକୃତ କରି ବସିବ, ଏବଂ ମନର ରାଜ୍ୟ ବଢ଼ିବା କେତେ ବିପଜ୍ଜନକ, ତୁମେମାନେ ଜାଣିଛ। ମନ ବଢିଲେ ବୁଦ୍ଧିର ଗଳା ଚିପି ହୋଇଯାଏ। ବ୍ୟକ୍ତିତ୍ୱର ଏକପାଖିଆ ବିକାଶ ବ୍ୟକ୍ତିତ୍ୱକୁ କୁତ୍ସିତ କରିଦିଏ। ଗୁରୁ ଏଠାରେ ଜୋର ଦେଇ କହୁଛନ୍ତି ଯେ, ପୂର୍ଣ୍ଣତା ଲାଭ କଲେ ଜଣେ ସାଧକ 'ବିଶାଳ' ହୃଦୟର ଲୌକିକତାରେ ଆସକ୍ତ ହେବା ଉଚିତ ନୁହେଁ।

ପୁନଶ୍ଚ, ଏହକୁ ଯଥାର୍ଥ ଦୃଷ୍ଟିକୋଣରୁ ବୁଝି ପାରିଲେ, ସବୁଠାରୁ ଅନୁଭବ ବିହୀନ ବସ୍ତୁ ମଧ୍ୟ ମନୁଷ୍ୟ ପାଇଁ ଶୁଭଙ୍କର ହୋଇଯାଏ । ଭୌଗୋଳିକ ଦୃଷ୍ଟିରୁ କୌଣସି ଦେଶର ପର୍ବତ, ଜଙ୍ଗଲ, ମରୁଭୂମି ଏବଂ ବିଲ-ପଡ଼ିଆ ସେହି ଦେଶ ପାଇଁ ଅତ୍ୟନ୍ତ ମଙ୍ଗଳକର ବୋଲି ଆମେ ଜାଣିଛୁ । ସେମାନେ ପୂରାପୂରି ଜଡ଼-ନିର୍ଜୀବ, କିଛି କରୁଥିବା ପରି ମନେ ହୁଏ ନାହିଁ। ତଥାପି ନୀରବରେ, ନିରବଚ୍ଛିନ୍ନ ଭାବରେ ଲୋକଙ୍କର ମଙ୍ଗଳରେ ଲାଗିଥାନ୍ତି ।

ସେହିପରି ଜଣେ ଜ୍ଞାନର ଗୁରୁ, ଜଣେ ଦିବ୍ୟପୁରୁଷ (ଅବତାରୀ ପୁରୁଷ) ନିଜର ଢୋଲ ବଜାଇ ସମାଜ ଉପରେ ମୂଲ୍ୟବୋଧ ଲଦି ଦେଇ ବିପ୍ଲବ ସୃଷ୍ଟି କରିବାର ବା ସାମାଜିକ, ସାମ୍ପ୍ରଦାୟିକ, ଜାତୀୟ ବା ଆନ୍ତର୍ଜାତୀୟ ବିବାଦରେ ଭାଗ ନେବାର ଆଶା

କରାଯାଏ ନାହିଁ । ସେହି ସମୟର ଅଯଥା ସଂଘର୍ଷରେ ବା ବିତି ଯାଉଥିବା ଐତିହାସିକ ଘଟଣାରେ ଭାଗ ନେଇ ତାଙ୍କର ପବିତ୍ର ଶକ୍ତିର ଅପବ୍ୟୟ କରିବା କଥା ନୁହେଁ । ଅନ୍ୟ ପକ୍ଷରେ, ଏପରି ଆଧ୍ୟାତ୍ମିକ ଶକ୍ତିସମ୍ପନ୍ନ, ଈଶ୍ୱରୀୟ ମର୍ଯ୍ୟାଦାର ଲୋକମାନେ ଜୀବନ ଯେଉଁ ମହାନ୍ ସତ୍ୟ ଉପରେ ପର୍ଯ୍ୟବେକ୍ଷିତ, ତା'ର ଘୋଷଣା କରି ତତ୍‌କାଳୀନ ସମୟର ସାଂସ୍କୃତିକ ବିକାଶ ଏବଂ ଫଳସ୍ୱରୂପ ହେଉଥିବା ଆଧ୍ୟାତ୍ମିକ ପ୍ରଗତିକୁ ପଥ-ପ୍ରଦର୍ଶନ କରି ଆଗେଇ ନେବା ଦରକାର ।

**ନିସ୍ତୁତିର୍ନିର୍ନମସ୍କାରୋ ନିଃସ୍ୱଧାକାର ଏବ ଚ ।**

**ଚଲାଚଲନିକେତଶ୍ଚ ଯତିର୍ଯ୍ୟାଦୃଚ୍ଛିକୋ ଭବେତ୍ ॥ ୩୭॥**

ନିଃସ୍ତୁତି = ସମସ୍ତ ସ୍ତୁତି (ପ୍ରାର୍ଥନା) ତ୍ୟାଗ କରି; ନିଃନମସ୍କାର = ସମସ୍ତ ବିଧି-ବିଧାନ (କର୍ମକାଣ୍ଡ) ତ୍ୟାଗ କରି, ନିଃସ୍ୱଧାକାରଃ ଏବ ଚ = ଏବଂ ସ୍ୱଧାମାନ (ପିତୃପୁରୁଷ)ଙ୍କ ପାଇଁ ସମସ୍ତ ପୂଜା (ମଧ୍ୟ ତ୍ୟାଗକରି), ଚଲ-ଅଚଲ = ଏବଂ ଶରୀର ଓ ଆତ୍ମା ଥାଇ; ନିକେତଃ = ଆଧାର ବା (ତାଙ୍କର) ଆଶ୍ରୟ, ଚ = ଏବଂ, ଯତିଃ = ଯତି, ଆତ୍ମସଂଯମୀ; ଯାଦୃଚ୍ଛିକଃ = ସୁଯୋଗ କ୍ରମେ ଯାହା ଆସେ ବା ଯାହା ପରିସ୍ଥିତି ଉପରେ ନିର୍ଭରଶୀଳ, ଭବେତ୍ = ଜୀବନ ଧାରଣ କରିବା ଉଚିତ।

*ଆତ୍ମସଂଯମୀ ଯତି ସମସ୍ତ ପ୍ରଶଂସା ଓ ସମ୍ମାନ ତଥା ଧାର୍ମିକ ବା ଅନ୍ୟ ଯାହାସବୁ ନିର୍ଦ୍ଦେଶ କରାଯାଇଥିବା କାର୍ଯ୍ୟକଳାପରୁ ଉର୍ଦ୍ଧ୍ୱରେ ରହିବା କଥା। ଆତ୍ମା ହିଁ କେବଳ ତାଙ୍କ ଶରୀରର ଏକମାତ୍ର ଆଧାର ବା ଆଶ୍ରୟ ହେବା କଥା । ଶାରୀରିକ ଆବଶ୍ୟକତା ପାଇଁ ସେ କେବଳ ସୁଯୋଗ ଉପରେ ନିର୍ଭର କରିବା କଥା (ଯେତେବେଳେ ଯାହା ମିଳିଲା, ତାହା ଉପରେ) ॥୩୭॥*

ଆତ୍ମାନୁଭୂତି ଲାଭ କରିଥିବା ବ୍ୟକ୍ତି ଜୀବନରେ ନିଜର ଲକ୍ଷ୍ୟ ବୁଝି ପାରିବା ପରେ, ନିର୍ବିକଳ୍ପ ପୂର୍ଣ୍ଣାଙ୍ଗତାର ଉଚ୍ଚତର ସ୍ତରରୁ ସମାଜର ସେବା କରି ଚଳପ୍ରଚଳ ହେବା ଏବଂ ନିଜର ବିଶ୍ୱାସରେ ଦୃଢ଼ ରହିବା କଥା। ଏପରି ଜଣେ ମହାନ୍ ଲୋକଙ୍କ ପ୍ରତି ଯେଉଁ ସମାଜର ସଦସ୍ୟମାନଙ୍କର ସହାନୁଭୂତି ନଥିବ, ସେଠାରେ ସେ କିପରି ଜୀବନ ଧାରଣ କରିବେ ? ଆତ୍ମାନୁଭବ ପରେ ମଧ୍ୟ ନଶ୍ୱର ଶରୀରକୁ ଶାନ୍ତି ଏବଂ ମୃତ୍ୟୁ ହାତରେ ସମର୍ପଣ କରିଦେବା ପର୍ଯ୍ୟନ୍ତ ଆତ୍ମାନୁଭବୀ ବ୍ୟକ୍ତିର ବୈରାଗ୍ୟ ରହିବ- ସେକଥା ଦର୍ଶାଉଥିବା ଏହି ଶ୍ଳୋକଟି ହେଉଛି ହିନ୍ଦୁ ଦାର୍ଶନିକ ସାହିତ୍ୟର ଅନ୍ୟତମ ଅନୁକରଣୀୟ ଶ୍ଳୋକ । ଅନେକ ଉପନିଷଦ୍‌ରେ ବିଭିନ୍ନ ଶବ୍ଦରେ ଏହି ଧାରଣାକୁ ପ୍ରାୟ ଦୋହରାଯାଇଥାଏ।

କୌଣସି ବ୍ୟକ୍ତି ସମାଜ ପାଖରୁ ଯେତେବେଳେ ପ୍ରଶଂସା ବା ସମ୍ମାନ ଚାହେଁ, ସେତେବେଳେ ହିଁ ସମସାମୟିକ ସମାଜକୁ ଆଦର କରେ । ଏହି ଉଭୟ ପାଇଁ (ପ୍ରଶଂସା ବା ସମ୍ମାନ ପାଇଁ) କାହାର ବୈରାଗ୍ୟ ରହିଲେ, ସତ୍ୟ ପଥରେ ଜଗତର ପାଦ ଟଳମଳ ହେଲାବେଳେ, ଜଗତକୁ ଆଦର କରିବା ପାଇଁ ଏବଂ ସାହାସର ସହିତ ଜଗତର ସେବା କରିବା ପାଇଁ ସେ ସ୍ୱାଧୀନ ହୋଇଯାଏ । ଉଦାହରଣ ସ୍ୱରୂପ - ପରବର୍ତ୍ତୀ ନିର୍ବାଚନରେ ଜିତିବାକୁ ଚାହୁଁଥିବା ଜଣେ ରାଜନୀତିଜ୍ଞ ସମାଜର ଇଚ୍ଛା ବିରୁଦ୍ଧରେ ଯାଇପାରିବେ ନାହିଁ - ସେ ଇଚ୍ଛା ଯେତେ ଅସଙ୍ଗତ (ହାସ୍ୟାସ୍ପଦ)ପରି ତାଙ୍କର ମନେ ହେଉଥିଲେ ବି ରାଜନୀତିଜ୍ଞ ସମାଜର ଇଚ୍ଛାନୁସାରେ କାମ କରିବା ଦରକାର, ସେ ସେହି ଯୁଗର ଦାସ। ଅଥଚ ଆତ୍ମାନୁଭବୀ ବ୍ୟକ୍ତି ହେଉଛନ୍ତି ସ୍ୱାଧୀନତାର ସନ୍ତାନ । ଉଚିତ ବିଷୟର ଦାବୀ କରିବା ପାଇଁ ସେ ଜନତାକୁ ଶିକ୍ଷା ଦିଅନ୍ତି ଏବଂ ଏପରି କଲାବେଳେ ତାଙ୍କୁ ନାନା ବିପଦର ସମ୍ମୁଖୀନ ହେବାକୁ ପଡେ। ଏପରିକି ଜଣେ ଯୋଦ୍ଧାପରି ସେ ମୃତ୍ୟୁର ସମ୍ମୁଖୀନ ହୁଅନ୍ତି ଏବଂ ତାପରେ ସମସ୍ତେ ତାଙ୍କୁ ପଥ ପ୍ରଦର୍ଶକ ଭାବରେ ସ୍ୱୀକାର କରନ୍ତି ।

ଜଣେ ଆତ୍ମାନୁଭବୀ ବ୍ୟକ୍ତିଙ୍କ ପାଇଁ ନିତ୍ୟ ବା ନୈମିତ୍ତିକ କର୍ମ ପାଳନ ନିମନ୍ତେ କୌଣସି ବାଧ୍ୟବାଧକତା ନ ଥାଏ, କାରଣ, ସେ ସମସ୍ତ କର୍ମ ପୂରଣ କରିସାରିଥାନ୍ତି । ସେହିପରି ଧର୍ମର କର୍ମକାଣ୍ଡୀୟ ଅଂଶ ହେଉଛି ସଂଗଠିତ ହେବାକୁ ଚାହୁଁଥିବା ମନ ପାଇଁ ପ୍ରଶିକ୍ଷଣ। ପରମସତ୍ୟଙ୍କର ଅନୁଭୂତି ଲାଭ କରିଥିବା ଏବଂ ମନର ଅତୀତ ହୋଇଥିବା ବ୍ୟକ୍ତିଙ୍କର କୌଣସି କର୍ମ କରିବାର ଆଉ ଦରକାର ନଥାଏ । ବେଦାନ୍ତ ମତରେ ତାଙ୍କ ପାଇଁ ଏହା ବାସ୍ତବରେ ଅସମ୍ଭବ।

ଏପରି କ୍ଷେତ୍ରରେ ପ୍ରଶ୍ନ ଉଠିବ ଯେ, ନିଜର ଶରୀର ପାଇଁ ତାଙ୍କର ଦୃଷ୍ଟିଭଙ୍ଗୀ କିପରି ହେବ ? ଜୀବନରେ ଆବଶ୍ୟକତା ବୋଲି ଆମେ ଯାହାକୁ କହୁ, ସେସବୁ ହେଲା - ଖାଦ୍ୟ, ବସ୍ତ୍ର, ଏବଂ ବାସସ୍ଥାନ। ଏପରି ଜଣେ ପରମପୁରୁଷ ସବୁପ୍ରକାର ଦାୟିତ୍ୱ ଏବଂ ଜୀବନର କର୍ତ୍ତବ୍ୟରୁ ନିଜକୁ ପୃଥକ୍ କରି ଦେଇଥିଲେ, ତାଙ୍କର କିଛି ଅଭାବ ରହିବ ନାହିଁ । ତାଙ୍କର କୌଣସି ଅଭାବ ନ ଥିବାରୁ କିଛି ସମ୍ପତ୍ତି ମଧ୍ୟ ନ ଥାଏ । ଦେଶର ଜଣେ ନାଗରିକ ଭାବରେ ମଧ୍ୟ ଦେଶର ଆଇନ ତାଙ୍କୁ ଗଣନା କରିବା ଦରକାର ହୁଏ ନାହିଁ । ଜନଗଣନା ତାଲିକାରେ ତାଙ୍କର ନାମ ନ ଥାଏ, ତାଙ୍କୁ ଜଣେ ଅଯଥା ବୋଝ ଏବଂ ପ୍ରାୟ ନିରକ୍ଷର ଭାବରେ ଧରାଯାଏ। ଶାସ୍ତ୍ର ଏଠାରେ ସ୍ପଷ୍ଟ ଭାବରେ ଦେଖାଇ ଦେଇଛି ଯେ, ପୂର୍ଣ୍ଣତାପ୍ରାପ୍ତ ଏପରି ଜଣେ ବ୍ୟକ୍ତି ଆତ୍ମାଙ୍କର ଆଶ୍ରୟ ବିନା ଶରୀର ପାଇଁ ଅନ୍ୟ କିଛି ଆଶ୍ରୟ ଯୋଗାଇବା ଉଚିତ ନୁହେଁ । ନିରନ୍ତର ଚଳପ୍ରଚଳ ହେଉଥିବା

ଶରୀରକୁ ତାଙ୍କର ନିକେତ କରି ସେ ଅଚଳ ହୋଇ ରହନ୍ତି । ଶରୀର, ମନ, ଏବଂ ବୁଦ୍ଧିକୁ ଆତ୍ମାଙ୍କର ପୂର୍ଣ୍ଣ ସଂରକ୍ଷଣରେ ଛାଡ଼ିଦେଇ ଏପରି ମହାତ୍ମା ଚଳପ୍ରଚଳ ହୁଅନ୍ତି । ନିକେତ (ବାସସ୍ଥାନ) ବିଷୟରେ ଯଦି କୁହାଗଲା, ତେବେ ଖାଦ୍ୟ ଓ ବସ୍ତ୍ର କଥା କଣ ?

ଏହି ଦୁଇ ଆବଶ୍ୟକୀୟତାକୁ ନେଇ ସୁଯୋଗବଶତଃ ଯେତେବେଳେ ଯାହା ମିଳିଗଲା, ମହାତ୍ମା ତା'ରି ଉପରେ ସମ୍ପୂର୍ଣ୍ଣ ନିର୍ଭର କରନ୍ତି । ଏଠାରେ ବ୍ୟବହାର କରାଯାଇଥିବା ଶବ୍ଦର ଅର୍ଥ ବଡ଼ ତାତ୍ପର୍ଯ୍ୟପୂର୍ଣ୍ଣ । ଯତି ଅର୍ଥାତ୍ ଯିଏ ଆଧ୍ୟାତ୍ମିକତାର ଅଭ୍ୟାସ କରନ୍ତି । ତେଣୁ ଏହି ଶ୍ଳୋକରେ କୁହାଯାଇଛି ଯେ, ଧର୍ମର ଅଭ୍ୟାସ କରୁଥିବା ଜଣେ ସାଧକ ମଧ୍ୟ, କିଛି କାମନା ନ କରି, ସୁଯୋଗବଶତଃ ଯାହା ମିଳେ, ସେଥିରେ ସନ୍ତୁଷ୍ଟ ହୋଇ ଜୀବନଧାରଣ କରିବା କଥା ।

**ତତ୍ତ୍ୱମାଧ୍ୟାତ୍ମିକଂ ଦୃଷ୍ଟ୍ୱା ତତ୍ତ୍ୱଂ ଦୃଷ୍ଟ୍ୱା ତୁ ବାହ୍ୟତଃ ।**
**ତତ୍ତ୍ୱୀଭୂତସ୍ତଦାରାମଃ ତତ୍ତ୍ୱାଦପ୍ରଚ୍ୟୁତୋ ଭବେତ୍ ।।୩୮।।**

ତତ୍ତ୍ୱମ୍ = ସତ୍ୟ, ଆଧ୍ୟାତ୍ମିକମ୍ = ଅନ୍ତରରେ, ଦୃଷ୍ଟ୍ୱା = ଦେଖି, ତତ୍ତ୍ୱମ୍ = ସତ୍ୟ, ଦୃଷ୍ଟ୍ୱା = ଦେଖି, ତୁ = ବାସ୍ତବରେ, ବାହ୍ୟତଃ = ବାହାରେ, ତତ୍ତ୍ୱୀଭୂତଃ = ସତ୍ୟଙ୍କ ସହିତ ଏକ ହୋଇ, ତଦା-ରାମଃ = ଏବଂ ସେହିଠାରୁ ଆନନ୍ଦ ଆହରଣ କରେ (ସେହି ସତ୍ୟରେ ରମଣ କରେ), ତତ୍ତ୍ୱାତ୍ = ସତ୍ୟଙ୍କଠାରୁ, ଅପ୍ରଚ୍ୟୁତଃ ଭବେତ୍ = କଦାପି ବିଚ୍ୟୁତ ହୁଏ ନାହିଁ ।

*ଶରୀର ଭିତରେ ଅନ୍ତରଙ୍ଗ ଭାବରେ ଏବଂ ବାହାରେ ଜଗତରେ ବହିରଙ୍ଗ ଭାବରେ ସତ୍ୟଙ୍କର ଅନୁଭବ କରିବା ପରେ ସେ ସତ୍ୟଙ୍କ ସହିତ ଏକ ହୋଇ ଯାଆନ୍ତି, ଏବଂ ତାପରଠାରୁ ସେଠାରୁ ନିଜର ଆନନ୍ଦ ଆହରଣ କରନ୍ତି ଏବଂ ସତ୍ୟରୁ କଦାପି ବିଚ୍ୟୁତ ହୁଅନ୍ତି ନାହିଁ ।।୩୮।।*

ଏହି ଶ୍ଳୋକରେ ପୂର୍ବ ଶ୍ଳୋକର ଧାରଣାକୁ ଆଗେଇ ନିଆ ଯାଇଛି ଏବଂ ଆତ୍ମାନୁଭୂତି ଗନ୍ତବ୍ୟରେ ଯାତ୍ରାର ଶେଷ ଭାଗ ବିଷୟରେ କିଞ୍ଚିତ୍ ଆଭାସ ଦିଆ ଯାଇଛି ଏବଂ ଜଣେ ମହାତ୍ମାଙ୍କର ନିଅର ଆନନ୍ଦର ଉତ୍ସ ବିଷୟରେ କିଛି ସୂତ୍ର ଦେବାର ଚେଷ୍ଟା କରାଯାଇଛି। ଅନ୍ତରଙ୍ଗ ଏବଂ ବହିରଙ୍ଗ ଭାବରେ ଆତ୍ମାନୁଭବ କରିବା ପରେ ମହାତ୍ମା ସତ୍ୟସ୍ୱରୂପ ହୋଇ ଯାଆନ୍ତି। ଅନ୍ତରଙ୍ଗ ଏବଂ ବହିରଙ୍ଗର ଧାରଣା ହେଉଛି ମନର। ସତ୍ୟ ଦର୍ଶନ ପରେ ଉଭୟ ଅନ୍ତରରେ ଏବଂ ବାହାରେ ଏହି ଧାରଣା ଆଉ ରହେ ନାହିଁ। ବ୍ୟକ୍ତି ମନର ଅତୀତ ହୋଇଯାଏ ଏବଂ ତାପାଇଁ ଶୁଦ୍ଧ ଚୈତନ୍ୟ ଉଭୟ ଭିତରେ ଏବଂ ବାହାରେ ସମାନ ଭାବରେ ବିଦ୍ୟମାନ ଥାଆନ୍ତି ।

ସଂକ୍ଷେପରେ, ଆତ୍ମାନୁଭୂତି ଦ୍ୱାରା ଅନୁଭବ କରିହେବ ଯେ, ବିଷୟ ଜଗତ ହେଉଛି ମିଥ୍ୟା ଏବଂ 'ଭିତରେ' ଓ 'ବାହାରେ' କେବଳ ଆତ୍ମା ହିଁ ଥାଆନ୍ତି । ଏହି ପ୍ରସଙ୍ଗରେ ଗୋଟିଏ ବିଷୟ ଲକ୍ଷ୍ୟ କରିବା ଜରୁରୀ ଯେ, ଆତ୍ମାନୁଭବର ଅର୍ଥ କେବଳ ଅନ୍ତରସ୍ଥ ଆତ୍ମାଙ୍କର ଅନୁଭବ ନୁହେଁ। ସାରା ଦୁନିଆ ଖରାପ ଏବଂ ନିଜଠାରେ ଦିବ୍ୟତ୍ୱ ଅନୁଭବ କରିଛନ୍ତି ବୋଲି କହୁଥିବା ସାଧୁ ହେଉଛନ୍ତି ମହାନ୍ ମିଥ୍ୟାବାଦୀ ।

ଶାସ୍ତ୍ର ଏଠାରେ ସ୍ପଷ୍ଟ ଭାବରେ କହିଛନ୍ତି ଯେ, ମଣିଷ ଭିତରେ ଥିବା ଦିବ୍ୟତ୍ୱ ଏବଂ ଚତୁର୍ଦ୍ଦିଗରେ ବ୍ୟାପିଥିବା ସର୍ବବ୍ୟାପୀ ସତ୍ୟଙ୍କୁ ଏକାସାଙ୍ଗେ ଅନୁଭବ କରିବା ହେଉଛି ବାସ୍ତବ ଆତ୍ମାନୁଭବ। ସ୍ୱାଭାବିକଭାବେ ଏପରି ଦିବ୍ୟ ପୁରୁଷଙ୍କ ପାଇଁ ବାହ୍ୟ ଇନ୍ଦ୍ରିୟ ସୁଖ ଆନନ୍ଦର ଉତ୍ସ ହୋଇ ପାରିବ ନାହିଁ, କାରଣ ଇନ୍ଦ୍ରିୟ ଭୋଗ୍ୟ ବସ୍ତୁ ଜଗତ ତାଙ୍କ ପାଇଁ ଗୋଟିଏ ସ୍ୱପ୍ନ । ଆତ୍ମାନୁଭୂତିର ଆନନ୍ଦ ପ୍ରାପ୍ତ ହେଲେ ମଧ୍ୟ, ଗୋଟିଏ ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁ ଭାବରେ ଆତ୍ମାକୁ ଦେଖିବାକୁ ବା ଉପଭୋଗ କରିବାକୁ ତାଙ୍କର ସାଧନ ନ ଥାଏ, କାରଣ ସେ ଉଭୟ ମନ ଏବଂ ବୁଦ୍ଧିର ଅତୀତ ହୋଇଯାଇ ଥାଆନ୍ତି। ତେଣୁ ତାଙ୍କ ଦୃଷ୍ଟିକୋଣରୁ କୌଣସି ବସ୍ତୁ ନ ଥାଏ ଏବଂ ପାର୍ଥିବ ଦୃଷ୍ଟିକୋଣରୁ ଜ୍ଞାନୀଙ୍କଠାରେ କୌଣସି ଦ୍ରଷ୍ଟା ନ ଥାଏ। ତେବେ ବି ମହାତ୍ମାଙ୍କର ସତ୍ତାର ଆଧାର ସେହି ଭାବାତୀତ ଆନନ୍ଦ ବିଷୟରେ ବ୍ୟାଖ୍ୟା କରିବାରେ ଶାସ୍ତ୍ରମାନେ କେବେ ବି କ୍ଳାନ୍ତ ହୋଇ ନାହାଁନ୍ତି ।

ଏଠାରେ ଗୋଟିଏ ସନ୍ଦେହ ଦେଖାଦିଏ, ଜ୍ଞାନୀଙ୍କଠାରେ 'ଉପଭୋଗ୍ୟ ବସ୍ତୁ' କ'ଣ ଏବଂ 'କିଏ' ଭାବାତୀତ ଆନନ୍ଦ ଉପଭୋଗ କରେ ? ସରଳ ଭାବରେ ଏଠାରେ ଉତ୍ତର ଦିଆ ଯାଇଛି । ସେ ନିଜେ ହିଁ ଆନନ୍ଦ ଏବଂ ସେହିଥିରୁ ସେ ଆନନ୍ଦ ପାଆନ୍ତି । ଏହି ପ୍ରସଙ୍ଗରେ ଆମେ ବୁଝିବା ଯେ ଏଥିରେ କୌଣସି ବ୍ୟକ୍ତି-ବସ୍ତୁ ସମ୍ପର୍କ ନାହିଁ । ଏହି ଆନନ୍ଦ ଜଣେ ଉପଭୋକ୍ତା ଉପଭୋଗ୍ୟର ଉପଭୋଗ କରିବାର ଫଳ ସ୍ୱରୂପ ନୁହେଁ, କିନ୍ତୁ ଏହା ହେଉଛି ଦ୍ରଷ୍ଟା ନିଜେ ତାଙ୍କଠାରେ ମିଶିଯିବାର ଅବସ୍ଥା । ତାଙ୍କର ସ୍ୱରୂପ ତ ନିର୍ବିକଳ୍ପ ଆନନ୍ଦ। ଆତ୍ମା ହେବା ହିଁ ହେଉଛି ଆନନ୍ଦର ମହାନ ପରିପୂର୍ଣ୍ଣତା, କାରଣ ଆତ୍ମାହିଁ ଆନନ୍ଦ-ସ୍ୱରୂପ। ଶେଷ ପାଞ୍ଚଟି ଶ୍ଳୋକରେ ବର୍ଣ୍ଣନା କରାଯାଇଥିବା ଏପରି ମହାନ୍ ବ୍ୟକ୍ତି ନିଜର ସ୍ୱରୂପ ହୋଇ ଯାଇଥିବା ନିର୍ବିକଳ୍ପ ଚୈତନ୍ୟଙ୍କଠାରୁ କେବେ ବି ବିଚ୍ୟୁତ ହୋଇଯିବେ ବୋଲି କଦାପି ଭୟ କରି ପାରିବେ ନାହିଁ । ବିଶ୍ୱାତ୍ମା ଠାରୁ ବିଚ୍ଛିନ୍ନ ହେବାର ଅହଂ କୈନ୍ଦ୍ରିକ ଧାରଣା ତାଙ୍କର କଦାପି ହେବ ନାହିଁ । ଥରେ ବିଶ୍ୱାତ୍ମା ଭାବରେ ପଦାର୍ପଣ ହେଲେ, ସେଥିରୁ ତାଙ୍କର ପତନ ହେବ ନାହିଁ। ତା'ପରଠାରୁ ସେ ନିଜର ବିକାଶ ସମ୍ପୂର୍ଣ୍ଣ କରି ନିଜେ ପୂର୍ଣ୍ଣାଙ୍ଗ ହୋଇ ସର୍ବବ୍ୟାପୀ ସତ୍ୟ ହୋଇଥାଆନ୍ତି ।

ଏହି ଶ୍ଳୋକ ସହିତ ଗୌଡ଼ପାଦଙ୍କ କାରିକାର ଦ୍ୱିତୀୟ ପ୍ରକରଣର ଇତି ହେଲା ।

# ତୃତୀୟ ଅଧ୍ୟାୟ

# ଅଦ୍ୱୈତ ପ୍ରକରଣ

ନିଜର ଚିନ୍ତାଧାରାକୁ ସୁବିବେଚିତ ଭାବରେ ପ୍ରକାଶ କରିବା ପାଇଁ ଏକ ସ୍ୱଷ୍ଟ ଢାଞ୍ଚା ଦିଆଯାଇଥିବାର ପ୍ରଥମ ଦୁଇ ଅଧ୍ୟାୟରେ ଆମେ ଦେଖିବାକୁ ପାଇଛୁ। କେବଳ ଶାସ୍ତ୍ର ଭିତ୍ତିରେ ଅଦ୍ୱୈତଙ୍କର ବ୍ୟାଖ୍ୟା କରାଯାଇଥିବା ପ୍ରଥମ ଅଧ୍ୟାୟରେ ଦେଖିବାକୁ ମିଳେ। ବହୁବିଧ ଜଗତର ମାୟା ସ୍ୱରୂପ ପ୍ରମାଣ କରିବା ପାଇଁ ଦ୍ୱିତୀୟ ଅଧ୍ୟାୟରେ ଆମକୁ ଯଥେଷ୍ଟ ତର୍କ ଦିଆଯାଇଛି । ବହୁବିଧ ଜଗତ ପଛରେ ଥିବା ଅଦ୍ୱୈତ ସତ୍ୟ ମାୟା ନୁହେଁ, ଯୁକ୍ତି ମାଧ୍ୟମରେ ଏହି ଦୃଢ ସିଦ୍ଧାନ୍ତରେ ପଦାର୍ପଣ କରିବା ପାଇଁ ଆମକୁ ବାଟ କଢେଇ ନେବାର ପବିତ୍ର କର୍ତ୍ତବ୍ୟରେ ଗୌଡ଼ପାଦ ମୁଖ୍ୟତଃ ମଗ୍ନ ରହିଥିବା ପରି ଏହି ଅଧ୍ୟାୟରେ ଦେଖିବାକୁ ମିଳେ।

ବହୁବିଧତା ଏକ ମାୟା- ଏହା ପ୍ରମାଣ କରିବା ଦ୍ୱିତୀୟ ଅଧ୍ୟାୟର ମୁଖ୍ୟ ବିଷୟ ହୋଇଥିବାବେଳେ, ଅଦ୍ୱୈତ ସତ୍ୟ ମାୟା ନୁହେଁ - ଏହା ପ୍ରମାଣ କରିବାର ଯୁକ୍ତି ଏବଂ ତର୍କ ହେଉଛି ତୃତୀୟ ଅଧ୍ୟାୟର ବିଷୟବସ୍ତୁ।

ଗୌଡ଼ପାଦ ଏଠାରେ ଅଦ୍ୱୈତ ସତ୍ୟଙ୍କର ଚିରନ୍ତନତା ସମ୍ବନ୍ଧରେ ପ୍ରମାଣ କରୁଛନ୍ତି। ପରମସତ୍ୟଙ୍କର ଏହି ଦର୍ଶନର ସମର୍ଥନରେ ସେ ଅନେକ ଶାସ୍ତ୍ରୀୟ ଉଦ୍ଧୃତି ଦେଇଛନ୍ତି। ଉପଦେଶାତ୍ମକ ଗ୍ରନ୍ଥ ହୋଇଥିବାରୁ ଏହି ଅଧ୍ୟାୟରେ ଆମକୁ ଆମ ଦୈନନ୍ଦିନ ଧ୍ୟାନ ପାଇଁ ପ୍ରତ୍ୟକ୍ଷ ପଥ ନିର୍ଦ୍ଦେଶ କରିବାର ଯଥେଷ୍ଟ ସୂଚନା ମିଳେ।

ଏଠାରେ ବେଦାନ୍ତ ସାହିତ୍ୟର ଏକ ନୂତନ ଉପାୟ ରହିଛି। ଅସ୍ପର୍ଶ ଯୋଗ ନାମରେ ନାମିତ ଆତ୍ମାନୁଭୂତିର ଏହା ଏକ ଅନନ୍ୟ ଉପାୟ । ଗୌଡ଼ପାଦଙ୍କ ଠାରେ ଅତି ବେଶୀ ବୌଦ୍ଧତ୍ୱ ଦେଖି ପାରୁଥିବା ଲୋକମାନଙ୍କ ମତରେ ଏହି ପଦଟି ବୌଦ୍ଧ ସାହିତ୍ୟରୁ ନିଆଯାଇଛି। ଯାହାହେଲେ ବି ବେଦାନ୍ତର ଜଣେ ନିଷ୍ଠାପର ଶିଷ୍ୟ ପାଇଁ ଏହା ଗ୍ରହଣୀୟ ନୁହେଁ। ପ୍ରାସଙ୍ଗିକ ବିଷୟ ଆଲୋଚନା କରିବା ସମୟରେ ଆମେ ଏ ବିଷୟରେ ଆଲୋଚନା କରିବା।

ଗୌଡ଼ପାଦଙ୍କ ଦର୍ଶନ "ଅଜାତ-ବାଦ" ସମ୍ବନ୍ଧରେ ସଦର୍ପ ଘୋଷଣା କରି ଅଧ୍ୟାୟଟି ଶେଷ ହୋଇଛି। ଏହାର ଅନ୍ତିମ ଶ୍ଳୋକରେ କାରିକାର ସମଗ୍ର ଦର୍ଶନକୁ ଦୁଇଟି ପଂକ୍ତିରେ ସଂକ୍ଷେପରେ ପ୍ରକାଶ କରାଯାଇଛି। ସେ କହିଛନ୍ତି ଯେ, "କୌଣସି ଜୀବ ଜନ୍ମ ନେଇ ନାହିଁ, ତାହାକୁ ସୃଷ୍ଟି କରିବା ପାଇଁ କୌଣସି କାରଣ ନାହିଁ। ଯେଉଁଠାରେ କିଛି ଜନ୍ମ ନିଏ ନାହିଁ, ତାହା ହିଁ ପରମ ସତ୍ୟ"।

**ଉପାସନାଶ୍ରିତୋ ଧର୍ମୋ ଜାତେ ବ୍ରହ୍ମଣି ବର୍ତ୍ତତେ।**

**ପ୍ରାଗୁତ୍ପତ୍ତେରଜଂ ସର୍ବଂ ତେନାସୌ କୃପଣଃ ସ୍ମୃତଃ ॥୧॥**

ଉପାସନା ଆଶ୍ରିତଃ = ଉପାସନାକୁ ଅଙ୍ଗୀକାର କରିଥିବା (ଗ୍ରହଣ କରିଥିବା), ଧର୍ମଃ = ସାଧକ ବା ଜୀବ, ଜାତେ ବ୍ରହ୍ମଣି = ବ୍ୟକ୍ତ ବ୍ରହ୍ମ, ବର୍ତ୍ତତେ = ରହେ, ପ୍ରାକ୍ = ପୂର୍ବରୁ, ଉତ୍ପତ୍ତେ = ସୃଷ୍ଟି, ଅଜମ୍ = ଅଜ, ସର୍ବମ୍ = ସମସ୍ତ(ସେ ମନେ କରନ୍ତି), ତେନ = ତେଣୁ, ଅସୌ = ସେ ଅଟନ୍ତି, କୃପଣଃ = ମନ୍ଦ ବୁଦ୍ଧି, (କୃପଣ - ଆକ୍ଷରିକ ଅର୍ଥରେ ଦୟନୀୟ), ସ୍ମୃତଃ = ବିଚାର କରାଯାଏ।

*ଉପାସନା ମାର୍ଗ ଗ୍ରହଣ କରିଥିବା ଅହଂ ବା ଜୀବ (ସାଧକ), ବ୍ୟକ୍ତ ବ୍ରହ୍ମଙ୍କ ସହିତ ସମ୍ବନ୍ଧିତ ବୋଲି ମନେ କରେ। ତା ରୂପରେ ସେ (ବ୍ରହ୍ମ) ବ୍ୟକ୍ତ ବୋଲି ମନେ କରେ। ଏପରି ଜୀବର ବୁଦ୍ଧି ଦୁର୍ବଳ, କାରଣ ସୃଷ୍ଟି ପୂର୍ବରୁ ସବୁକିଛି ବସ୍ତୁ ଅଜ ପରମସତ୍ୟଙ୍କର ସ୍ୱରୂପ ବୋଲି ସେ ମନେକରେ ॥୧॥*

ଅଧ୍ୟାୟଟିର ପ୍ରଥମ ଶ୍ଳୋକରେ ଭକ୍ତ ବ୍ୟତୀତ ଅନ୍ୟ କେହି ଈଶ୍ୱର ଥିବାର ଧାରଣାକୁ ଏବଂ ତାପରେ ସେହି ଈଶ୍ୱରଙ୍କ ପ୍ରତି ସେହି ଭକ୍ତର ଆବେଗପ୍ରବଣତାକୁ ନିର୍ଦ୍ଦୟ ଭାବରେ ନିନ୍ଦା କରାଯାଇଛି। ପବିତ୍ର ଏବଂ ସହଜ ଭକ୍ତିମାର୍ଗକୁ ଅସମର୍ଥ ଭାବରେ ଏହି ଘୋଷଣାରେ ନିନ୍ଦା କରାଯାଇଛି ବୋଲି ଭୁଲ ବୁଝିବାକୁ ହେବ ନାହିଁ। ଭକ୍ତି ମାର୍ଗରେ ନଗଲେ କୌଣସି ଜୀବ ମହାନ୍ ବେଦାନ୍ତ ଶାସ୍ତ୍ର ବୁଝି ପାରିବାର ଆଶା କରାଯାଇ ପାରିବ ନାହିଁ।

ମନ-ବୁଦ୍ଧି ରୂପକ ଉପକରଣର ସମସ୍ତ ସମ୍ଭାବ୍ୟ ବିବର୍ତ୍ତନରେ ପରିତୃପ୍ତ ବିକଶିତ ସାଧକମାନଙ୍କ ପାଇଁ ହିଁ ଏହି ଶାସ୍ତ୍ର ଉଦ୍ଦିଷ୍ଟ। ସେମାନେ ସଂପୂର୍ଣ୍ଣଭାବେ ସଂଗଠିତ ଏବଂ ବିକଶିତ ହୋଇଥିବା ଯୋଗୁଁ ସେହି ମାର୍ଗ ପ୍ରତି ଆସକ୍ତ ହୋଇ ରହିଲେ ଜୀବନରେ ମିଳୁଥିବା ସୁଯୋଗ ନଷ୍ଟ ହୋଇଯିବ। ଏକଦା ଏପରି ସମୟ ଆସେ, ଯେତେବେଳେ ପରିପକ୍ୱ ହେବା ପରେ ନିମ୍ନମାନର ସାଧନାକୁ ତ୍ୟାଗ କରି ଅଭ୍ୟାସର ପରବର୍ତ୍ତୀ ଅବସ୍ଥା ଗ୍ରହଣ କରିବା ଉଚିତ୍।

କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଶ୍ରେଣୀର ଜଣେ ଛାତ୍ର ସେ ବର୍ଷର ପାଠ ଶେଷ କରି ବର୍ଷ ଶେଷରେ ପରବର୍ତ୍ତୀ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହୋଇଥିଲେ ମଧ୍ୟ ପୂର୍ବୋକ୍ତ ଶ୍ରେଣୀ ଗୃହରେ ଅଧିକାର କରି ବସୁଥିବା ନିର୍ଦ୍ଦିଷ୍ଟ ଆରାମଦାୟକ ଆସନ ପ୍ରତି ଆସକ୍ତ ହୋଇ ପରବର୍ତ୍ତୀ ଶ୍ରେଣୀକୁ ଯିବା ପାଇଁ ରାଜି ନହେବା ପରି ଏହି କଥାଟି ହେବ। କାରଣ ସେ ତଳ ଶ୍ରେଣୀରେ ବସି ରହିଲେ ନିଜର ସମୟ ତ ନଷ୍ଟ ହେବ, ସେହି ଶ୍ରେଣୀର ଅନ୍ୟ ଛାତ୍ରମାନଙ୍କୁ ମଧ୍ୟ ଅଯଥାରେ ସେ ଅସୁବିଧାରେ ପକାଇବ।

ସେହିପରି ଭକ୍ତି, କର୍ମ ଏବଂ ଆଧାତ୍ମିକ ଅଭିବୃଦ୍ଧିର ଅନ୍ୟାନ୍ୟ ସବୁ ମାର୍ଗର ପରିପୂର୍ଣ୍ଣତାର ଏକ ସମୟ ରହିଛି। ସେହି ସମୟ ପରେ, ସେହି ମାର୍ଗର ଅନୁସରଣ କରିବା ପ୍ରଚେଷ୍ଟାର ଅପବ୍ୟୟ ହିଁ ହେବ। ସାଧନାରେ ସଫଳ ହେବା ପରେ ମଧ୍ୟ ଯେଉଁ ଛାତ୍ରମାନେ ସେହି ସାଧନାର ମାର୍ଗରେ ଅଯଥାରେ ଅଟଳ ରହନ୍ତି, ସେମାନଙ୍କୁ ଚେତାଇ ଦେବାପାଇଁ ଏହି ଶ୍ଳୋକଟି ଉଦ୍ଦିଷ୍ଟ।

ଗୌଡ଼ପାଦ ତାଙ୍କର ସ୍ୱାଧୀନ ବୌଦ୍ଧିକ ମୌଳିକ ଯୁକ୍ତିରୁ ଏହି ବୈପ୍ଳବିକ ସିଦ୍ଧାନ୍ତର ପ୍ରତିପାଦନ କରି ନାହାଁନ୍ତି। "ତୁମେ ଯାହାର ଉପାସନା କରୁଛ, ସେ ପରମସତ୍ୟ ନୁହଁନ୍ତି", ଏହି ଉପନିଷଦୀ ଅନୁମୋଦ ପଛରେ ଯଥେଷ୍ଟ ପ୍ରମାଣ ରହିଛି।

ଯେଉଁ ଦର୍ଶନ ଭକ୍ତ ସହିତ ଭଗବାନଙ୍କର ଆଂଶିକ ବା ସାମଗ୍ରିକ ସମ୍ପର୍କ ଥିବା କହେ, ସେହି ଦର୍ଶନ ନିଜେ ଭଗବାନ ହିଁ ବହୁବିଧ ଜଗତ ଭାବେ ବ୍ୟକ୍ତ ହେବା କଥା କହିବାରେ ଏକ ସହଜାତ ଯୁକ୍ତିସଂଗତ ବିପରୀତତା ରହିଛି। ପରମ ସତ୍ୟ ନିଜକୁ ଯଦି ବହୁବିଧ ଜଗତ ଭାବରେ ବ୍ୟକ୍ତ କରିଛନ୍ତି, ତେବେ ଭକ୍ତ ନିଜେ ହିଁ , ବାସ୍ତବରେ ସେହି ସତ୍ୟ ବ୍ୟତୀତ ଅନ୍ୟ କିଛି ନୁହେଁ।

ସୃଷ୍ଟିର ଏହି ତଥ୍ୟକୁ ଗ୍ରହଣ କରିବା ପରେ, ଭଗବାନଙ୍କୁ ନିଜଠାରୁ ସ୍ୱତନ୍ତ୍ର ଏକ ସତ୍ତା ଭାବରେ ଗ୍ରହଣ କରୁଥିବା ଭକ୍ତ ପାଇଁ ଭଗବାନଙ୍କର ପୂଜା କରିବା ସ୍ୱାଭାବିକଭାବେ ସ୍ପଷ୍ଟ ବିରୋଧୋକ୍ତି ହୋଇଯିବ। ଫଳତଃ ଏକ ଅପୂର୍ଣ୍ଣ ଚିନ୍ତାଧାରାକୁ ଏହା ଗତି କରିବ। ଅଧ୍ୟାୟର ପ୍ରଥମ ଶ୍ଳୋକରେ ଏପରି ଧାରଣାକୁ ନିନ୍ଦା କରାଯାଇଛି।

ବେଦାନ୍ତ ହେଉଛି ବିବେକପୂର୍ଣ୍ଣ ଭାବରେ ଚିନ୍ତା କରିବାର ମାର୍ଗ। ଏହା ହେଉଛି ଯୁକ୍ତିସଂଗତ ଚିନ୍ତାଧାରା ମାଧ୍ୟମରେ ମନ-ବୁଦ୍ଧି ଉପାଧିର ବିଲୀନ କରି ନିଜ ଭିତରେ ଥିବା ଆତ୍ମାଙ୍କର ପୁନରାବିଷ୍କାରର ମାର୍ଗ। ମିଥ୍ୟା ଚିନ୍ତାଧାରା କେଉଁଠାକୁ ହେଲେ ପହଞ୍ଚାଇବ ନାହିଁ। ଜଣେ ପ୍ରକୃତ ବେଦାନ୍ତିକ ଗୁରୁ ଜ୍ଞାନମାର୍ଗର ଅନୁଗାମୀ ମାନଙ୍କୁ ପ୍ରଥମତଃ ଏକ

ଯଥାର୍ଥ ଚିନ୍ତାଧାରାରେ ଅବସ୍ଥାପିତ କରାଇବେ । ତେଣୁ ଗୌଡ଼ପାଦ ଏଠାରେ କହିଛନ୍ତି ଯେ ଏପରି ବିଶ୍ୱାସ କରୁଥିବା ଶିଷ୍ୟ ହେଉଛି କୃପଣ । କୃପଣର ଅର୍ଥ ମଧ୍ୟ ଖର୍ଚ୍ଚ କରିବା ପାଇଁ କୁଣ୍ଠିତ ହେଉଥିବା ବ୍ୟକ୍ତି । ଏପରି ବ୍ୟକ୍ତି ମହାନ୍ ଗୁରୁଙ୍କ ଦ୍ୱାରା ଆଧ୍ୟାତ୍ମିକତାରେ ଚୟନ ବିବେଚିତ ହୁଏ, କାରଣ ସମସ୍ତ ବିଷୟ ଧାରଣ କରିବା ପାଇଁ ସେ ତାର ମସ୍ତିଷ୍କକୁ ସହଜରେ ବିସ୍ତାରିତ କରେ ନାହିଁ । ନିଜର ଅହଂକେନ୍ଦ୍ରିକ ସ୍ୱତନ୍ତ୍ରତାକୁ ତ୍ୟାଗ କରି ନିର୍ବିକଳ୍ପ ଆତ୍ମା ଭାବରେ ଦେଖା ଦେବାକୁ ସେ ପ୍ରସ୍ତୁତ ନଥିବାରୁ ତାକୁ କୃପଣ କୁହାଯାଏ ।

ପରମ ସତ୍ୟ ଅଜ ବା ଅଜନ୍ମା ବୋଲି ଉପାସକ ଜୋର ଦେଇ କହିବା ମଧ୍ୟ ଉପହାସର କଥା । ପରମ ସତ୍ୟ ଯଦି ଶାଶ୍ୱତ, ନିତ୍ୟ ଶୁଦ୍ଧ ଏବଂ ନିର୍ବିକାର, ତେବେ ବହୁବିଧ ଜଗତରେ ସେ ବ୍ୟକ୍ତ ହୋଇ ପାରିବେ ନାହିଁ ଏବଂ ତଥାପି ସ୍ୱସ୍ୱରୂପରେ ଅଜ ହୋଇ ରହିପାରିବେ । ପୁନଶ୍ଚ, ଈଶ୍ୱର ଯଦି ନିଜଠାରୁ ଜଗତକୁ ସୃଷ୍ଟି କରିଛନ୍ତି, ତେବେ ସୃଷ୍ଟ ଜଗତ ସତ୍ୟଙ୍କ ସ୍ୱରୂପ ବ୍ୟତୀତ ଅନ୍ୟ କିଛି ହୋଇ ପାରିବ ନାହିଁ । ଏହା ସ୍ୱୀକାର କରି ଏବଂ ପୂର୍ଣ୍ଣତ୍ୱକୁ ଯାତ୍ରାର ଶେଷ ପାଦରେ "ମୁଁ ଭକ୍ତ ହେଉଛି ଏକ ଅଂଶ ମାତ୍ର ଏବଂ ସେ ହେଉଛନ୍ତି ପୂର୍ଣ୍ଣ ଇତ୍ୟାଦି" ହୋଇଥିବା ଯୋଗୁଁ ପରମେଶ୍ୱରଙ୍କର ପୂଜା କରିବା, ତାଙ୍କର ସନ୍ତୋଷ ବିଧାନ କରିବା ହେଉଛି ଏକ ଦର୍ଶନ, ଯାହା କେବଳ ବିପଜ୍ଜନକ ନୁହେଁ, ବରଂ ବିକଶିତ ହେବା ପାଇଁ ସାଧକର ସମସ୍ତ ସୁଯୋଗକୁ ଏହା ଧ୍ୱଂସ କରିଦେବ । ତେଣୁ ଅଧ୍ୟାୟର ପ୍ରଥମ ଶ୍ଳୋକରେ ଏହାର ନିନ୍ଦା କରାଯାଇଛି ।

ଏହି ଶ୍ଳୋକରେ, ଏଠାରେ 'ଉପାସନା' ଶବ୍ଦର ବ୍ୟବହାର କରା ଯାଇଛି, ଯଦିଓ ଆଜିକାଲି 'ଭକ୍ତି' ଶବ୍ଦଟି ବୁଝି ହୁଏ । ବେଦରେ ଉପାସନା ଶବ୍ଦର ବ୍ୟବହାର କରାଯାଇଛି । ସମଗ୍ର ବୈଦିକ ସାହିତ୍ୟରେ ଭକ୍ତି ଶବ୍ଦଟି ମୋଟେ ବ୍ୟବହାର କରାଯାଇ ନାହିଁ । ଭକ୍ତିର ପ୍ରାୟୋଗିକତା ଏବଂ ଶବ୍ଦଟିକୁ ବ୍ୟାସ ହିଁ ଆବିଷ୍କାର କରିଛନ୍ତି ଏବଂ ଭାରତୀୟ ପୌରାଣିକ ସାହିତ୍ୟରେ ଏହା ବିସ୍ତୃତ ଭାବେ ବ୍ୟବହାର କରାଯାଇଛି ।

ଉପାସନା ଅଭ୍ୟାସ କରିବାକୁ ହେଲେ ଯଥେଷ୍ଟ ପରିମାଣର ବୌଦ୍ଧିକ ସ୍ଥିରତା ଏବଂ ମାନସିକ ଭାରସାମ୍ୟ ଦରକାର । ଉପାସନା ହେଉଛି ଗୋଟିଏ ଉପାୟ । ଏହା ପ୍ରସାରଣର ଏକ ପ୍ରକ୍ରିୟା ଯାହା ଦ୍ୱାରା ଉପାସକ ବିଶ୍ୱବ୍ରହ୍ମାଣ୍ଡ ସହ ଏକ ହେବା ପାଇଁ ଉପାଧି-ମୁକ୍ତ ହୁଏ । ଜୀବନ ଯେତେବେଳେ ଅଧିକତର ଶାନ୍ତ ଥାଏ, ଏବଂ ମଣିଷ ପ୍ରକୃତିଠାରୁ ବହୁତ କମ୍ ପରିମାଣରେ ଚାହେଁ, ସେତେବେଳେ ଏହା ଲାଭ କରାଯାଇ ପାରିଥାଏ । ଦୀର୍ଘକାଳୀନ ଶାନ୍ତି ଏବଂ ପ୍ରାଚୁର୍ଯ୍ୟ ଥିବା ଦେଶରେ କଳା ଓ ସାହିତ୍ୟ ବିକଶିତ

ହୋଇ ପାରିବା ପରି ଆଧ୍ୟାତ୍ମିକ ବିକାଶର ମାର୍ଗ 'ଉପାସନା ପ୍ରାଚୂର୍ଯ୍ୟ'ର ପୃଥିବୀରେ ହିଁ ବିକଶିତ ହୋଇ ପାରିବ।

ଅନିୟନ୍ତ୍ରିତ ପ୍ରଜନନର ଭାରରେ ପୃଥିବୀ ଭାରାକ୍ରାନ୍ତ ହୋଇ ପଡୁଥିବା ବେଳେ ତାର ଖାଦ୍ୟ ଉତ୍ପାଦନ କରିବାର ସାମର୍ଥ୍ୟ ନିଃଶେଷ ହୋଇ ଯାଉଥିବା ବେଳେ, ଜଙ୍ଗଲ ସବୁ ପଥୁରିଆ ଭୂମିରେ ପରିବର୍ତ୍ତିତ ହେଉଥିବା ବେଳେ, ମାନସିକ ଚାପର ଏପରି ଏକ ନିରାନନ୍ଦ ଯୁଗରେ ସାଧକ ପାଇଁ ଉପାସନା ସହଜ ସାଧ୍ୟ ନୁହେଁ। ବ୍ୟାସଙ୍କ ସମୟରେ ଏହା ବୁଝି ହୋଇଥିଲା ଏବଂ ସେ ସେଥିପାଇଁ ପୁରାଣରେ ଆମମାନଙ୍କ ପାଇଁ ଭକ୍ତିମାର୍ଗ ଦେଇଛନ୍ତି।

ଗୌଡ଼ପାଦ ଏଠାରେ ପ୍ରାଚୀନ ଶବ୍ଦ ଉପାସନାର ବ୍ୟବହାର କରିଛନ୍ତି। ଏହାର ଅର୍ଥ ନିଶ୍ଚିତ ଭାବରେ ଭକ୍ତି।

**ଅତୋ ବକ୍ଷ୍ୟାମ୍ୟକାର୍ପଣ୍ୟମଜାତି ସମତାଂ ଗତଂ।**

**ଯଥା ନ ଜାୟତେ କିଞ୍ଚିତ୍ ଜାୟମାନଂ ସମନ୍ତତଃ ॥୨॥**

ଅତଃ = ତେଣୁ, ବକ୍ଷାମି = ମୁଁ କହିବି, ଅକାର୍ପଣ୍ୟମ୍ = ଦୀନତାରୁ, ସମୀମତାରୁ ମୁକ୍ତ, ଅଜାତି = ଜନ୍ମରୁ ମୁକ୍ତ, ଅଜନ୍ମା, ସମତାମ୍ ଗତମ୍ = ସମଅବସ୍ଥାରେ, ଘନଭାବରେ ସ୍ଥିତ, ଯଥା = କିପରି, ନ = ନୁହେଁ, ଜାୟତେ = ଜନ୍ମ ନିଏ ନାହିଁ, କିଞ୍ଚିତ୍ = କିଛିହେଲେ, ଜାୟମାନମ୍ = ବ୍ୟକ୍ତ(ଜନ୍ମ)ପରି ମନେହେଉଥିଲେ ମଧ୍ୟ, ସମନ୍ତତଃ = ଅନନ୍ତ ରୂପରେ (ସର୍ବତ୍ର)।

*ତେଣୁ , ଅସୀମ, ଅଜନ୍ମା ଏବଂ ଘନ(ବ୍ରହ୍ମ) ଙ୍କ ସମ୍ବନ୍ଧରେ ବର୍ତ୍ତମାନ ମୁଁ କହିବି। ଅସୀମ ରୂପରେ ସର୍ବତ୍ର ବ୍ୟକ୍ତ ହେଉଥିବା ପରି ମନେ ହେଉଥିଲେ ମଧ୍ୟ ପ୍ରକୃତରେ ଏହାଙ୍କଠାରୁ କିଛି ହେଲେ ଜନ୍ମ ନିଏ ନାହିଁ ॥୨॥*

ପୂର୍ବମନ୍ତ୍ରରେ ଦିଆଯାଇଥିବା କାରଣ ଯୋଗୁଁ ଗୌଡ଼ପାଦ ସାଧକ ପାଇଁ ବର୍ତ୍ତମାନ ଅସୀମ ପରମ ସତ୍ୟଙ୍କର ବର୍ଣ୍ଣନା କରୁଛନ୍ତି। ସାଧାରଣତଃ ବୁଦ୍ଧିର ସୀମା ଯେତିକି, ତାରି ଭିତରେ ଆମେ ମନ-ବୁଦ୍ଧି-ଉପାଧି ମାଧ୍ୟମରେ କାମ କରୁଥିବା ଚେତନାର ସଂସ୍ପର୍ଶରେ ଆସିଥାଉଁ। ଦୈନନ୍ଦିନ ଜୀବନରେ ଆମେ ଶୁଦ୍ଧ-ଚୈତନ୍ୟ-ସ୍ୱରୂପ ସମ୍ବନ୍ଧରେ ଅବହିତ ହୋଇପାରୁ ନାହୁଁ। ଉପାଧିମାନଙ୍କ ସହିତ ତାଦାତ୍ମ୍ୟ କରିଥିବା ପର୍ଯ୍ୟନ୍ତ ଆମେ ଶୁଦ୍ଧ ଚୈତନ୍ୟଙ୍କର ଅବବୋଧ କରି ପାରିବା ନାହିଁ । ତିଳ ପ୍ରମାଣର ତାଦାତ୍ମ୍ୟ ସୃଷ୍ଟି ହେଲେ

ମଧ୍ୟ, ଅପରିହାର୍ଯ୍ୟ ଅହଂ ଭାବର ପାହାଡ଼ ପରି ମନଟିଏ ସୃଷ୍ଟି ହୋଇଯାଏ। ଏବଂ ଅହଂକାର ରହିଲେ ସତ୍ୟ ଉପରେ ଆବରଣ ପଡ଼ିଯିବ।

ପୂର୍ବରୁ କୁହାଯାଇଛି ଯେ, ଶରୀର-ଭାବ ନେଇ ମନ-ବୁଦ୍ଧିରୁ ଜଗତକୁ ଦେଖିଲେ ଆମେ ବହୁବିଧ ଜଗତ ଦେଖିପାରୁ। ସ୍ୱପ୍ନଦ୍ରଷ୍ଟା ଭାବରେ ଆମେ ସ୍ୱପ୍ନର ବହୁବିଧ ଜଗତ ବିଷୟରେ ଜାଣିପାରୁ। କିନ୍ତୁ ଶୁଦ୍ଧ-ଚୈତନ୍ୟଙ୍କ ସମ୍ବନ୍ଧରେ ସମ୍ପୂର୍ଣ୍ଣ ରୂପେ ଅବହିତ ହୋଇ ଭିତରକୁ ବା ବାହାରକୁ ଦେଖିଲେ ସର୍ବତ୍ର ସମ ଭାବରେ ସ୍ଥିତ ଅଜନ୍ମା, ଘନସତ୍ତାଙ୍କ ବ୍ୟତୀତ ଆମେ ଅନ୍ୟ କିଛି ଦେଖିପାରୁ ନାହେଁ।

ସତ୍ୟ ଘନ ଏବଂ ସର୍ବବ୍ୟାପୀ ବୋଲି ଗୁରୁ ସମ ଶବ୍ଦରେ ପ୍ରକାଶ କରିଛନ୍ତି। ଏହାର ତାତ୍ପର୍ଯ୍ୟ ହେଲା, ଏହାଙ୍କଠାରେ ଏହାଙ୍କ ସହିତ ସାଦୃଶ୍ୟ କିଛିହେଲେ ନାହିଁ କିମ୍ବା ଏହାଙ୍କ ସହିତ ପ୍ରଭେଦ କିଛି ହେଲେ ନାହିଁ, ଏହାଙ୍କ ଭିତରେ ଘନତାର ବା ଗୁଣର କିଛିହେଲେ ପ୍ରଭେଦ ନାହିଁ। ଏହାଙ୍କ ଭିତରେ ଯଦି କୌଣସି ସଜାତୀୟ - ବିଜାତୀୟ-ସ୍ୱଗତ ଭେଦ ଭାବ ଥାଆନ୍ତା, ତେବେ ଏହା ଭଙ୍ଗୁର, ସସୀମ ଏକ ବସ୍ତୁ ହୋଇ ଯାଆନ୍ତେ। ଏହି ସବୁ ଗୁଣକୁ ଅଗ୍ରାହ୍ୟ କରିବା ପାଇଁ ଏବଂ ଶାଶ୍ୱତ ଓ ସର୍ବବ୍ୟାପୀ ବୋଲି ଦର୍ଶାଇବା ପାଇଁ ଗୁରୁ ବିଶେଷ ଭାବରେ ସମ ଶବ୍ଦଟି ବାଛି ବ୍ୟବହାର କରିଛନ୍ତି।

ସତ୍ୟ ଯଦି ଶାଶ୍ୱତ ଏବଂ ସର୍ବବ୍ୟାପୀ ତେବେ ମଣିଷ ଚତୁର୍ଦ୍ଦିଗରେ ଏକ ବହୁବିଧ ଜଗତ ଦେଖୁଛି କିପରି ? ଉତ୍ତର ହେଲା- ବାସ୍ତବରେ ସତ୍ୟଙ୍କ ବ୍ୟତୀତ ଏସବୁ ଅନ୍ୟ କିଛି ନୁହେଁ। ନାମ ଏବଂ ରୂପର ବହୁବିଧ ଜଗତ ମନର ଏକ ମିଥ୍ୟା ସ୍ୱପ୍ନ ବ୍ୟତୀତ ଅନ୍ୟ କିଛି ନୁହେଁ। ସତ୍ୟ ସର୍ବବ୍ୟାପୀ ହୋଇଥିବାରୁ ବହୁବିଧ ଜଗତ କେବଳ ଏକ ମିଥ୍ୟା, ନାମରୂପର ଜଗତ ହେଉଛି ମନର ଏକ ଖେଳ ବା ଗୋଟିଏ କଳ୍ପନା। "ଯଦିଓ ସର୍ବତ୍ର ଏହା ଅସୀମ ରୂପରେ ବ୍ୟକ୍ତ ହେବାପରି ମନେ ହୁଏ" କହି ସୁନ୍ଦର ଭାବରେ ଏହା ପ୍ରକାଶ କରା ଯାଇଛି।

**ଆତ୍ମା ହ୍ୟାକାଶବଜ୍ଜୀବୈର୍ଘଟାକାଶୈରିବୋଦିତଃ ।**
**ଘଟାଦିବଚ୍ଚ ସଂଘାତୈର୍ଜାତାବେତନ୍ନିଦର୍ଶନମ୍ ।।୩।।**

ଆତ୍ମା = ଅତ୍ମା, ହି = ବାସ୍ତବରେ, ଆକାଶବତ୍ = ଆକାଶ ପରି, ଜୀବୈ = ଜୀବମାନେ, ବ୍ୟକ୍ତିଗତ ଆତ୍ମା ସ୍ୱତନ୍ତ୍ର ଜୀବଭାବେ ଥିବା, ଘଟ ଆକାଶୈଃ = ଘଟସ୍ଥ ଆକାଶ ରୂପରେ, ଇବ = ପରି, ଉଦିତ =ଦେଖାଯାଏ, ଘଟ ଆଦି-ବତ୍ = ଘଟ ଆକାଶ ପରି, ସଂଘାତୈଃ ଚ = ଶରୀରମାନେ ମଧ୍ୟ, ଜାତୌ = ସୃଷ୍ଟ(କୁହାଯାଏ), ଏତତ୍-ନିଦର୍ଶନମ୍ = ଏହା ହେଉଛି ଉଦାହରଣ ।

*ଆକାଶ ସଦୃଶ ଆତ୍ମା ଜୀବ ଭାବରେ ବ୍ୟକ୍ତ ହେଲେ ଘଟାକାଶ ସହିତ ତୁଳନା କରାଯାଇ ପାରିବ । ପୁନଶ୍ଚ ସମଗ୍ର ଆକାଶରୁ ଘଟାକାଶ ସୃଷ୍ଟି ହୋଇଥିବାର କୁହାଯାଏ । ସେହିପରି ସତ୍ୟଙ୍କଠାରୁ ସ୍ଥୂଳ ରୂପ ସବୁ ସୃଷ୍ଟି ହେବାର କୁହାଯାଏ । ବ୍ୟକ୍ତ ଜଗତ ପାଇଁ ଏହା ହିଁ ଉଦାହରଣ ।।୩।।*

ସର୍ବବ୍ୟାପୀ ସତ୍ୟ ପରମାତ୍ମା ଏବଂ ଜୀବାତ୍ମା ମଧ୍ୟର ସଂପର୍କ ବ୍ୟାଖ୍ୟା କରିବା ପାଇଁ ବେଦାନ୍ତରେ ସମଗ୍ର ଆକାଶ ଏବଂ ଘଟାକାଶମଧ୍ୟର ସମ୍ପର୍କର ଏହି ସାମ୍ୟତାକୁ ଦର୍ଶାଯାଇଛି । ସମଗ୍ର ବେଦାନ୍ତିକ ଦର୍ଶନରେ ଏହା ଏକ ଅନୁକରଣୀୟ ଉଦାହରଣ ।

ସାମ୍ୟତାର କେତେକ ନିର୍ଦ୍ଦିଷ୍ଟ ବିଷୟ ଯୋଗୁଁ ଆକାଶର ଅବଧାରଣା ସହିତ ଆତ୍ମାର ତୁଳନା କରାଯାଏ । ଆତ୍ମା ଆକାଶ ପରି କହିବାର ଅର୍ଥ ନୁହେଁ ଏଠାରେ ପୃଥିବୀ ଆଦି ଗ୍ରହ, ସୂର୍ଯ୍ୟ, ଚନ୍ଦ୍ର କିମ୍ବା ବାଦଲ ଅଛନ୍ତି । ମୁଖ୍ୟତଃ ତିନୋଟି ବିଷୟରେ ତୁଳନା କରାଯାଏ- ଉଭୟ ସୂକ୍ଷ୍ମ, ଉଭୟ ଘନ ଏବଂ ଉଭୟ ଅକଲ୍ମଷ ବା ଅମଳିନ ।

ଏହିପରି ଭାବରେ ସର୍ବବ୍ୟାପୀ, ଘନ ଏବଂ ନିତ୍ୟ ଅମଳିନ(ଅକଲ୍ମଷ)ପରମ ସତ୍ୟ ଜୀବର ନାମ ରୂପ ଗ୍ରହଣ କରି କାର୍ଯ୍ୟ କରୁଥିବାର ବିଚାର କରାଯାଏ । ବାସ୍ତବରେ ଏହା କଦାପି ସତ୍ୟ ହୋଇ ପାରିବ ନାହିଁ, ତଥାପି ପ୍ରତ୍ୟେକେ ଏହି ଦ୍ୱୈତଭାବ ଅନୁଭବ କରନ୍ତି । ଏହା କିପରି ହୁଏ, ସାଧକର ଏହି ସନ୍ଦେହ ଦୂର କରିବା ପାଇଁ ଗୁରୁ ଏହି ଅନନୁକରଣୀୟ ଅନୁରୂପତା (ସାମ୍ୟତା) ଦେଇଛନ୍ତି ।

ଆମେ ସମସ୍ତେ ଜାଣୁ ଯେ ଆକାଶ ହେଉଛି ଅଖଣ୍ଡ । ଏହାକୁ ଖଣ୍ଡ ଖଣ୍ଡ କରିହେବ ନାହିଁ ବା ଭାଗ କରିହେବ ନାହିଁ, ତଥାପି ଆମର ଦୈନନ୍ଦିନ ବ୍ୟବହାରରେ ଆମେ ଗୋଟିଏ ଘଟାକାଶକୁ ଅନ୍ୟ ଗୋଟିଏ ଘଟାକାଶଠାରୁ ସ୍ୱତନ୍ତ୍ର ଭାବରେ ଦେଖୁ । ସେହିଥିରୁ

ସବୁ ପ୍ରକାରର ମାପ ପରିମାଣର ବିବାଦ ଦେଖାଦିଏ। ଦଶ ସେର ଧରୁଥିବା ଗୋଟିଏ ପାତ୍ରକୁ ଗୋଟିଏ ସେର ପାଇଁ କଦାପି ବ୍ୟବହାର କରାଯିବ ନାହିଁ। ଉଭୟ ମାପ ଭିତରେ ସ୍ପଷ୍ଟ ବ୍ୟବଧାନ ରହିଛି।

ଚାରିପାଖରେ ଥିବା ସୀମା ସରହଦ ସହିତ ତାଦାତ୍ମ୍ୟ କଲେ ହିଁ ଘଟାକାଶ ଏକ ସ୍ୱତନ୍ତ୍ର ସତ୍ତା ଲାଭ କରେ। ସେ ଯଦି ଜାଣିବ ଯେ, ସେ ଯେଉଁ ପଦାର୍ଥରୁ ତିଆରି ହୋଇଛି, ତାହା ଆକାଶରେ ବିଦ୍ୟମାନ, ଭିତରର ଏବଂ ବାହାରର ଆକାଶ ଏକ ଏବଂ ଅଭିନ୍ନ, ଘଟାକାଶର ସ୍ୱତନ୍ତ୍ର ଏକ ସତ୍ତା ଆଉ ରହିବ ନାହିଁ। ପରିଣାମତଃ ଦୁଃଖ ଏବଂ ସସୀମତାର ବୋଧ ରହିବ ନାହିଁ।

ଉଦାହରଣ ସ୍ୱରୂପ, ପିକଦାନୀର ଘଟାକାଶ ଚିନି ବୋତଲର ଘଟାକାଶକୁ ଈର୍ଷା କରି ଯଦି କହିବ ଯେ, ମୋର ଦୁର୍ଭାଗ୍ୟ। ଉଚିତ୍ ଭାବରେ ମୋର ବ୍ୟବହାର କରାଯାଉ ନାହିଁ। ଚିନି ବୋତଲର ସୌଭାଗ୍ୟ, ସବୁ ମିଠା ନିଜେ ଉପଭୋଗ କରୁଛି ! "ସମଗ୍ର ଆକାଶର ଅବଧାରଣା ସହିତ ଅଭିନ୍ନତା ଅନୁଭବ କରୁଥିବା ମହାକାଶ ମନଦୁଃଖ କରୁଥିବା ପିକଦାନୀକୁ ଉପଦେଶ ଦିଏ, ଯେ ପିକଦାନୀ କେବଳ ଏକ ଆଧାର ଭାବରେ ବ୍ୟବହାର କରାଯାଏ, କିନ୍ତୁ ଆକାଶ ସର୍ବଦା ସ୍ପର୍ଶର ଉର୍ଦ୍ଧ୍ୱରେ ଏବଂ ଅବିଭାଜ୍ୟ। ପାତ୍ରରେ ଯାହା ରହୁନା କାହିଁକି, ଘଟାକାଶ ପବିତ୍ର ଏବଂ ଶାଶ୍ୱତ।

ସେହିପରି 'ମୁଁ' ଅବଧାରଣାର ପଛରେ ଥିବା ଏକମାତ୍ର ସତ୍ୟ ହେଉଛନ୍ତି ସର୍ବବ୍ୟାପୀ ଆତ୍ମା। ତଥାପି ଅଜ୍ଞାନ ଯୋଗୁଁ 'ମୁଁ' ଶରୀର, ମନ, ବୁଦ୍ଧି ସହିତ ତାଦାତ୍ମ୍ୟ କରି ଦୁଃଖୀ ଜୀବ ହୋଇଥାଏ ଏବଂ ଜାଗ୍ରତ ପୁରୁଷ, ସ୍ୱପ୍ନଦ୍ରଷ୍ଟା, ସୁଷୁପ୍ତ ଭାବରେ ଦୁଃଖ ଭୋଗ କରେ। ଜଡ଼ ଉପାଧିମାନଙ୍କ ସହିତ ତାଦାତ୍ମ୍ୟରୁ ଦୂରେଇ ଯାଇ ପରମ ସତ୍ୟ ଭାବରେ ନିଜର ପୁନରାବିଷ୍କାର କରିବା ଏବଂ ନିଜକୁ ଜଡ଼ ଉପାଧିମାନଙ୍କର ଅଧିଷ୍ଠାନ ଭାବରେ ଦେଖିବା ହେଉଛି ବେଦାନ୍ତ ନିର୍ଦ୍ଦେଶିତ ମହାନ୍ ଗନ୍ତବ୍ୟ ସ୍ଥଳ ଏବଂ ଆତ୍ମା ଭାବରେ ଏହାକୁ ଅନୁଭବ କରିବା କଥା।

ନାମ, ରୂପସବୁ ପରମ ସତ୍ୟଙ୍କଠାରୁ ସୃଷ୍ଟ ବୋଲି ମିଥ୍ୟାର ଭାଷାରେ ଆମେ ସହଜରେ ପ୍ରକାଶ କରିଥାଉ। ଏହା, ପିକଦାନୀ ସମଗ୍ର ଆକାଶରୁ ସୃଷ୍ଟ ବୋଲି କହିବା ପରି ହେବ।

**ଘଟାଦିଷୁ ପ୍ରଲୀନେଷୁ ଘଟାକାଶାଦୟୋ ଯଥା ।**

**ଆକାଶେ ସଂପ୍ରଲୀୟନ୍ତେ ତଦ୍‌ବତ୍‌ଜୀବା ଇହାତ୍ମନି ॥୪॥**

ଘଟ ଆଦିଷୁ = ଘଟ ଇତ୍ୟାଦି ଯେତେବେଳେ, ପ୍ରଲୀନେଷୁ = ଭାଙ୍ଗି ଯାଆନ୍ତି, ଘଟ-ଆକାଶ-ଆଦୟଃ = ଘଟ -ଆକାଶ ଇତ୍ୟାଦି, ଯଥା = ଯେପରି, ଆକାଶେ = ସମଗ୍ର ଆକାଶରେ, ସଂପ୍ରଲୀୟନ୍ତେ = ମିଶି ଯାଆନ୍ତି, ତଦ୍‌ବତ୍ = ସେହିପରି, ଜୀବାଃ = ଜୀବମାନେ, ଇହ-ଆତ୍ମନି = ଏହି ପରମାତ୍ମାଙ୍କଠାରେ ।

*ଘଟ ଭାଙ୍ଗିଗଲେ ଘଟାକାଶ ଇତ୍ୟାଦି ମହାକାଶରେ ମିଶିଯିବାପରି ଜୀବ ମଧ୍ୟ ଆତ୍ମାରେ ମିଶିଯାଏ । ଏପରି ଅଜ୍ଞାନର ବଶବର୍ତ୍ତୀ ହୋଇ ଥରେ ଭୁଲ ତାଦାତ୍ମ୍ୟ କରି ବସିଲେ ଆମ ସ୍ୱସ୍ୱରୂପର ପୁନାରାବିଷ୍କାର କରିବାର କିଛି ସୁଯୋଗ ଅଛି କି? ପୂର୍ବ ଶ୍ଳୋକରେ ଗୌଡ଼ପାଦ ଯେଉଁ ଅନୁରୂପତାର ବ୍ୟାଖ୍ୟା କରିଛନ୍ତି, ତାହାରି ସନ୍ଦର୍ଭରେ ହିଁ ଏହି ପ୍ରଶ୍ନର ଉତ୍ତର ଦେଇଛନ୍ତି ॥୪॥*

ସୀମା ବା ଯୋଗ କରୁଥିବା ପଦାର୍ଥ ଥରେ ଭାଙ୍ଗିଗଲେ ସେମାନଙ୍କ ସହିତ ଆଉ ତାଦାତ୍ମ୍ୟ ରହିବ ନାହିଁ । ଘଟ ଭାଙ୍ଗିବା କ୍ଷଣି ଘଟାକାଶ, ସେହି ମୂହୂର୍ତ୍ତରେ ସେହିଠାରେ ହିଁ ମହାକାଶ ସହିତ ଏକ ହୋଇଯାଏ । ସେହିପରି, ଉପାଧିମାନଙ୍କ ସହିତ ତାଦାତ୍ମ୍ୟ କରି ମୋଠାରେ ଯେଉଁ ଜୀବ ଭାବ ଉତ୍ପନ୍ନ ହୋଇଥାଏ, ସେହି ଉପାଧି ନଷ୍ଟ ହୋଇଗଲେ ଜୀବଭାବର ଇତି ହୋଇଯାଏ । ମନ ଏବଂ ବୁଦ୍ଧିର ଅତୀତ ହେଲେ, ସେମାନଙ୍କର ସ୍ୱପ୍ନ ପ୍ରସୂତ ଜୀବ ସ୍ୱାଭାବିକ ଭାବେ ରହିବ ନାହିଁ । ତାହା ସହିତ ସ୍ୱପ୍ନମୟ ତାଦାତ୍ମ୍ୟ ଏବଂ ପରିଣାମତଃ ଭୂଲ ଧାରଣା ମଧ୍ୟ ରହିବ ନାହିଁ ।

ଜୀବ ଯେଉଁଠାକୁ ଯାଏ, ପରମ ଚୈତନ୍ୟ ସେହିଠାରେ ହିଁ ବାସ କରନ୍ତି । ମନ ଏବଂ ବୁଦ୍ଧିର ଅତୀତ ହେଲେ ଆମେ ଅନ୍ୟ ଏକ ଜଗତରେ ପ୍ରବେଶ କରୁ । ସେଠାରେ ଆମେ ଅସୀମ ଶୁଦ୍ଧ ଚୈତନ୍ୟଙ୍କୁ ଅନୁଭବ କରୁ । ମଣିଷର ଜୀବଭାବ ନ ରହିଲେ, ସେ ଈଶ୍ୱରତ୍ୱର ଅନୁଭୂତି ଲାଭ କରେ । ବ୍ୟକ୍ତିକ 'ମୁଁ' ଅସ୍ତ ହେଲେ ସାର୍ବଜନୀନ 'ମୁଁ' ର ଉଦୟ ହୁଏ ।

**ଯଥୈକସ୍ମିନ୍-ଘଟାକାଶେ ରଜୋଧୂମାଦିଭିର୍ଯୁତେ ।**
**ନ ସର୍ବେ ସଂପ୍ରଯୁଜ୍ୟନ୍ତେ ତଦ୍‌ବତ୍‌ଜୀବାଃ ସୁଖାଦିଭିଃ ।।୫।।**

ଯଥା = ଯେପରି, ଏକସ୍ମିନ୍ = ଯେତେବେଳେ ଗୋଟିଏ, ଘଟ ଆକାଶେ = ଘଟ-ଆକାଶ, ରଜଃ ଧୂମ ଆଦିଭିଃ = ଧୂଳି, ଧୂଆଁ ଇତ୍ୟାଦିରେ, ଯୁତେ = ସଂସ୍ପର୍ଶରେ ଥାଏ, ସର୍ବେ = ସମସ୍ତ(ଘଟ ଆକାଶ), ନ ସଂପ୍ରଯୁଜ୍ୟନ୍ତେ = ସଂସ୍ପର୍ଶରେ ନଥାନ୍ତି, ତଦ୍‌ବତ୍ = ସେପରି ଭାବରେ ମଧ୍ୟ, ଜୀବାଃ = ସମସ୍ତ ଜୀବଙ୍କ (ହୃଦୟ) , ସୁଖ-ଆଦିଭିଃ = ଆନନ୍ଦ ଇତ୍ୟାଦି ସହିତ ।

*ଗୋଟିଏ ଘଟ ଆକାଶକୁ ଧୂଳି ଧୂଆଁ ଇତ୍ୟାଦି ଦ୍ୱାରା ମଇଳା କଲେ ଦୁନିଆଁର ସବୁ ଘଟାକାଶକୁ ଆମେ ମଇଳା କରିପାରୁ ନାହିଁ । ସେହିପରି ମଧ୍ୟ ଗୋଟିଏ ହୃଦୟର ସୁଖ-ଦୁଃଖ, ସବୁ ହୃଦୟର ସୁଖ ଦୁଃଖ ନୁହେଁ ଅର୍ଥାତ୍ ଜଣକର ମାନସିକ ଅନୁଭୂତି ସମସ୍ତିଙ୍କର ନୁହେଁ ।।୫।।*

ଏକ-ଜୀବବାଦ ଦର୍ଶନରେ ବିଶ୍ୱାସ କରୁଥିବା ଲୋକମାନଙ୍କ ମତରେ ଅଲଗା ଅଲଗା ମନେ ହେଉଥିବା ଜୀବମାନେ ପ୍ରକୃତରେ ହେଉଛନ୍ତି ଗୋଟିଏ ଏବଂ ଏହି ପରମ ଜୀବ ହେଉଛନ୍ତି ବ୍ରହ୍ମ । ଜଣେ ଅବିଜ୍ଞ ଲୋକକୁ ବେଦାନ୍ତ ସହିତ ଏହି ମତବାଦ ଏକାପରି ମନେହେଲେ ମଧ୍ୟ ଏହି ଦୁଇଟିରେ ମୌଳିକ ପ୍ରଭେଦ ରହିଛି । ଏହି ପ୍ରଭେଦ ବେଶ ତାତ୍ପର୍ଯ୍ୟପୂର୍ଣ୍ଣ ଏବଂ ଦାର୍ଶନିକ ଦୃଷ୍ଟିକୋଣରୁ ସେମାନେ ପରସ୍ପର ବିରୋଧି ମତ ପୋଷଣ କରିବା କଥା । ଏହି ମତବାଦର ବିପରୀତରେ ବେଦାନ୍ତୀମାନେ ଏକ-ଆତ୍ମା-ବାଦରେ ବିଶ୍ୱାସ କରନ୍ତି । 'ଏକ ହିଁ ଚୈତନ୍ୟ ସର୍ବବ୍ୟାପୀ' ଏବଂ 'କେବଳ ଗୋଟିଏ ସାମଗ୍ରିକ ଜୀବ ଅଛି' ବୋଲି କହିବା ଏକା କଥା ନୁହେଁ ।

ବିରୋଧୀଙ୍କର ଯୁକ୍ତି ହେଲା, ଆତ୍ମା ଯଦି କେବଳ ଏକ ହିଁ, ତେବେ ଜଣେ ମହାନ୍ ସାଧୁ ବା ସନ୍ଥ ଯଦି ଆତ୍ମାନୁଭୂତି ଲାଭ କରିବେ, ତେବେ ଆମେ ସମସ୍ତେ ମଧ୍ୟ ଆତ୍ମାନୁଭବୀ ସାଧୁ ହୋଇଯିବା, କାରଣ ସେମାନେ ଯୁକ୍ତି କରନ୍ତି ସମସ୍ତ ଆତ୍ମା ଏକ ହିଁ । ତେଣୁ ଗୋଟିଏ ଆତ୍ମା ଆତ୍ମାନୁଭୂତି ଲାଭ କଲେ ସମସ୍ତେ ସ୍ୱତଃ ଆତ୍ମାନୁଭବୀ ହୋଇଯିବେ ।

ଏହି ଯୁକ୍ତି ସତ୍ୟ ପରି ପ୍ରତୀୟମାନ ହୁଏ, କିନ୍ତୁ ଜ୍ଞାନ ବା ଯୁକ୍ତିଯୁକ୍ତତାର ନିୟମ ଏହାକୁ ସହ୍ୟକରି ପାରିବ ନାହିଁ। ଅତି ସଙ୍କୀର୍ଣ୍ଣ ଦୃଷ୍ଟିଭଙ୍ଗୀରେ ମଧ୍ୟ ଏହି ସତ୍ୟ ସ୍ପଷ୍ଟରୂପେ ଦେଖାଯିବା ପାଇଁ ଗୌଡ଼ପାଦ ଏକ ସୁନ୍ଦର ଅନୁରୂପତା ଦେଇଛନ୍ତି। ସେ କହିଛନ୍ତି ଯେ ଗୋଟିଏ ଘଟାକାଶରେ ଯଦି ଧୂଳି ଧୂଆଁ ରହିବ, ତେବେ ଜଗତର ସବୁ ଘଟାକାଶ ଧୂଳି ବା ଧୂଆଁରେ ଭର୍ତ୍ତି ହୋଇଯିବ ବୋଲି କହିବାର କିଛି ମାନେ ନାହିଁ। ମୋ ମନରେ ଯଦି ରାଗ-ଦ୍ୱେଷ ରହିବ। ମୁଁ ଦେଖୁଥିବା ଜଗତ ମଧ୍ୟ ରାଗ-ଦ୍ୱେଷରେ ପୂର୍ଣ୍ଣ ହୋଇଯିବ। ଦୁନିଆରେ ବାସ କରୁଥିବା ଲୋକମାନଙ୍କର ସାଧାରଣତଃ ଶରୀର-ସଚେତନଶୀଳତା ଏବଂ ପରିଣାମତଃ ଅଜ୍ଞାନ ଥାଏ। ସେମାନେ ଏହି ପାଶବିକ ପ୍ରବୃତ୍ତିରେ ପରିପୂର୍ଣ୍ଣ ହୋଇଥିବାରୁ ଦୁନିଆ ସେମାନଙ୍କୁ ଦୁଃଖମୟ ଏବଂ ଯନ୍ତ୍ରଣାମୟ ବୋଲି ମନେହେବା ସ୍ୱାଭାବିକ । ଜଣେ ମହାନ୍ ଆତ୍ମା କୌଣସି ଯୁଗରେ ଯଦି ଶରୀର-ମନ-ବୁଦ୍ଧି ପ୍ରତି ବିରାଗୀ ହୋଇ ସେସବୁ ସହିତ ଥିବା ଅଜ୍ଞାନ ତାଦାତ୍ମ୍ୟର ଇତି କରି ପାରିବେ, ତେବେ ସେ ପରମ ଶାନ୍ତି ଲାଭ କରିବେ।

ବାସ୍ତବରେ ସଚ୍ଚିଦାନନ୍ଦ ହିଁ ଆତ୍ମାଙ୍କର ସ୍ୱରୂପ। ମନ ଏବଂ ବୁଦ୍ଧିର ହସ୍ତକ୍ଷେପ ଓ ସେମାନଙ୍କ ସହିତ ଆମର ତାଦାତ୍ମ୍ୟ ସତ୍ୟ ଏବଂ ଆମ ମଧ୍ୟରେ ଏକ ଆବରଣ ପ୍ରସ୍ତୁତ କରିଛି। ଘଟାକାଶ ଭିତରେ ଧୂଆଁ ଥିଲେ ବି ଶାଶ୍ୱତ ରୂପେ ତାହା ଶୁଦ୍ଧ, କାରଣ ଧୂଳି ବା ଧୂଆଁ ହେଉଛି ତା' ବାୟୁମଣ୍ଡଳର, ଘଟାକାଶର ନୁହେଁ।

ଆତ୍ମା ଦୁଃଖ ପାଉଛି ବା ଆତ୍ମାର ଅବସ୍ଥା ଖରାପ କହିବାର ମାନେ ନୁହେଁ ଯେ, ଆତ୍ମା ଦୁଃଖ ବା ଦୁର୍ଦ୍ଦଶା ଭୋଗୁଛି। କିନ୍ତୁ ଆତ୍ମା ଉପରେ ଆବରଣ ପକାଇଥିବା ମନର ଦୁଃଖ ବା ଦୁର୍ଦ୍ଦଶା ଯୋଗୁଁ ଏହା ହୋଇଥାଏ। ମେଘୁଆ ଆକାଶକୁ ଚାହିଁ ପିଲାମାନେ କହନ୍ତି ଯେ, ଆକାଶଟା ଅପରିଷ୍କାର। ଶାଶ୍ୱତ ଆକାଶ ଭାସମାନ ମେଘଖଣ୍ଡ ଦ୍ୱାରା ଅପରିଷ୍କୃତ ହୁଏ ନାହିଁ, କିନ୍ତୁ ଧୂଳିମିଶ୍ରିତ ଭାସମାନ ବାୟୁକଣିକା ଯୋଗୁଁ ପିଲାଙ୍କୁ ଆକାଶ ଅପରିଷ୍କାର ଦେଖାଯାଏ। ବିବେକ, ବୈରାଗ୍ୟ ଇତ୍ୟାଦି ମାଧ୍ୟମରେ ବେଦାନ୍ତରେ ନିର୍ଦ୍ଦେଶିତ ସାଧନା କରି ଆମେ ପାଶବିକ ମନକୁ ବ୍ୟବସ୍ଥିତ କରାଇ ତାର ଅତୀତ ହୋଇ ପାରିଲେ ଆମ ସ୍ୱସ୍ୱରୂପର ଅନୁଭୂତି ଲାଭ କରି ପାରିବା। ପ୍ରତ୍ୟେକେ ଏହା କରି ପାରିବେ। ନିଜର ମିଥ୍ୟା ତାଦାତ୍ମ୍ୟ ଯୋଗୁଁ ଅସମର୍ଥତା ଅନୁଭୂତ ହୋଇଥାଏ। ଏପରି ବ୍ୟକ୍ତିଙ୍କୁ ସେ ନିଜେ ବ୍ୟତୀତ ଅନ୍ୟ କେହି ରକ୍ଷା କରି ପାରିବେ ନାହିଁ।

**ରୂପକାର୍ଯ୍ୟସମାଖ୍ୟାଶ୍ଚ ଭିଦ୍ୟନ୍ତେ ତତ୍ର ତତ୍ର ବୈ ।**
**ଆକାଶସ୍ୟ ନ ଭେଦୋଽସ୍ତି ତଦ୍‌ବତ୍ ଜୀବେଷୁ ନିର୍ଣ୍ଣୟଃ ॥୬॥**

ରୂପ = ରୂପ, କାର୍ଯ୍ୟ = କାର୍ଯ୍ୟ, ସମାଖ୍ୟାଃ = ସେହି ଏକାପରି, ଚ = ଏବଂ, ଭିଦ୍ୟନ୍ତେ = ପ୍ରଭେଦ ଦେଖାନ୍ତି, ତତ୍ର ତତ୍ର ବୈ = ପ୍ରତ୍ୟେକ କ୍ଷେତ୍ରରେ, ଆକାଶସ୍ୟ = ଆକାଶରେ, ନ ଭେଦଃଅସ୍ତି = ପ୍ରଭେଦ ନାହିଁ, ତତ୍‌ବତ୍ = ସେହିପରି ଭାବରେ, ଜୀବେଷୁ = ଜୀବ ସମ୍ବନ୍ଧୀୟ, ନିର୍ଣ୍ଣୟଃ = ନିର୍ଦ୍ଦିଷ୍ଟ ସିଦ୍ଧାନ୍ତ ।

*ରୂପ, କାର୍ଯ୍ୟ ଏବଂ ନାମରେ ଏଠିସେଠି ପ୍ରଭେଦ ରହିଲେ ମଧ୍ୟ ଆକାଶର କଦାପି କୌଣସି ପ୍ରଭେଦ ନାହିଁ। ଏହା ଏକ ଏବଂ ଅଦ୍ୱିତୀୟ । ଜୀବମାନଙ୍କ ସମ୍ବନ୍ଧରେ ମଧ୍ୟ ଏହା ହିଁ ଦୃଢ ସିଦ୍ଧାନ୍ତ ॥୬॥*

ଗୌଡ଼ପାଦଙ୍କ ଯୁକ୍ତିରେ ବିରୋଧୀ ଏଠାରେ ଗୋଟିଏ ତ୍ରୁଟି ଦେଖି ପାରୁଛନ୍ତି । ବିରୋଧୀଙ୍କ ମତରେ ଅନୁଭୂତିରେ ବିବିଧତା ଥିବା ଯୋଗୁଁ ପ୍ରତ୍ୟେକ ଶରୀରରେ ଭିନ୍ନ ଆତ୍ମା ରହିବା ଦରକାର । ଜୀବନର ବ୍ୟକ୍ତିସ୍ତରୀୟ ଅନୁଭୂତି ବିଭିନ୍ନ ପ୍ରକାରର ହେଉଥିବାରୁ ସତ୍ୟ ଏକ ଏବଂ ସମାନ ହୋଇ ପାରିବେ ନାହିଁ।

ଏହି ଶ୍ଳୋକରେ ସେହି ସନ୍ଦେହର ଉତ୍ତର ଦିଆ ଯାଇଛି । ସତ୍ୟଙ୍କୁ ମନ ଦ୍ୱାରା ବିଶ୍ଳେଷଣ କଲେ, ଶୁଦ୍ଧ-ଚୈତନ୍ୟ ସେହି ଏକା ହୋଇଥିଲେ ମଧ୍ୟ, ନିଶ୍ଚିତ ଭାବରେ ଆମେ ବିଭିନ୍ନ ରୂପ, ନାମ ଏବଂ କାର୍ଯ୍ୟର ବହୁବିଧ ଜଗତ ଦେଖିପାରୁ। ବହୁବିଧ ଜଗତର ଦ୍ରଷ୍ଟା ଜୀବ, ସତ୍ୟ ନୁହେଁ। ମନର କୁହେଳି ମଧ୍ୟରେ ଚୈତନ୍ୟ ପ୍ରକାଶିତ ହେଲେ ଜୀବ-ମରୀଚିକାର ଉଦୟ ହୋଇଥାଏ ।

ସେହି ଏକା ମାଟିରୁ ତିଆରି ହୋଇଥିଲେ ମଧ୍ୟ, ରୂପ, କାର୍ଯ୍ୟ ଏବଂ ନାମ ଅନୁଯାୟୀ ଘଟମାନେ ବିଭିନ୍ନ ପ୍ରକାରର ଦେଖାଯାଇଥାନ୍ତି । ତଥାପି, ଆମେ ଜାଣୁ ଯେ, ମାଟି ବିନା ସେମାନଙ୍କର କାହାରି ଅସ୍ତିତ୍ୱ ନାହିଁ। ଘଟକୁ ତୁମେ ଯେଉଁ ନାମ ଦିଅ ନା କାହିଁକି, ଯେଉଁ ଉଦ୍ଦେଶ୍ୟରେ ସେମାନଙ୍କୁ ବ୍ୟବହାର କରାଗଲେ ମଧ୍ୟ, ଯେଉଁ ଆକାରରେ ସେମାନଙ୍କୁ ଗଢ଼ା ଗଲେ ବି, ସେମାନଙ୍କର ସ୍ୱସ୍ୱରୂପ ମାଟି ବ୍ୟତୀତ ସେମାନେ ମୁହୂର୍ତ୍ତେ ବି ରହି ପାରିବେ ନାହିଁ। ସେମାନଙ୍କୁ ନଷ୍ଟ କରିଦେଲେ ସେମାନେ ମାଟି ହିଁ ହୋଇଯିବେ ।

ମାଟିଘଟମାନଙ୍କର ଏହି ରୂପ, ନାମ ଏବଂ କାର୍ଯ୍ୟ; ସେମାନଙ୍କର ରୂପ ଇତ୍ୟାଦି ସମ୍ବନ୍ଧରେ ବହୁବିଧତାର ଏକ ଧାରଣା ଦେଇ ପାରନ୍ତି । କିନ୍ତୁ ଆମେ ନିଶ୍ଚିତ ଭାବରେ

ଜାଣୁ ଯେ, ସେମାନଙ୍କ ଭିତରେ ଥିବା ଆକାଶ ଏକ ଏବଂ ଶାଶ୍ୱତ। ଏହାକୁ କଦାପି ପରିଚ୍ଛିନ୍ନ କରାଯାଇ ପାରିବ ନାହିଁ। ପିକଦାନୀର ଆକାଶ ମଧ୍ୟ ଗଙ୍ଗା-କଳସର ଆକାଶ। ଆକାଶ ହେଉଛି ଏକ ଏବଂ ଅଭିନ୍ନ, ଏଥିରେ ବହୁବିଧତା ନାହିଁ।

ସେହିପରି ବହୁବିଧ ଜୀବମାନଙ୍କ ପଛରେ ଥିବା ସତ୍ୟ ମଧ୍ୟ ସଦାସର୍ବଦା ଚିରନ୍ତନ ଏବଂ ଅଦ୍ୱୈତ। ସେମାନଙ୍କର ରୂପ ଯାହା ହେଉ, ଯେଉଁ ଯେଉଁ ଅବସ୍ଥାରେ ସେମାନେ ବାସ କରୁଥାଆନ୍ତୁ ନା କାହିଁକି, ଜୀବନରେ ସେମାନଙ୍କର ବିଭିନ୍ନ ପ୍ରକାର ଅନୁଭୂତି ସତ୍ତ୍ୱେ ସବୁ ଜୀବଙ୍କ ପଛରେ ଥିବା ସତ୍ୟ ସେହି ଏକ ହିଁ। ଆମେ ଅପରାଧୀ ହେଉ ବା ସାଧୁ, ଆମ ଭିତରେ ଥିବା ପ୍ରକାଶ ତତ୍ତ୍ୱ, ଜୀବନତତ୍ତ୍ୱ ସେହି ଏକ ହିଁ – ଶାଶ୍ୱତ ସତ୍ୟ।

ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ଥିବା ପ୍ରଭେଦ ହେଉଛି ସେମାନଙ୍କର ମାନସିକ ସଂରଚନା ଏବଂ ବୌଦ୍ଧିକ ସାମର୍ଥ୍ୟର ପ୍ରଭେଦ କେବଳ। ମନ ଏବଂ ବୁଦ୍ଧିର ଅତୀତ ହେଲେ, ସତ୍ୟଙ୍କର ଅନୁଭୂତି ସମସ୍ତଙ୍କ ପାଇଁ ସମାନ। ପରିଚ୍ଛିନ୍ନତାରୁ ଥରେ ମୁକ୍ତ ହେଲେ ଘଟାକାଶ ମହାକାଶ ସହିତ ତା'ର ଏକତ୍ୱ ଅନୁଭବ କରେ। ସେହିପରି ମଧ୍ୟ, ଆମ ଭିତରେ ଥିବା ଶୁଦ୍ଧ ଚୈତନ୍ୟ, ଶରୀର ମନ-ବୁଦ୍ଧି ସହିତ ପ୍ରତୀୟମାନ ହେଉଥିବା ତାଙ୍କର ତାଦାତ୍ମ୍ୟରୁ ଥରେ ମୁକ୍ତ ହେଲେ ସ୍ୱସ୍ୱରୂପର ଅନୁଭୂତି ଲାଭ କରନ୍ତି। ନିର୍ବିକଳ୍ପ ଜ୍ଞାନରେ ଜଗତ ନାହିଁ କିମ୍ବା ସମୟ, ଆକାଶ ନାହିଁ, କାରଣ, ବହୁବିଧତା ଇତ୍ୟାଦିର ମିଥ୍ୟା ଧାରଣା ଦେଉଥିବା ବିଭିନ୍ନ ଅନୁଭୂତି ନାହିଁ।

ବର୍ତ୍ତମାନ ଗୋଟିଏ ପ୍ରଶ୍ନ ପଚରା ଯାଇପାରେ, ଆମେ ଏହା ଜାଣିବା କିପରି ? କବି-ଦାର୍ଶନିକଙ୍କର ଏହା ଏକ ଅନ୍ଧ ତଥ୍ୟ କିମ୍ବା ଜୀବନର ନିଷ୍ଠୁର ବାସ୍ତବତାଠାରୁ ରକ୍ଷା ପାଇବା ପାଇଁ ଚାହୁଁଥିବା କୌଣସି ଦୁର୍ବଳ ବ୍ୟକ୍ତିର ମନର ଭାବ ? ନିର୍ଣ୍ଣୟ- ଏହି ଦୃଢ଼ ପ୍ରତିପାଦନ ଦ୍ୱାରା ଗୌଡ଼ପାଦ ଏହି ସନ୍ଦେହ ଦୂର କରିଛନ୍ତି। ଜଗତର ଯେଉଁ ମହାନ ଦ୍ରଷ୍ଟାମାନେ ବେଦାନ୍ତ ସାଧନାର ଅଭ୍ୟାସ କରି ଶୁଦ୍ଧ-ଚୈତନ୍ୟ ବ୍ୟତୀତ ତାଙ୍କର ସ୍ୱସ୍ୱରୂପ ଅନ୍ୟ କିଛି ନୁହେଁ ବୋଲି ଅନୁଭବ କରିଛନ୍ତି, ଏହା ହିଁ ସେ ସମସ୍ତଙ୍କର ଶେଷ-ସିଦ୍ଧାନ୍ତ।

**ନାକାଶସ୍ୟ ଘଟାକାଶୋ ବିକାରାବୟବୌ ଯଥା ।**
**ନୈବାତ୍ମନଃ ସଦା ଜୀବୋ ବିକାରାବୟବୌ ତଥା ॥୭॥**

ନ = ନୁହେଁ, ଆକାଶସ୍ୟ = ସମଗ୍ର ଆକାଶର, ଘଟ-ଆକାଶଃ = ଘଟ ଆକାଶ, ବିକାରଃ = ବିକାର, ଅବୟବଃ = ଏକ ଅଂଶ, ଯଥା = ଯେପରି, ଏବ = ମଧ୍ୟ, ଆତ୍ମନଃ = ପରମାତ୍ମାଙ୍କର, ନ ସଦା = କଦାପି ନୁହେଁ, ଜୀବଃ = ଜୀବ, ବିକାର ଅବୟବୌ = ବିକାର ବା ଏକ ଅଂଶ, ତଥା = ସେହିପରି ।

*ଘଟାକାଶ ମହାକାଶର ଏକ ଅଂଶ ବା ଅବୟବ ନୁହେଁ । ସେହିପରି ଜୀବ ମଧ୍ୟ ପରମାତ୍ମାଙ୍କର ଏକ ଅଂଶ ବା ଅବୟବ ନୁହେଁ ॥୭॥*

ସତ୍ୟ ସର୍ବବ୍ୟାପୀ ଘନ ହୋଇଥିବାରୁ ଏଥିରେ କୌଣସି ପାର୍ଥକ୍ୟ ରହି ନପାରେ ଏବଂ ତେଣୁ ଜୀବ ପରମଙ୍କର ଏକ ଅଂଶ ହୋଇ ପାରିବ ନାହିଁ, କିମ୍ବା ଆମେ ଏକଥା ମଧ୍ୟ କହି ପାରିବା ନାହିଁ ଯେ, ପରମାତ୍ମାଙ୍କଠାରେ କୌଣସି ବିକାର ହେବାରୁ ଜୀବର ଅଭ୍ୟୁଦୟ ହୋଇଛି । ଆମେ ସମସ୍ତେ ଜାଣୁ ଯେ କୌଣସି ପଦାର୍ଥରେ ବିକାର ହୋଇ ଅନ୍ୟ କୌଣସି ପଦାର୍ଥ ସୃଷ୍ଟି ହେଲେ ପ୍ରଥମ ପଦାର୍ଥଟିର ମୃତ୍ୟୁ ହୋଇ ତା'ର ସ୍ୱରୂପର ପରିବର୍ତ୍ତନ ହେବ । ଦୁଗ୍ଧ ଦହିରେ ପରିଣତ ହେଲେ ଦୁଗ୍ଧ ନଷ୍ଟ ହୋଇଯାଏ ଏବଂ ଦହି ସୃଷ୍ଟି ହୁଏ । ଦହିକୁ ଆଉ ଦୁଗ୍ଧ କହିହେବ ନାହିଁ । ସେହିପରି ଆମେ ଯଦି ଗ୍ରହଣ କରିବା ଯେ, ଶାଶ୍ୱତ ଏବଂ ଅବିନଶ୍ୱର ପରମ ସତ୍ୟଙ୍କଠାରେ ଏକ ବିକାରର ଫଳ ସ୍ୱରୁପ ଜୀବର ଉଦୟ ହୋଇଛି, ତେବେ ଶାଶ୍ୱତ ସ୍ୱରୂପ ଫେରି ପାଇବା ପାଇଁ ଜୀବର ଆଉ କୌଣସି ସମ୍ଭାବନା ରହିବ ନାହିଁ । ତାଙ୍କଠାରୁ ଜଗତର ସୃଷ୍ଟି ହେବାକୁ ହେଲେ ଶାଶ୍ୱତଙ୍କୁ ମୃତ୍ୟୁରେ ପଡ଼ିବାକୁ ପଡ଼ିବ । ଜଗତଟିଏ ସୃଷ୍ଟି ହୋଇ ସାରିବା ପରେ, ଆଉ କୌଣସି ଈଶ୍ୱରଙ୍କୁ ଜଗତବାସୀ ପ୍ରାର୍ଥନା କରି ପାରିବେ ନାହିଁ, କରିବାର ଆବଶ୍ୟକତା ରହିବ ନାହିଁ ।

ଘଟାକାଶ ହେବାପାଇଁ ମହାକାଶ କୌଣସି ଭାବରେ ବିଭାଜିତ ହୁଏ ନାହିଁ କିମ୍ବା ଦହି ପରି ବସେ ନାହିଁ । ଘଟାକାଶ ହିଁ ମହାକାଶ । ସେହିପରି ମୋଠାରେ ଥିବା ଜୀବ ପରମାତ୍ମା ବ୍ୟତୀତ ଅନ୍ୟ କିଛି ନୁହେଁ । ମୁଁ ଏକଥା ବୁଝି ନାହିଁ, ତେଣୁ ଦୁଃଖ ପାଉଛି । ଠିକ୍ ଭାବରେ ବୁଝିବାକୁ ହିଁ ଜ୍ଞାନ କୁହାଯାଏ ।

ନିଜକୁ ଜାଣ ଏବଂ ସଚେତ ହୁଅ। ଅଜ୍ଞାନତାର ଜୀବନ କେବଳ ମୃତ୍ୟୁ ହିଁ। ତେଣୁ ଜୀବ ପରମାତ୍ମାଙ୍କର ବିକାର ନୁହେଁ ବା ଏକ ଅଂଶ (ଅବୟବ) ନୁହେଁ। ଏଠାରେ ଅନ୍ୟ ସମସ୍ତ ସିଦ୍ଧାନ୍ତକୁ ଦୃଢ ଭାବରେ ଖଣ୍ଡନ କରାଯାଇ ବେଦାନ୍ତକୁ ପ୍ରତିଷ୍ଠିତ କରାଯାଇଛି। ଆବୃତ ସତ୍ୟ ହିଁ ଜୀବ ବୋଲି ଏହି ଅନୁରୂପତା ପ୍ରକାଶ କରେ। ପରମାତ୍ମାଙ୍କୁ, ସ୍ୱରୂପକୁ ଜାଣିବା ହେଉଛି ସତ୍ୟ।

**ଯଥା ଭବତି ବାଲାନାଂ ଗଗନଂ ମଲିନଂ ମଲୈଃ।**

**ତଥା ଭବତ୍ୟବୁଦ୍ଧାନାମାତ୍ମାପି ମଲିନୋ ମଲୈଃ ॥୮॥**

ଯଥା = ଯେପରି, ଭବତି = ଦେଖାଯାଏ (ହୁଏ), ବାଲାନାମ୍ = ଅଜ୍ଞାନ ଶିଶୁଙ୍କ ପାଇଁ, ଗଗନମ୍ = ଆକାଶ, ମଲିନମ୍ = ମଇଳା, ଅସନା ହେବା; ମଲୈଃ = ଧୂଳି ଦ୍ୱାରା, ଅଶୁଦ୍ଧି ଦ୍ୱାରା, ତଥା = ସେହିପରି, ଭବତି = ବିଚାର କରାଯାଏ, ଅବୁଦ୍ଧାନାମ୍ = ଅଜ୍ଞାନଙ୍କ ଦ୍ୱାରା, ଆତ୍ମା-ଅପି = ଆତ୍ମା ମଧ, ମଲିନଃ = ମଇଳା, ମଲୈଃ = ଅଶୁଦ୍ଧି ଦ୍ୱାରା।

*ଅଜ୍ଞାନ ଶିଶୁଙ୍କୁ ଧୂଳି ଦ୍ୱାରା ଆଚ୍ଛାଦିତ ଆକାଶ ଅପରିଷ୍କାର ଦେଖାଯିବା ପରି ଅଜ୍ଞାନୀମାନେ ମଧ ଆତ୍ମା କଳୁଷିତ ହୋଇଥିବା ପରି ବିଚାର କରନ୍ତି ॥୮॥*

ନୀଳ ଗଗନରେ ମେଘମାଳାର ଅବସ୍ଥିତି ବୁଝି ନପାରି ଛୋଟ ପିଲାମାନେ ଠିଆ ହୋଇଥିବା ଯାଗାରୁ ଚାହାଁନ୍ତି। ସେମାନଙ୍କର ଅପରିପକ୍ୱ ଦୃଷ୍ଟିକୋଣରୁ ମେଘମାଳାକୁ ଆକାଶରେ ଅଧ୍ୟାସ କରି ସେମାନେ ତାକୁ ଖଣ୍ଡେ ଆକାଶ ବୋଲି ଭାବନ୍ତି, ମେଘମାଳା ଆକାଶର ମଇଳା ବୋଲି ଭାବନ୍ତି।

ସେହିପରି ଆତ୍ମାରେ ମଣିଷର ମାନସିକ ଅନୁଭୂତି ନଥାଏ ବୋଲି ବୁଝିବାର ବିବେକର ଅଭାବରେ ଅଜ୍ଞାନବଶତଃ ମଣିଷ ନିଜ ମନର ଗୁଣକୁ ଆତ୍ମାଙ୍କ ଠାରେ ଅଧ୍ୟାସ କରି 'ଆତ୍ମା ଅସୁଖୀ', 'ଆତ୍ମା ସୁଖୀ' ଇତ୍ୟାଦି ବୋଲି କହି ଦୁଃଖ କରେ। ଆତ୍ମା ହେଉଛନ୍ତି ଶୁଦ୍ଧ ଚୈତନ୍ୟ। ତାହା ହିଁ ଉଭୟ ସୁଖ ଏବଂ ଦୁଃଖକୁ ପ୍ରକାଶିତ କରନ୍ତି। ସୂର୍ଯ୍ୟ ପର୍ବତ, ନଦୀ, ଜଙ୍ଗଲ ଏବଂ ସହରକୁ ଆଲୋକିତ କରନ୍ତି କିନ୍ତୁ ସୂର୍ଯ୍ୟଙ୍କଠାରେ ପର୍ବତ ନାହିଁ, ନଦୀ ନାହିଁ କିମ୍ବା ଜଙ୍ଗଲ ନାହିଁ, ସହର ବି ନାହିଁ। ଯାହା ପ୍ରକାଶିତ କରେ, ତାହା ପ୍ରକାଶିତ ହେଉଥିବା ବସ୍ତୁ ଅପେକ୍ଷା ସ୍ୱତନ୍ତ୍ର।

ସେହିପରି, ପ୍ରକାଶ-ତତ୍ତ୍ୱ ଆତ୍ମା ତାଙ୍କର ଚୈତନ୍ୟ ଦ୍ୱାରା ମାନସିକ ଅବସ୍ଥାକୁ (ବୃତ୍ତିକୁ) ପ୍ରକାଶିତ କରନ୍ତି, କିନ୍ତୁ ତାଙ୍କଠାରେ ଏସବୁ ମାନସିକ ବୃତ୍ତି ନଥାଏ। ତଥାପି

ଶରୀର, ମନ, ବୁଦ୍ଧି, ସହିତ ତାଦାତ୍ମ୍ୟ କରି, ଜୀବଭାବକୁ ଯାଇ ଆମେ ଦ୍ରଷ୍ଟା-କର୍ତ୍ତା-ଉପଭୋକ୍ତାର ଅହଂକାର ସୃଷ୍ଟି କରୁ ଏବଂ ନିଜର ଅଜ୍ଞାନ ଜୀବ-ଜଗତର ସ୍ୱସ୍ୱରୁପକୁ ଚାହିଁ ବୋକାମିରେ ଆମେ ଭାବୁଁ ଯେ, ଯେଉଁ ମାଧ୍ୟମରେ ଆମେ ଆତ୍ମାଙ୍କୁ ଦେଖୁଛୁ ତାଙ୍କଠାରେ ସେହିସବୁ ଗୁଣ ବିଦ୍ୟମାନ। ପିଲାମାନେ ଝରକାର ହଳଦିଆ କାଚରୁ ଦୁନିଆଁକୁ ଦେଖି ଏହା ହଳଦିଆ ରଙ୍ଗର ବୋଲି କହନ୍ତି। ବାସ୍ତବରେ ଦୁନିଆଁ ହଳଦିଆ ନୁହେଁ, କିନ୍ତୁ ଯେଉଁ ମାଧ୍ୟମ ଜରିଆରେ ସେମାନେ ଦେଖନ୍ତି, ବିଷୟ-ଜଗତ ଉପରେ ତା'ର ଅଧ୍ୟାସ ହୋଇଥାଏ।

ପୂର୍ବ ଶ୍ଳୋକରେ ପ୍ରତିପାଦିତ କରାଯାଇଛି ଯେ ଆତ୍ମା ଶାଶ୍ୱତ-ଶୁଦ୍ଧ (ଚିର-ଶୁଦ୍ଧ) ଏବଂ ଅଦ୍ୱୈତ।ଏହି ପ୍ରତିପାଦନ ବିରୁଦ୍ଧରେ ଉଠିଥିବା ଆପତ୍ତି ପାଇଁ ଏହା ହେଉଛି ଉତ୍ତର। ଜଣେ ବିରୋଧୀ ପ୍ରତିବାଦ କରି ପାରନ୍ତି ଯେ, ସତ୍ୟ ଉଭୟ ଶାଶ୍ୱତ ଏବଂ ଅଦ୍ୱୈତ ହୋଇ ପାରିବେ ନାହିଁ, କାରଣ ଆମର ଚତୁର୍ଦ୍ଦିଗରେ ଆମେ କେବଳ ଅଶୁଦ୍ଧି ଏବଂ ବହୁବିଧତା ଦେଖିବାକୁ ପାଉଛୁ। ଆମର ବୁଝିବାରେ କେଉଁଠି ଭୁଲ ରହି ଯାଉଛି, ଅଶୁଦ୍ଧି ଏବଂ ବହୁବିଧତା ମାଧ୍ୟମରେ ଆମେ ଅଦ୍ୱୈତ ଏବଂ ଚିର ଶୁଦ୍ଧ ଆତ୍ମାଙ୍କ ସମ୍ବନ୍ଧରେ କିପରି ଭୁଲ ଧାରଣା କରୁଛୁ ଗୌଡ଼ପାଦ ସେହି ସନ୍ଦେହର ନିରାକରଣ କରିଛନ୍ତି। ପିଲାମାନଙ୍କ ପାଇଁ ମଇଳା ଦେଖା ଯାଉଥିବା ଆକାଶ ଜ୍ଞାନୀଜନଙ୍କ ପାଇଁ ନିର୍ମଳ।

**ମରଣେ ସମ୍ଭବେ ଚୈବ ଗତ୍ୟାଗମନୟୋରପି।**

**ସ୍ଥିତୌ ସର୍ବଶରୀରେଷୁ ଆକାଶେନାବିଲକ୍ଷଣଃ ॥୯॥**

ମରଣେ = ମୃତ୍ୟୁରେ, ସମ୍ଭବେ = ଜନ୍ମ, ଚ ଏବ = ଏବଂ ମଧ୍ୟ, ଗତି ଆଗମନୟୋଃ = ପ୍ରସ୍ଥାନ, ଆଗମନ, ଅର୍ଥାତ୍ ଜନ୍ମ, ମୃତ୍ୟୁ, ଅପି ସ୍ଥିତୌ = ଏବଂ ସ୍ଥିତି (ଅବସ୍ଥିତି), ସର୍ବ ଶରୀରେଷୁ = ସମସ୍ତ ଶରୀରରେ, ଆକାଶେନ = 'ଘଟାକାଶ'ରୁ, ଅବିଲକ୍ଷଣଃ = ଅଲଗା ନୁହେଁ।

*ପ୍ରତୀୟମାନ ହେଉଥିବା ଜନ୍ମ-ମୃତ୍ୟୁର ଧାରାରେ (ଗତାୟତ) ଏବଂ ସ୍ଥିତିରେ ସମସ୍ତ ଶରୀରରେ ଅଧ୍ୟକ୍ଷତା କରୁଥିବା ଆତ୍ମା ଘଟାକାଶ ଠାରୁ ଭିନ୍ନ ନୁହଁନ୍ତି ॥୯॥*

ମୀମାଂସା ଦର୍ଶନରେ ଏହା ଏକ ଗ୍ରହଣ ଯୋଗ୍ୟ ବିଶ୍ୱାସ ଯେ, ପୁଣ୍ୟ ଜୀବନଯାପନ କରୁଥିବା ଜୀବ ସ୍ୱର୍ଗକୁ ଯାଇ ପରମସୁଖ ଲାଭ କରେ ଏବଂ ନିମ୍ନ ଧରଣର ପାଶବିକ ଜୀବନ ଯାପନ କରି ପ୍ରାଣୀ ଏବଂ ଉଦ୍ଭିଦ ଜଗତର ଦୁଃଖ ଭୋଗକରେ। ପ୍ରକୃତରେ

ଏପରି ଗତାୟତ ହୁଏ ବୋଲି ଅଦ୍ୱୈତବାଦ ଗ୍ରହଣ କରେ ନାହିଁ । ଏଠାରେ ତାହା ପ୍ରମାଣ କରାଯାଇଛି । ଗୌଡ଼ପାଦ ଦର୍ଶାଇଛନ୍ତି ଯେ, ଆତ୍ମାର ଗତାୟତ ବୋଲି ଆମେ ଯାହା ବିଶ୍ୱାସ କରୁ, ବେଦାନ୍ତର ପ୍ରକୃତ ଦର୍ଶନରେ ତାହା କୌଣସି ବିଘ୍ନ ସୃଷ୍ଟି କରେ ନାହିଁ, କାରଣ, ଆତ୍ମା ଯେଉଁଠାରେ ଏକମେବ ଅଦ୍ୱୈତୀୟ ସେଠାରେ ମଧ୍ୟ ଏହି ଜନ୍ମ ମୃତ୍ୟୁ ବୃଦ୍ଧିକ୍ଷୟ ସମ୍ଭବପର ।

ଏହି ଧାରଣାର ବ୍ୟାଖ୍ୟା କରିବା ପାଇଁ ସେ ପୂର୍ବ ପରି ଘଟାକାଶର ଅନୁରୂପତା ଦର୍ଶାଇ କହିଛନ୍ତି ଯେ, ଘଟଟିଏ ତିଆରି ହେବାବେଳେ ଘଟାକାଶର ମଧ୍ୟ ସୃଷ୍ଟି ହୁଏ, ଏହା ଭାଙ୍ଗିଗଲେ ଘଟାକାଶ ନଷ୍ଟ ମଧ୍ୟ ହୋଇଯାଏ, କିନ୍ତୁ ଘଟାକାଶର ଜନ୍ମ ବା ମୃତ୍ୟୁରେ ମହାକାଶର କିଛି ବିଘ୍ନ ହୁଏ ନାହିଁ । ଗୋଟିଏ ଘଟକୁ ଉତ୍ତର ମେରୁକୁ ନିଅ, କିମ୍ବା ସେଠାରୁ ଦକ୍ଷିଣ ମେରୁକୁ, ଘଟାକାଶ ଏବଂ ମହାକାଶର ସମ୍ପର୍କ କଦାପି ପରିବର୍ତ୍ତିତ ହେବ ନାହିଁ । ସେହିପରି ଏକମେବ ଅଦ୍ୱୈତୀୟ ଆତ୍ମାଙ୍କର କେବେ ବି 'ଜନ୍ମ' ବା 'ମୃତ୍ୟୁ' ହୁଏ ନାହିଁ । ସର୍ବବ୍ୟାପୀଙ୍କର ଗତି ନାହିଁ । କିନ୍ତୁ ମନ ଏବଂ ବୁଦ୍ଧିର ପରିଚ୍ଛିନ୍ନତାର ଆବରଣରୁ ଦେଖା ଦେଇଥିବା ଜୀବଭାବର ଗୋଟିଏ କାଳ ଏବଂ କ୍ଷେତ୍ର 'ଜନ୍ମ'ଏବଂ ଅନ୍ୟ ଏକ କାଳ ଏବଂ କ୍ଷେତ୍ର ପ୍ରସଙ୍ଗରେ 'ମୃତ୍ୟୁ' ହେବାପରି ମନେ ହୋଇଥାଏ ।

ବାସ୍ତବରେ ଜଣେ କେହି ଜନ୍ମ ନେଇପାରେ, ମୃତ୍ୟୁ ବରଣ କରିପାରେ, ସ୍ୱର୍ଗକୁ ଯାଇପାରେ କିମ୍ବା ନର୍କକୁ, କିନ୍ତୁ ଆତ୍ମା ହେଉଛନ୍ତି ଶାଶ୍ୱତ, ଅଜ, ତାଙ୍କ ପାଇଁ କୌଣସି ଗତାୟତ ନାହିଁ । ମୋ ପୁଅ ଜନ୍ମ ନେଲା କିମ୍ବା ମୁଁ ମରିବାକୁ ଯାଉଛି ଏହି ଉଭୟ ଧାରଣା ମୋଠାରେ ଥିବା ଆତ୍ମାଙ୍କ ଦ୍ୱାରା ପ୍ରକାଶିତ ହୁଏ । ମନ ପ୍ରଦେଶରେ ଆତ୍ମାଙ୍କ ସମକ୍ଷରେ ଏହା ଘଟୁଥିବା ପରି ମନେ ହୁଏ ।

ସମୁଦ୍ରରେ ଝଡ଼ ଉଠିଥାଉ ବା ଶାନ୍ତ ଥାଉ, ସୂର୍ଯ୍ୟ ତାଦ୍ୱାରା ପ୍ରଭାବିତ ହୁଅନ୍ତି ନାହିଁ । ସୂର୍ଯ୍ୟାଲୋକ ସମୁଦ୍ରର ଅବସ୍ଥାକୁ କେବଳ ପ୍ରକାଶିତ କରିଥାଏ ।

**ସଂଘାତାଃ ସ୍ୱପ୍ନବତ୍ ସର୍ବେ ଆତ୍ମମାୟା ବିସର୍ଜିତାଃ ।**
**ଆଧିକ୍ୟେ ସର୍ବସାମ୍ୟେ ବା ନୋପପତ୍ତିର୍ହି ବିଦ୍ୟତେ ॥୧୦॥**

ସଂଘାତାଃ = ସଂଘ (ଶରୀର ଇତ୍ୟାଦି), ସ୍ୱପ୍ନବତ୍ = ସ୍ୱପ୍ନପରି, ସର୍ବେ = ସମସ୍ତେ, ଆତ୍ମ-ମାୟା = ଆତ୍ମାର ମାୟା, ବିସର୍ଜିତାଃ = ଉତ୍ପନ୍ନ ହୁଅନ୍ତି, ଆଧିକ୍ୟେ = ପ୍ରାଧାନ୍ୟରେ, ବା ସର୍ବସାମ୍ୟେ = କିମ୍ବା, ସମସ୍ତଙ୍କ ମଧ୍ୟରେ ସମାନତା, ଉପପତ୍ତିଃ = ଯୁକ୍ତିଯୁକ୍ତ କାରଣ ବା ତର୍କ, ନ ହି = ପ୍ରକୃତରେ ନୁହେଁ, ବିଦ୍ୟତେ = ଦେଖାଯାଏ ।

*ଆତ୍ମା ଉପରେ ଆବରଣ ପକାଇଥିବା ମାୟା ଯୋଗୁଁ ଶରୀର, ମନ ଏବଂ ବୁଦ୍ଧି ଇତ୍ୟାଦିର ସଂହତିର ସୃଷ୍ଟି । ସେମାନେ ପରସ୍ପର ସହିତ ସମାନ ବା ଗୋଟିଏ ଅନ୍ୟଠାରୁ ଅଧିକ, ଏ ବିଷୟରେ କୌଣସି ଯୁକ୍ତିସଂଗତ ତର୍କ ପ୍ରତିଷ୍ଠା କରାଯାଇପାରିବ ନାହିଁ ॥୧୦॥*

ଅଂଶ ବା ଅବୟବମାନେ ଯେଉଁ ସମଷ୍ଟି ଗଠନ କରନ୍ତି, ତାହା ନିଜ ପାଇଁ ନୁହେଁ, ବରଂ ସମଷ୍ଟିର ମାଲିକଙ୍କ ପାଇଁ । ଉଦାହରଣ ସ୍ୱରୂପ, କାନ୍ଥ, ଝରକା, କଡ଼ି-ବରଗା, ଛାତ ଇତ୍ୟାଦିରୁ ଘରଟିଏ ତିଆରି ହୋଇଥାଏ, କିନ୍ତୁ ଘରଟି ଝରକା ବା କାନ୍ଥ ବା ଦୁଆର ପାଇଁ ତିଆରି ହୋଇ ନଥାଏ । ଯେଉଁ ସବୁ ବସ୍ତୁରୁ ଘର ତିଆରି ହୋଇଥାଏ, ତାହା ସେହିସବୁ ବସ୍ତୁ ପାଇଁ ଏକତ୍ରିତ କରାଯାଇ ନଥାଏ, ବରଂ ସେହି ଘରେ ବାସ କରିବା ମାଲିକଙ୍କ (ସ୍ୱାମୀଙ୍କ) ପାଇଁ କରାଯାଇଥାଏ । ସେହିପରି କୌଣସି ସମଷ୍ଟିର, କୌଣସି ଅଙ୍ଗ ଆଂଶିକ ଭାବରେ ବା ସାମଗ୍ରିକ ଭାବରେ ଏହାର ସ୍ୱାମୀ ନୁହନ୍ତି । ମାନବ ଶରୀରର ସଂରଚନାରେ ଶାରୀରିକ, ମାନସିକ, ବୌଦ୍ଧିକ ଇତ୍ୟାଦି ଅଙ୍ଗ ରହିଛି । କିଛି ଗୋଟିଏକୁ ଆକାର ଦେବାପାଇଁ ଏହି ଅଙ୍ଗସବୁ ଏକାଠି ହୋଇଥାନ୍ତି । ଏହା ଶରୀର, ମନ ବା ବୁଦ୍ଧି ପାଇଁ ଉଦ୍ଦିଷ୍ଟ ବୋଲି କୁହାଯାଇ ପାରିବ ନାହିଁ । ଏହା କିନ୍ତୁ ଏସବୁର ସମଷ୍ଟିର ସ୍ୱାମୀକୁ ନିଶ୍ଚିତ ଭାବରେ ଆଶ୍ରୟ ଦେବ ।

ଆତ୍ମା ହେଉଛନ୍ତି ଶରୀରର ମାଲିକ । ସେ ନିଜ ଇଚ୍ଛାରେ ଏହି ସଂହତି ତ୍ୟାଗ କରି ଚାଲିଯାଇ ପାରନ୍ତି କିମ୍ବା ଏହା ମଧ୍ୟରେ ପୁଣି ପ୍ରବେଶ କରି ପାରନ୍ତି । ଅନ୍ୟ ପକ୍ଷରେ, ଏହି ସଂହତିରୁ ବାହାରିଯିବା ପାଇଁ କିମ୍ବା ଏହା ମଧ୍ୟରେ ପ୍ରବେଶ କରିବା ପାଇଁ ଏହାର ଅଙ୍ଗମାନଙ୍କର ସେପରି ସ୍ୱାଧୀନତା ନାହିଁ । ସ୍ୱାଧୀନତା ଚାହାଁନ୍ତି ବୋଲି ଘରର କାନ୍ଥମାନେ ସର୍ବସମ୍ମତି କ୍ରମେ ଗୋଟିଏ ପ୍ରସ୍ତାବ ଦେଲେ ମଧ୍ୟ ଏହା କରି ପାରିବା ସେମାନଙ୍କ ପକ୍ଷେ ସମ୍ଭବ ନୁହେଁ । କାରଣ, କାନ୍ଥସବୁ ହେଉଛନ୍ତି ଗୋଟିଏ ପରିପୂର୍ଣ୍ଣ ଜିନିଷ (ଘର)ର ଅଂଶ ମାତ୍ର । ମନ ବ୍ୟତୀତ ଇନ୍ଦ୍ରିୟମାନେ ସ୍ୱାଧୀନଭାବରେ କାମ କରି ପାରିବେ ନାହିଁ, ବୁଦ୍ଧିର

ନିର୍ଦ୍ଦେଶ ବିନା ମନ କାମ କରି ପାରିବ ନାହିଁ। ସ୍ୱାମୀ ବା ଚୈତନ୍ୟଙ୍କ ବ୍ୟତୀତ ବୁଦ୍ଧିର ସତ୍ତା ନାହିଁ।

ଏହା ହିଁ ସମଷ୍ଟି ବା ସଂହତି ପଦର ଲକ୍ଷ୍ୟାର୍ଥ। ତେଣୁ କେବଳ ଆତ୍ମା ଯଦି ସତ୍ୟ ହୁଅନ୍ତି, ସ୍ୱାମୀ ହୁଅନ୍ତି, ତେବେ ଶରୀରର ସମଷ୍ଟି ଗଠନ କରିଥିବା ଅଂଶ ମାନଙ୍କର କଣ ନିଜର କିଛି ସତ୍ତା ଅଛି ? ଗୌଡ଼ପାଦ କହିଛନ୍ତି ଯେ, ସତ୍ୟଙ୍କ ଦୃଷ୍ଟିରୁ ଦେଖିଲେ, ସମଷ୍ଟିର ସ୍ୱାଧୀନ ସତ୍ତା ମୋଟେ ନାହିଁ। ଶରୀର, ମନ ଏବଂ ବୁଦ୍ଧି ସହିତ ଆମେ ତାଦାତ୍ମ୍ୟ କଲାବେଳେ ହିଁ ସେମାନଙ୍କର ବ୍ୟକ୍ତିଗତ ସତ୍ତା ରହେ। ପ୍ରକୃତରେ, ସ୍ୱପ୍ନର ବିଷୟ ଅପେକ୍ଷା ସେମାନଙ୍କର ଅଧିକ ବାସ୍ତବତା ନାହିଁ। ଏମାନେ କେଉଁଠାରୁ ଉତ୍ପନ୍ନ ବୋଲି ଗୋଟିଏ କାରଣ ବାହାର କରିବା ଅସଫଳ ପ୍ରୟାସ ହେବ, ତଥାପି, ଏମାନଙ୍କର ହେତୁର କୌଣସି କାରଣ ନ ଦେଖାଇଲେ ପରିଚ୍ଛିନ୍ନ ବୁଦ୍ଧି ସନ୍ତୁଷ୍ଟ ହେବ ନାହିଁ।

ତେଣୁ, ଅନ୍ୟ କୌଣସି କାରଣ ନ ଥିବାରୁ ଶାସ୍ତ୍ରମାନେ କହିଛନ୍ତି ଯେ ଆମର ଅଜ୍ଞାନରୁ ହିଁ ଏମାନେ ସୃଷ୍ଟ। ଅଜ୍ଞାନର ନିଜର କୌଣସି ବ୍ୟକ୍ତିତ୍ୱ ନାହିଁ। ଏହା ସତ୍ ନୁହେଁ, କିମ୍ବା ଅସତ୍ ନୁହେଁ। ଏହା ବାସ୍ତବ ନୁହେଁ ବା ଅବାସ୍ତବ ନୁହେଁ। ସତ୍ୟ ପରି ଅନୁଭୂତ ହେଉଥିବା ବିବିଧତା ପାଇଁ କୌଣସି ଏକ କାରଣ ଥିବ ବୋଲି ବୁଦ୍ଧିକୁ ସାମୟିକ ଭାବେ ସନ୍ତୋଷ ଦେବା ପାଇଁ ଏହା ଏକ ମିଥ୍ୟା ଅନୁମାନ। ତେଣୁ ଦ୍ୱିତୀୟ ପଂକ୍ତିରେ ଗୌଡ଼ପାଦ କହିଛନ୍ତି, ସେମାନଙ୍କର ବାସ୍ତବତା ଅଛି ବା ନାହିଁ ବୋଲି ଆମେ କହି ପାରିବା ନାହିଁ। ମିଥ୍ୟା ନାମ-ରୁପଆଦିଙ୍କର ଆତ୍ମାଙ୍କ ଅପେକ୍ଷା ଅଧିକତର ବାସ୍ତବତା ଅଛି ବୋଲି ଆମେ କହି ପାରିବା ନାହିଁ।

ସର୍ପ ଏବଂ ରଜ୍ଜୁରେ ବା ପ୍ରେତ ଏବଂ ଖମ୍ଭରେ ଥିବା ବାସ୍ତବତାକୁ ଆମେ ନିର୍ଦ୍ଦିଷ୍ଟ ଭାବରେ କଳନା ବା ତୁଳନା କରିପାରିବା ନାହିଁ। ଏହା ସେହିପରି ହେବ। ପ୍ରେତ ଓ ସର୍ପ ଆଦୌ ନଥାନ୍ତି, ତେଣୁ, ଯାହା କିଛି ସତ୍ତା ଥିବା ପରି ମନେହୁଏ, ତାହା ହେଉଛି ଖମ୍ଭ ଏବଂ ରଜ୍ଜୁଠାରୁ ଉଧାର କରାଯାଇଥିବା ସତ୍ତା।

ଯଦି ଖମ୍ଭ ଏବଂ ରଜ୍ଜୁ ବାସ୍ତବ ହେବ, ତେବେ ସତ୍ତା କଥା ବିଚାରକୁ ନେଲେ ପ୍ରେତ ଏବଂ ସାପଙ୍କର ମଧ୍ୟ ସମାନ ଭାବରେ ବାସ୍ତବତା ରହିଛି। କାରଣ ଆମର ଭ୍ରାନ୍ତି ମୂହୁର୍ତ୍ତରେ ଖମ୍ଭ ଏବଂ ରଜ୍ଜୁ ଯେଉଁ ନାମ ଏବଂ ରୂପରେ ଦେଖାଯାଆନ୍ତି, ତାହା ପ୍ରକୃତରେ ମିଥ୍ୟା। ସେହିପରି ଏଠାରେ ମଧ୍ୟ ଶରୀର-ମନ-ବୁଦ୍ଧି ପରମସତ୍ୟଙ୍କ ବ୍ୟତୀତ ଅନ୍ୟକିଛି ନୁହେଁ, କିନ୍ତୁ ଏମିତିରେ ଶରୀର, ମନ ଏବଂ ବୁଦ୍ଧି- ଏ ସମସ୍ତ ଆତ୍ମାଙ୍କ ଅଜ୍ଞାନରୁ ସୃଷ୍ଟ ମିଥ୍ୟା ପ୍ରେତ ବା ସର୍ପ।

**ରସାଦୟୋ ହି ଯେ କୋଶା ବ୍ୟାଖ୍ୟାତାସ୍ତୈତ୍ତିରୀୟକେ।**

**ତେଷାମାତ୍ମା ପରୋ ଜୀବଃ ଖଂ ଯଥା ସଂପ୍ରକାଶିତଃ ॥୧୧॥**

ରସାଦୟଃ = ଖାଦ୍ୟର ରସ ଇତ୍ୟାଦି, ଯେ ହି କୋଶାଃ = ପଞ୍ଚକୋଷ (ଅନ୍ନମୟରୁ ଆରମ୍ଭ ହୋଇ), ବ୍ୟାଖ୍ୟାତାଃ = ବିଶଦ ଭାବରେ ବର୍ଣ୍ଣନା କରାଯାଇଛି, ତୈତ୍ତିରୀୟକେ = ତୈତ୍ତିରୀୟ ଉପନିଷଦରେ, ତେଷାମ୍ = ସେମାନଙ୍କ ମଧ୍ୟରୁ, ଆତ୍ମା = ଆତ୍ମା, ପରଃ = ପରଂବ୍ରହ୍ମ, ଜୀବଃ = ଜୀବ, ଯଥା ଖମ୍ = ଆକାଶ ପରି, ସଂପ୍ରକାଶିତଃ = ପ୍ରକାଶିତ ହୁଏ।

*ଜୀବ ପରଂବ୍ରହ୍ମଙ୍କ ବ୍ୟତୀତ ଅନ୍ୟକିଛି ନୁହେଁ। ଏହା ଅନ୍ନମୟ, ମନୋମୟ ଇତ୍ୟାଦି ପଞ୍ଚକୋଷର ଆତ୍ମା, ଯାହା ତୈତ୍ତିରୀୟ ଉପନିଷଦ୍‌ରେ ବିଶଦ ଭାବରେ ବ୍ୟାଖ୍ୟା କରାଯାଇଛି। ପରଂବ୍ରହ୍ମ ଯେ ପୂର୍ବ ବର୍ଣ୍ଣିତ ମହାକାଶ ପରି ଏହା ଆଗରୁ ବ୍ୟାଖ୍ୟା କରାହୋଇସାରିଛି ॥୧୧॥*

ବର୍ତ୍ତମାନ ପର୍ଯ୍ୟନ୍ତ ଯାହା ବର୍ଣ୍ଣନା କରାଯାଇଛି, ସେଥିରେ ଦେଖାଇ ଦେବାକୁ ଚେଷ୍ଟା କରାଯାଇଛି ଯେ, ବିଷୟରୁ ଗଠିତ ବହୁବିଧ ଜଗତ ହେଉଛି ପରମସତ୍ୟଙ୍କଠାରେ ଏକ ମିଥ୍ୟା ଅଧ୍ୟାସ। ଏହି ଉପଦେଶ ଶୁଣି ଛାତ୍ରମାନେ ନିଶ୍ଚିତ ଭାବରେ ବୁଝିବେ ଯେ, ସେମାନଙ୍କ ବ୍ୟତୀତ ସମଗ୍ର ବିଷୟ-ଜଗତ ହେଉଛି ମିଥ୍ୟା। ଏଠାରେ ଏହି ଶ୍ଳୋକରେ ସେପରି ଏକ ସମ୍ଭାବ୍ୟ ଭୁଲ ବୁଝାମଣାରୁ ଆମକୁ ବିଶେଷ ଭାବରେ ସାବଧାନ କରାଇ ଦିଆଯାଇଛି।

'ତାହା' ଭାବରେ ଯେତେସବୁ ବିଷୟକୁ ନିର୍ଦ୍ଦେଶ କରାଯାଇ ପାରିବ, ସେ ସବୁ ବିଷୟ-ଜଗତର ଅନ୍ତର୍ଗତ। ଆତ୍ମାଙ୍କ ବ୍ୟତୀତ ପ୍ରତ୍ୟେକ ବିଷୟ ହେଉଛି ବିଷୟ-ଜଗତ, ତେଣୁ କେବଳ ଦୂରସ୍ଥ ପାହାଡ଼, ଜଙ୍ଗଲ, ଗଛପତ୍ର, ଲତାଗୁଳ୍ମ, ଜୀବଜନ୍ତୁ ଏବଂ ତୁମେ ଦେଖୁଥିବା ଅନ୍ୟ ସବୁ ମଣିଷ ବିଷୟ ଜଗତ ଗଠନ କରନ୍ତି ନାହିଁ, ବରଂ ମଣିଷର ଶରୀର ମନ, ବୁଦ୍ଧି ମଧ୍ୟ ବିଷୟ ଜଗତର ସଦସ୍ୟ।

ମଣିଷ ହେଉଛି ବିଷୟରେ ଘୋଡ଼େଇ ହୋଇଥିବା ଆତ୍ମା। ଦର୍ଶନର ଦୃଷ୍ଟିକୋଣରୁ ମଣିଷର ସଂରଚନାକୁ, ତା'ର ବ୍ୟକ୍ତିତ୍ୱର ପାଞ୍ଚଗୋଟି ବିଷୟ ସ୍ତରରେ ସ୍ପଷ୍ଟଭାବେ ପାର୍ଥକ୍ୟ କରିହେବ। ତେଣୁ, ଭୌତିକ ପଦାର୍ଥରେ ଗଠିତ ଅନ୍ନମୟ କୋଷ, ତା'ଠାରୁ ସୂକ୍ଷ୍ମ ପ୍ରାଣ-ମୟ କୋଷ, ଯାହାଦ୍ୱାରା ଆଚ୍ଛାଦିତ ମନୋମୟ କୋଷ, ଏହା ଦ୍ୱାରା ଆବୃତ ବିଜ୍ଞାନମୟ କୋଷ ଏବଂ ପଞ୍ଚମରେ ସୁଷୁପ୍ତି ଅବସ୍ଥା ସହିତ ତାଦାତ୍ମ୍ୟ କରାଯାଉଥିବା

ଆନନ୍ଦମୟ କୋଷ-ଏସବୁକୁ ନେଇ ଜୀବ ସଂରଚିତ। ଆତ୍ମାଙ୍କ ଉପରେ ଥିବା ଏହି ଭିନ୍ନ ଭିନ୍ନ କୋଷର ବର୍ଣ୍ଣନା ତୈତ୍ତିରୀୟ ଉପନିଷଦ୍‌ରେ ବିଶଦ ଭାବରେ କରା ଯାଇଛି।

ଯାହାବି ହେଉ, ଏଠାରେ ଏହି ବିଭିନ୍ନ କୋଷର ବର୍ଣ୍ଣନାରେ ବିଶେଷ ଜୋର ଦିଆନଯାଇ, ଆତ୍ମାଙ୍କୁ ବେଢ଼ି ରହିଥିବା ଏହି ମିଥ୍ୟା ପରଦା ଗୁଡ଼ିକ ଅବାସ୍ତବ ଶୂନ୍ୟ ବ୍ୟତୀତ ଅନ୍ୟକିଛି ନୁହେଁ ବୋଲି ଦର୍ଶାଯାଇଅଛି।

ଆମଠାରେ ଥିବା ଶୁଦ୍ଧ-ଚୈତନ୍ୟ ନାମକ ଆଧାତ୍ମିକ କେନ୍ଦ୍ର ହେଉଛି ସର୍ବବ୍ୟାପୀ। ବାସ୍ତବରେ ଏହାଙ୍କଠାରୁ କିଛି ଉଦ୍ଭବ ହୁଏ ନାହିଁ, ଏହାଙ୍କ ବ୍ୟତୀତ ଅନ୍ୟ କିଛି ମଧ୍ୟ ଏହାଙ୍କଠାରେ ରହି ପାରିବ ନାହିଁ। କିନ୍ତୁ ଆମର ଦୈନନ୍ଦିନ ଅଭିଜ୍ଞତା ହେଲା, ଆମର ସଙ୍କୀର୍ଣ୍ଣ ଦୃଷ୍ଟିକୋଣରେ ଆମେ ଏହି ବିଭିନ୍ନ ସ୍ତର ସହିତ ତାଦାତ୍ମ୍ୟ ସ୍ଥାପନ କରିଥାଉ। ତେଣୁ ମହାନ ଗୁରୁ ଆମକୁ ଦେଖାଇ ଦେବାକୁ ବାଧ୍ୟ ହୋଇଛନ୍ତି ଯେ, ବାସ୍ତବ ପରି ମନେ ହେଉଥିବା ଏବଂ ଆମ ଉପରେ ପ୍ରଭାବ ପକାଉଥିବା ଏହି ଖୋଳଗୁଡ଼ିକର ଆତ୍ମା ଉପରେ ଅଧ୍ୟାରୋପିତ ଭ୍ରାନ୍ତିପୂର୍ଣ୍ଣ ଅଧ୍ୟାସ ବ୍ୟତୀତ ଅନ୍ୟକିଛି ନୁହଁ।

ପୂର୍ବ ଶ୍ଳୋକରେ ବର୍ଣ୍ଣନା କରାଯାଇଥିବା 'ସମଷ୍ଟି' ଏହି ପରସ୍ତଗୁଡ଼ିକୁ ନେଇ ଗଠିତ, ତେଣୁ ସେମାନଙ୍କର ନିଜସ୍ୱ ସ୍ୱାଧୀନ ସତ୍ତା ନାହିଁ। ଚୈତନ୍ୟଙ୍କୁ ନିଜର ମହିମା ଏବଂ ଆନନ୍ଦରେ ବିଚରିତ ଓ ପ୍ରଦର୍ଶିତ ହେବାପାଇଁ ଏମାନଙ୍କୁ ସଂଘଟିତ କରାଯାଇଛି। ଏହି କୋଷସବୁ ଆତ୍ମାଙ୍କୁ ପରିଚ୍ଛିନ୍ନ କରିଦିଅନ୍ତି ବୋଲି ଯେତେ କହିଲେ ବି ଆମେ ମିଛ ହିଁ କହିବା, କାରଣ ସ୍ଥୂଳ, ସୂକ୍ଷ୍ମକୁ ପରିଚ୍ଛିନ୍ନ କରି ପାରିବ ନାହିଁ। ପଥରର କାନ୍ଥ ବନ୍ଦୀଶାଳା କରେ ନାହିଁ। ମଣିଷକୁ ମାଟିତଳେ ଗୋଟିଏ କୋଠରୀରେ ରଖାଯାଇପାରେ କିନ୍ତୁ ଏହା କେବଳ ତାର ଶରୀରର ଚଳପ୍ରଚଳକୁ ସୀମାବଦ୍ଧ କରି ପାରିବ, କିନ୍ତୁ ବନ୍ଦୀ ହୋଇଥିବା ଲୋକର ଭାବନା ପାଇଁ କାନ୍ଥ କୌଣସି ପ୍ରତିବନ୍ଧକ ହୋଇ ପାରିବ ନାହିଁ। ସ୍ଥୂଳ ଗ୍ରାନାଇଟ କାନ୍ଥ ଯଦି ସୂକ୍ଷ୍ମ ଚିନ୍ତା ପାଇଁ ପ୍ରତିବନ୍ଧକ ହୋଇ ନପାରେ, ତେବେ ଶରୀର, ମନ, ବୁଦ୍ଧି ଇତ୍ୟାଦି ନିର୍ବିକଳ୍ପ ସତ୍ୟ ସୂକ୍ଷ୍ମତର ଆତ୍ମାଙ୍କୁ ପରିଚ୍ଛିନ୍ନ କରିପାରିବେ ନାହିଁ, ଏହା ସ୍ପଷ୍ଟ।

ପରମ ଆତ୍ମା ମହାକାଶ ପରି ବୋଲି ଏହି ଅଧ୍ୟାୟର ତୃତୀୟ ଶ୍ଳୋକରେ ବର୍ଣ୍ଣନା କରାଯାଇଛି। ଏହି ଅନୁରୂପତାର ତାତ୍ପର୍ଯ୍ୟ ବୁଝିବା ପାଇଁ ସେହି ଶ୍ଳୋକର ପ୍ରବଚନରେ ଯଥେଷ୍ଟ ମନନ ମଧ୍ୟ କରାଯାଇଛି।

**ଦ୍ୱୟୋର୍ଦ୍ୱୟୋର୍ମଧୁଜ୍ଞାନେ ପରଂ ବ୍ରହ୍ମ ପ୍ରକାଶିତମ୍ ।**

**ପୃଥିବ୍ୟାମୁଦରେ ଚୈବ ଯଥାକାଶଃ ପ୍ରକାଶିତଃ ॥୧୨॥**

ଦ୍ୱୟୋଃ ଦ୍ୱୟୋଃ = ଯୁଗଳରେ, ଯୋଡ଼ିରେ, ମଧୁଜ୍ଞାନେ = ମଧୁ ବ୍ରାହ୍ମଣରେ (ବୃହଦାରଣ୍ୟକ ଉପନିଷଦ୍‌ର), ପରମ୍ ବ୍ରହ୍ମ = ପରଂବ୍ରହ୍ମ, ପ୍ରକାଶିତମ୍ = ପ୍ରକାଶିତ, ପୃଥିବ୍ୟାମ୍ = ପୃଥିବୀରେ, ଚ ଏବ ଉଦରେ = ଏବଂ ଉଦରରେ ପରି, ଯଥା = ଯେପରି (ଜଗତରେ), ଆକାଶଃ = (ସେହି) ଆକାଶ ଥାଏ, ପ୍ରକାଶିତଃ = ପ୍ରକାଶିତ, ବର୍ଣ୍ଣିତ ।

*ପୃଥିବୀରେ ଏବଂ ଉଦରରେ ଥିବା ଆକାଶର ଯୋଡ଼ିର ବର୍ଣ୍ଣନା ସ୍ୱତନ୍ତ୍ରଭାବରେ ଉଲ୍ଲେଖ କରାଗଲେ ବି ମଧୁ ବ୍ରାହ୍ମଣରେ (ବୃହଦାରଣ୍ୟ ଉପନିଷଦ୍‌ର ଗୋଟିଏ ଅଧ୍ୟାୟ) ବର୍ଣ୍ଣନା କରା ଯାଇଥିବା ଉଭୟ ଅଧ୍ୟାତ୍ମ ଏବଂ ଅଧିଦୈବ (ଏକକ ଏବଂ ସାମଗ୍ରିକ) ସହିତ ସମାନ ॥୧୨॥*

ବ୍ୟଷ୍ଟି ହିଁ ସମଷ୍ଟି ବୋଲି ଉପନିଷଦ୍ ଅନୁମୋଦନ କରିଛି ଏବଂ ସବୁ ବେଦାନ୍ତ ଦ୍ରଷ୍ଟା ଏହା ଉପସ୍ଥାପନ କରିଛନ୍ତି । ଉକ୍ତ ପ୍ରବଚନରେ ପୂର୍ବରୁ ଆମେ ଏହି ଦାର୍ଶନିକ ଧାରା ଉପରେ ଜୋର ଦେଇଛୁ । ବୃହଦାରଣ୍ୟକ ଉପନିଷଦ୍‌ରେ ମଧ୍ୟ ଉଭୟ ବ୍ୟଷ୍ଟି ଏବଂ ସମଷ୍ଟିର ବର୍ଣ୍ଣନା ରହିଛି ଏବଂ ବ୍ୟକ୍ତି ଓ ଜଗତ ମଧ୍ୟରେ ଥିବା ଏକକତ୍ୱ ଦର୍ଶାଯାଇଛି । ମଧୁ ବ୍ରାହ୍ମଣ ନାମକ ଏକ ବିଶେଷ ନାମରେ ନାମିତ ବୃହଦାରଣ୍ୟକ ଉପନିଷଦ୍‌ର ସେହି ନିର୍ଦ୍ଦିଷ୍ଟ ଅଧ୍ୟାୟରେ ଜୀବକୁ ଆଧ୍ୟାତ୍ମିକ ଏବଂ ଜଗତକୁ ଆଧିଦୈବିକ କୁହାଯାଇଛି । ଏପର୍ଯ୍ୟନ୍ତ ଆମେ ଯେଉଁ ସମତା ସମ୍ବନ୍ଧରେ ଅନ୍ୱେଷଣ କରିଛୁ, ତାହା ହେଲା ବ୍ୟଷ୍ଟିଠାରେ ଥିବା ସତ୍ୟ ହିଁ ସମଷ୍ଟିର ସତ୍ୟ । ଆକାଶ ଏକ ଏବଂ ସମାନ ହୋଇଥିବାରୁ ଘଟାକାଶ ହୋଇ ଘଟରେ ଥାଉ, କିମ୍ବା ଗୋଟିଏ କୋଠରୀରେ ଥାଉ କିମ୍ବା ବାୟୁମଣ୍ଡଳରେ ଥାଉ, ତାହା ନିଜେ ହିଁ ମହାକାଶ ।

**ଜୀବାତ୍ମନୋରନନ୍ୟତ୍ୱମଭେଦେନ ପ୍ରଶସ୍ୟତେ ।**

**ନାନାତ୍ୱଂ ନିନ୍ଦ୍ୟତେ ଯଚ୍ଚ ତଦେବଂ ହି ସମଞ୍ଜସମ୍ ॥୧୩॥**

ଜୀବ ଆତ୍ମନୋଃ = ଜୀବ ଏବଂ ବ୍ରହ୍ମଙ୍କ ମଧ୍ୟରେ, ଅନନ୍ୟତ୍ୱମ୍ = ଅନନ୍ୟତା, ଅଭେଦେନ = ଅଭେଦତାର, ସାଦୃଶ୍ୟ (ଜୀବ ଏବଂ ପରମାତ୍ମାଙ୍କ ମଧ୍ୟରେ ); ପ୍ରଶସ୍ୟତେ = ପ୍ରଶଂସା କରାଯାଏ, ନାନାତ୍ୱମ୍ = ବିବିଧତା, ନିନ୍ଦ୍ୟତେ = ନିନ୍ଦା କରାଯାଇଛି, ଯତ୍ = ଯେହେତୁ, କାରଣରୁ; ଚ = ଏବଂ, ଏବମ୍ ତଦ୍ = ତାହା ମଧ୍ୟ, ହି ସମଞ୍ଜସମ୍ = ବାସ୍ତବରେ ସତ୍ୟ ।

*ଶାସ୍ତ୍ରରେ ଜୀବ ଏବଂ ଆତ୍ମାଙ୍କ ମଧ୍ୟରେ ଥିବା ଅଭେଦତାକୁ ପ୍ରଶଂସା କରାଯାଇ ବିବିଧତାକୁ କଠୋର ଭାବରେ ନିନ୍ଦା କରାଯାଇ ଥିବାରୁ କେବଳ ଅଦ୍ୱୈତ ହିଁ ଯୁକ୍ତିସଙ୍ଗତ ଏବଂ ବିହିତ ॥୧୩॥*

ନାମ-ରୂପର ବହୁବିଧ ଜଗତ କିପରି ମିଥ୍ୟା ଏବଂ ଆମଠାରେ ଥିବା ଆତ୍ମା ହିଁ କିପରି କେବଳ ଏକମାତ୍ର ସତ୍ୟ ବୋଲି ସମସ୍ତ ବୌଦ୍ଧିକ ଏବଂ ଯୁକ୍ତିସଙ୍ଗତ ବ୍ୟାଖ୍ୟା ଦେଇସାରିବା ପରେ ଏପରି ଏକ ମହାନ୍ ତଥ୍ୟର ବିସ୍ତାର ପାଇଁ ଗୌଡ଼ପାଦ ବର୍ତ୍ତମାନ ଶାସ୍ତ୍ରୀୟ କର୍ତ୍ତୃତ୍ୱ ଦେଉଛନ୍ତି । କୌଣସି ବୌଦ୍ଧିକ ତତ୍ତ୍ୱ ଯେତେ ମହାନ ଏବଂ ପ୍ରସିଦ୍ଧ ହେଲେ ମଧ୍ୟ ଆର୍ଯ୍ୟ ଚିନ୍ତକମାନେ ତାକୁ ତାଙ୍କ ଦର୍ଶନର ଅଂଶ-ବିଶେଷ ଭାବରେ ଗ୍ରହଣ କରି ନାହାନ୍ତି । ସେମାନଙ୍କ ପାଇଁ ଦର୍ଶନ ହେଉଛି ଜୀବନର ମୂଲ୍ୟବୋଧ ପୂର୍ଣ୍ଣ ଏକ ପୁଟୁଳି । ଏହି ଅନୁସାରେ ଜୀବନ ଯାପନ କଲେ ପ୍ରତ୍ୟେକେ ଦାର୍ଶନିକଙ୍କ ନିର୍ଦ୍ଦେଶିତ ଲକ୍ଷ୍ୟସ୍ଥଳରେ ପହଞ୍ଚି ପାରିବେ ଏବଂ କୌଣସି ତତ୍ତ୍ୱ ପାଇଁ ଯଦି ସଂପୂର୍ଣ୍ଣ ଶାସ୍ତ୍ରୀୟ ଅନୁମୋଦନ ନଥାଏ, ତେବେ ଏହାକୁ ଶାସ୍ତ୍ରାନୁମୋଦିତ ଦର୍ଶନ ଭାବରେ କଦାପି ଗ୍ରହଣ କରିବେ ନାହିଁ । ଗୌଡ଼ପାଦ ଏଠାରେ ଆମକୁ ସ୍ମରଣ କରାଇ ଦେଉଛନ୍ତି ଯେ, ସେ ଉପସ୍ଥାପନ କରିଥିବା ଚିନ୍ତା ତାଙ୍କ ନିଜର ବୌଦ୍ଧିକ ବିଶ୍ୱାସ ମୋଟେ ନୁହେଁ, ବରଂ ଏସବୁ ମହାନ୍ ଋଷିଙ୍କ ଭାଷାରେ ପର୍ଯ୍ୟବେସିତ । ବୃହଦାରଣ୍ୟକ ଉପନିଷଦ୍‌ରେ କୁହାଯାଇଛି ଯେ ଏଠାରେ କୌଣସି ପ୍ରକାରର ବିଭିନ୍ନତା ନାହିଁ (ନେହନାନାସ୍ତି କିଞ୍ଚନ) ।

ନିନ୍ଦା କରିବା ବା ତ୍ୟାଗ କରିବା ହେଉଛି ଦର୍ଶନରେ ନକାରାତ୍ମକ ଦୃଷ୍ଟି-ଭଙ୍ଗୀ । ସକାରାତ୍ମକ ପ୍ରତିପାଦନ ଏବଂ ଗଠନମୂଳକ ପରାମର୍ଶ ବିନା ଏହା ନିଜେ କଦାପି ପୂର୍ଣ୍ଣ ହୋଇ ପାରିବ ନାହିଁ । ବୃହଦାରଣ୍ୟକ ଉପନିଷଦ୍‌ରେ ଜୀବ ଏବଂ ଆତ୍ମା ଏକ ବୋଲି

ଦୃଢ ଭାବରେ ପ୍ରତିପାଦନ କରାଯାଇନାହିଁ। ଆତ୍ମାଙ୍କୁ ଏଠାରେ ବ୍ରହ୍ମ ଅର୍ଥରେ ବ୍ୟବହାର କରା ଯାଇଛି।

ତେଣୁ ଯାଜ୍ଞବଲ୍‌କ୍ୟଙ୍କ ଭାଷାରେ ଉଭୟ ବିବିଧତା ପ୍ରତି ନିନ୍ଦା ଏବଂ ଅଦ୍ୱୈତ ବ୍ରହ୍ମଙ୍କର ଦୃଢ ଏବଂ ଚୂଡ଼ାନ୍ତ ପ୍ରତିପାଦନ ରହିଛି। ତେଣୁ, ଗୌଡ଼ପାଦଙ୍କର ମତ ହେଲା- ଏକମେବ ଅଦ୍ୱିତୀୟ ସତ୍ୟ ଉପରେ ଜୋର ଦେଉଥିବା ଅଦ୍ୱୈତ ଦର୍ଶନ ହିଁ ଯୁକ୍ତିସଙ୍ଗତ ଏବଂ ଯଥାର୍ଥ।

**ଜୀବାତ୍ମନୋଃ ପୃଥକ୍‌ତ୍ୱଂ ଯତ୍ ପ୍ରାଗୁତ୍ପତ୍ତେଃ ପ୍ରକୀର୍ତ୍ତିତମ୍।**

**ଭବିଷ୍ୟଦ୍‌ବୃତ୍ତ୍ୟା ଗୌଣଂ ତନ୍ମୁଖ୍ୟତ୍ୱଂ ହି ନ ଯୁଜ୍ୟତେ ॥୧୪॥**

ଜୀବ-ଆତ୍ମନୋଃ = ଜୀବ ଏବଂ ପରମ ଆତ୍ମାଙ୍କର, ପୃଥକତ୍ୱଂ = ପୃଥକତ୍ୱ, ଯତ୍ = ଯାହାକି, ପ୍ରାକ୍ = ପୂର୍ବରୁ (କର୍ମ-କାଣ୍ଡ ଇତ୍ୟାଦି କରୁଥିବା ବେଦର ପ୍ରାଥମିକ ଅଂଶ), ଉତ୍ପତ୍ତେଃ = ସୃଷ୍ଟିର, ପ୍ରକୀର୍ତ୍ତିତମ୍ = ଘୋଷଣା କରାଯାଇଛି, ଭବିଷ୍ୟଦ୍ = ଭବିଷ୍ୟତ ପାଇଁ, ବୃତ୍ତ୍ୟା = ଅଭିନ୍ନତା, ଗୌଣମ୍ = ଗୌଣ, ତତ୍ = ତାହା, ମୁଖ୍ୟତ୍ୱମ୍ = ମୁଖ୍ୟତ୍ୱ, ନ ହି = କଦାପି ନୁହେଁ, ଯୁଜ୍ୟତେ = ଉପଯୁକ୍ତ (ଆରୋପ କରିବା)।

*ବ୍ରହ୍ମାଣ୍ଡର ସୃଷ୍ଟି ସମ୍ବନ୍ଧୀୟ ଉପନିଷଦୀୟ ଶାସ୍ତ୍ର ଦେଖା ଦେବା ପୂର୍ବରୁ ବେଦର ପ୍ରାଥମିକ କର୍ମକାଣ୍ଡ ବିଭାଗରେ ଜୀବ ଏବଂ ଆତ୍ମାର ପୃଥକତ୍ୱ ବିଷୟରେ କୁହା ଯାଇଛି। ଏହା କେବଳ ଆଲଙ୍କାରିକ ହୋଇପାରେ, କାରଣ, ପରବର୍ତ୍ତୀ ଅଂଶର ପୂର୍ବାନୁମାନ କରି ଏହା ବର୍ଣ୍ଣନା କରାଯାଇଛି। ଦ୍ୱୈତ ଧାରଣା ସମ୍ବନ୍ଧୀୟ ଏହି ଉକ୍ତିର ଆକ୍ଷରିକ ଅର୍ଥ କଦାପି ରହି ନ ପାରେ ॥୧୪॥*

ବେଦାନ୍ତୀମାନେ ସମଗ୍ର ବହୁବିଧ ଜଗତକୁ ନିନ୍ଦା କରୁଥିବା ବିରୋଧରେ କୌଣସି ଆପତ୍ତି ଉଠିପାରେ। ବହୁବିଧ ଜଗତ ପରମାତ୍ମାଙ୍କଠାରୁ ସୃଷ୍ଟି ହୋଇଛି ବୋଲି ବେଦର କର୍ମକାଣ୍ଡ ଅଂଶରେ ବର୍ଣ୍ଣନା କରାଯାଇଛି।

ଜୀବ ପରମାତ୍ମାଙ୍କ ଠାରୁ ସ୍ୱତନ୍ତ୍ର- ସମଗ୍ର କର୍ମକାଣ୍ଡ ସାହିତ୍ୟ ଏହି ଅବଧାରଣା ଉପରେ ପର୍ଯ୍ୟବେସିତ। ପୁନଶ୍ଚ ପରମାତ୍ମାଙ୍କର ବର୍ଣ୍ଣନା କରୁଥିବା ପବିତ୍ର ଗ୍ରନ୍ଥ ଭାବରେ ବିଚାର କରାଯାଉଥିବା ଉପନିଷଦ୍‌ରେ ମଧ୍ୟ ସୃଷ୍ଟିବାଦ ସମ୍ବନ୍ଧରେ ବହୁଳ ଉଲ୍ଲେଖ ଦେଖାଯାଏ। ଆପତ୍ତି ହେଲା- ଅସୃଷ୍ଟିବାଦ ମତ ପାଇଁ କୌଣସି ଶାସ୍ତ୍ରୀୟ ଅନୁମୋଦନ ନାହିଁ ଏବଂ ବେଦର କେତେକ ଉକ୍ତିର ଏହା ନିଶ୍ଚିତ ଭାବରେ ବିରୋଧ କରେ।

ଏପରି ଏକ ଆପତ୍ତି ପାଇଁ ଏଠାରେ ଉତ୍ତର ଦିଆ ଯାଇଛି । ଜୀବଠାରୁ ଆତ୍ମା ଭିନ୍ନ ବୋଲି ପ୍ରାରମ୍ଭିକ ବୈଦିକ ଶାସ୍ତ୍ରରେ ବର୍ଣ୍ଣନା କରାଯାଇଛି, ଏଥିରେ ସନ୍ଦେହ ନାହିଁ । ପରବର୍ତ୍ତୀ ଅଂଶର ପରିପ୍ରେକ୍ଷୀରେ । ବେଦର ଶେଷ ଅଂଶରେ ପ୍ରାଥମିକ ପ୍ରତିପାଦନ ଗୌଣ ବୋଲି ଜଣେ ପ୍ରକୃତ ଶାସ୍ତ୍ରାଧ୍ୟାୟୀ ବୁଝି ପାରିବ । ଏଠାରେ ଗୌଡ଼ପାଦ କହିଛନ୍ତି ଯେ, ଆଧ୍ୟାତ୍ମିକ ସାଧନା ଏବଂ ଆରାଧନା କରିବାପାଇଁ ସାଧକଙ୍କୁ ଉତ୍ସାହିତ କରିବାକୁ ବେଦର ପ୍ରାଥମିକ ଅଧ୍ୟାୟମାନଙ୍କରେ ଦ୍ୱୈତର ବର୍ଣ୍ଣନା କରାଯାଇଛି । ଏହି ସାଧନା ବା ଆରାଧନା କରିବା ଦ୍ୱାରା ସେମାନଙ୍କର ଆନ୍ତରିକ ବ୍ୟକ୍ତିତ୍ୱ ସଂଗଠିତ ହେବ ଏବଂ ମନନ, ଧ୍ୟାନ କରି, ଅନୁଭୂତି ମାଧ୍ୟମରେ ଆତ୍ମାଙ୍କ ସ୍ୱରୂପକୁ ଠିକ୍ ଭାବରେ ବୁଝି ପାରିବା ପାଇଁ ମନ ଏବଂ ବୁଦ୍ଧି ଯଥାର୍ଥ ସାଧନ ହେବ ।

ଦର୍ଶନରେ, ଅଧ୍ୟୟନର ଅନ୍ୟାନ୍ୟ ଶାଖାମାନଙ୍କରେ ଓ ସବୁପ୍ରକାର ବିଜ୍ଞାନସମ୍ମତ ପାଠ୍ୟରେ ଦୁଇ ପ୍ରକାରର ସ୍ୱତନ୍ତ୍ର ପ୍ରତିପାଦନ ରହିଛି । ପ୍ରାଥମିକତା ଥିବା ପ୍ରତିପାଦନ ହେଲା ମୁଖ୍ୟ ଏବଂ ବାକିସବୁ ଗୌଣ । ବୈଦିକ ଶାସ୍ତ୍ରର ପ୍ରାଥମିକ ଅଂଶରେ ପ୍ରତିପାଦନ କରାଯାଇଥିବା ଦ୍ୱୈତବାଦକୁ ବେଦାନ୍ତର ଉପନିଷଦୀୟ ଅଂଶରେ ବ୍ୟାଖ୍ୟା କରଯାଇଥିବା ପରମସତ୍ୟାଙ୍କର ଅନୁଭୂତି ଲାଭ କରିବା ପାଇଁ ସାଧକର ପ୍ରସ୍ତୁତି ବୋଲି ବିଚାର କରିବାକୁ ଗୁରୁ ଏଠାରେ ଜୋର ଦେଇ କହିଛନ୍ତି ।

ସୃଷ୍ଟିବାଦ ଗୌଣ ବୋଲି ପ୍ରାଥମିକ ପ୍ରତିପାଦନରେ ସନ୍ତୁଷ୍ଟ ନହୋଇ ମହାନ ଋଷି ଏଠାରେ ଜୋର ଦେଇ କହିଛନ୍ତି ଯେ ବେଦର ପ୍ରାଥମିକ ବକ୍ତବ୍ୟକୁ 'ମୁଖ୍ୟ'ଭାବରେ ଗ୍ରହଣ କରିବା ବୋକାମି ହେବ, କାରଣ ଅନ୍ତିମ ଅଂଶର ବକ୍ତବ୍ୟ ପ୍ରାଥମିକ ପ୍ରତିପାଦନକୁ ନିଶ୍ଚିତ ଭାବରେ ଖଣ୍ଡନ କରେ । ପ୍ରାଚୀନ କାଳର ଋଷିମାନେ ବଦ୍ଧ-ପାଗଳ ବୋଲି ଗ୍ରହଣ କରିବାକୁ ସାଧକମାନେ ପ୍ରସ୍ତୁତ ନଥିଲେ ଏପରି ଭାବି ପାରିବା ଅସମ୍ଭବ । ଦର୍ଶନରେ ଅନ୍ତିମ ସିଦ୍ଧାନ୍ତର ହିଁ ପ୍ରାଧାନ୍ୟ ରହିଥାଏ ।

ଏପରି ଏକ ସିଦ୍ଧାନ୍ତରେ ଉପନୀତ ହେବାପଇଁ ଆମକୁ ବିଭିନ୍ନ ପ୍ରକାରର ଯୁକ୍ତି ମଧ୍ୟଦେଇ ଯିବାକୁ ହେବ । ବର୍ତ୍ତମାନସୁଦ୍ଧା ଆମେ ଯାହା ଜାଣିଛୁ, ଆଧୁନିକ ଜଗତରେ ଦର୍ଶନ ହେଉଛି ଅଦ୍ଭୁତ ଶବ୍ଦରେ ଦାର୍ଶନିକର ସ୍ୱପ୍ନର ବର୍ଣ୍ଣନା ମାତ୍ର । କିନ୍ତୁ ପ୍ରାଚୀନ କାଳରେ ଆର୍ଯ୍ୟ ଦାର୍ଶନିକ କେବଳ ବର୍ଣ୍ଣନା ମାତ୍ର ଚାହିଁନଥିଲେ, ଆତ୍ମାନୁଭୂତି ପାଇଁ ସାଧକକୁ ଅବିଚଳିତ ଭାବରେ ପଥ ପ୍ରଦର୍ଶନ କରିବା ପାଇଁ ମଧ୍ୟ ସେ ଚାହିଁ ଥିଲେ । ହିନ୍ଦୁ ଋଷି ତତ୍ତ୍ୱଙ୍କ ପାଇଁ ଦର୍ଶନ କେବଳ ତତ୍ତ୍ୱ ମାତ୍ର ନୁହେଁ, ତତ୍ ସହିତ ଏହା ଜୀବନଧାରଣ

କରିବାର ଏବଂ ଅନୁଭୂତି ଲାଭ କରିବାର ଏକ ମାର୍ଗ। ତେଣୁ, ଗ୍ରନ୍ଥର ପ୍ରାଥମିକ ଅଂଶରେ ସୁପରିଚିତ ଅଜ୍ଞାନର ଭାଷାରେ ସାଧକ ସହିତ ତାଙ୍କୁ କଥାବାର୍ତ୍ତା କରିବାକୁ ପଡ଼ିଛି । ଧୀରେ ଧୀରେ ଦୃଢ ଭାବରେ ତାଙ୍କୁ ସତ୍ୟଙ୍କର ଅବଧାରଣାର ଉଚ୍ଚତମ ଶିଖରକୁ ଉଠାଯାଇଛି । ସେଠାରୁ ତାଙ୍କୁ ଶୁଦ୍ଧ ଚୈତନ୍ୟଙ୍କର ସମଗ୍ର ବିସ୍ତୃତି ଦେଖାଇ ଦିଆଯାଇଛି।

**ମୃଲ୍ଲୋହବିସ୍ଫୁଲିଙ୍ଗାଦ୍ୟୈଃ ସୃଷ୍ଟିର୍ୟା ଚୋଦିତାଽନ୍ୟଥା।**

**ଉପାୟଃ ସୋଽବତାରାୟ ନାସ୍ତି ଭେଦଃ କଥଞ୍ଚନ ॥୧୫॥**

ମୃତ୍ = ମାଟି, ଲୋହ = ଧାତୁ, ବିସ୍ଫୁଲିଙ୍ଗ = ସ୍ଫୁଲିଙ୍ଗ, ନିଆଁଝୁଲ; ଆଦ୍ୟୈଃ = ଇତ୍ୟାଦି, ଯା ସୃଷ୍ଟି ଚ ଉଦିତା = ସୃଷ୍ଟି ପ୍ରକାଶିତ ହୋଇଛି, ବ୍ୟାଖ୍ୟା କରାଯାଇଛି (ଶାସ୍ତ୍ରୀୟ ଉକ୍ତିରେ), ଅନ୍ୟଥା = ଅନ୍ୟାନ୍ୟ ବହୁ ଉପାୟରେ, ଉପାୟଃ = କେବଳ ଉପାୟଟିଏ, ସଃ = ତାହା, ଅବତାରାୟ = ବ୍ୟାଖ୍ୟା କରିବା ଉଦ୍ଦେଶ୍ୟରେ, ଅସ୍ତି ନଭେଦଃ = ପ୍ରଭେଦ ନାହିଁ, କଥଞ୍ଚନ = ଆଦୌ।

*ଜଗତ ସୃଷ୍ଟି ହୋଇଛି ବା ନାହିଁ –ଏହି ସଂକ୍ରାନ୍ତୀୟ ଧାରଣାକୁ ଶାସ୍ତ୍ରୀୟ ଉକ୍ତିରେ ମାଟି, ଧାତୁ ଏବଂ ସ୍ଫୁଲିଙ୍ଗର ଉଦାହରଣରେ ବ୍ୟାଖ୍ୟା କରାଯାଇଛି। ଜୀବ ଏବଂ ଆତ୍ମାଙ୍କର ଅଭେଦତା ବ୍ୟାଖ୍ୟା କରିବା ହେଉଛି ଏହାର ଅନ୍ତିମ ଉଦ୍ଦେଶ୍ୟ। ବାସ୍ତବରେ ବହୁବିଧତାର ସ୍ଥିତି ଆଦୌ ନାହିଁ ॥୧୫॥*

ଆତ୍ମବାଦୀଙ୍କୁ ଉତ୍ସାହିତ କରିବା ପାଇଁ ହିଁ ବୈଦିକ ଅଂଶ ଯଦି ଉଦ୍ଦିଷ୍ଟ, ତେବେ ଜ୍ଞାନମାର୍ଗ ବର୍ଣ୍ଣନା କରାଯାଇଥିବା ଉପନିଷଦୀୟ ଅଂଶରେ ମଧ୍ୟ ଆମେ ବହୁବିଧ ସୃଷ୍ଟିର ବର୍ଣ୍ଣନା ଦେଖିବାକୁ ପାଉ କିପରି ? ଉପନିଷଦୀୟ ସାହିତ୍ୟର ଅନେକ ଉଦାହରଣ ଆମେ ଉଦ୍ଧାର କରିପାରିବା– ଯେଉଁଠାରେ ପରମସତ୍ୟଙ୍କଠାରୁ ବହୁବିଧ ଜଗତର ସୃଷ୍ଟିର ସଙ୍କେତ ଦିଆଯାଇଛି ଏବଂ 'ମୃତ୍ତିକାରୁ ଘଟ' କିମ୍ବା କୌଣସି ଧାତୁରୁ ନାନାପ୍ରକାରର ଅଳଙ୍କାର ବା ଅଗ୍ନିରୁ ସ୍ଫୁଲିଙ୍ଗ ଇତ୍ୟାଦି ଉପମା ଦ୍ୱାରା ବ୍ୟାଖ୍ୟା କରାଯାଇଛି।

ଏହିସବୁ ଉଦାହରଣ ବୃହଦାରଣ୍ୟକ ଉପନିଷଦ୍‌ରେ ବ୍ୟବହାର କରାଯାଇଛି। ପରିଶେଷରେ ସେହି ଉପନିଷଦ୍ ହିଁ ବହୁବିଧତାର ନିନ୍ଦା କରି, ପରମସତ୍ୟ ନିର୍ବିକଳ୍ପ ଏବଂ ଏକମେବ ଅଦ୍ୱିତୀୟ ବୋଲି ପ୍ରତିପାଦନ କରିଛି। ତେଣୁ ଶିଷ୍ୟର ବିକ୍ଷୁବ୍ଧ ହୃଦୟକୁ ଶାନ୍ତ କରିବା ପାଇଁ, ନିଜର ଅଜ୍ଞାନ ଧାରଣାରୁ ସୃଷ୍ଟି ସଂସ୍କାରର ମୂଳଚ୍ଛେଦନ କରିବା ପାଇଁ ଏବଂ ଏହା ଏକ ମାୟା ବୋଲି ତାଙ୍କୁ ବୁଝାଇବା ପାଇଁ ହିଁ ଏହିସବୁ ବ୍ୟାଖ୍ୟା ଉଦ୍ଦିଷ୍ଟ।

କେବଳ ଏହି ଗୋଟିକ ଉପାୟର ମାଧ୍ୟମରେ ହିଁ ଗୁରୁ ସେହି ପିଢିକୁ ସାହାଯ୍ୟ କରି ପାରିବେ।

ବ୍ୟକ୍ତ ପରି ମନେ ହେଉଥିବା ପରମସତ୍ୟଙ୍କ ମାଧ୍ୟମରେ ହିଁ ସାଧକ ଚୈତନ୍ୟର ଶିଖରକୁ ଅଗ୍ରସର ହୋଇ ପାରିବ। ସପ୍ରପଞ୍ଚତ୍ୱ ହେଉଛି ମାଧ୍ୟମ ଏବଂ ନିଷ୍ପ୍ରପଞ୍ଚତ୍ୱ ଲକ୍ଷ୍ୟ। ବେଦାନ୍ତ କହେ 'ଜଗତ ମଧ୍ୟ ଦେଇ ଜଗତାତୀତ'। ରୂପର ଜଗତ ଯେଉଁଠାରୁ ଜଗତର ସୃଷ୍ଟି ଓ ତାର କାରଣର ବର୍ଣ୍ଣନା କଲା ବେଳେ ଯେଉଁ ମନ ଏବଂ ବୁଦ୍ଧି ସନ୍ତୁଷ୍ଟ ହୋଇଯାଏ, ଏପରି ଶୁଦ୍ଧ ଅନ୍ତଃକରଣ ହିଁ ଧ୍ୟାନପାଇଁ ଉପଯୁକ୍ତ। ଏହିପରି ଭାବରେ ଗୋଟିଏ ଅଜ୍ଞାନ ଆଉ ଗୋଟିଏ ବିଜ୍ଞାନ ସମ୍ମତ ଅଜ୍ଞାନ ଦ୍ୱାରା ମପା ଯାଇଥାଏ। ସ୍ୱପ୍ନର ସିଂହ ଅବାସ୍ତବ ହେଲେ ମଧ୍ୟ ସ୍ୱପ୍ନରୁ ପ୍ରସ୍ଥାନ କରାଇ ଜାଗ୍ରତ ଅବସ୍ଥାରେ ପହଞ୍ଚାଇ ନିଜର ଅହେତୁକ ଭୟକୁ ବୁଝିବାରେ ସାହାଯ୍ୟ କରିଥାଏ।

ତେଣୁ ସୃଷ୍ଟ ଜଗତର ଏହି ସବୁ ବର୍ଣ୍ଣନା ସାଧାରଣତଃ ଅଜ୍ଞାନ ମନ ଏବଂ ବୁଦ୍ଧି ପାଇଁ ଉଦ୍ଦିଷ୍ଟ। ବିକ୍ଷୁବ୍ଧ ମନକୁ ଶାନ୍ତ କରିବା ପାଇଁ ଏହା ହେଉଛି ନାନାବାୟା ଗୀତ। ଉଦ୍ଦାମ ବୁଦ୍ଧିକୁ ଶାନ୍ତ କରିବା ପାଇଁ ଏହା ଏକ ଆହ୍ୱାନ, ଏହି ଉପାୟ ଦ୍ୱାରା ବେଦାନ୍ତର ସାଧକକୁ ଦୁଃଖର ସୀମାନ୍ତ ପର୍ଯ୍ୟନ୍ତ ଏକ ବିଳାସମୟ ଯାତ୍ରା ଦିଆଯାଇଛି ଏବଂ ସେଠାରୁ ଜଗତାତୀତକୁ ସୁଗମଭାବେ ପହଞ୍ଚିବା ପାଇଁ।

**ଆଶ୍ରମାସ୍ତ୍ରିବିଧା ହୀନମଧ୍ୟମୋତ୍କୃଷ୍ଟଦୃଷ୍ଟୟଃ।**

**ଉପାସନୋପଦିଷ୍ଟେୟଂ ତଦର୍ଥମନୁକମ୍ପୟା ॥୧୬॥**

**ଆଶ୍ରମାଃ** = ସାଧକ, **ତ୍ରି-ବିଧାଃ** = ତିନି ପ୍ରକାରର, **ହୀନ** = ହୀନ, ନିମ୍ନ ଶ୍ରେଣୀର, **ମଧ୍ୟମ** = ମଧ୍ୟମ, ମଝିମଝିକିଆ; **ଉତ୍କୃଷ୍ଟ** = ଉତ୍କୃଷ୍ଟ,ଉଚ୍ଚ ଶ୍ରେଣୀର; **ଦୃଷ୍ଟୟଃ** = ଦୃଷ୍ଟି ଶକ୍ତି, **ଉପାସନା** = ଉପାସନା, ପୂଜା, **ଉପଦିଷ୍ଟା** = ଉପଦେଶ ଦିଆଯାଇଛି, **ଇୟମ୍** =ଏହା , **ତଦ୍ ଅର୍ଥମ୍** = ସେମାନଙ୍କ ପାଇଁ, **ଅନୁକମ୍ପୟା** = ଅନୁକମ୍ପାରୁ।

*ନିମ୍ନ, ମଧ୍ୟମ ଏବଂ ଉତ୍ତମ - ବୌଦ୍ଧିକ ସାମର୍ଥ୍ୟର ଏହି ତିନୋଟି ଶ୍ରେଣୀକୁ ଭିତ୍ତି କରି ଜୀବନକୁ ମଧ୍ୟ ତିନି ଶ୍ରେଣୀରେ ବିଭକ୍ତ କରାଯାଇ ପାରିବ। ଅନୁକମ୍ପା ପରବଶ ହୋଇ ଏବଂ ବିଚାର-ବିବେଚନା କରି ସାଧକମାନଙ୍କର ହିତ ପାଇଁ ଶାସ୍ତ୍ର, ଉପାସନାର ଏହି ଉପାୟ ଶିକ୍ଷା ଦେଇଛନ୍ତି ॥୧୬॥*

## ଅଦ୍ୱୈତ ପ୍ରକରଣ

ଏକମେବ ଅଦ୍ୱିତୀୟ ପରମସତ୍ୟଙ୍କର ଚରମ ଅନୁଭୂତି ପାଇଁ ସାଧନାର ପ୍ରାରମ୍ଭିକ ସମୟରେ (ଅନ୍ତତଃ କେତେକଙ୍କ ପାଇଁ) ସୃଷ୍ଟି ଏବଂ ସ୍ରଷ୍ଟାଙ୍କର ଧାରଣା ଘୋଷଣା କଲେ ଜଣେ ସାଧକଙ୍କଠାରୁ ଅନ୍ୟ ଜଣେ ସାଧକଙ୍କର ପ୍ରଭେଦ କେଉଁ ମାନଦଣ୍ଡରେ ବୁଝି ହେବ, ସାଧକମାନଙ୍କର ଶ୍ରେଣୀ ବିଭାଗ କିପରି କରାହେବ ବୋଲି ଏହି ଶ୍ଳୋକରେ ବ୍ୟାଖ୍ୟା କରାଯାଇଛି।

ସାଧକର ବୌଦ୍ଧିକ କ୍ଷମତା ଏବଂ ମାନସିକ ସଂରଚନା ଅନୁସାରେ ଆଧ୍ୟାତ୍ମିକ ଜଗତରେ ଆମେ ସେମାନଙ୍କୁ ତିନିଗୋଟି ସ୍ୱତନ୍ତ୍ର ବିଭାଗରେ ବିଭକ୍ତ କରୁ- ଉତ୍କୃଷ୍ଟ, ମଧ୍ୟମ ଏବଂ ହୀନ।

ଜନ୍ମରୁ ଜଣେ ପ୍ରତିଭାସମ୍ପନ୍ନ ହୋଇଥାଏ ବୋଲି ବେଦାନ୍ତୀମାନେ ବିଶ୍ୱାସ କରନ୍ତି ନାହିଁ। ହୀନ ବୁଦ୍ଧି ହୋଇ ଜନ୍ମ ନେବା ମଧ୍ୟ ତାଙ୍କ ପାଇଁ ପାପ ନୁହେଁ। ସେମାନଙ୍କ ପାଇଁ ବୌଦ୍ଧିକ କ୍ଷମତା ହେଉଛି ମାନସିକ ଅବସ୍ଥାର ସୂଚନା। ମନରେ ଯେତେ ବିକ୍ଷେପ ଏବଂ କଳ୍ପନା ରହିବ, ବୌଦ୍ଧିକ ସାମର୍ଥ୍ୟ ସେତେ କମ୍ ହେବ। ତେଣୁ ମାନସିକ ସଂଗଠନର ଧାରା ମାଧ୍ୟମରେ ଜଣେ ହୀନବୁଦ୍ଧି ବ୍ୟକ୍ତିକୁ ପୂର୍ଣ୍ଣତାର ଉଚ୍ଚତର ସ୍ତରକୁ ନେଇ ହେବ ଏବଂ ଉପାସନା ମାଧ୍ୟମରେ ଏହି ମାନସିକ ଶୃଙ୍ଖଳା ଲାଭ କରିହେବ।

ମନ ଏବଂ ବୁଦ୍ଧିକୁ ନେଇ ଗଠିତ ଅନ୍ତଃକରଣ ଶୁଦ୍ଧ ହେବା ପାଇଁ ବେଦାନ୍ତିକ ସାଧନାର ଆରମ୍ଭରୁ ହିଁ ସାଧକମାନଙ୍କୁ ଦୀର୍ଘ ଦିନ ପର୍ଯ୍ୟନ୍ତ ଗଭୀର ଉପାସନା କରିବାକୁ ଉତ୍ସାହିତ କରାଯାଇଥାଏ। ବୈଦାନ୍ତିକ ଅନୁଭୂତି ଲାଭ କରିବା ପାଇଁ ଶୁଦ୍ଧ, ସଂଗଠିତ ଅନ୍ତଃକରଣ ହିଁ ଏକମାତ୍ର ଅସ୍ତ୍ର।

ବହୁବିଧ ଜଗତ ଏବଂ ପରମେଶ୍ୱରଙ୍କଠାରୁ ଏହାର ସୃଷ୍ଟିର ବର୍ଣ୍ଣନା ଦ୍ୱାରା ନିମ୍ନଶ୍ରେଣୀର ସାଧକମାନଙ୍କୁ ନିଜ ସ୍ତରରୁ ଉପରକୁ ଉଠାଇବା ପାଇଁ ଏକ ଅବଲମ୍ବନ ଯୋଗାଇବା ଏବଂ ଏହିପରି ଭାବରେ ଉପାସନା ମାଧ୍ୟମରେ ସେମାନଙ୍କୁ ସତ୍ୟର ସାକ୍ଷାତ୍ କରାଇବା ହିଁ ଶ୍ରୁତିର ଉଦ୍ଦେଶ୍ୟ। ବୈଦାନ୍ତିକ ଦ୍ରଷ୍ଟାଙ୍କର ଏହା ହିଁ ଇଚ୍ଛା। ଦୟାପରବଶ ହୋଇ ଶ୍ରୁତି କହିଛନ୍ତି ଯେ ପରମସତ୍ୟଙ୍କଠାରୁ ବହୁବିଧ ଜଗତ ସୃଷ୍ଟି ହୋଇଛି। ହୀନବୁଦ୍ଧିମାନଙ୍କୁ ପ୍ରାଥମିକ ଅବସ୍ଥାରେ ସାହାଯ୍ୟ କରିବା ପାଇଁ ହିଁ ସେ ଏପରି କରିଛନ୍ତି।

ଏଥିପାଇଁ ଆମେ ଶ୍ରୁତିଙ୍କୁ ଦୋଷ ଦେବା ନାହିଁ। ବର୍ଷାର ଗୋଟିଏ ଦିନରେ ମୋର ଛୋଟ ଭାଇଟି ମୋପାଖରେ ବସି ବର୍ଷା କେମିତି ହୁଏ ବୋଲି ଆଶ୍ଚର୍ଯ୍ୟ ହେଉଥିବା

ବେଳେ ମୁଁ ଯଦି ତାକୁ ପ୍ରକୃତରେ ଭଲ ପାଏ, ତେବେ ପାଣି କେମିତି ବାଷ୍ପ ହୋଇ ଜମାଟ ବାନ୍ଧିବା କଥା ମୋତେ କହିବି ନାହିଁ। ବରଂ ମୁଁ କହିବି, "ଭାରତର ଧଳାହାତୀ ସମୁଦ୍ରରୁ ପାଣି ନେଇ ମେଘର ଆଢୁଆଳରେ ଛିଞ୍ଚିଦିଏ। ତାହାହେଲେ ତୋପରି ଗୋଟିଏ ବାଧ୍ୟ, ସୁନା ପିଲା କାଗଜ ଡଙ୍ଗା ଭସାଇ ପାରିବ।" ଏହାର ମାନେ ନୁହେଁ ଯେ ଇଚ୍ଛାକରି ମୁଁ ମୋର ଭାଇକୁ ମିଛ କହୁଛି। ଅନ୍ୟପକ୍ଷରେ, ମୋର ଟିକିଏ ବିଚାର-ବୁଦ୍ଧି, ସ୍ନେହ-ମମତା ଅଛି ବୋଲି ଏଥିରୁ ଜଣାପଡ଼େ। ତାର ବୁଝିବାର ସାମର୍ଥ୍ୟର ସୀମା ବିଷୟରେ ଅବହିତ ହୋଇ, ତାର ଉତ୍କଣ୍ଠାକୁ ସନ୍ତୁଷ୍ଟ କରିବା ପାଇଁ ହିଁ ମୁଁ ତାକୁ ଏପରି କାହାଣୀ କହେ। ଏକଦା ଏପରି ସମୟ ଆସିବ, ତାର ବୌଦ୍ଧିକ ସାମର୍ଥ୍ୟର ବିକାଶ ହେଲେ ବାସ୍ତବତା କଣ ବୋଲି ସେ ସହଜରେ ବୁଝି ପାରିବ।

ସେହିପରି, ପ୍ରତ୍ୟେକ ସାଧକ ନିଜ ଭିତରେ ଆତ୍ମାଙ୍କର ପୁନରାବିଷ୍କାର କରନ୍ତୁ ବୋଲି ଶ୍ରୁତି ଏଠାରେ ଚାହିଁଛନ୍ତି। ମନ ଏବଂ ବୁଦ୍ଧି ଦ୍ୱାରା ବ୍ୟାଖ୍ୟା କରାଯାଇଥିବା ବହୁବିଧ ଜଗତ ତା ମନର ଏକ କଳ୍ପନା ବୋଲି ସେ ଜାଣି ପାରିଲେ ହିଁ ଏହା ହୋଇ ପାରିବ। କିନ୍ତୁ ମୂଳରୁ ହିଁ ସାଧକକୁ ଏହି ସତ୍ୟଦ୍ୱାରା ଅଭିଭୂତ କରାଇ ଦେଲେ ତାହା ତାପାଇଁ କ୍ଷତିକାରକ ହେବ। କାରଣ ସେ ଠିକ୍ ଧାରଣା କରିପାରିବ ନାହିଁ କି ବୁଝିପାରିବ ନାହିଁ। କାରିକା ଏଠାରେ କହୁଛନ୍ତି ଯେ, ଦୟାପରବଶ ହୋଇ ପ୍ରାଥମିକ ଅବସ୍ଥାରେ ହିଁ ଶାସ୍ତ୍ର ଏକ ସୃଷ୍ଟ ଜଗତର ତତ୍ତ୍ୱ ଦେଇଛନ୍ତି। ସେ ତାଙ୍କର ସନ୍ତାନ ଏବଂ ସେମାନଙ୍କର ଅଜ୍ଞତାକୁ ବୁଝି ପାରନ୍ତି।

**ସ୍ୱସିଦ୍ଧାନ୍ତ ବ୍ୟବସ୍ଥାସୁ ଦ୍ୱୈତିନୋ ନିଶ୍ଚିତା ଦୃଢମ୍।**
**ପରସ୍ପରଂ ବିରୁଧ୍ୟନ୍ତେ ତୈରୟଂ ନ ବିରୁଧ୍ୟତେ ॥୧୭॥**

ସ୍ୱସିଦ୍ଧାନ୍ତ = ନିଜର ସିଦ୍ଧାନ୍ତ, ବ୍ୟବସ୍ଥାସୁ = ବ୍ୟବସ୍ଥା ପାଇଁ, ଦ୍ୱୈତିନଃ = ଦ୍ୱୈତବାଦୀମାନେ, ନିଶ୍ଚିତାଃ ଦୃଢମ୍ = ନିଶ୍ଚିତ ଭାବରେ ଦୃଢ ରହିଥାନ୍ତି, ପରସ୍ପରମ୍ = ପରସ୍ପର ସହିତ, ବିରୁଧ୍ୟନ୍ତେ = ବିରୋଧ କରନ୍ତି, ତୈଃ = ସେମାନଙ୍କ ସହିତ, ଅୟମ୍ ନ ବିରୁଧ୍ୟତେ = ଏହା ବିରୋଧ କରେ ନାହିଁ।

*ନିଜର ଜିଜ୍ଞାସା ଦ୍ୱାରା ପହଞ୍ଚିଥିବା ସିଦ୍ଧାନ୍ତରେ ଦ୍ୱୈତବାଦୀ ମାନେ ଅଟଳ ରହିଥାନ୍ତି। ତେଣୁ ସେମାନେ ପରସ୍ପରକୁ ବିରୋଧ କରନ୍ତି, ଅଥଚ ଅଦ୍ୱୈତବାଦୀଙ୍କ ମଧ୍ୟରେ କୌଣସି ବିରୋଧଭାବ ନାହିଁ ॥୧୭॥*

କପିଳ, କଣାଦ, ଜୈନ ଏବଂ ଅନ୍ୟମାନଙ୍କର ମତର ଅନୁସରଣ କରୁଥିବା ଦ୍ୱୈତବାଦୀମାନେ ସେମାନଙ୍କ ନିଜ ନିଜର ଗୋଷ୍ଠୀର ସିଦ୍ଧାନ୍ତରେ ଅଟଳ ରହନ୍ତି। ନିଜର ଅସହିଷ୍ଣୁତା ଏବଂ ଧର୍ମାନ୍ଧ ବିଶ୍ୱାସରେ ସେମାନେ ପରସ୍ପର ମତର ବିରୋଧ କରନ୍ତି।

ଦ୍ୱୈତବାଦୀମାନଙ୍କର ବିଭିନ୍ନ ଗୋଷ୍ଠୀ ଦ୍ୱାରା ପରମସତ୍ୟଙ୍କ ସମ୍ବନ୍ଧରେ ନାନା ପ୍ରକାର ମତ ଉପସ୍ଥାପନ କରିବା ବିଷୟ ଗତ ଅଧ୍ୟାୟରେ ଆମେ ଦେଖି ସାରିଛୁ। ଆମ ବେଦାନ୍ତୀମାନଙ୍କର ସେମାନଙ୍କ ସହିତ କୌଣସି ବିବାଦ ନାହିଁ କିମ୍ବା ଦ୍ୱୈତବାଦୀଙ୍କ ସହ କୌଣସି ଝଗଡ଼ା ନାହିଁ। ବିବାଦୀୟ ସ୍ଥିତିରେ ସେମାନେ କହନ୍ତି ଯେ, କୌଣସି ସିଦ୍ଧାନ୍ତ ଦ୍ୱାରା ସୃଷ୍ଟ ବହୁବିଧ ଜଗତର ବ୍ୟାଖ୍ୟା କରିହେବ ନାହିଁ ଏବଂ ଏହିପରି ଅସଫଳ ହେବାରୁ ସେମାନେ ଖାଲି କହନ୍ତି ଯେ ବାସ୍ତବରେ ପ୍ରାକୃତିକ ଜଗତ ଆଦୌ ସୃଷ୍ଟି ହୋଇନାହିଁ। ଦ୍ୱୈତବାଦୀ ମାନେ ଅସୃଷ୍ଟିବାଦ ମତର ହିଁ ପ୍ରଶଂସା କରନ୍ତି।

ସେମାନେ ନିଜ ନିଜ ଭିତରେ ଝଗଡ଼ା କରନ୍ତି, କିନ୍ତୁ ତାଙ୍କ ସହିତ ଆମର କୌଣସି ଝଗଡ଼ା ନାହିଁ। ଦ୍ୱୈତବାଦୀଙ୍କ ସହିତ ଅଦ୍ୱୈତବାଦୀଙ୍କର କାହିଁକି ବିରୋଧ ନାହିଁ, ପରବର୍ତ୍ତୀ ଶ୍ଳୋକରେ ଅଧିକ ବିସ୍ତୃତ ଭାବେ ସେ କଥା ଆଲୋଚନା କରାଯାଇଛି-

**ଅଦ୍ୱୈତଂ ପରମାର୍ଥୋ ହି ଦ୍ୱୈତଂ ତଦ୍‌ଭେଦ ଉଚ୍ୟତେ।**

**ତେଷାମୁଭୟଥା ଦ୍ୱୈତଂ ତେନାୟଂ ନ ବିରୁଧ୍ୟତେ ॥୧୮॥**

ଅଦ୍ୱୈତମ୍ ହି = ପ୍ରକୃତରେ ଅଦ୍ୱୈତ, ପରମାର୍ଥଃ = ପରମାର୍ଥ, ଦ୍ୱୈତମ୍ = ଦ୍ୱୈତ, ତଦ୍ ଭେଦଃ = ଏହାର ବ୍ୟକ୍ତ ହେବା, ପରିଣାମ, ଉଚ୍ୟତେ = କୁହାଯାଏ, ତେଷାମ୍ = ସେମାନଙ୍କ ପାଇଁ (ଦ୍ୱୈତବାଦୀଙ୍କ ପାଇଁ), ଉଭୟଥା = ଉଭୟ, ଦ୍ୱୈତମ୍ = ଦ୍ୱୈତ, ତେନ = ତେଣୁ ଅୟମ୍ = ଏହା (ଦୃଷ୍ଟିକୋଣ, ଶିକ୍ଷା ଦେବା), ନ ବିରୁଧ୍ୟତେ = ବିରୋଧ କରେ ନାହିଁ।

*ବାସ୍ତବରେ ଅଦ୍ୱୈତ ହିଁ ପରମ ସତ୍ୟ, ଦ୍ୱୈତ ଏହାର ପରିଣାମ। ଦ୍ୱୈତବାଦୀମାନେ ଉଭୟ ନିର୍ବିକଳ୍ପ ଏବଂ ବ୍ୟକ୍ତରେ ଦ୍ୱୈତଭାବ ଦେଖନ୍ତି। ତେଣୁ ଅଦ୍ୱୈତ ଦର୍ଶନ ଦ୍ୱୈତର ଅବସ୍ଥା ସହିତ ବିରୋଧ କରେ ନାହିଁ ॥୧୮॥*

ଗୌଡ଼ପାଦଙ୍କ ତୂଣୀରରେ ଯେଉଁ ବ୍ୟଙ୍ଗବାଣ ଅଛି, ତାର ତୀକ୍ଷ୍ଣତା ଏବଂ କୋମଳତା ପାଖରେ ଇସ୍ପାତ ମଧ୍ୟ ଧାରହୀନ ହୋଇଯିବ ଓ ପଣ୍ଡିତମାନେ ହତ ବୁଦ୍ଧି ହୋଇଯିବେ। ଦ୍ୱୈତବାଦ ଅଦ୍ୱୈତବାଦ ର ବିରୋଧୀ ହେଲେ ମଧ୍ୟ ଦ୍ୱୈତ ଦର୍ଶନ ସହିତ

ବେଦାନ୍ତୀ ମାନଙ୍କର ବିବାଦ କାହିଁକି ନାହିଁ ବୋଲି କାରିକାରେ ଏଠାରେ କାରଣ ଦର୍ଶାଉଛନ୍ତି । ତାହା ଏପରି ଭାବରେ ବ୍ୟାଖ୍ୟା କରାଯାଇଛି । ବହୁବିଧତାର ଜଗତ ବହୁବିଧ କାରଣରୁ ଆସିଛି ବୋଲି ଦ୍ୱୈତବାଦୀମାନେ ବିଶ୍ୱାସ କରନ୍ତି । ସେମାନଙ୍କର ସତ୍ୟ ହେଉଛନ୍ତି ଏକାଧିକ ବିଷୟ । ବେଦାନ୍ତୀଙ୍କ ପାଇଁ ସତ୍ୟ ହେଉଛନ୍ତି ଏକ, ଏବଂ ଏକରୁ କେବେବି ଅନ୍ୟଥା ହୋଇପାରିବ ନାହିଁ ।

ବର୍ତ୍ତମାନ ଗୌଡ଼ପାଦ କହୁଛନ୍ତି ଯେ, ଦ୍ୱୈତବାଦୀଙ୍କ ସହିତ ଆମର କିଛି କଳହ ନାହିଁ, କାରଣ ସେମାନେ କହୁଥିବା ବହୁବିଧ ଜଗତ ଏକାଧିକ ସତ୍ୟରୁ ସୃଷ୍ଟ । କାର୍ଯ୍ୟ ବହୁବିଧ ହୋଇଥିବାରୁ କାରଣ ମଧ୍ୟ ବହୁବିଧ ହେବା ସ୍ୱାଭାବିକ । ପୁନଶ୍ଚ ଏକ ବହୁବିଧ ସତ୍ୟ ଶାଶ୍ୱତ ବା ଅବିକାରୀ ହୋଇ ପାରିବ ନାହିଁ । ତେଣୁ ଦ୍ୱୈତବାଦୀମାନେ ଯଦି ବିଶ୍ୱାସ କରନ୍ତି ଯେ, ଗୋଟିଏ ବିଷୟ ଜଗତ ପ୍ରକୃତରେ ବିଭିନ୍ନ ଅଂଶ(କଳା) ଥିବା ବିକାରୀ ସତ୍ୟରୁ ଯଦି ସୃଷ୍ଟ, ତେବେ ଆମର କୌଣସି ଆପତ୍ତି ନାହିଁ । ପରିଚ୍ଛିନ୍ନ ଏବଂ ସସୀମତାରୁ ହିଁ ସସୀମ ଜଗତର ଅଭ୍ୟୁଦୟ ହୋଇପାରେ ।

ବହୁବିଧ ଜଗତ ଶାଶ୍ୱତ ବୋଲି ସେମାନେ କହିବାବେଳେ ମତଭେଦ ଦେଖାଯାଏ । ସସୀମ କଦାପି ଅନନ୍ତ ହୋଇ ପାରିବ ନାହିଁ । ଏହି ଶ୍ଳୋକରେ ଗୌଡ଼ପାଦ କହୁଛନ୍ତି ଯେ, ଦେଖିବାକୁ ଗଲେ ଦ୍ୱୈତବାଦୀ ଏବଂ ବେଦାନ୍ତୀଙ୍କ ମଧ୍ୟରେ ବାସ୍ତବରେ କୌଣସି ବିବାଦ ନାହିଁ । ଏହି ନିର୍ଦ୍ଦିଷ୍ଟ ପଂକ୍ତିଟି ଉପରେ ଶଙ୍କରଙ୍କର ବ୍ୟାଖ୍ୟା ଗୌଡ଼ପାଦଙ୍କ ଭାଷାରେ ଥିବା ବ୍ୟଙ୍ଗଭାବକୁ ଦେଖାଇ ଦିଏ । ଶଙ୍କର କହିଛନ୍ତି, "ଗୋଟିଏ ମତ୍ତ ହାତୀ ପିଠିରେ ଆରୋହଣ କରିଥିବା ଜଣେ ବ୍ୟକ୍ତି ଜାଣେ ଯେ, ତାକୁ କେହି ବିରୋଧ କରି ପାରିବେ ନାହିଁ । କିନ୍ତୁ ରାସ୍ତା ଧାରରେ ଛିଡ଼ା ହୋଇ 'ମୁଁ ବି ଗୋଟିଏ ହାତୀ ଉପରେ ବସିଛି, ତୁମ ହାତୀ ମୋ ଉପରେ ଚଢ଼େଇ ନିଅ' ବୋଲି ପାଟି କରୁଥିବା ପାଗଳ ଉପରେ ସେ ତାର ହାତୀ ଚଢ଼ାଇ ନିଏ ନାହିଁ" । ଏହା ସେହିପରି ଏକ ଘଟଣା । ବେଦାନ୍ତୀ ତାଙ୍କ ପ୍ରତିପାଦିତ ସତ୍ୟ ସମ୍ବନ୍ଧରେ ଭଲ ଭାବରେ ଅବଗତ । ତେଣୁ ଦ୍ୱୈତବାଦୀଙ୍କର ଧମକ ସେ ଖଣ୍ଡନ କରନ୍ତି ନାହିଁ କିମ୍ବା ସେକଥା ପ୍ରତି ଧ୍ୟାନ ଦିଅନ୍ତି ନାହିଁ । 'ଏକମେବ ଅଦ୍ୱିତୀୟ'ର ପରିପୂର୍ଣ୍ଣ ଅନୁଭୂତିର ଏହା ହିଁ ହେଉଛି ମହିମା ।

**ମାୟୟା ଭିଦ୍ୟତେ ହ୍ୟେତନ୍ନାନ୍ୟଥାଜଂ କଥଞ୍ଚନ।**

**ତତ୍ତ୍ୱତୋ ଭିଦ୍ୟମାନେ ହି ମର୍ତ୍ତ୍ୟତାମମୃତଂ ବ୍ରଜେତ୍ ॥୧୯॥**

ମାୟୟା = ମାୟାରେ, ଭିଦ୍ୟତେ = ବିକାର ହେବା ପରି ମନେ ହୁଏ, ହି = କେବଳ, ଏତତ୍ = ଏହା, ନ ଅନ୍ୟଥା କଥଞ୍ଚନ = ଅନ୍ୟ କୌଣସି ଭାବରେ ନୁହେଁ, ଅଜମ୍ = ଅଜ, ତତ୍ତ୍ୱତଃ = ତତ୍ତ୍ୱତଃ, ଭିଦ୍ୟମାନେ = ବିକାର , ହି = କାରଣ, ମର୍ତ୍ତ୍ୟତାମ୍ = ମରଣଶୀଳ, ନଶ୍ୱର; ଅମୃତମ୍ = ଅମୃତ(ବ୍ରହ୍ମ), ବ୍ରଜେତ୍ = ହୁଅନ୍ତି।

*ମାୟା ଯୋଗୁଁ ଏହି ଅବିକାରୀ , ଅଦ୍ୱୈତ, ଅଜ ବ୍ରହ୍ମଙ୍କ ଠାରେ ବିକାର ହେଉଥିବାର ମନେ ହୁଏ, କିନ୍ତୁ ବାସ୍ତବରେ ନୁହେଁ। କାରଣ, ଏହି ବିକାର ବାସ୍ତବ ହେଲେ ଅବିନଶ୍ୱର ବ୍ରହ୍ମ ନଶ୍ୱର ହୋଇଯିବେ ॥୧୯॥*

ଅଦ୍ୱୈତବାଦ ଯଦି ସତ୍ୟ, ତେବେ ଆମେ ନାମ ରୂପର ଜଗତ ଦେଖୁ କିପରି ? ବେଦାନ୍ତରେ କୁହାଯାଇଛି ଯେ, ବହୁବିଧ ପରି ମନେ ହେଉଥିବା ଜଗତ ମନର କଳ୍ପନା ବ୍ୟତୀତ ଅନ୍ୟ କିଛି ନୁହେଁ। ବାସ୍ତବରେ ଏକମେବ ଅଦ୍ୱିତୀୟ ବ୍ରହ୍ମ ପ୍ରାକୃତିକ ଜଗତର ଅଂଶରେ ପରିବର୍ତ୍ତିତ ହୁଏ ନାହିଁ।

'ଅଜ' ଶବ୍ଦର ତାତ୍ପର୍ଯ୍ୟ ରହିଛି। ଯାହା ଜନ୍ମ ନିଏ, ତାହା ହେଉଛି ସସୀମ, କାରଣ ଜନ୍ମ ପରିବର୍ତ୍ତନ ବ୍ୟତୀତ ଅନ୍ୟ କିଛି ନୁହେଁ। ଯଦି କିଛି ଅପରିବର୍ତ୍ତିତ ସତ୍ତା ଥିବ, ତେବେ ତାଠାରେ ବିକାର ଦେଖା ଦେବ ନାହିଁ। ବିକାର ହେଉଛି ପରିବର୍ତ୍ତନର ଏକ ଧାରା। ଖମ୍ବ ତା ବ୍ୟତୀତ ଅନ୍ୟ କିଛିରେ ପରିବର୍ତ୍ତିତ ହୋଇ ପାରିବ ନାହିଁ, ତଥାପି ଗୋଧୂଳି ବେଳାରେ ଅନେକ ସମୟରେ ଏହାକୁ ଆମେ ଭୂତ ବୋଲି ଭାବିଥାଉ। ତେବେ ଭୂତଟି ଖମ୍ବର ବିକାର ନୁହେଁ, ଏବଂ ଆମେ କେବଳ ଏତିକି କୈଫିୟତ ଦେଇ ପାରିବା ଯେ ଏହା ହେଉଛି ମନର କଳ୍ପନା ମାତ୍ର। ସେହିପରି ସତ୍ୟ ହେଉଛନ୍ତି ସର୍ବବ୍ୟାପୀ ଶୁଦ୍ଧ ଚୈତନ୍ୟ। ଏହା ଏକ ତଥାପି ଏହାଙ୍କଠାରେ ଆମେ ବହୁବିଧତା ଦେଖିଥାଉ, ଯଦିଓ ବହୁବିଧ ଜଗତ ହେଉଛି ସତ୍ୟଙ୍କ ଉପରେ ଏକ ଅଧ୍ୟାସ।

ସତ୍ୟ ନିଜେ ନିଜକୁ ବିଭାଜିତ କରିବାରୁ ବହୁବିଧ ଜଗତର ସୃଷ୍ଟି ହୋଇଛି ବୋଲି ଯଦି ଆମେ ଗ୍ରହଣ କରିବା, ତେବେ ଏହା ତର୍କ ଓ ଦର୍ଶନର ଅସଂଗତି ହେବ। ତାହାହେଲେ ଅବିନଶ୍ୱର ନଶ୍ୱର ହୋଇଯିବେ। ଦୁଗ୍ଧ ବସିଯାଇ ଦହି ହୋଇଗଲେ ଦହିରେ ଦୁଗ୍ଧ ହଜିଯାଏ। ଦହିରୁ କୌଣସି ଭାବରେ ଦୁଧ ବାହାର କରି ହେବ ନାହିଁ। ସେହିପରି

ଅବିନଶ୍ୱର ଏବଂ ଶାଶ୍ୱତ ନଶ୍ୱର ହୋଇଗଲେ, ନଶ୍ୱର ନିମନ୍ତେ ପାଇବାକୁ ଆଉକିଛି ଅବିନଶ୍ୱର ଉପାଦାନ ରହିବ ନାହିଁ। ସାଧାରଣ ବୁଦ୍ଧିସମ୍ପନ୍ନ ବ୍ୟକ୍ତି ପାଇଁ ମଧ୍ୟ ଏହା ଉପହାସ୍ୟାସ୍ପଦ ଏବଂ ଅସଂଗତ ହେବ।

ଗୌଡ଼ପାଦଙ୍କର ପାଣ୍ଡିତ୍ୟ ଏବଂ ଅନୁଭୂତ ଜ୍ଞାନ ଦୃଷ୍ଟିରୁ ବହୁବିଧତାର ଅସ୍ପଷ୍ଟ ଜଗତ ହେଉଛି କେବଳ ଏକ ମାୟା ବା ମାନସିକ କଳ୍ପନା ମାତ୍ର, ଅର୍ଥାତ୍ ବିଷୟ ଜଗତର ଅବାସ୍ତବତା। ସେଥିପାଇଁ ଦ୍ୱିତୀୟ ଅଧ୍ୟାୟରେ କଳ୍ପନା ସମ୍ବନ୍ଧରେ ମହାନ୍ ଗୁରୁ ପ୍ରଥମ ନିର୍ଦ୍ଦିଷ୍ଟ ବ୍ୟାଖ୍ୟା ଦେଇଛନ୍ତି । ସେଠାରେ ସେ କହିଛନ୍ତି ଯେ, ଆତ୍ମା ତାଙ୍କର ମାୟା ଶକ୍ତି ବଳରେ ନିଜେ ନିଜଠାରେ ବହୁବିଧତାର କଳ୍ପନା କରନ୍ତି। ଏହି ଦ୍ୱିତୀୟ ଶ୍ଳୋକରେ ବର୍ତ୍ତମାନ ଆମେ ଦ୍ୱିତୀୟ ବ୍ୟାଖ୍ୟା ଦେଖିବାକୁ ପାଉ। ଏଠାରେ ସେ କହିଛନ୍ତି ଯେ, ଏକ ଅନେକ ହେବା ହେଉଛି ଏକ ପ୍ରତୀତି। ବାହ୍ୟ ଦୁନିଆରେ ବାସ୍ତବରେ ଏହା ନାହିଁ– ଆମ ମନରେ ଥିବା ଏହାର ଛାପ ଦ୍ୱାରା ସୃଷ୍ଟି ହୋଇଥିବା ଏହା ଏକ କଳ୍ପନା ମାତ୍ର।

**ଅଜାତସ୍ୟୈବ ଭାବସ୍ୟ ଜାତିମିଚ୍ଛନ୍ତି ବାଦିନଃ।**

**ଅଜାତୋ ହ୍ୟମୃତୋ ଭାବୋ ମର୍ତ୍ତ୍ୟତାଂ କଥମେଷ୍ୟତି ॥୨୦॥**

**ଅଜାତସ୍ୟ** = ଅଜାତର, ଅଜନ୍ମାର; ଏବ = ମଧ୍ୟ, ଭାବସ୍ୟ = ନିଜେ ସତ୍ୟ, ଜାତିମ୍ = ଜନ୍ମ, ଇଚ୍ଛନ୍ତି = ଯୁକ୍ତି କରନ୍ତି, ବାଦିନଃ = ବିବାଦ କରୁଥିବା ଲୋକମାନେ, ଅଜାତଃ = ଅଜାତ, ହି = ବାସ୍ତବରେ, ଅମୃତଃ = ଅମୃତ, ଭାବଃ = ବାସ୍ତବତା, ନିଶ୍ଚିତଭାବରେ ଥିବା ସତ୍ତା, ମର୍ତ୍ତ୍ୟତାମ୍ = ମରଣଶୀଳତା, କଥମ୍ = କିପରି, ଏଷ୍ୟତି = ହୁଏ।

*ସଦା ଅଜାତ ଏବଂ ଚିର ଅବିକାରୀ ଆତ୍ମା ଜନ୍ମ ନିଅନ୍ତି (ଅର୍ଥାତ୍ ତାଙ୍କର ପରିବର୍ତ୍ତନ ହୁଏ) ବୋଲି ଦ୍ୱୈତବାଦୀମାନେ ଯୁକ୍ତି କରନ୍ତି। ଅବିକାରୀ ଏବଂ ଅବିନଶ୍ୱର ଏକ ସତ୍ତା ନଶ୍ୱର ହେବେ କିପରି ? ॥୨୦॥*

ପୂର୍ବରୁ ପ୍ରକାଶ କରାଯାଇଥିବା ଧାରଣାକୁ ଆଗେଇ ନେଇ କାରଣବାଦ ବିଶ୍ୱାସ କରୁଥିବା ଦ୍ୱୈତବାଦୀଙ୍କ ବିରୁଦ୍ଧରେ ଗୌଡପାଦ ତାଙ୍କର ବିବେକୀ ଜ୍ଞାନରେ ପ୍ରହାର କରୁଛନ୍ତି। ପରବର୍ତ୍ତୀ ଅଧ୍ୟାୟରେ ସେ ଆହୁରି କଠୋର ଏବଂ ବିଜ୍ଞାନ ସମ୍ମତ ଭାବରେ କାରଣବାଦକୁ ଧ୍ୱଂସ କରିବେ। ତାର ପରବର୍ତ୍ତୀ ଦୁଇ ଶ୍ଳୋକରେ ମଧ୍ୟ ଭଗବାନ ଏହାର ପୁନରାବୃତ୍ତି କରିଥିବାର ଦେଖି ପାରିବା।

ଅବିକାରୀ ଆତ୍ମାଙ୍କର ବିକାର ହୁଏ ବୋଲି ଦ୍ୱୈତବାଦୀମାନଙ୍କର ଯୁକ୍ତି ଏକ ବିରୋଧୋକ୍ତି। ଅବିନଶ୍ୱର କିପରି ନଶ୍ୱର ହେବେ ବୋଲି ପଚାରି ଗୌଡ଼ପାଦ ଏହା ଦେଖାଇଛନ୍ତି। କିନ୍ତୁ ଯୁକ୍ତିସଂଗତ ଚିନ୍ତା କରିବା ପାଇଁ ଅସମର୍ଥ କେତେକ ଅଣଦାର୍ଶନିକ ମନସ୍ତତ୍ତ୍ୱ ବ୍ୟକ୍ତି ପଚାରି ପାରନ୍ତି "କାହିଁକି ନୁହେଁ?"

**ନ ଭବତ୍ୟମୃତଂ ମର୍ତ୍ତ୍ୟଂ ନ ମର୍ତ୍ତ୍ୟମମୃତଂ ତଥା।**

**ପ୍ରକୃତେରନ୍ୟଥାଭାବୋ ଚ କଥଞ୍ଚିଦ୍‌ଭବିଷ୍ୟତି ॥୨୧॥**

ନ ଭବତି = ହୁଏ ନାହିଁ, ଅମୃତମ୍ = ଅମୃତ, ଅବିନଶ୍ୱର; ମର୍ତ୍ତ୍ୟଂ = ମୃତ, ନଶ୍ୱର, ମର୍ତ୍ତ୍ୟମ୍ ନ = ନଶ୍ୱର ହୁଏ ନାହିଁ, ଅମୃତମ୍ = ଅବିନଶ୍ୱର, ତଥା = ସେହିପରି, ପ୍ରକୃତଃ = ପ୍ରକୃତିର, ଅନ୍ୟଥା ଭାବ = ପରିବର୍ତ୍ତନ, ନ = ହୁଏ ନାହିଁ, କଥଞ୍ଚିତ୍ = କୌଣସିମତେ, ଭବିଷ୍ୟତି = ହୁଏ।

*ଅବିନଶ୍ୱର ନଶ୍ୱର ହୋଇ ପାରିବେ ନାହିଁ, ନଶ୍ୱର ମଧ୍ୟ ଅବିନଶ୍ୱର ହୋଇ ପାରିବ ନାହିଁ। ନିଜର ସ୍ୱସ୍ୱରୂପର କିଛି ପରିବର୍ତ୍ତନ କରି ଯଥାବତ୍ ରହି ପାରିବା କଦାପି ସମ୍ଭବ ନୁହେଁ ॥୨୧॥*

ଅବିନଶ୍ୱର ନଶ୍ୱରତାରେ ପରିବର୍ତ୍ତିତ ହୋଇ ପାରିବ ନାହିଁ, କାରଣ ଆମର ଏପରି କହିବା ପ୍ରକୃତି ଜ୍ଞାନର ବିରୁଦ୍ଧରେ ଯିବ। ପ୍ରକୃତିରେ କୌଣସି ପଦାର୍ଥ ତାର ସ୍ୱରୂପରେ ପରିବର୍ତ୍ତନ କରି ସେହି ପଦର୍ଥ ଭାବରେ ରହି ପାରିବାର କୌଣସିଠାରେ ଆମେ ଦେଖିପାରୁ ନାହିଁ। ଉଡ଼ନ୍ତା ପର୍ବତ, ଜଳନ୍ତା ପାଣି, ଥଣ୍ଡା ନିଆଁ କିମ୍ବା ଗରମ ବରଫ - ପାଗଳର ମସ୍ତିଷ୍କ ବ୍ୟତୀତ ଅନ୍ୟ କୌଣସିଠାରେ ଦେଖିବାକୁ ମିଳେ ନାହିଁ। ଦ୍ୱୈତବାଦୀ ମାନେ ଯଦି କହିବେ ଯେ ଅବିନଶ୍ୱର ନଶ୍ୱରରେ ପରିବର୍ତ୍ତିତ ହୋଇ ଯାଇଛନ୍ତି, ତେବେ 'ପର୍ବତମାନେ ଉଡ଼ିଯାଉଛନ୍ତି' ବୋଲି କହିବା ଲୋକମାନଙ୍କଠାରୁ ସେମାନେ କିଛି ଉନ୍ନତ ଶ୍ରେଣୀର ନୁହଁନ୍ତି।

**ସ୍ୱଭାବେନାମୃତୋ ଯସ୍ୟ ଭାବୋ ଗଚ୍ଛତି ମର୍ତ୍ତ୍ୟତାମ୍ ।**

**କୃତକେନାମୃତସ୍ତସ୍ୟ କଥଂ ସ୍ଥାସ୍ୟତି ନିଶ୍ଚଳଃ ॥୨୨॥**

ସ୍ୱ ଭାବେନ = ସ୍ୱ ସ୍ୱରୂପରେ, ଅମୃତ = ଅବିନଶ୍ୱର, ଯସ୍ୟ = ଯାହା ପାଇଁ(ବ୍ୟକ୍ତି) ଭାବଃ = ବାସ୍ତବତା, ବାସ୍ତବସତ୍ତା, ଗଚ୍ଛତି ମର୍ତ୍ତ୍ୟତାମ୍ = ନଶ୍ୱର ହୁଏ, କୃତକେନ = ବିକାର ପରେ ଏହା ଗୋଟିଏ କାର୍ଯ୍ୟ ହୋଇଥିବାରୁ , ଅମୃତଃ = ସେହି ଅବିନଶ୍ୱର, ତସ୍ୟ = ତାହାଙ୍କ ପାଇଁ, କଥମ୍ = କିପରି, ସ୍ଥାସ୍ୟତି = ରହେ, ନିଶ୍ଚଳଃ = ତାର ନିଜର ନିର୍ବିକାର ସ୍ୱରୂପ ।

*ବିକାର ହେବା ପରେ ଅବିନଶ୍ୱର  କିପରି ତାଙ୍କର ନିର୍ବିକାର ସ୍ୱରୂପ ରକ୍ଷା କରି ପାରିବେ ବୋଲି ଅବିନଶ୍ୱର ନଶ୍ୱର ହେବାରେ ବିଶ୍ୱାସ କରୁଥିବା ବ୍ୟକ୍ତି କହି ପାରିବ ? ॥୨୨॥*

ଏପରି ଏକ ଦାର୍ଶନିକ ଦାବୀର ଅନ୍ୟ ଏକ ବିପଜ୍ଜନକ ତାତ୍ପର୍ଯ୍ୟ ଦେଖାଇବା ପାଇଁ ଏଠାରେ କାରିକାକାର ଚେଷ୍ଟା  କରୁଛନ୍ତି । ସେ ଯେପରି ସିଧାସଳଖ ଭାବରେ ଦେଖାଇ ଦେଉଛନ୍ତି, ତାଦ୍ୱାରା ମିଥ୍ୟା ସିଦ୍ଧାନ୍ତଟି ସମସ୍ତଙ୍କ ପାଇଁ ସ୍ପଷ୍ଟ ହୋଇଯାଏ ।

ପରମାତ୍ମାଙ୍କଠାରୁ  ବହୁବିଧ ଜଗତ ସୃଷ୍ଟି ହେବାପାଇଁ ଅବିନଶ୍ୱରଙ୍କ ଠାରେ ବିକାର ଦେଖାଦିଏ ବୋଲି ଦ୍ୱୈତବାଦୀମାନେ ବିଶ୍ୱାସ କରନ୍ତି । ତଥାପି ସେମାନେ କହନ୍ତି ଯେ, ସତ୍ୟ ଚିରଦିନ ଯେପରି ଅବିକାରୀ, ଏବଂ ଶାଶ୍ୱତ ଥାଆନ୍ତି, ସେହିପରି ରହନ୍ତି । ବିକାର କଥା କହି ବିକାରୀର ଅବିକାରୀତ୍ୱ ସମ୍ବନ୍ଧରେ ଜୋର ଦେବା ବୁଦ୍ଧିମାନ କଥା ନୁହେଁ ବୋଲି ଚିନ୍ତାଶୀଳ  ବ୍ୟକ୍ତିମାନେ ସାଧାରଣତଃ କହି ଥାଆନ୍ତି ।

**ଭୂତତୋଽଭୂତତୋ ବାପି ସୃଜ୍ୟମାନେ ସମା ଶ୍ରୁତିଃ ।**
**ନିଶ୍ଚିତଂ ଯୁକ୍ତିଯୁକ୍ତଂ ଚ ଯତ୍ତଦ୍ଭବତି ନେତରତ୍ ॥୨୩ ॥**

ଭୂତତଃ = ବାସ୍ତବ, ଅଭୂତତଃ = ଅବାସ୍ତବ, ବା ଅପି = ଏବଂ ମଧ୍ୟ, ସୃଜ୍ୟମାନେ = (ଅଦ୍ୱୈତ) ସୃଷ୍ଟି ହୋଇଛି କି ନାହିଁ, ଶ୍ରୁତିଃ ସମା = ଶ୍ରୁତିରେ ମଧ୍ୟ ସମାନ ଭାବରେ ଜୋର ଦିଆଯାଇଛି, ନିଶ୍ଚିତମ୍ = (ବିଶ୍ଳେଷଣ ଦ୍ୱାରା) ପ୍ରତିଷ୍ଠିତ କରା ଯାଇଛି, ଚ ଯୁକ୍ତିଯୁକ୍ତମ୍ = ଏବଂ ଯୁକ୍ତି ଦ୍ୱାରା ସମର୍ଥିତ, ଯତ୍ = ଯାହା, ତତ୍ = ତାହା(ଶିକ୍ଷା), ଭବତି =(ଗ୍ରହଣୀୟ ସତ୍ୟ) ଅଟେ, ନ ଇତରତ୍ = ଅନ୍ୟଥା ନୁହେଁ ।

*ସୃଷ୍ଟି ସତ୍ୟ ଏବଂ ସୃଷ୍ଟି ଅସତ୍ୟ – ଏହି ଦୁଇଟି ମତକୁ ଶ୍ରୁତିରେ ସମାନ ଭାବରେ ଜୋର ଦିଆ ଯାଇଛି । ଶ୍ରୁତି ଯାହାକୁ ସମର୍ଥନ କରେ ଏବଂ ପୁଷ୍ଟ କରେ, ତାହାହିଁ ଗ୍ରହଣୀୟ ସତ୍ୟ, ଅନ୍ୟକିଛି ନୁହେଁ ॥୨୩॥*

ଏଠାରେ ମଧ୍ୟ ବେଦାନ୍ତ ଆଦର୍ଶର ପୁନରୁକ୍ତି କରା ଯାଇଛି । ବେଦାନ୍ତୀ ମାନେ ଶାସ୍ତ୍ରୀୟ ଘୋଷଣାର ଅବିବାଦନୀୟତାରେ ବିଶ୍ୱାସ କରନ୍ତି । କିନ୍ତୁ ତା ସହିତ, ଜଣେ ବେଦାନ୍ତୀ ଅନ୍ଧବିଶ୍ୱାସୀ ନୁହେଁ । ମହାନ ଋଷିମାନଙ୍କର ସ୍ୱତଃସିଦ୍ଧ ଜ୍ଞାନକୁ ସମ୍ମାନ ଦିଅନ୍ତି ନିଶ୍ଚୟ । ତାଙ୍କର ବିଶ୍ୱାସ ଅନ୍ଧ ବିଶ୍ୱାସ ନୁହେଁ । ଖେଳାଳୀର ପ୍ରଶଂସନୀୟ ମନୋଭାବ ନେଇ ସେମାନେ ଆଦରର ସହିତ ତାହା ଗ୍ରହଣ କରନ୍ତି । ଋଷିମାନଙ୍କର ଗୁଣ ସେ ଗ୍ରହଣ କରନ୍ତି, କାରଣ ସେମାନେ ତାଙ୍କର ଉପଲବ୍ଧିର ନମୁନା ଏବଂ ତାଙ୍କର ଟୀକା ପଛରେ ଥିବା ଯୁକ୍ତି ଜାଣିଥାନ୍ତି ।

କିନ୍ତୁ ଜଣେ ଋଷି ପରିହାସ କରି ଯଦି କିଛି କହିବେ, ତେବେ ବେଦାନ୍ତୀ ନିର୍ବିକଳ୍ପ ସତ୍ୟ ବୋଲି ବୋକାଭାବେ ଗ୍ରହଣ କରିବେ ନାହିଁ । ତେଣୁ ଶଙ୍କରଙ୍କ ଭାଷାରେ ଜିଜ୍ଞାସା ମାଧ୍ୟମରେ ସୁପ୍ରତିଷ୍ଠିତ ହୋଇଥିବା ଏବଂ ଯୁକ୍ତି ଦ୍ୱାରା ବୋଧଗମ୍ୟ ହେଉଥିବା ଶ୍ରୁତିର ଘୋଷଣାକୁ ହିଁ ବେଦାନ୍ତୀ ଗ୍ରହଣ କରନ୍ତି । ଶ୍ରୁତିର କୌଣସି ଯାଗାରେ ଯଦି କୁହାଯାଇଥିବ, 'ନିଆଁ ହେଉଛି ଶୀତଳ' ତେବେ ବେଦାନ୍ତୀ ତାକୁ ମହାନ ଋଷିଙ୍କର ଘୋଷଣା ଭାବରେ ଗ୍ରହଣ କରିନେବେ ନାହିଁ । ଋଷି ଯେତେ ମହାନ ହୋଇଥାନ୍ତୁ ନା କାହିଁକି, ନ୍ୟାୟଏବଂ ଯୁକ୍ତି ନ ଥିବା ବିରୋଧାଭାସର ଉକ୍ତି ଘୋଷଣା କରି ପାରିବେ ନାହିଁ । ନ୍ୟାୟ ଏବଂ ଯୁକ୍ତିର ପରୀକ୍ଷାରେ ଉତ୍ତୀର୍ଣ୍ଣ ନ ହେବା ପରି କିଛି ଅଂଶ ଯଦି ଶାସ୍ତ୍ରରେ ଥିବ, ତେବେ ତାକୁ ଆକ୍ଷରିକ ଅର୍ଥରେ ଗ୍ରହଣ ନ କରି ତାର ଆଳଙ୍କାରିକ ସୂଚନାକୁ ବୁଝିବାକୁ ହେବ ।

ସତ୍ୟଙ୍କଠାରୁ ବହୁବିଧ ଜଗତର ସୃଷ୍ଟି ବୋଲି ଉପନିଷଦ୍‌ର ପ୍ରାଥମିକ ଅଂଶରେ ଯଦି ବର୍ଣ୍ଣନା କରା ଯାଇଥିବ, ତେବେ 'ପରମସତ୍ୟଙ୍କଠାରେ କେବେ ବି କିଛି ପରିବର୍ତ୍ତନ ହୋଇ ନାହିଁ'- ଏହି ଘୋଷଣାରେ ଥିବା ଶେଷ ସିଦ୍ଧାନ୍ତ ତୁଳନାରେ ତାହା ଗୌଣ ବୋଲି ବୁଝିବାକୁ ହେବ। ମଣିଷ ନିଜଠାରେ ଦେଖୁଥିବା ଜଗତ ସତ୍ୟଙ୍କ ଉପରେ ଏକ ଅଧ୍ୟାସ ମାତ୍ର – ମନର କୁହୁକ। ପରବର୍ତ୍ତୀ ଶ୍ଳୋକରେ ଦୁଇଟି ମୁଖ୍ୟ ଶାସ୍ତ୍ରୀୟ ଉଦ୍ଧୃତିରେ ଆଲୋଚନା କରାଯାଇଛି।

**ନେହ ନାନେତି ଚାମ୍ନାୟାଦିନ୍ଦ୍ରୋ ମାୟାଭିରିତ୍ୟପି।**

**ଅଜାୟମାନୋ ବହୁଧା ମାୟୟା ଜାୟତେ ତୁ ସଃ ॥୨୪॥**

ନ ଇହ ନାନା ଇତି = ଏହାଙ୍କଠାରେ (ଆତ୍ମାଙ୍କଠାରେ) ଦ୍ୱୈତଭାବ ମୋଟେ ନାହିଁ, ଚ ଆମ୍ନାୟାତ୍ = ନିମ୍ନୋକ୍ତ ଶ୍ରୁତି ଘୋଷଣା ଯୋଗୁଁ , ଇତି = ଏହା, ଅପି = ମଧ୍ୟ, ଅଜାୟମାନଃ = ଅଜ ହୋଇଥିବାରୁ, ବହୁଧାଃ = ବହୁଭାବରେ,ମାୟୟା = ମାୟା ଯୋଗୁଁ, ଇନ୍ଦ୍ରଃ = ଏହି(ଆତ୍ମା), ମାୟାଭିଃ = ମାୟା ଯୋଗୁଁ, ଜାୟତେ = ଜନ୍ମ ନିଏ, ତୁ = କେବଳ, ସଃ = ତାହା (ଆତ୍ମା)।

*'ଏହାଙ୍କଠାରେ ବହୁବିଧତା ନାହିଁ', 'ମାୟା ମାଧ୍ୟମରେ ଏହି' ପରି ଶାସ୍ତ୍ରୀୟ ଅଂଶ ମାଧ୍ୟମରେ ଆମେ ଜାଣିବାକୁ ପାଉ ଯେ ଆତ୍ମା ଅଜ ହେଲେ ବି ମାୟା ମାଧ୍ୟମରେ ଅନେକ ହୋଇଥିବା ପରି ଜଣା ପଡ଼ନ୍ତି ॥୨୪॥*

ଏହି ଶ୍ଳୋକର ପ୍ରଥମ ପଂକ୍ତିରେ ହିଁ ବୃହଦାରଣ୍ୟକ ଉପନିଷଦ୍‌ରୁ ଦୁଇଟି ବିଖ୍ୟାତ ଉଦ୍ଧୃତି ଦିଆଯାଇଛି। ଗୌଡ଼ପାଦ ଏହି ଉପନିଷଦ୍‌କୁ ହିଁ ପ୍ରାୟ ମୁଖ୍ୟ ଭାବରେ ଗ୍ରହଣ କରିଛନ୍ତି।

ପ୍ରଥମ ଉଦ୍ଧୃତିରେ ବୃହଦାରଣ୍ୟକ ଉପନିଷଦ ବହୁବିଧ ଜଗତକୁ ନିର୍ଦ୍ଦିଷ୍ଟ ଭାବରେ ଏବଂ ନିଶ୍ଚିତ ଭାବରେ ଖଣ୍ଡନ କରେ। ଦ୍ୱିତୀୟ ଉଦ୍ଧୃତିରେ, ଏହାସବୁ ଇନ୍ଦ୍ରଙ୍କ ମାୟା ବୋଲି ଯାଜ୍ଞବଲ୍‌କ୍ୟ କହିବାବେଳେ ଆମେ ବହୁବିଧ ଜଗତର ଏକ ବ୍ୟାଖ୍ୟା ପାଇପାରୁ। ଏହି ଉକ୍ତିକୁ ଆମେ ଯେତେ ଆତ୍ମିକ ଭାବରେ ବୁଝିବାକୁ ଚେଷ୍ଟା କରୁ, ଏହା ସେତେ ଚିତ୍ତାକର୍ଷକ ଏବଂ ଭାବଗର୍ଭକ ହୋଇପଡ଼େ।

ଇନ୍ଦ୍ରଙ୍କୁ ମନର ଅଧିଷ୍ଠିତ ଦେବତା ଭାବରେ ଧରାଯାଏ। ଅନ୍ୟ ଶାସ୍ତ୍ରରେ (କେନ ଉପନିଷଦ୍‌ରେ) ମଧ୍ୟ ମନକୁ ସୂଚାଇବା ପାଇଁ ଇନ୍ଦ୍ର ପଦ ବ୍ୟବହାର କରାଯାଇଛି। ତେଣୁ ଦାର୍ଶନିକତା ଦୃଷ୍ଟିରୁ ଯେତେବେଳେ କୁହାଯାଏ ଯେ ଇନ୍ଦ୍ରଙ୍କ ଦ୍ୱାରା ବହୁବିଧ ଜଗତ ସୃଷ୍ଟି

ହୋଇଛି, ତାହା ବହୁବିଧ ଜଗତ ଆମ ମନର ଏକ ମାୟା ବୋଲି କହିବା ସହିତ ସମାନ। ମାନସିକ ଦୃଷ୍ଟିକୋଣରୁ ଜଗତକୁ ଦେଖିଲେ, ମନ ତାର ଭ୍ରମରେ ଏକ ନାମ - ରୂପର ଜଗତ ଦେଖେ, ଆତ୍ମା ଦୃଷ୍ଟିରୁ ସେହି ଜଗତକୁ ଦେଖିଲେ ଏଥିରେ କୌଣସି ବହୁବିଧତା ନାହିଁ।

ଏହି ଦୁଇ ଉଦ୍ଧୃତିର ଅର୍ଥର ସାଲିସ କରି ଗୌଡ଼ପାଦ ସୂଚାଇଛନ୍ତି ଯେ ଏଠାରେ ଏକମାତ୍ର ପରିଷ୍କାର ଅର୍ଥ ହେଲା, ପରମ-ସତ୍ୟ ଅଜ ହେଲେ ମଧ୍ୟ ନିଜକୁ ବହୁବିଧତାରେ ପରିଣତ କରିଥିବା ପରି ମନେ ହୁଅନ୍ତି।

**ସମ୍ଭୂତେରପବାଦାଚ୍ଚ ସମ୍ଭବଃ ପ୍ରତିଷିଧ୍ୟତେ।**

**କୋନ୍ୱେନଂ ଜନୟେଦିତି କାରଣଂ ପ୍ରତିଷିଧ୍ୟତେ॥୨୫॥**

ସମ୍ଭୂତେ = ହିରଣ୍ୟଗର୍ଭର (ଉପାସନା), ଅର୍ଥାତ୍ ସୃଷ୍ଟି (ଆକ୍ଷରିକ ଅର୍ଥରେ ପୂରା ମହତ୍ତ୍ୱ ଧାରଣ କରିଥିବା ଦେବତା); ଅପବାଦାତ୍ = ନିଷେଧ ଦ୍ୱାରା, ଚ = ଆହୁରି ମଧ୍ୟ, ସମ୍ଭବଃ = ସୃଷ୍ଟି, ପ୍ରତିଷିଧ୍ୟତେ = ଖଣ୍ଡନ କରାଯାଏ, କଃ ନୁ = ପ୍ରକୃତରେ କିଏ, ଏନମ୍ = ଏହା, ଜନୟେତ୍ = ସୃଷ୍ଟି କରିବ, ଜନ୍ମ ହେବ; ଇତି = ଏହିପରି , କାରଣମ୍ = କାରଣ, ପ୍ରତିଷିଧ୍ୟତେ = ହୁଏ।

*ସୃଷ୍ଟି (ସମ୍ଭୂତି) ର ପୁଣି ନିଷେଧ କରାଯାଇଛି। ସୃଷ୍ଟିର ଖଣ୍ଡନ କରାଯାଇଛି। "ଏହା ଜନ୍ମ ହେବାର କାରଣ କିଏ?" ଏହିପରି ଉକ୍ତିରେ ଆତ୍ମାଙ୍କଠାରେ ହେତୁ (କାରଣ)ର ନିଷେଧ କରାଯାଇଛି ॥୨୫॥*

ବେଦାନ୍ତ ସାହିତ୍ୟରେ ସୃଷ୍ଟିର ଧାରଣା କୁ ନିଷେଧ କରିବାରେ ଶାସ୍ତ୍ରୀୟ ଉକ୍ତି ଭାରି ଜୋରଦାର। ଏହିପରି ଭାବରେ ସୃଷ୍ଟିର ନିଷେଧ କରି ସେମାନେ ଆତ୍ମାଙ୍କଠାରୁ ଜନ୍ମର ଧାରଣାକୁ ଖଣ୍ଡନ କରିଛନ୍ତି। ନିଷେଧ କରିଛନ୍ତି। ନିଜ ବ୍ୟତୀତ ଅନ୍ୟ କିଛି ହେବାକୁ ପରମସତ୍ୟ ପରିବର୍ତ୍ତିତ ହୁଅନ୍ତି ନାହିଁ ବା ନିଜଠାରେ ବିକାର ସୃଷ୍ଟି କରନ୍ତି ନାହିଁ।

ଅନ୍ୟତ୍ର ମଧ୍ୟ ପରମସତ୍ୟଙ୍କଠାରୁ ସୃଷ୍ଟଜଗତର ଦୃଢ଼ ଭାବରେ ନିଷେଧ କରାଯାଇଛି। ବୃହଦାରଣ୍ୟକ ଉପନିଷଦ୍‌ରେ ଋଷି ଯେତେବେଳେ ପଚାରିଛନ୍ତି, "କିଏ ତାଙ୍କର ଜନ୍ମ ହେବାର କାରଣ ହୁଏ?" ଜଗତ ସୃଷ୍ଟି କରିବା ପାଇଁ ପରମାତ୍ମାଙ୍କୁ ବାଧ୍ୟ କରିବାକୁ ତାଙ୍କ ବ୍ୟତୀତ କିଛି ନଥିବା ଉପରେ ଜୋର ଦେବା କଥା ଏଥିରୁ ସ୍ପଷ୍ଟ ହୁଏ।

ଏହିପରି କହି, ବହୁବିଧ ଜଗତ ସୃଷ୍ଟି କରିବାରେ ପରମସତ୍ୟ ଉପାଦାନ ବା ନିମିତ୍ତ କାରଣ ହୋଇ ନପାରନ୍ତି ବୋଲି ଶ୍ରୁତି ନିର୍ଦ୍ଦିଷ୍ଟ ଭାବରେ କହିଛନ୍ତି। ସଂକ୍ଷେପରେ, ନିର୍ବିକଳ୍ପଙ୍କଠାରୁ କାରଣର କର୍ତ୍ତୃତ୍ୱ ସମ୍ଭବ ନୁହେଁ। ମନ ସ୍ତରରେ ହିଁ କାର୍ଯ୍ୟ -କାରଣ ସମ୍ପର୍କ କାମ କରି ପାରିବ।

**ସ ଏଷ ନେତି ନେତୀତି ବ୍ୟାଖ୍ୟାତଂ ନିହ୍ନୁତେ ଯତଃ।**

**ସର୍ବମ୍ ଗ୍ରାହ୍ୟଭାବେନ ହେତୁନାଜଂ ପ୍ରକାଶତେ ॥୨୬॥**

ସଃ ଏଷଃ ନ ଇତି ନ ଇତି = ଏହା ନୁହେଁ, ଏହା ନୁହେଁ; ଇତି = ଏହିପରି କହି, ବ୍ୟାଖ୍ୟା ତମ୍ = (ପୂର୍ବରୁ) ବର୍ଣ୍ଣନା କରା ଯାଇଛି, ନିହ୍ନୁତେ = (ଶ୍ରୁତି) ନିଷେଧ କରିଛନ୍ତି, ଯତଃ = ତେଣୁ, ସର୍ବମ୍ = ସବୁ ଜିନିଷ, ଅଗ୍ରାହ୍ୟ ଭାବେନ = ଆତ୍ମାଙ୍କର ଅବୋଧତା, ହେତୁନା = କାରଣରୁ, ଯୋଗୁଁ, ଅଜମ୍ = ଅଜ ଆତ୍ମା, ପ୍ରକାଶତେ = (ଏକା ହିଁ) ଜାଜ୍ଜ୍ୱଲ୍ୟମାନ ଥାଆନ୍ତି।

*ଆତ୍ମାଙ୍କର ଅବୋଧତା ଯୋଗୁଁ ଆତ୍ମପ୍ରାପ୍ତି ଭାବରେ ବର୍ଣ୍ଣନା କରାଯାଇଥିବା ସମସ୍ତ ଦ୍ୱୈତ ଧାରଣାକୁ "ଏହା ନୁହେଁ, ଏହା ନୁହେଁ" ପରି ଉକ୍ତିରେ ଶାସ୍ତ୍ର ନିଷେଧ କରିଛନ୍ତି। ତେଣୁ ଅଜ ଆତ୍ମା ହିଁ କେବଳ ବିଦ୍ୟମାନ - ଦ୍ୱୈତଭାବ ନୁହେଁ ॥୨୬॥*

ପୁନଶ୍ଚ, ବୃହଦାରଣ୍ୟକ ଉପନିଷଦ୍‌ରେ 'ଏହା ନୁହେଁ, ଏହା ନୁହେଁ' ଭାବରେ ନିଷେଧ କରି ଆତ୍ମାଙ୍କର ପ୍ରତିପାଦନ କରାଯାଇଛି। ଏହା ଏକ ବିଖ୍ୟାତ ପ୍ରତିପାଦନ। ଚତୁର୍ଥ ଅବସ୍ଥା 'ତୂରୀୟ'ର ବ୍ୟାଖ୍ୟା କରିବା ସମୟରେ ଋଷି ମାଣ୍ଡୁକ୍ୟ ଉପନିଷଦରେ ଏହାକୁ ସନ୍ତୋଷଜନକ ଭାବରେ ବ୍ୟବହାର କରିଥିବାର ଦେଖିବାକୁ ମିଳେ।

ନିର୍ବିକଳ୍ପଙ୍କର ଅନୁଭୂତିକୁ ସୂଚାଇବା ପାଇଁ ଏହି ନିଷେଧର ଭାଷା ହିଁ ଏକମାତ୍ର ଉପାୟ, କାରଣ ଅସୀମଙ୍କୁ ବୁଦ୍ଧି ଦ୍ୱାରା ବୋଧ କରିହେବ ନାହିଁ। ଏହା ଆମର ଦୈନନ୍ଦିନ ଅନୁଭୂତି ଜନିତ ସୀମାର ଅତୀତ ହୋଇଥିବାରୁ ଆମର ଜାଗତିକ ଭାଷା ଅଦ୍ୱୈତଙ୍କ ଅନୁଭୂତିକୁ ନିର୍ଦ୍ଦିଷ୍ଟ ଭାବରେ ପ୍ରକାଶ କରି ପାରିବ ନାହିଁ। ବହୁବିଧ ଜଗତର ଖଣ୍ଡନ ହିଁ ସତ୍ୟଙ୍କର ମଣ୍ଡନ, ସାପର ଖଣ୍ଡନ କରିବାହିଁ ରଜ୍ଜୁର ସତ୍ୟତା ଅବିଷ୍କାର କରିବାର ଉପାୟ। ଅଧ୍ୟାସର ସବୁ କ୍ଷେତ୍ରରେ ଭ୍ରମର ଅନ୍ତହିଁ ହେଉଛି ଜ୍ଞାନର ଆରମ୍ଭ ଏବଂ ଅସତ୍ୟର ଖଣ୍ଡ କରିବା ଦ୍ୱାରା ହିଁ ଭ୍ରାନ୍ତିର ଇତି ହୋଇ ପାରିବ।

ତେଣୁ ସମସ୍ତ ଦୃଶ୍ୟ, ବୋଧ ଏବଂ ଚିନ୍ତାର ଜଗତର ଏପରି ଖଣ୍ଡନ କରାଗଲେ ଏସବୁର ପଛରେ ଥିବା ସତ୍ୟ, ନିଶ୍ଚିତ ଭାବରେ ଏକ ହିଁ ପ୍ରତିଭାତ ହେବେ, ଯାହାଙ୍କଠାରୁ ବାସ୍ତବ ଜଗତର ସ୍ଥିତି କଦାପି ଉଦ୍ଭବ ହୋଇ ପାରିବ ନାହିଁ।

**ସତୋ ହି ମାୟୟା ଜନ୍ମ ଯୁଜ୍ୟତେ ନ ତୁ ତତ୍ତ୍ୱତଃ।**

**ତତ୍ତ୍ୱତୋ ଜାୟତେ ଯସ୍ୟ ଜାତଂ ତସ୍ୟ ହି ଜାୟତେ ॥୨୭॥**

ସତଃ = ଯାହା ଚିର ବିଦ୍ୟମାନ, ହି ମାୟୟା = ମାୟା ମାଧ୍ୟମରେ ହିଁ କେବଳ, ଜନ୍ମ ଯୁଜ୍ୟତେ = ଜନ୍ମ ସମ୍ଭବପର, ତୁ = କିନ୍ତୁ, ନ ତତ୍ତ୍ୱତଃ = ସତ୍ୟ(ତତ୍ତ୍ୱ) ଦୃଷ୍ଟିରୁ ନୁହେଁ, ତତ୍ତ୍ୱତଃ = ବାସ୍ତବରେ (ବାସ୍ତବ), ଜାୟତେ = ଜନ୍ମ ହୁଏ, ଯସ୍ୟ = ଜଣେ ବ୍ୟକ୍ତି ପାଇଁ, ଜାତମ୍ = (ତାପରେ) ଯାହା ଜନ୍ମ ନିଏ, ତସ୍ୟ = ତାହା ପାଇଁ , ହି ଜାୟତେ = କେବଳ ଜନ୍ମ ନିଏ (ପୁନଶ୍ଚ)।

*ଯାହା ଚିର ବିଦ୍ୟମାନ, କେବଳ ମାୟା ଯୋଗୁଁ ହିଁ ଜନ୍ମ ନେବାପରି ମନେ ହୁଏ, ପରମସତ୍ୟଙ୍କ ଦୃଷ୍ଟିରୁ ଏହା ସତ୍ୟ ନୁହେଁ। ଏହି ଜନ୍ମ ନେବାକୁ ସତ୍ୟ ବୋଲି ବିଶ୍ୱାସ କରୁଥିବା ବ୍ୟକ୍ତି, ଯାହା ଜନ୍ମ ନେଇଛି, ଅନନ୍ତକାଳ ପାଇଁ ଜନ୍ମ ନେଉଥିବ ବୋଲି ପ୍ରତିପାଦନ କରନ୍ତି ॥୨୭॥*

ପୂର୍ବ ଶ୍ଳୋକମାନଙ୍କରେ ଗୌଡ଼ପାଦ ଦର୍ଶାଇଛନ୍ତି ଯେ, ଏକ ଅଦ୍ୱୈତ ସତ୍ୟଙ୍କର ଘୋଷଣା କରିବା ହେଉଛି ଉପନିଷଦ୍ ମାନଙ୍କର ମୁଖ୍ୟ ପ୍ରତିପାଦନ ଏବଂ ତାହା ହିଁ କରି ଶ୍ରୁତି ବହୁବିଧତାର ଧାରଣାକୁ ନିନ୍ଦା କରିଛନ୍ତି। ଆମେ କାହିଁକି ଏବଂ କିପରି ବହୁବିଧ ଜଗତ ଦେଖୁ ବୋଲି ଏହି ଶ୍ଳୋକରେ ବ୍ୟାଖ୍ୟା କରିବା ପାଇଁ ଆଚାର୍ଯ୍ୟ ଚେଷ୍ଟା କରୁଛନ୍ତି। ପ୍ରକୃତରେ ପରମସତ୍ୟଙ୍କଠାରୁ ଗୋଟିଏ ଦୃଶ୍ୟ ଜଗତ ବାହାରି ପଡ଼ି ନାହିଁ, ଏହା ଦ୍ରଷ୍ଟାର ଭ୍ରମ(ମାୟା) ବୋଲି ସେ ଜୋର ଦେଇଛନ୍ତି। ପ୍ରକୃତରେ କୌଣସି ସୃଷ୍ଟି ହୋଇଛି ବୋଲି ବିଶ୍ୱାସ କରିବାରେ ଆମର ନ୍ୟାୟସଙ୍ଗତ ତ୍ରୁଟିକୁ ସେ ଦେଖାଇ ଚାଲିଛନ୍ତି। ଏହା ଯଦି ସତ୍ୟ ହୋଇଥାଏ, ତେବେ ଆମେ ଯୁକ୍ତିସଙ୍ଗତ ଭାବରେ ନିଜକୁ ଯଥାର୍ଥ ଆତିଶଯ୍ୟକୁ ଖସାଇ ନେବା ।

ବାସ୍ତବରେ ପରମସତ୍ୟ କେବଳ ଅଜ ଏବଂ ଅବିକାରୀ ହୋଇ ରହିବେ। କାର୍ଯ୍ୟ ଭାବରେ ପରମସତ୍ୟଙ୍କଠାରୁ କିଛି ବାହାରିଛି ବୋଲି ଆମେ ଯଦି ଗ୍ରହଣ କରିବା, ତେବେ ଆମକୁ ଜିଜ୍ଞାସା କରିବାକୁ ପଡ଼ିବ ଯେ, ଦୃଶ୍ୟମାନ କାର୍ଯ୍ୟର କାରଣ କଣ

ହୋଇପାରେ । କାରଣ ଆମେ ଯଦି ପରମାତ୍ମାଙ୍କ ଠାରେ କାରଣର କର୍ତ୍ତୃତ୍ୱ ମାନିନେବା, ତେବେ ନିଜେ ଅକାରଣ ହୋଇଥିବା ପ୍ରଥମ କାରଣ ଓଁ ପାଖେ ପହଞ୍ଚି ପାରିବା ନାହିଁ । ତେଣୁ ଏପରି ଏକ ଅନ୍ତହୀନ କାରଣ ଖୋଜିବାର ଧନ୍ଦାରେ ପଡ଼ି ଆମେ ଅନନ୍ତ କାଳ ପାଇଁ ଖୋଜି ବୁଲୁଥିବା ।

**ଅସତୋ ମାୟୟା ଜନ୍ମ ତତ୍ତ୍ୱତୌ ନୈବ ଯୁଜ୍ୟତେ ।**

**ବନ୍ଧ୍ୟାପୁତ୍ରୋ ନ ତତ୍ତ୍ୱେନ ମାୟୟା ବାଽପି ଜାୟତେ ॥୨୮॥**

ଅସତଃ = ଅସତ୍ୟ, ଯାହା ନାହିଁ, ମାୟୟା = ମାୟା ଦ୍ୱାରା, ଜନ୍ମ = ଜନ୍ମ, ତତ୍ତ୍ୱତଃ = ବାସ୍ତବରେ, ନ ଏବ ଯୁଜ୍ୟତେ = କଦାପି ସମ୍ଭବ ନୁହେଁ, ବନ୍ଧ୍ୟା ପୁତ୍ର = ବନ୍ଧ୍ୟା ର ପୁତ୍ର, ନ = ନୁହେଁ ତତ୍ତ୍ୱେନ = ବାସ୍ତବରେ, ମାୟୟା = ମାୟା ମାଧ୍ୟମରେ, ବା ଅପି = ଏବଂ ମଧ୍ୟ, ଜାୟତେ = ଜନ୍ମ ନିଏ ।

*ମାୟା ଦ୍ୱାରା ବା ବାସ୍ତବରେ ଅସତ୍ୟ କଦାପି ଜନ୍ମ ନେବ ନାହିଁ, କାରଣ ବନ୍ଧ୍ୟାର ପ୍ରକୃତରେ ବା ମାୟାରେ ପୁତ୍ର ଜନ୍ମ ହୁଏ ନାହିଁ ॥୨୮॥*

ସତ୍‌ଙ୍କଠାରେ କରଣର କର୍ତ୍ତୃତ୍ୱ ଗ୍ରହଣ କରିବାରେ ଦାର୍ଶନିକ ଅସଂଗତି ପୂର୍ବରୁ ଦେଖାଇ ଦିଆ ଯାଇଛି । ବର୍ତ୍ତମାନ ସତ୍‌ଙ୍କଠାରେ କାମ କରୁଥିବା କରଣର କର୍ତ୍ତୃତ୍ୱ ଧାରଣାର ସମ୍ଭାବନା ନେଇ ଏଠାରେ ଆଲୋଚନା କରାଯାଉଛି । ଏଠାରେ ଗୌଡପାଦ ପରମସତ୍ୟଙ୍କଠାରେ କାର୍ଯ୍ୟକାରଣ ସମ୍ପର୍କର ଅବାସ୍ତବତାକୁ ବର୍ଣ୍ଣନା କରିଛନ୍ତି, କାରଣ ଏହା ଅ-ସତ୍ କାର୍ଯ୍ୟରେ ହେଉ କିମ୍ବା ମାୟାରେ, ଅସତ୍ ଜନ୍ମ ଦେଇ ପାରିବ ନାହିଁ । କାରଣ ବନ୍ଧ୍ୟାର ବାସ୍ତବରେ ବା କୁହୁକରେ ପୁଅ ଜନ୍ମ ହେବ ନାହିଁ ।

ତେଣୁ ଯାହା ସତ୍ କିମ୍ବା ଅସତ୍, ସେହି ସତ୍ୟଙ୍କଠାରୁ ବହୁବିଧ ଜଗତ ବାହାରି ପାରିବ ନାହିଁ । କୌଣସି କାରଣରୁ ଉଦ୍ଭବ ହୋଇଥିବା ଏହି କାର୍ଯ୍ୟକୁ ଅସ୍ୱୀକାର କରି ଆମେ କାର୍ଯ୍ୟର ଅସ୍ତିତ୍ୱର ଅସ୍ୱୀକାର କରୁ ।

**ଯଥା ସ୍ୱପ୍ନେ ଦ୍ୱୟାଭାସଂ ସ୍ପନ୍ଦତେ ମାୟୟା ମନଃ ।**

**ତଥା ଜାଗ୍ରତ୍ ଦ୍ୱୟାଭାସଂ ସ୍ପନ୍ଦତେ ମାୟୟା ମନଃ ॥୨୯॥**

ଯଥା = ଯେପରି, ସ୍ୱପ୍ନେ = ସ୍ୱପ୍ନରେ, ଦ୍ୱୟ ଆଭାସମ୍ = ଦ୍ୱୈତ ପରିମନେ ହେଉଥିବା, ସ୍ପନ୍ଦତେ = ସ୍ପନ୍ଦିତହୁଏ, ମାୟୟା = ମାୟା ମାଧ୍ୟମରେ, ମନଃ = ମନ, ତଥା = ସେହିପରି ଜାଗ୍ରତ୍ = ଜାଗ୍ରତ ଅବସ୍ଥାରେ, ଦ୍ୱୟ ଆଭାସମ୍ = ଦ୍ୱୈତ ପରି ମନେହଉଥିବା, ସ୍ପନ୍ଦତେ = ସ୍ପନ୍ଦିତ ହୁଏ, ମାୟୟା = ମାୟା ମାଧ୍ୟମରେ ।

*ମାୟା ଦ୍ୱାରା ସ୍ୱପ୍ନରେ ଦେଖାଯାଉଥିବା ଦ୍ୱୈତଭାବ ଯୋଗୁଁ ସ୍ୱପ୍ନରେ ମନ ସ୍ପନ୍ଦିତ ହେଉଥିବାପରି ଜାଗ୍ରତ ଅବସ୍ଥାରେ ମଧ୍ୟ ମାୟାରେ ସ୍ପନ୍ଦିତ ହେଉଥିବା ମନ ଯୋଗୁଁ ବହୁବିଧ ଜଗତ ଦୃଶ୍ୟ ହୁଏ ॥୨୯॥*

ବିକ୍ଷିପ୍ତମନ ସ୍ୱପ୍ନରେ ଗୋଟିଏ ମାୟାର ସ୍ୱପ୍ନ ଜଗତ ସୃଷ୍ଟି କରିବା ଏବଂ ସ୍ୱପ୍ନଦ୍ରଷ୍ଟା ଏହା ସହିତ ତାଦାତ୍ମ୍ୟ କରି ଏହାକୁ ସତ୍ୟ ବୋଲି ଭାବି ସେଥିରୁ ଅନୁଭୂତି ଆହରଣ କରିବା ପରି ଜାଗ୍ରତ ପୁରୁଷର ମନ ବିକ୍ଷିପ୍ତ ହୋଇ ଗୋଟିଏ ବହୁବିଧ ମାୟା ଜଗତରେ ସ୍ପନ୍ଦିତ ହୁଏ । ସେଥିରୁ ସେହି ସମୟ ପାଇଁ ସତ ମନେ ହେଉଥିବା ଏକ ଜଗତର ଅନୁଭୂତି ସେ ଲାଭ କରେ ।

**ଅଦ୍ୱୟଂ ଚ ଦ୍ୱୟାଭାସଂ ମନଃ ସ୍ୱପ୍ନେ ନ ସଂଶୟଃ ।**

**ଅଦ୍ୱୟଂ ଚ ଦ୍ୱୟାଭାସଂ ତଥା ଜାଗ୍ରନ୍ନ ସଂଶୟଃ ॥୩୦॥**

ଅଦ୍ୱୟଂ = ଅଦ୍ୱୈତ, ଚ = ଏବଂ, କେବଳ, ଦ୍ୱୟ-ଆଭାସମ୍ = ମନେ ହେଉଥିବା ଦ୍ୱୈତର, ମନଃ = ମନ, ସ୍ୱପ୍ନେ = ସ୍ୱପ୍ନରେ , ନ ସଂଶୟଃ = ସନ୍ଦେହ ନାହିଁ, ନିଃସନ୍ଦେହ, ନିଃସନ୍ଦେହ, ଅଦ୍ୱୟଂ ଚ = କେବଳ ଅଦ୍ୱୈତ, ଦ୍ୱୟ ଆଭାସମ୍ = ଦ୍ୱୈତ ପରି ମନେ ହେଉଥିବା, ତଥା = ସେହିପରି , ଜାଗ୍ରତ୍ = ଜାଗ୍ରତ ଅବସ୍ଥାରେ, ନ ସଂଶୟଃ = ସନ୍ଦେହ ନାହିଁ ।

*ଅଦ୍ୱୈତ ମନ ନିଜେ ବହୁବିଧ ଜଗତରେ ପରିଣତ ହୋଇଥିବା ପରି ମନେ ହୁଏ - ଏଥିରେ ସନ୍ଦେହ ନାହିଁ । ସେହିପରି, ଜାଗ୍ରତ ଅବସ୍ଥାରେ ମଧ୍ୟ ଅଦ୍ୱୈତ ସତ୍ୟ ବହୁବିଧ ଜଗତ ପରି ମନେ ହୁଅନ୍ତି ॥୩୦॥*

ତେଣୁ, ପ୍ରତୀୟମାନ ହେଉଥିବା ଏହି ବହୁବିଧ ଜଗତ ପାଇଁ ଯୁକ୍ତିଯୁକ୍ତ ସିଦ୍ଧାନ୍ତ ଏବଂ ଦାର୍ଶନିକ ବ୍ୟାଖ୍ୟା କେବଳ ଏହା ହିଁ ହୋଇପାରେ ଯେ ଏହା ହେଉଛି ମନର

ସ୍ପନ୍ଦନ। ସ୍ୱପ୍ନରେ ଯାହା କିଛି ଦେଖାଯାଏ, ତାହା ସ୍ୱପ୍ନଦ୍ରଷ୍ଟାର ନିଜର ମନ ବ୍ୟତୀତ ଅନ୍ୟ କିଛି ନୁହେଁ।

ସ୍ୱପ୍ନ ଜଗତର ଶିକାରୀ ଏବଂ ଶିକାର, ଦ୍ରଷ୍ଟା ଏବଂ ଦୃଶ୍ୟ, ବାତାବରଣ, ପୃଥିବୀ ଏବଂ ସ୍ୱପ୍ନରେ ଘୂରି ବୁଲୁଥିବା ସ୍ୱପ୍ନଦ୍ରଷ୍ଟାର ଶରୀର ଏସବୁ ସ୍ୱପ୍ନ ଦ୍ରଷ୍ଟାର ମନ ବ୍ୟତୀତ ଅନ୍ୟ କିଛି ନୁହେଁ। ଜାଗ୍ରତ ହେଲେ ସେ ବୁଝିପାରେ ଯେ, ଅଦ୍ୱୈତ ମନ ହିଁ ସ୍ୱପ୍ନ-ଜଗତର ବିଭିନ୍ନ ମାୟା ବିଷୟରେ ବିଭାଜିତ ହୋଇଯାଏ। ସେହିପରି ଆମେ ଜାଗ୍ରତ ହେଲେ ବୁଝି ପାରିବା ଯେ, ଦୃଶ୍ୟମାନ ବହୁବିଧ ଜଗତ ଜାଗ୍ରତ ପୁରୁଷର ନିଜର ଅଜ୍ଞାନତାରେ ବୁଡି ରହିଥିବା ବିକ୍ଷୁବ୍ଧ ମନ ବ୍ୟତୀତ ଅନ୍ୟ କିଛି ନୁହେଁ। ଜଗତର ସ୍ୱପ୍ନରୁ ଶୁଦ୍ଧ ଜ୍ଞାନର ରାଜ୍ୟକୁ ଉତ୍‌ଥିତ ହେଲେ ହିଁ ଆମେ ଏହା ହୃଦୟଙ୍ଗମ କରି ପାରିବା।

**ମନୋ ଦୃଶ୍ୟମିଦଂ ଦ୍ୱୈତଂ ଯତ୍ କିଞ୍ଚିତ୍ ସଚରାଚରମ୍।**

**ମନସୋ ହ୍ୟମନୀଭାବେ ଦ୍ୱୈତଂ ନୈବୋପଲଭ୍ୟତେ ॥୩୧॥**

ମନଃ ଦୃଶ୍ୟମ୍ = ମନର ଦୃଶ୍ୟ, ଇଦମ୍ ଦ୍ୱୈତମ୍ = ଏହି ଦ୍ୱୈତ, ଯତ୍ = ଯାହା, କିଞ୍ଚିତ୍ = ଯାହାହେଲେ ବି, ସ = ସହିତ, ଚର = ଚର, ଗତିଶୀଳ; ଅଚର = ଅଚର, ସ୍ଥାଣୁ, ମନସଃ = ମନ ଯେତେବେଳେ, ହି = ପାଇଁ, ଅମନୀ-ଭାବେ = ଅତୀତ ହୁଏ ବା କାମ କରିବା ବନ୍ଦ କରିଦିଏ, ଦ୍ୱୈତମ୍ = ଦ୍ୱୈତ, ଅର୍ଥାତ୍ ବହୁବିଧତା; ନ ଏବ = ମୋଟେ ନୁହେଁ, ଉପଲଭ୍ୟତେ = ଦେଖାଯାଏ ନାହିଁ।

*ଏହି ଜଗତରେ ଚର ବା ଅଚର ଯାହାସବୁ କିଛି ଦେଖାଯାଏ, ସେସବୁ ମନର ଦୃଶ୍ୟ, ମନ ବ୍ୟତୀତ ଅନ୍ୟ କିଛି ନୁହେଁ। କାରଣ ମନର ଅତୀତ ହେଲେ ବହୁବିଧତା ଦେଖାଯାଏ ନାହିଁ ॥୩୧॥*

ଗୌଡ଼ପାଦ ନମ୍ର ଭାବରେ ବହୁବିଧ ଦୃଶ୍ୟ ଜଗତର ଯେଉଁ ବ୍ୟାଖ୍ୟା କରିଛନ୍ତି, ଏହି ଶ୍ଳୋକରେ ଆମେ ଦେଖିବାକୁ ପାଉ। ଏଠାରେ ସେ କହିଛନ୍ତି ଯେ ବହୁବିଧତା ହେଉଛି ପ୍ରତୀୟମାନ ହେଉଥିବା ମନର ଏକ ଦୃଶ୍ୟ। ବଡ଼ ସାବଧାନତାର ସହିତ ମାୟା ଜଗତରେ ସେ ଉଭୟ ଚର ଏବଂ ଅଚରକୁ ଅନ୍ତର୍ଭୁକ୍ତ କରିଛନ୍ତି । ଚରରେ ସମସ୍ତ ଜୀବ ଜଗତ ଏବଂ ଅଚରରେ ସମସ୍ତ ଜଡ଼ ଜଗତ ଅନ୍ତର୍ଭୁକ୍ତ।

ଜଗତ ହେଉଛି ମନର ଏକ ଦୃଶ୍ୟ- ମହାନ୍ ଆଚାର୍ଯ୍ୟ କେଉଁ ଯୁକ୍ତିର ଭିତ୍ତିରେ ଏହି ବିଶ୍ୱାସ ଉପରେ ଜୋର ଦେଇଛନ୍ତି ? ମନର ଅନୁପସ୍ଥିତିରେ, ଆମ ଅନୁଭୂତିରେ

ବହୁବିଧ ଜଗତ ଆଦୌ ରହେ ନାହିଁ ବୋଲି ସେ ଦେଖାଇ ଦେଇଛନ୍ତି । ପୁନଶ୍ଚ କୌଣସି ବ୍ୟକ୍ତିର ଦୈନନ୍ଦିନ ଅନୁଭୂତିରେ ମଧ୍ୟ ମନ ତତ୍କ୍ଷଣିକ ସମସ୍ୟାରେ ବିଚରଣ କରୁଥିଲେ କିମ୍ବା କଳ୍ପନା ଲୋକରେ ଘୂରି ବୁଲୁଥିଲେ, ସେହି ସମୟରେ ତା ଆଖପାଖରେ ହେଉଥିବା ଘଟଣା ତା ଆଖିରେ ପଡ଼େ ନାହିଁ ଏବଂ ଆମ ସମସ୍ତଙ୍କର ଅନୁଭୂତିରୁ ଏହା ସ୍ପଷ୍ଟ ହୁଏ ଯେ- "ମନ ନଥିଲେ ଜଗତ ନାହିଁ" । ମନ କାମ କରୁନଥିବା ଅବସ୍ଥା (ଅମନୀ-ଭାବ)- ଏହା ଏପରି ଏକ ଅପୂର୍ବ ସୁନ୍ଦର, ଅପାର୍ଥିବ ଉକ୍ତି ଯେ, ଏହାକୁ ଅନୁବାଦ କରିହେବ ନାହିଁ । 'ମନ' ହେଉଛି ମନ ଅ-ମନ, ମନ ନାହିଁ, ଏବଂ ଅ-ମନୀଭାବରେ ଅର୍ଥ ହେଲା, ମନ ନଥିବା (ମନହୀନ) ଅବସ୍ଥା । ଏହି ମନହୀନ ଅବସ୍ଥା ହେଉଛି ଈଶ୍ୱରତ୍ୱ, ମନହୀନ ଅବସ୍ଥାରୁ ଦେଖିଲେ ଅପୂର୍ଣ୍ଣାଙ୍ଗ ବୈଷୟିକ ଜଗତ ଦେଖାଯିବ ନାହିଁ ।

ମନକୁ ବିଲୀନ କରିଦେବା ଯୋଗର ଲକ୍ଷ୍ୟ ବୋଲି ଆମେ ପୂର୍ବରୁ ଦେଖିଛୁ । ଏହି ମନ-ହୀନତାରେ ସମସ୍ତ ଆଧ୍ୟାତ୍ମିକ ସାଧନାର ପରିପୂର୍ଣ୍ଣ ଅବସ୍ଥା । ଏହି ବିଳାସୀ ମନ-ବୁଦ୍ଧି ସାଧନ ଚିରଦିନ ପାଇଁ ନଷ୍ଟ ହୋଇଗଲେ ନଶ୍ୱର ଅବିନଶ୍ୱର ଜଗତରେ ପ୍ରବେଶ କରି ପାରିବ । ମନ ନାଶ ହେବା ପରଠାରୁ ଅତି-ମାନବତ୍ୱର ଆରମ୍ଭ ହେବ ଏବଂ ଏପରି ଏକ ପୂର୍ଣ୍ଣାଙ୍ଗ-ମଣିଷ ପାଇଁ ବହୁବିଧ ବୈଷୟିକ ଜଗତ ବାସ୍ତବ ହୋଇ ପାରିବ ନାହିଁ- କାରଣ, ଜଗତକୁ ସେ ଆଉ କୌଣସି ବିକୃତ ସାଧନ ମାଧ୍ୟମରେ ଦେଖିବ ନାହିଁ । ସେ ତାର ସ୍ୱଚ୍ଛ ଆଧ୍ୟାତ୍ମିକ ଚଷମା ଦେଇ ଦେଖିବ । ଏହି ମନହୀନ ଅବସ୍ଥାରେ କିପରି ଭାବରେ ପହଞ୍ଚିବାକୁ ହେବ, ପରବର୍ତ୍ତୀ ଶ୍ଳୋକରେ ତାର ରହସ୍ୟ କୁହା ଯାଇଛି ।

**ଆତ୍ମସତ୍ୟାନୁବୋଧେନ ନ ସଂକଳ୍ପୟତେ ଯଦା ।**

**ଅମନସ୍ତାଂ ତଦା ଯାତି ଗ୍ରାହ୍ୟାଭାବେ ତଦଗ୍ରହମ୍ ॥୩୨॥**

ଆତ୍ମ-ସତ୍ୟ-ଅନୁବୋଧେନ = ଆତ୍ମା , ସତ୍ୟଙ୍କର ଜ୍ଞାନ ଯୋଗୁଁ; ନ ସଂକଳ୍ପୟତେ = (ମନ) ସଂକଳ୍ପ (କଳ୍ପନା)କରେ ନାହିଁ, ଯଦା = ଯେତେବେଳେ, ଯାତି ଅମନସ୍ତାମ୍ = ମନ ହୋଇ ରହେ ନାହିଁ, ତଦା = ସେତେବେଳେ, ଗ୍ରାହ୍ୟ = ଗ୍ରାହ୍ୟ ବିଷୟ, ଅଭାବେ = ନ ରହିବାରୁ, ତତ୍ = ତାହା(ମନ), ଅଗ୍ରହମ୍ = ଗ୍ରହଣ କରେ ନାହିଁ ।

*ସତ୍ୟର ଜ୍ଞାନ (ଯାହାକି ଆତ୍ମା ବା ଶୁଦ୍ଧ ଚୈତନ୍ୟ) ହେବା ଯୋଗୁଁ ମନ ଯେତେବେଳେ ଭାବନାଶୂନ୍ୟ ହୋଇଯାଏ, ସେତେବେଳେ ତାହା ଆଉ ମନ ହୋଇ ରହେ ନାହିଁ ଏବଂ ଅବଗତ ହେବାକୁ ଥିବା ବିଷୟର ଅଭାବରେ ତାହା (ମନ) ଅବଗତି ହେବାର ଧାରଣାରୁ ମୁକ୍ତ ହୋଇଯାଏ ॥୩୨॥*

ବିବେକର ସହିତ ବାହ୍ୟ ଜଗତରୁ ସମଗ୍ର ଧ୍ୟାନ ଅପସାରିତ କରିଥିବା ଏବଂ ଶରୀର-ମନ-ବୁଦ୍ଧି ସହିତ ସମସ୍ତ ତାଦାତ୍ମ୍ୟ ଦୂର କରିଥିବା ବ୍ୟକ୍ତି ତାର ଆଧ୍ୟାତ୍ମିକ ବ୍ୟକ୍ତିତ୍ୱକୁ ଚିହ୍ନିପାରେ । ଏହି ଆଧ୍ୟାତ୍ମିକ ସଚେତନ-ଶୀଳତାରୁ ଜଗତକୁ ଚାହିଁଲେ, ସେ ନିଜେ ହିଁ ସର୍ବବ୍ୟାପୀ ସତ୍ୟ ହୋଇଥିବାରୁ ନିଜ ବ୍ୟତୀତ ଅନ୍ୟ କିଛି ପଦାର୍ଥ ଦେଖିପାରେ ନାହିଁ । ତେଣୁ କୌଣସି ବ୍ୟକ୍ତି ନିଜର ସ୍ୱରୂପର ଆବିଷ୍କାର କଲେ ମନାତୀତ ହୋଇ ଯାଏ, ଅନ୍ୟ କଥାରେ କହିଲେ, ସେ 'ଈଶ୍ୱରତ୍ୱ ଭାବ' ବା ମନ-ହୀନ ଅବସ୍ଥା ଲାଭ କରେ ।

ଆତ୍ମାନୁଭୂତି ମନ-ହୀନ ଅବସ୍ଥା ବୋଲି ଆମେ କାହିଁକି କହୁଁ? ଗୌଡ଼ପାଦ ଏହାର କାରଣ ବ୍ୟାଖ୍ୟା କରିଛନ୍ତି । ସେ କହିଛନ୍ତି ଯେ, ଦୃଶ୍ୟ-ପଦାର୍ଥ ଥିଲେ ହିଁ କେବଳ ମନ ଏବଂ ତାର ବ୍ୟକ୍ତିତ୍ୱର ସ୍ଥିତି ଥାଏ । ପରେ ଚତୁର୍ଥ ପ୍ରକରଣରେ ଏହି ଯୁକ୍ତିର ଏକ ବିଶଦ ବ୍ୟାଖ୍ୟା ଦିଆଯିବ, କିନ୍ତୁ ବର୍ତ୍ତମାନ ପାଇଁ ଏତିକି ବୁଝିଲେ ଯଥେଷ୍ଟ ହେବ ଯେ, ମନ ପାଞ୍ଚୋଟି ଜ୍ଞାନେନ୍ଦ୍ରିୟର 'କେନ୍ଦ୍ର ବିନ୍ଦୁ' ବ୍ୟତୀତ ଅନ୍ୟ କିଛି ନୁହେଁ । ଜ୍ଞାନେନ୍ଦ୍ରିୟ କୌଣସି ଇନ୍ଦ୍ରିୟ ପଦାର୍ଥର ଉପଭୋଗ ନ କଲେ 'କେନ୍ଦ୍ରବିନ୍ଦୁ'ଶୂନ୍ୟ ହୋଇଯାଏ । ଶୂନ୍ୟ ମନ ହେଉଛି 'ଅ-ମନ', ତେଣୁ ଚେତନା, ଚେତନା ବ୍ୟତୀତ ଅନ୍ୟ କିଛି ନ ଦେଖୁଥିବା ବେଳେ, ଚୈତନ୍ୟର ସେହି ଅବସ୍ଥାରେ ମନ ରହି ପାରିବ ନାହିଁ ।

**ଅକଳ୍ପକମଜଂ ଜ୍ଞାନଂ ଜ୍ଞେୟାଭିନ୍ନଂ ପ୍ରଚକ୍ଷତେ ।**

**ବ୍ରହ୍ମଜ୍ଞେୟମଜଂ ନିତ୍ୟମଜେନାଜଂ ବିବୁଧ୍ୟତେ ॥୩୩॥**

**ଅକଳ୍ପମ୍ = କଳ୍ପନା ମୁକ୍ତ, ଅଜମ୍ = ଅଜ, ଜ୍ଞାନମ୍ = ଜ୍ଞାନ, ଜ୍ଞେୟ = ଜ୍ଞେୟ (ବ୍ରହ୍ମ), ଅଭିନ୍ନମ = ଅଭିନ୍ନ, ଭିନ୍ନ ନୁହେଁ, ପ୍ରଚକ୍ଷତେ = (ଜ୍ଞାନୀମାନେ) କହନ୍ତି, ବ୍ରହ୍ମ = ବ୍ରହ୍ମ, ଜ୍ଞେୟଂ = ଜ୍ଞେୟ, ଅଜମ୍ = ଅଜ, ନିତ୍ୟମ୍ = ନିତ୍ୟ, (ଅବିକାରୀ), ଅଜେନ = ଅଜନ୍ମ ଯୋଗୁଁ (ଜ୍ଞାନ), ଅଜମ୍ = ଅଜ (ଆତ୍ମା), ବିବୁଧ୍ୟତେ = ପରିଚିତ ଜଣାଯାଏ ।**

*ଅଜ ଏବଂ କଳ୍ପନାମୁକ୍ତ ଜ୍ଞାନ ଜ୍ଞେୟ (ବ୍ରହ୍ମ) ଠାରୁ ଅଭିନ୍ନ । ଅବିକାରୀ (ନିତ୍ୟ) ଏବଂ ଅଜ ବ୍ରହ୍ମ ହେଉଛନ୍ତି ଜ୍ଞାନର ଏକମାତ୍ର ବିଷୟ, ଏବଂ ଅଜ (ଆତ୍ମା) ଅଜ (ଜ୍ଞାନ) ଦ୍ୱାରା ଜଣା ପଡ଼ିଥାନ୍ତି ବୋଲି ଅଜ(ଜ୍ଞାନୀ) କହନ୍ତି ॥୩୩॥*

ଏହି ଶ୍ଳୋକରେ ଗୌଡ଼ପାଦ ଉଚ୍ଚତମ ସତ୍ୟଙ୍କୁ ତାଙ୍କ ଭାଷା ଜାଲରେ ପ୍ରାୟ ଧରି ପକେଇଛନ୍ତି । ଅସମ୍ଭବକୁ ସେ ପ୍ରାୟ ସମ୍ଭବ କରି ଦେଇଛନ୍ତି । ଯେଉଁସବୁ ଧାରଣା ଅନୁଭୂତି ଜଗତର ଏବଂ ପ୍ରକାଶ କରି ପାରିବା ଜଗତର ନୁହେଁ ବୋଲି ସାଧାରଣତଃ ଯାହା ବିଚାର କରାଯାଇଥାଏ ସେ ସେସବୁକୁ ପ୍ରକାଶ କରିପାରିଛନ୍ତି ।

ଏହି ଶ୍ଳୋକରେ ପ୍ରକାଶ କରା ଯାଇଥିବା ଶୁଦ୍ଧ-ଚୈତନ୍ୟଙ୍କର ନିର୍ବିକଳ୍ପ ଜ୍ଞାନର ସଂଜ୍ଞା ଅନ୍ୟ ଶାସ୍ତ୍ରୀୟ ସାହିତ୍ୟ ତୁଳନାରେ ପ୍ରାୟ ଅତୁଳନୀୟ। ଅନ୍ୟ କୌଣସି ମହାନ ଆଚାର୍ଯ୍ୟ ଏକ ମହାନ ବିଷୟକୁ ଅଧିକ ମହାନ ଭାବରେ ଫଳପ୍ରଦ କରିପାରି ନାହାଁନ୍ତି।

ସର୍ବବ୍ୟାପୀ ଚୈତନ୍ୟ ସମସ୍ତ ଗୁଣର ଅତୀତ ବୋଲି ସାଧାରଣତଃ ବିଚାର କରା ଯାଇଥାଏ। ତେଣୁ ତାଙ୍କୁ ବୈଷୟିକ ବିଷୟର ଅନ୍ତର୍ଗତ କରିହେବ ନାହିଁ। ଏପରିକି ଶ୍ରୁତି ମଧ୍ୟ ଏହାଙ୍କୁ ନିର୍ଦ୍ଦିଷ୍ଟ ଭାବରେ ପ୍ରକାଶ କରିବାକୁ ସାହାସ କରି ନାହାଁନ୍ତି। କିନ୍ତୁ ବଦ୍ରିନାଥର ମହାନ୍ ଆଚାର୍ଯ୍ୟ ଅନିର୍ବଚନୀୟଙ୍କୁ ପ୍ରକାଶ କରିବା ପାଇଁ ତାଙ୍କର ପରମ ଅନୁଭୂତିରେ ଭାଷା ପାଇ ପାରିଛନ୍ତି।

ଦର୍ଶନରେ ବ୍ୟବହୃତ ଜ୍ଞାନ ଆମ ଦୈନନ୍ଦିନ ଜୀବନର ବାର୍ତ୍ତାଳାପରେ ବ୍ୟବହାର କରାଯାଉଥିବା ଜ୍ଞାନ ସହିତ ସମାନ ନୁହେଁ। ବିଷୟ ଜଗତରେ 'ଜ୍ଞାନ'ର ଅର୍ଥ ବସ୍ତୁମାନଙ୍କର ଜ୍ଞାନ ଭାବେ ଆମେ ବୁଝିଥାଉ। ଦେଖୁଥିବା, ଶୁଣୁଥିବା, ସ୍ପର୍ଶକରୁଥିବା ବସ୍ତୁମାନଙ୍କର ନାମ-ରୂପ ଦ୍ୱାରା ଏହି ଜ୍ଞାନ ଗୁଣଯୁକ୍ତ ହୋଇଥାଏ। ବସ୍ତୁ ବଦଳିବା ସହ ଗୁଣଯୁକ୍ତ ଜ୍ଞାନ ପରିବର୍ତ୍ତିତ ହୋଇଥାଏ। ଆଚାର୍ଯ୍ୟ ଏଠାରେ ସର୍ବବ୍ୟାପୀ ନିର୍ବିକଳ୍ପ ଜ୍ଞାନ ବ୍ୟାଖ୍ୟା କରିବା ପାଇଁ ହିଁ ଚେଷ୍ଟା କରିଛନ୍ତି।

ଏହାର କିଛି ସମାନୁରୂପତା ସାହାଯ୍ୟରେ ବ୍ୟାଖ୍ୟା କଲେ ଏହା ସ୍ପଷ୍ଟ ହେବ। ବିଭିନ୍ନ ଆକାର ବିଭିନ୍ନ ରଙ୍ଗର ବିଭିନ୍ନ ବୋତଲରେ ଆମେ ସେହି ଏକା ପାଣି ପୂରେଇ ପାରିବା, ପାଣି ଅଲଗା ଅଲଗା ବୋତଲରେ ରହିବାରୁ ପ୍ରତ୍ୟେକଟି ବୋତଲର ପାଣିର ରଙ୍ଗ ଏବଂ ଆକାର ଅନ୍ୟ ବୋତଲ ଠାରୁ ଅଲଗା ହେବ। କିନ୍ତୁ ଏମିତିରେ ପାଣିକୁ ବୁଝିବାକୁ ହେଲେ 'ନୀଳ ପାଣି' ବା 'ଡେଙ୍ଗା ପାଣି ବୋତଲ' ବୁଝିବା ଦରକାର ନାହିଁ। ପାଣିର ରଙ୍ଗ ନୀଳ ତ ନୁହେଁ କିମ୍ବା ପାଣି ଡେଙ୍ଗା ମଧ୍ୟ ନୁହେଁ। ସେହିପରି ଆମେ ବସ୍ତୁ ବିଷୟରେ କେବଳ ସଚେତନ, କିମ୍ବା ଗୋଟିଏ ବସ୍ତୁରୁ ଅଲଗା ଅନ୍ୟ ବସ୍ତୁର 'ଜ୍ଞାନ' ବିଷୟରେ କେବଳ ଜାଣୁଁ। କିନ୍ତୁ ଏଠାରେ ଆମକୁ ନିର୍ବିକଳ୍ପ ଜ୍ଞାନ ବା ଶୁଦ୍ଧ ଚୈତନ୍ୟଙ୍କୁ ଦେଖାଇ ଦେବାର ଚେଷ୍ଟା କରାଯାଇଛି। ଏହି ଧାରଣାକୁ ଭଲ ଭାବରେ ବୁଝି ପାରିଲେ ଶ୍ଳୋକଟି ନିଜେ ନିଜକୁ ବୁଝାଇ ଦିଏ।

ଅବିକାରୀ ଏବଂ ସମସ୍ତ ପ୍ରକାର କଳ୍ପନାରୁ ମୁକ୍ତ ଜ୍ଞାନ ହିଁ ଶୁଦ୍ଧ-ଚୈତନ୍ୟ। ଏହି ଶୁଦ୍ଧ-ଚୈତନ୍ୟ ହିଁ ସବୁ ପ୍ରକାର ପ୍ରାଣୀଙ୍କର ଜୀବନର କେନ୍ଦ୍ର। ମନ ସ୍ତରରେ ବିକ୍ଷେପ ହିଁ କଳ୍ପନା ଭାବରେ ପ୍ରକାଶ ପାଇଥାଏ ଏବଂ ପରିଚ୍ଛିନ୍ନ ଚୈତନ୍ୟ ମନୋବୃତ୍ତି ଦ୍ୱାରା ବିକ୍ଷିପ୍ତ

ହୋଇଯାଏ। ଚୈତନ୍ୟ ବିଷୟରେ ସଚେତନ ନହୋଇ ଆମେ 'ମନୋବୃତ୍ତିର ସଚେତନତା' ଅନୁଭବ କରୁ। ମନୋବୃତ୍ତି ପ୍ରତ୍ୟେକ ମୁହୂର୍ତ୍ତରେ ବଦଳୁଥାଏ ଏବଂ ପ୍ରତିଟି ସମୟରେ ଆମେ କେବଳ ସେହି ମୁହୂର୍ତ୍ତର ମନୋବୃତ୍ତିର 'ସଚେତନତା' ବୁଝିପାରୁ। ସଚେତନତାର ସ୍ୱରୂପକୁ ହିଁ ବୁଝାଇବାର ଚେଷ୍ଟା କରାଯାଇଛି। ତେଣୁ ମନରେ କୌଣସି ବୃତ୍ତି ନଥିଲେ ଚେତନଶୀଳତା ନିଜେ ନିଜ ଭିତରେ ଜାକିଜୁକି ହୋଇ ରହିଯାଏ ଏବଂ ନିଜକୁ ଜାଣି ଏହା ଏକ ଅବିକାରୀ, ନିର୍ବିକଳ୍ପ ଜ୍ଞାନ ଘନ ଭାବରେ ରହେ।

କୌଣସି ପଦାର୍ଥର ଜ୍ଞାନ ବିଷୟରେ କହିବାବେଳେ, ସାଧାରଣତଃ ଜ୍ଞାନ ସ୍ଥାନ ପରିବର୍ତ୍ତନ କରିଥିବା ପରି ହୋଇଥାଏ, ଏବଂ ଦୃଶ୍ୟ ପଦାର୍ଥକୁ ଢ଼ାଙ୍କି ଦେଇ ନିଜେ ପ୍ରତିଫଳିତ ହୋଇଥାଏ ଏବଂ ଆମର କୌଣସି ପଦାର୍ଥ ଜ୍ଞାନ ଅଛି ବୋଲି ଆମେ କହିଥାଉ। ପ୍ରକୃତରେ ଫୁଲଟିଏକୁ ଦେଖିବାପାଇଁ ମୋର ଚୈତନ୍ୟ ବାହାରି ଆସିବାବେଳେ, ଫୁଲଟିକୁ ଜାଣିବା ମୁହୂର୍ତ୍ତରେ ଫୁଲ ମୋର ଜ୍ଞାନଠାରୁ ଭିନ୍ନ ହୋଇପାରିବ ନାହିଁ। ପ୍ରକୃତରେ ମୋର ଚୈତନ୍ୟ ବାହାରି ଆସି ଫୁଲରେ ବ୍ୟାପ୍ତ ହୁଏ ଏବଂ ଫୁଲଦ୍ୱାରା ପରିଚ୍ଛିନ୍ନ ମୁଁ କହେ ଯେ ମୁଁ ଫୁଲଟିକୁ ଜାଣେ। ମୋପାଇଁ ଭିତରର ଫୁଲର ଜ୍ଞାନ ଏବଂ ବାହାରର ଫୁଲ ଏକା ସମୟରେ ରହି ପାରିବ ନାହିଁ। ମୁଁ ଫୁଲଟିକୁ "ଜାଣିବାବେଳେ" ମୋପାଇଁ ଫୁଲଟି ମୋ ଜ୍ଞାନରୁ ପୃଥକ କିଛି ବସ୍ତୁ ଭାବରେ ରହି ପାରିବ ନାହିଁ, କିନ୍ତୁ ଏହା ମାତ୍ର ମୁହୂର୍ତ୍ତକ ପାଇଁ ହୋଇଥିବାରୁ ସାଧାରଣତଃ ମୁଁ ଏହା ଜାଣିପାରେ ନାହିଁ ଏବଂ ବାସ୍ତବରେ ବୁଝିପାରେ ନାହିଁ।

ଏହି ମହାନ୍ ସତ୍ୟ ଅନ୍ୟ ଶାସ୍ତ୍ରରେ ମଧ୍ୟ ବିଶେଷ ଭାବରେ ଆଲୋଚିତ ହୋଇଛି। ପ୍ରେତର ସ୍ୱସ୍ୱରୂପ ବୁଝିବା ମୁହୂର୍ତ୍ତରେ ତାହା ଖମ୍ୱରେ ମିଳେଇ ଯାଏ ଏବଂ ଆମର ଜ୍ଞାନ ପୂର୍ଣ୍ଣ ହୋଇଯାଏ। ସେହିପରି, ପୃଥିବୀର ସମସ୍ତ ପଦାର୍ଥ ବିଲୀନ ହୋଇଗଲେ ଜ୍ଞାନ ପରିପୂର୍ଣ୍ଣ ହୋଇଯାଏ। ତେଣୁ ମନ ଯେତେବେଳେ ବାହ୍ୟ ବିଷୟଜଗତକୁ ଚିହ୍ନି ପାରେ ନାହିଁ, ଯେତେବେଳେ ମନର ବୃତ୍ତି ନଥାଏ, ଆତ୍ମା ମଗ୍ନ ହୋଇଯାଏ, ମନ ଜଗତ ଉପରେ ବିଜୟ ଲାଭ କରେ। ଆତ୍ମା ଦ୍ୱାରା ବିଷୟର ବିଜୟ ମୁହୂର୍ତ୍ତଟି ହେଉଛି ଆତ୍ମାନୁଭୂତିର ମୁହୂର୍ତ୍ତ ।

ଆତ୍ମାନୁଭୂତି ମୁହୂର୍ତ୍ତରେ ଚେତନତା ନିଜେ ନିଜ ଭିତରେ ଜାକି ହୋଇଗଲା ବେଳେ ମନ ହିଁ ରହେ। କୌଣସି ବିଷୟ ନଥିଲେ 'ମନ' ପଦର କୌଣସି ଅର୍ଥ ନାହିଁ। ତେଣୁ ସନ୍ଦେହ ଉଠେ, କେଉଁ ବିଷୟରେ ନିର୍ବିକଳ୍ପ ମନ ପ୍ରକାଶିତ ହେବ ?

ଆଚାର୍ଯ୍ୟ ଉତ୍ତର ଦେଇଛନ୍ତି ଯେ, ବିଷୟଟି ବ୍ରହ୍ମଙ୍କ ବ୍ୟତୀତ ଅନ୍ୟ କିଛି ନୁହେଁ। ଏହାର ଅର୍ଥ ହେଲା, ମନ ଦ୍ୱାରା ମନକୁ ଚିହ୍ନିବାର ସେହି ମୁହୂର୍ତ୍ତରେ ମନକୁ ଦେଖିବା ପାଇଁ ମନ ବ୍ୟତୀତ ସେଠାରେ ଅନ୍ୟ କୌଣସି ବିଷୟ ନଥାଏ। ଆତ୍ମା ଆତ୍ମାଙ୍କୁ ଦେଖନ୍ତି। ତେଣୁ ଆଚାର୍ଯ୍ୟ କହିଛନ୍ତି ଯେ, ଅଜ ହିଁ କେବଳ ଅଜକୁ ଜାଣି ପାରିବ। ନଶ୍ୱର କଦାପି ଅବିନଶ୍ୱର ହୋଇ ପାରିବ ନାହିଁ। ଅବିନଶ୍ୱର ହିଁ ନିଜେ ଅବିନଶ୍ୱର ବୋଲି ଆବିଷ୍କାର କରନ୍ତି। ବ୍ରହ୍ମଙ୍କ ବିଷୟରେ ମନ ଅନୁଭବ କରି ପାରିବ ନାହିଁ ଏବଂ ବୁଦ୍ଧି ଚିନ୍ତା କରିପାରିବ ନାହିଁ। ମନ ଏବଂ ବୁଦ୍ଧିର ଅତୀତ ହେଲେ ଜୀବ ପରମାତ୍ମାଙ୍କ ସହିତ ତାର ତାଦାତ୍ମ୍ୟର ଆବିଷ୍କାର କରେ।

**ନିଗୃହୀତସ୍ୟ ମନସୋ ନିର୍ବିକଲ୍ପସ୍ୟ ଧୀମତଃ।**

**ପ୍ରଚାରଃ ସ ତୁ ବିଜ୍ଞେୟଃ ସୁଷୁପ୍ତେଽନ୍ୟୋ ନ ତତ୍‌ସମଃ ॥୩୪॥**

ନିଗୃହୀତସ୍ୟ = ତାହା ପୂର୍ଣ୍ଣ ନିୟନ୍ତ୍ରଣରେ, ମନସଃ = ମନର, ନିର୍ବିକଳ୍ପସ୍ୟ = ସମସ୍ତ କଳ୍ପନାରୁ ଯାହା ମୁକ୍ତ, ଧୀମତଃ = ଧୀମତି (ବିବେକ ଦ୍ୱାରା ହୋଇଥିବା ବିଚାର ଶକ୍ତି), ପ୍ରଚାରଃ = ଅବସ୍ଥା, ସଃ ତୁ = କିନ୍ତୁ ତାହା , ବିଜ୍ଞେୟଃ = ଜଣାଯିବା କଥା, ସୁଷୁପ୍ତେ = ସୁଷୁପ୍ତିରେ, ଅନ୍ୟଃ = ଅନ୍ୟ, ନ ତତ୍ ସମଃ = ତାହାପରି ନୁହେଁ(ଶାନ୍ତ, ସମାହିତ ମନର)।

*ସଂକଳ୍ପମୁକ୍ତ, ବିବେକୀ, ସଂଯମୀ ମନର ବ୍ୟବହାର ଜାଣିବାକୁ ହେବ। ସୁଷୁପ୍ତି ଅବସ୍ଥାରେ ମନର ଅବସ୍ଥା ସଂପୂର୍ଣ୍ଣ ଅନ୍ୟ ପ୍ରକାର ଏବଂ ଏହା, ତାହା (ଶାନ୍ତ, ସମାହିତ ମନ) ପରି ନୁହେଁ ॥୩୪॥*

ଏପର୍ଯ୍ୟନ୍ତ ଆଚାର୍ଯ୍ୟଙ୍କ ପ୍ରବଚନ ଶୁଣୁଥିବା ଲୋକଙ୍କ ମନରେ ଗୋଟିଏ ସନ୍ଦେହ ଉଠିପାରେ ଯେ, ଆଚାର୍ଯ୍ୟ କଣ ଅତି ପରିଚିତ ମନର ସୁଷୁପ୍ତି ଅବସ୍ଥା କଥା କହିଛନ୍ତି ? କାରଣ ଏପର୍ଯ୍ୟନ୍ତ ଆମକୁ କୁହାଯାଇଛି ଯେ ପରମ ଚୈତନ୍ୟ ଏପରି ଏକ ଅବସ୍ଥା, ମନ ଯେଉଁଠାରେ କୌଣସି ବାହ୍ୟ ଦୃଶ୍ୟ ପଦାର୍ଥ ଗ୍ରହଣ କରେ ନାହିଁ ଏବଂ ତାହା କେବଳ ନିଜ ସମ୍ବନ୍ଧରେ ସଚେତନ ଥାଏ। ଭ୍ରାନ୍ତ ମଣିଷମାନେ ଏହି ପ୍ରକାରର ଏକମାତ୍ର ଅନୁଭୂତି ପାଇଥାନ୍ତି, ତାହା ହେଉଛି ସୁଷୁପ୍ତିର ଅନୁଭୂତି। ଏହି ଅବସ୍ଥାରେ ଜାଗ୍ରତ ଏବଂ ସ୍ୱପ୍ନର ବହୁବିଧ ଜଗତ ଦେଖିହୁଏ ନାହିଁ। ଶିଷ୍ୟମାନଙ୍କ ମନରୁ ଏପରି ଭୁଲ ବୁଝାମଣା ଦୂର କରିବା ପାଇଁ ଭଗବାନ ଏଠାରେ ଚୈତନ୍ୟର ସୁଷୁପ୍ତି ଅବସ୍ଥାରୁ ଆତ୍ମଭାବ ସଂପୂର୍ଣ୍ଣ ଭିନ୍ନ ହେବା ଅବସ୍ଥାର ବ୍ୟାଖ୍ୟା କରୁଛନ୍ତି।

କାରିକା ହେଉଛି ମାଣ୍ଡୁକ୍ୟ ଉପନିଷଦ୍ ଉପରେ ଲିଖିତ ଏକ ଟୀକା-ସଂଗ୍ରହ ବୋଲି ଆମର ଭୁଲିଯିବା ଉଚିତ ନୁହେଁ। ଶାସ୍ତ୍ର ଦ୍ୱାରା ଚେତନାର ତିନି ସ୍ତର, ଜାଗ୍ରତ ସ୍ୱପ୍ନ ଏବଂ ସୁଷୁପ୍ତି ବିଷୟରେ ଆମକୁ କୁହାଯାଇଛି। ତୂରୀୟ ନାମକ ଚେତନାର ଚତୁର୍ଥ ଏକ ସ୍ତର ଅଛି ବୋଲି ଋଷି ସୂଚାଉଛନ୍ତି। ଏହି ସ୍ତରରେ ପହଞ୍ଚିଲେ ଆତ୍ମାନୁଭବୀ ବ୍ୟକ୍ତି ବହୁବିଧ ଜଗତକୁ ଆଉ ଜାଣି ପାରିବେ ନାହିଁ। ତୂରୀୟ ଅବସ୍ଥାଟି ବାସ୍ତବରେ କଣ, ଏଠାରେ ତାହା ଦେଖାଇ ଦିଆଯାଇଛି।

ଉପନିଷଦ୍‌ର ୭ମ ଶ୍ଳୋକରେ ଖଣ୍ଡନ-ମଣ୍ଡନ ଭାଷାରେ ଶ୍ରୁତି ତୂରୀୟର ସ୍ୱରୂପ ଉପରେ ଜୋର ଦେଇଛନ୍ତି। କିନ୍ତୁ ଆମର ମନ ଏବଂ ବୁଦ୍ଧି ପୂର୍ଣ୍ଣାଙ୍ଗ ହୋଇ ନଥିବାରୁ ଆମମାନଙ୍କ ଭିତରୁ କେତେକ ହୁଏତ ଏହାକୁ ଠିକ ଭାବରେ ବୁଝି ନଥିବେ। ଏହି ତୂରୀୟ ଅବସ୍ଥାଟି କଣ ବୋଲି ଅନ୍ତତଃ ଏକ ବୌଦ୍ଧିକ ଧାରଣା କରିବା ପାଇଁ ଏହି ଶ୍ଳୋକର ଉକ୍ତି ନିଷ୍ଠାର ସହିତ ବୁଝିବାକୁ ହେବ। ଧ୍ୟାନ ସମୟରେ ମନ ସ୍ୱାଭାବିକଭାବେ ପୂର୍ଣ୍ଣ ନିୟନ୍ତ୍ରଣରେ ରହିବ, କିନ୍ତୁ ସେହି ମାନସିକ ନିୟନ୍ତ୍ରଣ ମନର କୌଣସି କାର୍ଯ୍ୟକଳାପକୁ ଦାବି ଦେବା ଉଚିତ ହେବ ନାହିଁ।

ଈଶ୍ୱରତ୍ୱର ପୂର୍ଣ୍ଣାଙ୍ଗତାରେ ପହଞ୍ଚିବା ପାଇଁ ମନକୁ ଦାବିଦେବା ଉପାୟ ନୁହେଁ। ଆତ୍ମ-ବିନାଶକାରୀ ସଂକଳ୍ପରୁ ମନକୁ ନିବୃତ୍ତ କରିବା ପାଇଁ ବିବେକର ବ୍ୟବହାର କରିବାକୁ ହେବ। ବୁଦ୍ଧି ଦ୍ୱାରା ନିୟନ୍ତ୍ରିତ ନକରି ମନକୁ ଜବରଦସ୍ତି ହଠାତ୍ ସ୍ଥଗିତ କରିଦେବାକୁ ହେବ ନାହିଁ। ବୌଦ୍ଧିକ ବିବେକ ଏବଂ ଦୃଢ ବିଶ୍ୱାସର ଫଳସ୍ୱରୂପ ହିଁ ମନର ଅପସାରଣ କରିବାକୁ ହେବ। ଶୁଦ୍ଧ ବୁଦ୍ଧି ଦ୍ୱାରା ନିୟନ୍ତ୍ରିତ ମନ ହିଁ କେବଳ ଆମକୁ ଆଧ୍ୟାତ୍ମିକ ପୂର୍ଣ୍ଣାଙ୍ଗତାର ରାଜ୍ୟକୁ ନେଇପାରିବ।

ଏହି କାରଣ ପାଇଁ ହିଁ ପ୍ରଭୁ ପାର୍ଥସାରଥୀ ଅର୍ଜୁନଙ୍କ ରଥର ପାଞ୍ଚଟି ଘୋଡ଼ାଙ୍କର ଲଗାମ ଧରିଥିବାର ବର୍ଣ୍ଣନା ଆମେ ପାଇଥାଉ। କଠ ଉପନିଷଦ୍‌ର ପରିପ୍ରେକ୍ଷୀରେ ଏହି ଚିତ୍ରକୁ ଦେଖିଲେ ସାରଥୀ ଶୁଦ୍ଧ ବୁଦ୍ଧିର ପ୍ରତିନିଧିତ୍ୱ କରେ ବୋଲି ବୁଝି ପାରିବା। ତେଣୁ ଜଣେ ସାଧକ ଶୁଦ୍ଧ ବୁଦ୍ଧି ସାହାଯ୍ୟରେ ନିୟନ୍ତ୍ରିତ ମନ ଦ୍ୱାରା ପାଞ୍ଚ ଜ୍ଞାନ ଇନ୍ଦ୍ରିୟଙ୍କୁ ନିୟନ୍ତ୍ରିତ କଲେ ହିଁ କେବଳ ଅସୀମକୁ ନିରାପଦରେ ଯାତ୍ରା କରି ପାରିବେ।

ବର୍ଷ ବର୍ଷ ଧରି ଧ୍ୟାନକରିବା ପରେ ଅନେକ ସାଧକ ନିଜେ ଭ୍ରଷ୍ଟ ହୋଇଛନ୍ତି ଏବଂ ତାଙ୍କର ଅଗ୍ରଗତି ହେଉ ନାହିଁ ବୋଲି ଅନୁଭବ କରିବାର ଏହା ହିଁ ହେଉଛି କାରଣ। ମନକୁ ସେମାନେ ବରାବର ଜୋର କରି ନିୟନ୍ତ୍ରଣ କରିବାକୁ ଚାହାଁନ୍ତି,

ପରିଶେଷରେ ମନକୁ ନାଶ ନକରି ଦମନ କରିବାରେ ସଫଳ ହୁଅନ୍ତି। ଏହା ହିଁ ଅସୁବିଧାର କଥା। ଯୋଗୀମାନଙ୍କ ସମ୍ବନ୍ଧରେ ଏପରି ଅନେକ ଦୁଃଖଦ ଘଟଣା ଘଟିଛି। ନିରୋଳା ଗୁମ୍ଫାରେ ପୂର୍ଣ୍ଣାଙ୍ଗ ସାଧନାରେ ସେମାନେ ବର୍ଷ ବର୍ଷ ଧରି ରହିବା ପରେ, ଗୁମ୍ଫାକୁ ଯିବାବେଳ ଅପେକ୍ଷା ଅଧିକ କାମୁକ, ପ୍ରତିହିଂସା ପରାୟଣ, ଅହଙ୍କାରୀ, କ୍ରୋଧୀ ପାଷାଣ୍ଡ ଭାବରେ ବାହାରନ୍ତି।

ଜବରଦସ୍ତି ଦମନକରି ମନର ଆକାର-ପ୍ରକାରକୁ ବିକୃତ କରିବାର ଏହା କେତୋଟି ଉଦାହରଣ। ଆଚାର୍ଯ୍ୟ ଏଠାରେ ସାଧକମାନଙ୍କୁ ଏହି ବିପଦ ସମ୍ବନ୍ଧରେ ସଚେତନ କରି ଦେଉଛନ୍ତି ଏବଂ କହୁଛନ୍ତି ଯେ ବିବେକୀ ବୁଦ୍ଧିକୁ ପ୍ରୟୋଗ କରି ମନର ସମସ୍ତ କଳ୍ପନାକୁ ଧୀରେ ଧୀରେ ଏବଂ ଦୃଢ ଭାବରେ ଅପସାରିତ କରିବାକୁ ହେବ।

ବିବେକ ସାହାଯ୍ୟରେ ମନକୁ ଏହିପରି ଭାବରେ ନିୟନ୍ତ୍ରିତ କଲେ ଏହା ନାଶ ହେବାର ଅବସ୍ଥାଟି ସୁଷୁପ୍ତିର ଜଡ଼, ପ୍ରାଣହୀନ ଅବସ୍ଥା ପରିନୁହେଁ। ସୁଷୁପ୍ତି ଅବସ୍ଥାରେ ମନ ନିଶ୍ଚିତ ଭାବରେ କାର୍ଯ୍ୟ କରୁ ନଥାଏ, କିନ୍ତୁ ତଥାପି ଏପରି ଏକ ଅପାରଗ ଅବସ୍ଥାରେ ହିଁ ମନ କେବଳ ସେହି ସମୟ ପାଇଁ ତାର ବାସନା ସହିତ ଅଜ୍ଞାନରେ ବୁଡ଼ି ଯାଇଥାଏ। କିନ୍ତୁ ସଚେତନ ଭାବେ ମନ ଶୁଦ୍ଧ ହେଲେ ନାଶ ହୋଇଯାଏ ଏବଂ ଯାହା ରହେ ତାହା ଅଜ୍ଞାନର ଜ୍ଞାନ ନହୋଇ ଜ୍ଞାନର ଜ୍ଞାନ ହୋଇଯାଏ। ଏହା ସୁଖର ନିଷେଧାତ୍ମକ ସ୍ଥିତି ନୁହେଁ, ବରଂ ଆନନ୍ଦ ଭାବରେ ଅନୁଭୂତ ବିଧେୟାତ୍ମକ ଗତିଶୀଳତା ଭାବରେ ମନେ ରହେ।

**ଲୀୟତେ ହି ସୁଷୁପ୍ତେ ତନ୍ନିଗୃହୀତଂ ନ ଲୀୟତେ।**

**ତଦେବ ନିର୍ଭୟଂ ବ୍ରହ୍ମ ଜ୍ଞାନାଲୋକଂ ସମନ୍ତତଃ ॥୩୫॥**

ଲୀୟତେ = ଅଜ୍ଞାନରେ ବୁଡ଼ିଯିବା, ହି = ପାଇଁ, ସୁଷୁପ୍ତେ = ସୁଷୁପ୍ତିରେ , ନିଦ୍ରାରେ, ତତ୍ = ତାହା(ମନ), ନିଗୃହୀତମ୍ = ଶୃଙ୍ଖଳିତ (ବିବେକରୁ ଉଦ୍ଭୂତ ଜ୍ଞାନ ମାଧ୍ୟମରେ), ଲୀୟତେ = ପ୍ରତ୍ୟାହୃତ ହୋଇ ନଥିବା; ତତ୍ ବ୍ରହ୍ମ ଏବ = ତାହା(ମନ) ନିଜେ ହିଁ ବ୍ରହ୍ମ, ନିର୍ଭୟମ = ନିର୍ଭୟ, ଭୟହୀନ, ଜ୍ଞାନ ଆଲୋକମ୍ = ଜ୍ଞାନାଲୋକ ଥିବା, ସମନ୍ତତଃ = ଚାରିଆଡେ।

*ସୁଷୁପ୍ତି ଅବସ୍ଥାରେ ମନକୁ କେବଳ ପ୍ରତ୍ୟାହାର କରି ନିଆ ଯାଇଥାଏ ବା ଏହା ଅଜ୍ଞାନରେ ବୁଡ଼ି ଯାଇଥାଏ। କିନ୍ତୁ ବେଦାନ୍ତିକ ଶୃଙ୍ଖଳା କ୍ଷେତ୍ରରେ ଏହା ସେପରି (ପ୍ରତ୍ୟାହୃତ) ନୁହେଁ। ସେହିମନ ହିଁ ଚତୁର୍ଦ୍ଦିଗରେ ଜ୍ଞାନାଲୋକ ଥିବା ନିର୍ଭୟବ୍ରହ୍ମ ହୋଇଯାଏ ॥୩୫॥*

ପୂର୍ବ ଶ୍ଲୋକରେ କେବଳ ମାତ୍ର ଉଲ୍ଲେଖ କରାଯାଇଛି ଯେ ସୁଷୁପ୍ତିର ମନ ଆତ୍ମାନୁଭୂତି ମୁହୂର୍ତ୍ତରେ ନାଶ ହୋଇଥିବା ମନ ନୁହେଁ। ଏହି ଶ୍ଲୋକରେ ସୁଷୁପ୍ତର ମନ ଏବଂ ଜ୍ଞାନୀ ମନର ସ୍ପଷ୍ଟ ବ୍ୟାଖ୍ୟା କରା ଯାଇଛି। ଜ୍ଞାନୀର ମନ ନିର୍ଭୟ ବ୍ରହ୍ମ ସହିତ ଅଭିନ୍ନ ହୋଇଥାଏ। ସେହି ପରି ସମୟରେ ସେ ନିଜେ ହିଁ ତାର ପରିଚ୍ଛିନ୍ନତା।

ସୁଷୁପ୍ତି ଅବସ୍ଥାରେ ଜଣେ ବ୍ୟକ୍ତିର ମନ ନାଶ ହୋଇଥିବାର ଘଟଣା ଧରାଯାଉ। ସେହି ମନ ତାର ନିଜର ବାସନାରେ ଧନ୍ଦି ହୋଇ ସେହି ସମୟରେ ଅଜ୍ଞାନରେ ବୁଡ଼ି ଯାଇଥାଏ। ଏହା ହେଉଛି ନାଟକର ଗୋଟିଏ ଚରିତ୍ରର ପ୍ରସ୍ଥାନ ପରି –ପରବର୍ତ୍ତୀ ଦୃଶ୍ୟ ପାଇଁ ତାକୁ ପଛପାଖେ ଅପେକ୍ଷା କରିବାକୁ ହୋଇଥାଏ, ଭୂମିକା ନିର୍ବାହ ପାଇଁ ତାକୁ ପୁଣି ସେଠାରୁ ମଞ୍ଚ ଉପରକୁ ଆସିବାକୁ ହୋଇଥାଏ। ସେହିପରି, ମନ କ୍ଲାନ୍ତ ହୋଇ, କିଛି ସମୟର ବିଶ୍ରାମ ପାଇଁ ଅବସର ନେଇଥାଏ ଏବଂ ଜୀବନର ମଞ୍ଚରେ ବିକ୍ଷେପ, କାମନା, ତୃଷ୍ଣାର ଭୂମିକା ନିର୍ବାହ କରିବାପାଇଁ ସୁଷୁପ୍ତିରୁ ପୁଣି ମଞ୍ଚକୁ ଫେରିଆସେ।

ନିର୍ବିକଳ୍ପ ଜ୍ଞାନ କ୍ଷେତ୍ରରେ ମନ ପ୍ରଥମେ ଭାବିଚିନ୍ତି, ସଚେତନ ଭାବେ ଶୁଦ୍ଧ ହୁଏ, ତାପରେ ଏକାଗ୍ର ହୋଇ ସଂପୂର୍ଣ୍ଣଭାବେ ନାଶ ହୋଇଯାଏ। ଜଣେ ଅଭିନେତା କମ୍ପାନୀରୁ ବହିଷ୍କୃତ ହେଲେ ସେମାନଙ୍କ ରଙ୍ଗମଞ୍ଚକୁ ଆଉ କେବେ ବି ଆସି ନପାରିବା ପରି ମନ ଆଉ ବିକ୍ଷେପ ସୃଷ୍ଟି କରି ପାରିବ ନାହିଁ। ଏହିପରି ଭାବରେ ସୁଷୁପ୍ତ ମନ ଏବଂ ଆତ୍ମାନୁଭୂତି ଲାଭ କରିଥିବା ମନ ଭିତରେ ସ୍ପଷ୍ଟ ପ୍ରଭେଦ ରହିଛି।

ମନ ଏହିପରି ଭାବରେ ନାଶ ହୋଇଗଲେ ତାର କଣ ହୁଏବୋଲି ପ୍ରଶ୍ନ ଉଠିପାରେ। ଏପରି ଭାବରେ ନାଶ ହୋଇଥିବା ମନ ବ୍ରହ୍ମଙ୍କଠାରେ ଲୀନ ହୋଇଯାଏ ବୋଲି ଆଚାର୍ଯ୍ୟ ଏଠାରେ ବ୍ୟାଖ୍ୟା କରିଛନ୍ତି। ମନ ପରମସତ୍ୟଙ୍କ ଉପରେ ଏକ ଅଧ୍ୟସ୍ତ ବୋଲି ମନେ ରଖିଲେ ଏହା ସ୍ୱତଃ ବୁଝି ହୁଏ। ରଜ୍ଜୁ ଦୃଶ୍ୟରେ ସାପ ରଜ୍ଜୁ ହୋଇଯିବା ପରି କିମ୍ବା ସାପ ମୂଳରୁ ନଥିବା କଥା ବୋଧ ହେଉଥିବା ପରି ମନ ନାଶ ହେଲେ ପରମସତ୍ୟ ବୋଧ ହୁଅନ୍ତି ଏବଂ ଆତ୍ମାନୁଭୂତିରେ ମନ ନିଜେ ପରମସତ୍ୟ ହୋଇଯାଏ। ସାପର ପ୍ରତ୍ୟେକଟି ଅଂଶ କେବଳ ରଜ୍ଜୁ ହିଁ।

ମରୀଚିକା କ୍ଷେତ୍ରରେ ଯେତେସବୁ ତରଙ୍ଗ, ଫେଣ, ପାଣି, ପ୍ରତିଫଳିତ ସୂର୍ଯ୍ୟ – ଏମାନେ ସମସ୍ତେ ମରୁଭୂମି ବ୍ୟତୀତ ଅନ୍ୟ କିଛି ନୁହେଁ। ସେହିପରି ଏଠାରେ ବିଷୟ, ମନ, ବୁଦ୍ଧି- ସଂକ୍ଷେପରେ ଅନୁଭୂତ ସମସ୍ତ ପଦାର୍ଥ, ଶୁଦ୍ଧ ଚୈତନ୍ୟ ବ୍ରହ୍ମଙ୍କ ବ୍ୟତୀତ ଅନ୍ୟ କିଛି ନୁହେଁ। ଚୈତନ୍ୟର ଆଲୋକରେ ମନ ଲୀଳା କରୁଥିବା ପର୍ଯ୍ୟନ୍ତ ଆମେ

ଜଗତର ମିଥ୍ୟା କଳ୍ପନା କରିଥାଉଁ। ସେହି ମୁହୂର୍ତ୍ତ ପାଇଁ ସତ୍ୟଙ୍କୁ ତାହା ସତ୍ୟପରି ମନେ ହୋଇଥାଏ। ମନକୁ ସଚେତନ ଭାବେ ଅପସାରଣ କଲେ ନିର୍ବିକଳ୍ପ ବ୍ୟତୀତ ଅନ୍ୟ କିଛି ରହେ ନାହିଁ।

**ଅଜମନିଦ୍ରମସ୍ୱପ୍ନମନାମକମରୂପକମ୍ ।**
**ସକୃଦ୍‌ବିଭାତଂ ସର୍ବଜ୍ଞଂ ନୋପଚାରଃ କଥଞ୍ଚନ ॥୩୬॥**

ଅଜମ୍ = ଅଜ, ଅନିଦ୍ରମ୍ = ନିଦ୍ରାହୀନ, ଅସ୍ୱପ୍ନମ୍ = ସ୍ୱପ୍ନହୀନ, ଅନାମକମ୍ = ନାମହୀନ, ଅରୂପକମ୍ = ରୂପହୀନ, ସକୃତ୍-ବିଭାତମ୍ = ଚିର ଜାଜ୍ଜ୍ୱଲ୍ୟମାନ, ସର୍ବଜ୍ଞଂ = ସର୍ବଜ୍ଞ, ନ ଉପରାରଃ = କୌଣସି ବାହ୍ୟ ଉପଚାର ନଥାଇ, କଥଞ୍ଚନ = ଯେ କୌଣସି ଭାବେ।

*ବ୍ରହ୍ମ ହେଉଛନ୍ତି ଅଜ, ନିଦ୍ରାହୀନ, ସ୍ୱପ୍ନହୀନ ଏବଂ ନାମରୂପହୀନ, ଚିର ଜାଜ୍ଜ୍ୱଲ୍ୟମାନ। ସର୍ବଜ୍ଞ ବ୍ରହ୍ମଙ୍କ ବାହ୍ୟ ଉପଚାର ଭାବରେ କିଛି କରାଯାଇ ପାରିବ ନାହିଁ ॥୩୬॥*

ଭାଷାର ସୀମିତ ପରିସରରେ ବ୍ରହ୍ମଙ୍କୁ ସ୍ୱତଃ ବ୍ୟାଖ୍ୟା କରାଯାଇ ପାରିବ ନାହିଁ। ପରମସତ୍ୟ ହେଉଛନ୍ତି ଅନନ୍ତ, ସାନ୍ତ ଦ୍ୱାରା ଅନନ୍ତଙ୍କର ବର୍ଣ୍ଣନା କରାଯାଇ ପାରିବ ନାହିଁ। ତଥାପି ପୂର୍ବ ଶ୍ଳୋକରେ ଆମକୁ କୁହାଯାଇଛି ଯେ, ଶାନ୍ତମନରେ ଆତ୍ମାନୁଭୂତି କରିହୁଏ। ଏହି ଶ୍ଳୋକରେ ଆଚାର୍ଯ୍ୟ ବର୍ତ୍ତମାନ ଆତ୍ମାଙ୍କ ସ୍ୱରୂପର ସୂଚନା ଦେଉଛନ୍ତି।

ଶାସ୍ତ୍ରରେ ପରମସତ୍ୟଙ୍କୁ କେବଳ ସୂଚାଇ ଦିଆଯାଇଥାଏ, ବର୍ଣ୍ଣନା କରାଯାଇ ନଥାଏ, ଏବଂ ଏଠାରେ ପରମସତ୍ୟଙ୍କ କଳ୍ପନାରୁ ଏକ ବିଚକ୍ଷଣ ନିର୍ଦ୍ଦେଶର ଅପୂର୍ବ ଉଦାହରଣ ଆମେ ପାଇପାରୁ । ନିଜକୁ ଆଚାର୍ଯ୍ୟଙ୍କର ମାନସିକ ସ୍ତରକୁ ଉଠାଇ ପାରୁଥିବା ଶିଷ୍ୟମାନଙ୍କୁ ଆତ୍ମାନୁଭୂତିର ଯଥେଷ୍ଟ ସୂଚନା ଦିଆଯାଇଛି।

**ଅଜମ୍ (ଅଜ)**- ଅବିକାରୀ ଅର୍ଥରେ ଏହି ପଦର ତାତ୍ପର୍ଯ୍ୟ ଆଲୋଚନା କରାଯାଇ ସାରିଛି। ପରମସତ୍ୟଙ୍କଠାରୁ କିଛି ହେଲେ ଜନ୍ମ ନିଏ ନାହିଁ ବୋଲି ଏହା ଇଂଗିତ କରେ, ପରମସତ୍ୟ ବିକାରଗ୍ରସ୍ତ ହୁଅନ୍ତି ନାହିଁ ବୋଲି ଏହା ପ୍ରତିପାଦିତ କରେ । ଏହା ଚିରଦିନ ସେହି ଏକାପରି।

**ଅ-ନିଦ୍ରମ୍ =** ନିଦ୍ରାହୀନ - ଏହାର ଆକ୍ଷରିକ ଅର୍ଥ ଗ୍ରହଣ କରି ଭୁଲ ବୁଝିବାକୁ ହେବ ନାହିଁ। ଅନେକ ପଣ୍ଡିତ ସେପରି କରନ୍ତି ଏବଂ ଦେଶର ସାଧାରଣ ହିନ୍ଦୁଙ୍କ ସ୍ତରକୁ ଅନ୍ଧବିଶ୍ୱାସ ଓହ୍ଲେଇ ଆସିଛି। ଜଣେ ମହାନ୍ ଆଚାର୍ଯ୍ୟ ବିଶ୍ରାମ ନିଅନ୍ତି ନାହିଁ ବା ଶୁଅନ୍ତି

ନାହିଁ ବୋଲି ସେମାନଙ୍କର ବିଶ୍ୱାସ। ଏହି ଶବ୍ଦ ସେହି ଅର୍ଥରେ ଏଠାରେ ବ୍ୟବହାର କରାଯାଇ ନାହିଁ - ମୋଟେ ନୁହେଁ । ଶାରୀରିକ ସ୍ତରରେ କାମ କରୁଥିବା ଶରୀର ନିଶ୍ଚିତ ଭାବରେ ଟିକିଏ ଶୋଇ ବିଶ୍ରାମରେ କ୍ଷତିପୂରଣ କରିବା ଦରକାର। ପରମସତ୍ୟ ନିଦ୍ରାହୀନ ଅବସ୍ଥାରେ ଥିବା କଥା କହିବା ଅର୍ଥ ହେଲା, ଆତ୍ମା ପରେ କାରଣ ଶରୀର(ଅବିଦ୍ୟା) କୁ ଅସ୍ୱୀକାର କରିବା। ଏହି କାରଣ ଶରୀର ସହିତ ତାଦାତ୍ମ୍ୟ ସ୍ଥାପନ କରି ମନୁଷ୍ୟର ସାଧାରଣ ବୁଦ୍ଧି ଚେତନାର ସୁଷୁପ୍ତି ଅବସ୍ଥା ଅନୁଭବ କରେ। ଜୀବ କାରଣ ଶରୀର କୋଷ ସହିତ ତାଦାତ୍ମ୍ୟ ସ୍ଥାପନ କରିବା ହେଉଛି ନିଦ୍ରାବସ୍ଥା ବୋଲି ଆମେ ଅବହିତ । ପୂର୍ବରୁ ଆମେ ଏହା ଆଲୋଚନା କରିଛୁ। ନିଦ୍ରାବସ୍ଥାରେ ମନ ଅଜ୍ଞାନରେ ବୁଡ଼ିଯାଏ।

ତେଣୁ ଏଠାରେ ଅଜ୍ଞାନ ଅର୍ଥରେ ନିଦ୍ରା ଶବ୍ଦ ବ୍ୟବହାର କରାଯାଇଛି। ଆତ୍ମଭାବର ଅନୁଭୂତି ମୁହୂର୍ତ୍ତରେ, ଏହା ଶୁଦ୍ଧ ଜ୍ଞାନ ହୋଇଥିବାରୁ, ଏଠାରେ ତିଳେ ହେଲେ ଅଜ୍ଞାନ ରହି ପାରିବ ନାହିଁ। ଖମ୍ବର ଅଜ୍ଞାନ ଯୋଗୁଁ ପ୍ରେତ ଦୃଶ୍ୟ ହୋଇଥାଏ ଏବଂ ପ୍ରେତର ଅତୀତ ହେଲେ, ଖମ୍ବର ବାସ୍ତବ ଜ୍ଞାନ ଉଦୟ ହୋଇ ଖମ୍ବର ଅଜ୍ଞାନ ତିଳେ ହେଲେ ରହେ ନାହିଁ। ପୂର୍ବରୁ ଖମ୍ବରେ ଯେଉଁ ଭୂତର ଭ୍ରାନ୍ତ ଦୃଶ୍ୟ ଦେଖାଯାଇଥାଏ, ଖମ୍ବ ହିଁ ହେଉଛି ତାର କାରଣ । ଆମେ ନିଜକୁ ଆଧ୍ୟାତ୍ମର କେନ୍ଦ୍ର ବୋଲି ଥରେ ପୁନରାବିଷ୍କାର କଲେ ଆମଠାରେ (ପରମସତ୍ୟଙ୍କର) ଅଜ୍ଞାନ ମୋଟେ ରହିବ ନାହିଁ ଏବଂ ବହୁବିଧ ଜଗତର ଭୁଲ ଧାରଣା ସୃଷ୍ଟି ହେବ ନାହିଁ।

**ଅସ୍ୱପ୍ନମ୍** = ସ୍ୱପ୍ନହୀନ - ଏହା କେବଳ ଚେତନାର ସ୍ୱପ୍ନାବସ୍ଥାକୁ ବୁଝାଏ ନାହିଁ। ଏଥିରେ ଉଭୟ ଜାଗ୍ରତାବସ୍ଥା ଏବଂ ସ୍ୱପ୍ନାବସ୍ଥା ଅନ୍ତର୍ଭୁକ୍ତ। କାରଣ, ବେଦାନ୍ତୀ ପାଇଁ ଜାଗ୍ରତ ଅବସ୍ଥା ସ୍ୱପ୍ନାବସ୍ଥାର ଏକ ବିସ୍ତାର ବ୍ୟତୀତ ଅନ୍ୟ କିଛି ନୁହେଁ। ମନ-ପ୍ରକ୍ଷେପିତ ନାମ-ରୂପର ଜଗତ ତାଦାତ୍ମ୍ୟକାରୀକୁ ଦୁଃଖ-ଶୋକ, ସଫଳତା-ବିଫଳତା ଇତ୍ୟାଦିର ନିର୍ଦ୍ଦିଷ୍ଟ ଅନୁଭୂତି ଦେଇଥାଏ। ଏଠାରେ 'ସ୍ୱପ୍ନ' ଶବ୍ଦ ତାହାକୁ ହିଁ ନିର୍ଦ୍ଦେଶ କରେ । ତେଣୁ ସେସବୁ ବିଷୟ ଜଗତ ଶ୍ରେଣୀର ଅନ୍ତର୍ଭୁକ୍ତ। ତାହା ଆମର ପରମସତ୍ୟଙ୍କର ଅଜ୍ଞାନରେ କାର୍ଯ୍ୟ ବ୍ୟତୀତ କିଛି ନୁହେଁ। ପରମସତ୍ୟଙ୍କଠାରେ କାରଣ ନଥିବାରୁ, ତାର ଭ୍ରାନ୍ତ କାର୍ଯ୍ୟ ମଧ୍ୟ ରହିବ ନାହିଁ। ଖମ୍ବ ନ ଥିଲେ ପ୍ରେତ ଦୃଶ୍ୟ ଆଦୌ ଦେଖାଯିବ ନାହିଁ। ଗୋଧୂଳିବେଳାରେ ସାପର ଭ୍ରମ ସୃଷ୍ଟି ହେଉଥିବା ବେଳେ ଆମେ ବୁଝିପାରୁ ନଥିବା ଦଉଡ଼ି ଖଣ୍ଡେ ନିଶ୍ଚୟ ଥିବ।

**ଅନାମକମ୍-ଅରୁପକମ୍-** ପରମସତ୍ୟଙ୍କଠାରେ ଅନ୍ୟ ନାମ ରୂପ ରହି ପାରିବ ନାହିଁ, କାରଣ ପରମସତ୍ୟଙ୍କଠାରେ ଭ୍ରାନ୍ତ, ବହୁବିଧ ଜଗତ ନଥାଏ।

**ସକୃତ-ବିଭାତିମ୍ = ଚିର ଜାଜ୍ଜୁଲ୍ୟମାନ** - ଆତ୍ମା ହିଁ ସମସ୍ତ ଆଲୋକ ଏବଂ ବୁଦ୍ଧିମତ୍ତାର ଉତ୍ସ ବୋଲି ବର୍ଣ୍ଣନା କରୁଥିବା ଶହ ଶହ ଉପନିଷଦୀୟ ଶ୍ଳୋକ ଅଛି। ଏଠାରେ ଆଲୋକକୁ ସୂର୍ଯ୍ୟର ଆଲୋକ ବା ଅଗ୍ନିର ଆଲୋକ ଭାବରେ ଭୁଲ ବୁଝିବାକୁ ହେବ ନାହିଁ। ପ୍ରଜ୍ଞାର ବୁଦ୍ଧି ସଚେତନଶୀଳତା ବା ଚେତନାକୁ ବୁଝାଇବାପାଇଁ ଏଠାରେ ଏହା ବ୍ୟବହାର କରାଯାଇଛି। ଏହା ସ୍ୱତଃ ପ୍ରତିଭାତ ହେଉଥିବାରୁ, ଏହା ନିଜେ ଜ୍ଞାନ ହୋଇଥିବାରୁ, କୌଣସି ଦ୍ରଷ୍ଟା ତାକୁ ଦେଖିବା ଦରକାର କରେ ନାହିଁ ବୋଲି ଏଥିରୁ ସୂଚୀତ ହୁଏ। ପରବର୍ତ୍ତୀ ଅଧ୍ୟାୟରେ ଏହି ପଦର ବିଶଦ ବର୍ଣ୍ଣନା ଦେଖିବାକୁ ମିଳିବ।

**ସର୍ବଜ୍ଞମ୍ =** ସର୍ବଜ୍ଞ- ଚିନ୍ତା କରିପାରୁଥିବା ସମସ୍ତ ସତ୍ତାଙ୍କଠାରେ ସଚେତନଶୀଳତା ହେଉଛି ଜାଣି ପାରିବାର ବା ପ୍ରକାଶ କରିବାର ତତ୍ତ୍ୱ। ଏପରି ହୋଇଥିବାରୁ କେବଳ ବର୍ତ୍ତମାନରେ ନୁହେଁ ଅତୀତ ଏବଂ ଭବିଷ୍ୟତରେ ମଧ୍ୟ ସବୁ ରୂପରେ ଏକ ଅଖଣ୍ଡ - ଘନ ସତ୍ୟ, ସର୍ବବ୍ୟାପୀ ଏବଂ ଶାଶ୍ୱତ ସତ୍ୟଭାବରେ ବିଦ୍ୟମାନ ଥିବା ଶୁଦ୍ଧ ଆତ୍ମାଙ୍କୁ ସର୍ବଜ୍ଞ ବ୍ୟତୀତ ଅନ୍ୟ କିଛି ଭାବରେ ବ୍ୟାଖ୍ୟା କରିହେବ ନାହିଁ।

ତେଣୁ ଅନୁଭୂତିର ସମସ୍ତ ଜ୍ଞାତ ଜଗତକୁ ନିଷେଧ କରି ଏବଂ ଅଦ୍ୱୈତ ସର୍ବଜ୍ଞ ଜୀବନରେ ଗତିଶୀଳତା ବୋଲି ପ୍ରତିପାଦିତ କରି ଏହି ଶ୍ଳୋକରେ ଶୁଦ୍ଧ ଚୈତନ୍ୟ ଅବସ୍ଥାର ଏକ ପୂର୍ଣ୍ଣାଙ୍ଗ ସଂଜ୍ଞା ଆମେ ଦେଖିବାକୁ ପାଉ।

ଏହି ପରମସତ୍ୟଙ୍କୁ ଅନୁଭବ କରିବାକୁ ହେଲେ କୌଣସି କର୍ମକାଣ୍ଡୀୟ ବିଧିବିଧାନର ଆବଶ୍ୟକତା ନାହିଁ। ଏପରିକି ଧ୍ୟାନ ମଧ୍ୟ ଆତ୍ମାନୁଭୂତିର କାରଣ ନୁହେଁ। ପରମସତ୍ୟ ସାଧନା ଯୋଗୁଁ ବୋଲି ମଧ୍ୟ ଆମେ କହି ପାରିବା ନାହିଁ। ଏପରି ହେଲେ ପରମସତ୍ୟ ଏକ କାରଣର କାର୍ଯ୍ୟ ହୋଇଯିବେ ଏବଂ ଗୋଟିଏ କାର୍ଯ୍ୟରୁ ଜନ୍ମ ନେଇଥିବା ସମସ୍ତେ ନଶ୍ୱର ଏବଂ ପରିଚ୍ଛିନ୍ନ ହୋଇଥିବାରୁ ଲାଭ କରାଯାଇଥିବା ଈଶ୍ୱରତ୍ୱର ମଧ୍ୟ ସମାପ୍ତି ଘଟିବ।

ବେଦାନ୍ତୀ ମତ ହେଲା ସାଧନା ଏବଂ ଧ୍ୟାନ ମାଧ୍ୟମରେ ଆମେ ଆମଠାରେ ଜନ୍ମ ନେଇଥିବା ନଶ୍ୱର ଏବଂ ପରିଚ୍ଛିନ୍ନ ଅଜ୍ଞାନର ଇତି କେବଳ କରୁ ଏବଂ ଅଜ୍ଞାନର ଇତି ହେଲେ ସ୍ୱୟଂ ଜ୍ୟୋତି ହୋଇ ନିଜେ ନିଜକୁ ଜାଣୁଥିବା ଜ୍ଞାନ ନିଜକୁ ଜାଣିପାରେ। ବାଦଲକୁ ଦୂର କରିବା କଥା, ସୂର୍ଯ୍ୟଙ୍କୁ ଆଲୋକିତ କରିବାର ଆବଶ୍ୟକତା ନାହିଁ।

ପୋଖରୀ ପାଣିରେ ଜମିଥିବା ଦଳ ଦୂର କଲେ ପାଣିରେ ସୂର୍ଯ୍ୟଙ୍କର ପ୍ରତିଫଳନ ଦେଖାଯିବ। ଦଳ ବାହାର କରିଦେଲେ ପାଣି ପାଖକୁ ସୂର୍ଯ୍ୟଙ୍କୁ ନିମନ୍ତ୍ରଣ ବା ଆବାହନ କରିବାର ନାହିଁ। ସେ ସବୁବେଳେ ସେଠି ଥିଲେ, କେବଳ ଆମ ଅବଗତିର ଆଢୁଆଳରେ। ଆମ ଭିତରେ ଥିବା ଆତ୍ମାଙ୍କୁ, କେବଳ ଆମରି ଦ୍ୱାରା ଅନାବୃତ କରିବାକୁ ହେବ।

ଆତ୍ମା ହେଉଛନ୍ତି ଶାଶ୍ୱତ । ଏହାଙ୍କ ବ୍ୟତୀତ ଶରୀର ଜନ୍ମ ନେଇପାରି ନଥାନ୍ତା। ରହିପାରି ନଥାନ୍ତା, କାର୍ଯ୍ୟ କରିପାରି ନଥାନ୍ତା, ବୁଝିପାରି ନଥାନ୍ତା, ଅନୁଭବ କରିପାରି ନଥାନ୍ତା ଏବଂ ଜାଣିପାରି ନଥାନ୍ତା। ଧ୍ୟାନ ଦ୍ୱାରା ଏହାକୁ ଆବାହନ କରିବା ବା ସୃଷ୍ଟି କରିବା ଦରକାର ନାହିଁ। ଧ୍ୟାନ ଦ୍ୱାରା ଆମେ ଆମର ସମସ୍ତ ମାନସିକ ବିକୃତି ଇତି କରି ଦେଇଥାଉ, ଏବଂ ସୁସ୍ଥ ମନ ନେଇ ଶୁଦ୍ଧ ଚୈତନ୍ୟଙ୍କର ଧ୍ୟାନ କଲେ ମନର ନାଶ ହୁଏ। ମନ ହେଉଛି ଆମଠାରେ ଥିବା ଅଜ୍ଞାନର ପରିପ୍ରକାଶ ମାତ୍ର। ମନ ନାଶ ହେଲେ ଅଜ୍ଞାନ ମଧ୍ୟ ଅପସରିଯାଏ। ଅଜ୍ଞାନର ଅନ୍ଧାରୁଆ ଗଳି ମୁଣ୍ଡରେ ସ୍ୱତଃ ପ୍ରତିଭାତ ନିର୍ବିକଳ୍ପ ଜ୍ଞାନଙ୍କର ଦୀର୍ଘ ପ୍ରାଙ୍ଗଣ ବିଦ୍ୟମାନ।

**ସର୍ବାଭିଲାପବିଗତଃ ସର୍ବଚିନ୍ତା ସମୁତ୍ଥିତଃ।**

**ସୁପ୍ରଶାନ୍ତଃ ସକୃଜ୍ଜ୍ୟୋତିଃ ସମାଧିରଚଲୋଽଭୟଃ ॥୩୭॥**

ସର୍ବ ଅଭିଲାପ = ସବୁ କଥା (ଇନ୍ଦ୍ରିୟ), ବିଗତଃ = ମୁକ୍ତ, ସର୍ବ ଚିନ୍ତାଃ = ମନର ସମସ୍ତ କାର୍ଯ୍ୟ, ଅର୍ଥାତ୍ ଆନ୍ତରିକ ବିରକ୍ତି, ବ୍ୟସ୍ତତା; ସମୁତ୍ଥିତଃ = ମୁକ୍ତ (ଆକ୍ଷରିକ ଅର୍ଥରେ ସବୁର ଉପରେ), ସୁପ୍ରଶାନ୍ତଃ = ପୂର୍ଣ୍ଣ ଶାନ୍ତି, ସକୃତ୍ ଜ୍ୟୋତିଃ = ଚିର ଜାଜ୍ଜ୍ୱଲ୍ୟମାନ, ସମାଧିଃ = ସମାଧି ମାଧ୍ୟମରେ ଜ୍ଞାତବ୍ୟ, ଅର୍ଥାତ୍ ଏକାଗ୍ର ବୁଦ୍ଧି, ଅଚଳଃ = ଅଚଳ, କାର୍ଯ୍ୟକଳାପରୁ ମୁକ୍ତ, ଅଭୟଃ = ଅଭୟ।

*ଆତ୍ମା ହେଉଛନ୍ତି ସମସ୍ତ ଉକ୍ତି ଏବଂ ଶବ୍ଦର ଅତୀତ, ମନର ସମସ୍ତ କାର୍ଯ୍ୟକଳାପର ଅତୀତ। ଏହା ପ୍ରଶାନ୍ତ, ଚିର ଜାଜ୍ଜ୍ୱଲ୍ୟମାନ, ସମସ୍ତ କାର୍ଯ୍ୟକଳାପ ଏବଂ ଭୟରୁ ମୁକ୍ତ। ଏକାଗ୍ର ବୁଦ୍ଧି ଦ୍ୱାରା ଏହାଙ୍କୁ ଲାଭ କରିହେବ ॥୩୭॥*

ପୂର୍ବ ପଂକ୍ତିମାନଙ୍କରେ ପରମସତ୍ୟଙ୍କର ଏକ ସିଧାସଳଖ ସଂଜ୍ଞା କାହିଁକି ଦିଆଯାଇ ନାହିଁ, ଏହି ଶ୍ଳୋକ ତାର ବ୍ୟାଖ୍ୟା କରିବା ପରି ଜଣାପଡ଼େ। ପରମସତ୍ୟଙ୍କୁ ଭାଷାରେ କାହିଁକି ସିଧାସଳଖ ନିର୍ଦ୍ଦେଶ କରିହେବ ନାହିଁ ବା ଭାଷାରେ ପ୍ରକାଶ କରିହେବ ନାହିଁ, ଏଠାରେ ତାର ବ୍ୟାଖ୍ୟା କରାଯାଇଥିବା ପରି ମନେ ହୁଏ।

**ଅଭିଲାପଃ** -(ଉକ୍ତି ପ୍ରକାଶ କରିବା)- ଯେଉଁ ସାଧନ ମାଧ୍ୟମରେ ଧାରଣା (କଳ୍ପନା) କୁ ଶବ୍ଦରେ ପ୍ରକାଶ କରାଯାଏ, ଏଠାରେ ସେହି ଅର୍ଥରେ ତାହା ବ୍ୟବହାର କରାଯାଇଛି । ତେଣୁ , ସେହି ଶବ୍ଦଟି ଏହି ଶ୍ଳୋକରେ ଯେପରି ଭାବରେ ବ୍ୟବହାର କରାଯାଇଛି, ତାର ଅର୍ଥ ହେଲା - ପରମସତ୍ୟ କୌଣସି ପ୍ରକାର ଉକ୍ତି(କଥା) ମାନନ୍ତି ନାହିଁ (ଅବଜ୍ଞା କରନ୍ତି, ସମସ୍ତ ପ୍ରକାର କଥାର ଉର୍ଦ୍ଧ୍ୱରେ) ଅର୍ଥାତ୍ ଏହା ଜ୍ଞାନେନ୍ଦ୍ରିୟ ମାନଙ୍କର ବ୍ୟାଖ୍ୟା ଦ୍ୱାରା ଇନ୍ଦ୍ରିୟ ଜଗତରୁ ମନ ଗ୍ରହଣ କରିଥିବା କୌଣସି ପ୍ରବୃତ୍ତି ନୁହେଁ । ଏବଂ କେବଳ ଏତିକି ମାତ୍ର ହିଁ ଭାଷାରେ ବ୍ୟକ୍ତ କରିହେବ ବୋଲି ଆମେ ଜାଣୁ ।

ଶ୍ଳୋକର ଦ୍ୱିତୀୟ ପଂକ୍ତିର ବ୍ୟାଖ୍ୟା ହେଲା "ଏହା ମନର ସମସ୍ତ କାର୍ଯ୍ୟକଳାପ ର ଅତୀତ" । ପରମସତ୍ୟ ଯଦି ସମସ୍ତ ଇନ୍ଦ୍ରିୟର ଅଗୋଚର, ଆମେ ହୁଏତ ତାଙ୍କୁ ଅନୁଭବ କରି ପାରିବା । ଉଦାହରଣ ସ୍ୱରୂପ, ଜ୍ଞାନେନ୍ଦ୍ରିୟ ଦ୍ୱାରା ପ୍ରେମକୁ ଦେଖି ହୁଏ ନାହିଁ, ତଥାପି ଆମେ ପ୍ରେମ ଅନୁଭବ କରିପାରୁ । ଅନନ୍ତସତ୍ୟଙ୍କ କ୍ଷେତ୍ରରେ ଏହା ମଧ୍ୟ ହୋଇ ପାରିବ ନାହିଁ, କାରଣ ମନ ପ୍ରବୃତ୍ତିରୁ ଅଲଗା ହୋଇ ରହି ପ୍ରତିକ୍ରିୟା ପ୍ରକାଶ କଲେ ହିଁ କେବଳ ଆମେ ଅନୁଭବ କରିପାରିବା । ତାପରେ ବି ଶୁଦ୍ଧ-ଚୈତନ୍ୟ ହିଁ ମନର ସାରତତ୍ତ୍ୱ ଏବଂ ଏପରି ହୋଇଥିବାରୁ ମୁହୂର୍ତ୍ତକ ପାଇଁ ଏହା ତାର ମୂଳସ୍ୱରୂପରୁ ଅଲଗା ହୋଇ ପାରିବ ନାହିଁ । ତେଣୁ, ଆତ୍ମା ମନର ଅନୁଭୂତଗମ୍ୟ ଏକ ପଦାର୍ଥ ନୁହେଁ ।

ବୁଦ୍ଧି ମଧ୍ୟ ଏହାଙ୍କୁ କିପରି ଚିନ୍ତା କରି ପାରିବ ନାହିଁ, ଶ୍ଳୋକର ପରବର୍ତ୍ତୀ ପଦରେ ସେ ସମ୍ବନ୍ଧରେ ଏକ ଭାବଗର୍ଭକ ପରାମର୍ଶ ରହିଛି । ଜଣେ ନାସ୍ତିକ ପାଇଁ ଏହି ବ୍ୟାଖ୍ୟା ଅର୍ଥହୀନ ହୋଇପାରେ, କାରଣ ଆତ୍ମା-ଜଗତ ବିଷୟରେ ସେ କଳ୍ପନା କରି ପାରିବ ନାହିଁ, ମନ-ବୁଦ୍ଧିର ସୀମାପରର ଅନୁଭବ୍ୟ ଏକ ସତ୍ତାର ସମ୍ଭାବନା ସେ ଦେଖି ପାରିବ ନାହିଁ ।

ଆଚାର୍ଯ୍ୟ ଏଠାରେ କହିଛନ୍ତି ଯେ, ପରମସତ୍ୟ ଏପରି ଏକ ସୂକ୍ଷ୍ମ ତତ୍ତ୍ୱ ଯେ ବୁଦ୍ଧିରେ ତାହା କୌଣସି ଅଶାନ୍ତି ସୃଷ୍ଟି କରିବେ ନାହିଁ । ବୁଦ୍ଧି କଳ୍ପନା ରାଜ୍ୟରେ କାମ କରେ, ବୁଦ୍ଧିରେ କଳ୍ପନା ହେଉଛି ବୁଦ୍ଧିର ଏକ ବିକ୍ଷେପ । ବୁଦ୍ଧି ସମ୍ପୂର୍ଣ୍ଣ ଶାନ୍ତ ଥିବା ବେଳେ ଶୁଦ୍ଧ ଚୈତନ୍ୟ ନିଜକୁ ପ୍ରତିଭାତ କରନ୍ତି । ବୁଦ୍ଧିରେ ଚିନ୍ତାର ତରଙ୍ଗ ବା କଳ୍ପନାର ବିକ୍ଷେପ ଥିବା ପର୍ଯ୍ୟନ୍ତ, ବୁଦ୍ଧିରେ ସେହି ବିକ୍ଷେପକୁ ଚୈତନ୍ୟ ଆଲୋକିତ କଲେ ଆମେ ବୌଦ୍ଧିକ କଳ୍ପନା ସମ୍ବନ୍ଧରେ ସଚେତନ ହେଉ ।

ଶୁଦ୍ଧ ଚୈତନ୍ୟ ଯେଉଁ ସବୁ ପଦାର୍ଥକୁ ଆଲୋକିତ କରନ୍ତି, ସେସବୁର ଉଲ୍ଲେଖ ନକରି ଶୁଦ୍ଧଚୈତନ୍ୟଙ୍କୁ ବ୍ୟାଖ୍ୟା କରିବା ପାଇଁ ଏଠାରେ ଚେଷ୍ଟା କରାଯାଇଛି । ତେଣୁ, ପରମସତ୍ତାଙ୍କଠାରେ ବୁଦ୍ଧିର କୌଣସି କାର୍ଯ୍ୟକଳାପ ନାହିଁ। ନଶ୍ୱର ଭାବରେ ଆମେ ବାସ କରୁଥିବା ପୃଥିବୀରେ ଇନ୍ଦ୍ରିୟ, ମନ, ବୁଦ୍ଧି ହେଲେ ଆମ ଜାଣିବାର ସାଧନ। ଶୁଦ୍ଧ ଚୈତନ୍ୟ ଏମାନଙ୍କର ଅତୀତ ହୋଇଥିବାରୁ ଏହି ଅସମ୍ଭବ ତତ୍ତ୍ୱ ପାଇଁ ଆମେ ହତାଶ ହୋଇ ପଡ଼ିବା କଥା। ଆମମାନଙ୍କ ପାଇଁ ଏପରି ଉକ୍ତି ହେଉଛି କାଳ୍ପନିକ, ସମ୍ଭବ ହୋଇ ପାରିବା କଥା ନୁହେଁ। ଆଲୋଚ୍ୟ ଏହି ଉକ୍ତି (ସକୃତ୍ ଜ୍ୟୋତି - ସ୍ୱୟଂ ଜ୍ୟୋତି, ଅର୍ଥାତ୍ ଚିରଦିନ ପାଇଁ ଥିବା ଆଲୋକ)ରେ ଆଚାର୍ଯ୍ୟ କହୁଛନ୍ତି ଯେ, ନିଜକୁ ପ୍ରତିଭାତ କରିବା ପାଇଁ ଚୈତନ୍ୟ ଅନ୍ୟ କୌଣସି ଚେତନ-ସତ୍ତାର ଆବଶ୍ୟକ କରନ୍ତି ନାହିଁ। ଏହା ନିଜେ ହିଁ ଜ୍ଞାନଘନ ହୋଇ ଥିବାରୁ, ଜ୍ଞାନକୁ ଜାଣିବା ପାଇଁ ଅନ୍ୟ କୌଣସି ଜ୍ଞାନର ଆବଶ୍ୟକତା ନାହିଁ।

ସୂର୍ଯ୍ୟଙ୍କୁ ଦେଖିବା ପାଇଁ ଆମେ ଅନ୍ୟ କୌଣସି ଆଲୋକ ଦରକାର କରୁ ନାହିଁ। ସୂର୍ଯ୍ୟ ଏବଂ ଆମ ଭିତରେ ଥିବା ବାଧାକୁ ହିଁ କେବଳ ଦୂର କରିବାକୁ ହେବ। ସେହିପରି ଆମ ମନ ଏବଂ ବୁଦ୍ଧିର ବିକ୍ଷେପ ଶାନ୍ତ ହେଲେ ମହିମାମୟ ଆତ୍ମତତ୍ତ୍ୱ ସ୍ୱତଃ ପ୍ରତିଭାତ ହୁଅନ୍ତି।

କୌଣସି ପରିଚ୍ଛିନ୍ନତାରେ ଆବଦ୍ଧ ହୋଇ ନଥିବା ଚୈତନ୍ୟାବସ୍ଥା, ବାହାରେ ଏବଂ ଭିତରେ, ସବୁ ନାମ ରୂପରେ ଏବଂ ଏସବୁର ଅତୀତ ହେଲେ ମଧ୍ୟ, ଏକ ହେବା କଥା। ସେପରି ହେଲେ ଶାଶ୍ୱତ ଏବଂ ଅନନ୍ତ ଅଦ୍ୱୈତ-ସତ୍ୟଙ୍କର ଅବିକାରୀ ଅବସ୍ଥା ଏକ ନିର୍ଭୟସ୍ଥିତିର ଅବସ୍ଥା ହେବ।

ଆର୍ଯ୍ୟମାନଙ୍କର ଅତୀବ ବ୍ୟାବହାରିକ ସଂସ୍କୃତିରେ ଖଣ୍ଡନ-ମଣ୍ଡନ ଭାଷାରେ ପରମସତ୍ୟଙ୍କର ସଂଜ୍ଞା ନିରୂପଣ କରାଯାଇ ପାରିବ ନାହିଁ ଯେପର୍ଯ୍ୟନ୍ତ ଶିଷ୍ୟମାନଙ୍କର ସ୍ୱ-ଅନୁଭୂତି ହେବାପରି ଏକ ଉପାୟ ଆଚାର୍ଯ୍ୟ ଯୋଗାଇ ଦେଇ ନାହାନ୍ତି । ତେଣୁ ଗୌଡ଼ପାଦ ଏଠାରେ ସମାଧିର ଅତୁଳନୀୟ ଉକ୍ତିରେ ଆଦର୍ଶର ଅନୁଭୂତି ପାଇଁ ସାଧନା ସୂଚାଇ ଦେଇଛନ୍ତି।

ହିନ୍ଦୁତ୍ୱର ପତନ ଏବଂ ପରିଣାମତଃ ଆମର ଆଧ୍ୟାତ୍ମିକ ଅଜ୍ଞାନ ସମୟରେ 'ସମାଧି' ପଦର ଏପରି ଦୁରୁପଯୋଗ ହୋଇଛି ଯେ ଏହି ପଦଟି ଆମ ମନରେ ଯେଉଁ ଛବି ଆଙ୍କିଦିଏ, ତାହା ହେଲା କୌଣସି ଅଚଳ ଯୋଗୀ ନିଜକୁ ଜୀବନ୍ତ ପୋତିବାରେ

ଅଯଥା ଚେଷ୍ଟା କରିବା। 'ଧି'ର ଅର୍ଥ ହେଲା 'ବୁଦ୍ଧି'। ତେଣୁ ସମାଧିର ଅର୍ଥ ହେଲା 'ସମବୁଦ୍ଧି ଅବସ୍ଥା' ଅର୍ଥାତ୍ ସୁନିୟନ୍ତ୍ରିତ ମନ ଥିବା ଜଣେ ପୂର୍ଣ୍ଣାଙ୍ଗ ବ୍ୟକ୍ତି। ମନ ସୁନିୟନ୍ତ୍ରିତ ହୋଇଥିବାରୁ ତାର ବୁଦ୍ଧି ମଧ୍ୟ ସ୍ଥିର ଏବଂ ସମ ଭାବରେ ଥାଏ। ଏହି ବୁଦ୍ଧି, ଜୀବନ ପରିସ୍ଥିତିର ଗୀତ ଗାଉଥିବା ମୃତ୍ୟୁ ତାନ ସହିତ ତାଳ ଦେଇ ନାଚେ ନାହିଁ। ଏପରି ଏକ ପୂର୍ଣ୍ଣାଙ୍ଗ ଅବସ୍ଥାରେ ଆମମାନଙ୍କ ଭିତରୁ ପ୍ରତ୍ୟେକେ ସହଜରେ ପରମସତ୍ୟଙ୍କ ଅନୁଭୂତି ଲାଭ କରି ପାରିବେ।

ତେଣୁ, ସମାଧିକୁ ଯିବାର ମାନେ ନୁହେଁ, କୌଣସି ଅତିମାନସର ଯୌଗିକ କୌଶଳ, କିମ୍ବା, କେତେକ ଦର୍ଶକଙ୍କର ମନୋଭାବ ପାଇଁ ଭିକାରୀଙ୍କ ପରି ମାଗିବାକୁ ଟୋପି ବୁଲାଇବାର ଶସ୍ତା କୁହୁକ। ଏହା ହେଉଛି ଜଣେ ପରିପୂର୍ଣ୍ଣ ସଂସ୍କୃତି ସମ୍ପନ୍ନ ବ୍ୟକ୍ତି ଠାରେ ବୁଦ୍ଧିର ସ୍ଥିରତା। ଏପରି ବ୍ୟକ୍ତି ନିଜ ଭିତରେ ସ୍ୱରହୀନ ଆନନ୍ଦର ଚିର ପ୍ରବାହ ଅନୁଭବ କରେ। ଆବେଗ-ବିହୀନ ମାନସିକ ସ୍ଥିରତା ଏବଂ ଅବିଚଳିତ ବୁଦ୍ଧିରୁ ଜାତ ତାର ଆତ୍ମବିଶ୍ୱାସ ଯୋଗୁଁ ଜୀବନ ପ୍ରତି ଏପରି ଏକ ଉଦାସୀନ ମନୋଭାବ ପୋଷଣ କରେ।

**ଗ୍ରହୋ ନ ତତ୍ର ନୋତ୍ସର୍ଗଶ୍ଚିନ୍ତା ଯତ୍ର ନ ବିଦ୍ୟତେ।**

**ଆତ୍ମସଂସ୍ଥଂ ତଦା ଜ୍ଞାନମଜାତି ସମତାଂ ଗତଂ ।।୩୮।।**

ନ ଗ୍ରହଃ = ଗ୍ରହଣୀୟ ନୁହେଁ, ତତ୍ର = ସେଠାରେ (ଆତ୍ମାଠାରେ), ନ ଉତ୍ସର୍ଗଃ = ତ୍ୟାଗ ନାହିଁ , ନ ଚିନ୍ତା = ଚିନ୍ତା ନାହିଁ, ଯତ୍ର = ଯେଉଁଠାରେ, ବିଦ୍ୟତେ = ଥାଏ, ଆତ୍ମ = ଆତ୍ମା ଠାରେ; ସଂସ୍ଥମ୍ = ସ୍ଥାପିତ ହୋଇଥାଏ, ତଦା = ତାହାହେଲେ, ଜ୍ଞାନମ୍ = ଜ୍ଞାନ, ଅଜାତି = ଜନ୍ମ ନହେବା ଭାବ, ସମତାମ୍ = ସମଜାତୀୟଭାବ, ଗତମ୍ = ହୁଏ, ପହଞ୍ଚେ।

*ମନର କାର୍ଯ୍ୟକଳାପ ଶେଷରେ ଯେଉଁଠାରେ ପରିପୂର୍ଣ୍ଣ ହୁଏ, ସେହି ଆତ୍ମାଙ୍କଠାରେ କୌଣସି କଳ୍ପନା ଗ୍ରହଣ କରାଯାଏ ନାହିଁ ବା ତ୍ୟାଗ କରାଯାଏ ନାହିଁ। ଆତ୍ମାରେ ଅବସ୍ଥାପିତ ହୋଇ ଜ୍ଞାନ ସମଭାବ ଅବସ୍ଥାରେ ପହଞ୍ଚେ ଏବଂ ଆଉ ଜନ୍ମ ନିଏ ନାହିଁ ।।୩୮।।*

ପୂର୍ବ ଶ୍ଳୋକରେ କୁହାଯାଇଛି ଯେ, ମନାତୀତ ହେଲେ ପରମସତ୍ୟଙ୍କର ସ୍ୱ-ଅନୁଭୂତି ହେବ। କୌଣସି ମାନସିକ କାର୍ଯ୍ୟକଳାପ ନ ଥିବା ଅବସ୍ଥା ହେଉଛି ଈଶ୍ୱରାନୁଭୂତିର ଅବସ୍ଥା। ସ୍ୱାଭାବିକ ଭାବେ ପରମସତ୍ୟ କିଛି ପ୍ରବୃତ୍ତି ଗ୍ରହଣ କରନ୍ତି ନାହିଁ ବା କୌଣସି କଳ୍ପନା ତ୍ୟାଗ କରନ୍ତି ନାହିଁ। ପରମସତ୍ୟ କଦାପି ସୃଷ୍ଟି କରନ୍ତି

ନାହିଁ, ପାଳନ କରନ୍ତି ନାହିଁ ବା ସଂହାର କରନ୍ତି ନାହିଁ। ମନ ତାଙ୍କଠାରେ କିଛି ସୃଷ୍ଟି କରିପାରେ ନାହିଁ।

ଏହିପରି ଭାବରେ ମନ ଉପରେ ସଂପୂର୍ଣ୍ଣ ଆଧିପତ୍ୟ ଲାଭ କରିବା ସମୟରେ ଶାଶ୍ୱତ ସତ୍ୟ ହେବାପାଇଁ ପରିଚ୍ଛିନ୍ନ ଜୀବ ସେହି ଅବସ୍ଥାରେ ନିମଗ୍ନ ନିର୍ବିକାର ଅବସ୍ଥା ଲାଭ କରେ। ଅନନ୍ତଙ୍କଠାରେ କୌଣସି ବିକାର ନଥିବାରୁ ଶୁଦ୍ଧଚୈତନ୍ୟ ଭାବରେ ଏହା ନିର୍ବିକାର ହୋଇଯାଏ।

କୌଣସି ସତ୍ତା ଅନନ୍ତ ହେବା ପାଇଁ ଘନ ଅର୍ଥାତ୍ ଦେହାତୀତ ହେବା ଦରକାର। ଅଦ୍ୱିତୀୟ, ଶାଶ୍ୱତ, ସର୍ବବ୍ୟାପୀ ଚୈତନ୍ୟ ସ୍ୱାଭାବିକ ଭାବେ ସମଭାବାପନ୍ନ। କ୍ଷୁଦ୍ର ଜୀବର ମୃତ୍ୟୁରେ ମନ ଈଶ୍ୱରତ୍ୱରେ ପଦାର୍ପଣ କରେ। ଆମ ଭିତରେ ହେଉଥିବା ମନର ବିକ୍ଷୋଭ ଏବଂ ବୁଦ୍ଧିର ବିକ୍ଷେପ ସହିତ ତାଦାତ୍ମ୍ୟ ନ ରହିଲେ ଯେଉଁ ଅନୁଭୂତି ହେବ, ତାହା ହିଁ ଶୁଦ୍ଧ ଚୈତନ୍ୟଙ୍କର ଅନୁଭୂତି।

**ଅସ୍ପର୍ଶଯୋଗୋ ବୈ ନାମ ଦୁର୍ଦର୍ଶଃ ସର୍ବଯୋଗିଭିଃ।**

**ଯୋଗିନୋ ବିଭ୍ୟତି ହ୍ୟସ୍ମାଦଭୟେ ଭୟଦର୍ଶିନଃ ॥୩୯॥**

ଅସ୍ପର୍ଶ-ଯୋଗଃ ବୈ ନାମ = ଅସ୍ପର୍ଶ ନାମକ ଯୋଗ, ଦୁର୍ଦର୍ଶଃ = ସହଜରେ ଦେଖିହୁଏ ନାହିଁ ବା ଲାଭ କରିହୁଏ ନାହିଁ, ସର୍ବ ଯୋଗିଭିଃ = ସବୁ ଯୋଗୀ (ସାଧକ)ଙ୍କ ଦ୍ୱାରା, ଯୋଗିନଃ = ସାଧକଗଣ, ବିଭ୍ୟତି = ଭୟ କରନ୍ତି, ହି = ପାଇଁ (କାରଣରୁ), ଅସ୍ମାତ୍ = ଏହି(ପଥ) ଅଭୟେ = ଭୟହୀନ, ଭୟଦର୍ଶିନଃ = ଭୟ ଅନୁଭବ କରନ୍ତି।

*ଅସ୍ପର୍ଶ ନାମକ ଏହି ଯୋଗ ସାଧନ କରି ପାରିବା ସବୁ ସାଧକଙ୍କ ପାଇଁ କଷ୍ଟକର, ଯୋଗୀମାନେ ଏହି ପନ୍ଥା (ପଥ) କୁ ଭୟ କରନ୍ତି, କାରଣ ସେମାନେ "ତାହାଙ୍କଠାରେ" ଭୟ ଅନୁଭବ କରନ୍ତି, ଯେଉଁ ଠାରେ କି ଜଣେ ପ୍ରକୃତ ନିର୍ଭୟ ଅବସ୍ଥା ଅନୁଭବ କରି ପାରିବ ॥୩୯॥*

'ଅସ୍ପର୍ଶ ଯୋଗ' ନାମକ ଏକ ଅତୁଳନୀୟ ଉକ୍ତିରେ ଗୌଡ଼ପାଦ ଏଠାରେ ବେଦାନ୍ତିକ ସାଧନାର ଧାରଣା ତାଙ୍କ ପ୍ରତିଭା ଦ୍ୱାରା ବଡ଼ ସ୍ପଷ୍ଟ ଭାବରେ ଚିତ୍ରଣ କରିଛନ୍ତି। କେତେକ ସମାଲୋଚକଙ୍କର ଅଭିଯୋଗ ଯେ, ଏହା ବୌଦ୍ଧ ସାହିତ୍ୟରୁ ଧାର କରାଯାଇଛି ଏବଂ ଆଧାତ୍ମିକ ଶାସ୍ତ୍ରମାନଙ୍କରେ ଏହି ପଦର ଅନୁରୂପ କିଛି ନାହିଁ। ଗୌଡ଼ପାଦ ଏହା ବୌଦ୍ଧ ସାହିତ୍ୟରୁ ନକଲ କରିବାର ପ୍ରମାଣ କରିବାକୁ ସେମାନେ କେତେକ ଉଦ୍ଧୃତି ମଧ୍ୟ ଦିଅନ୍ତି।

ନିଷ୍ଠାପରଭାବେ ଏହି ଶାସ୍ତ୍ର ଅଧ୍ୟୟନ କରୁଥିବା ବେଦାନ୍ତସାଧକମାନେ ଏହି ସମାଲୋଚନା ଗ୍ରହଣ କରିବାର ଆବଶ୍ୟକତା ନାହିଁ। ଗୀତାରେ (୫ମ ଅଧ୍ୟାୟ- ୨୧,୨୨ ଏବଂ ୨୭) ଭଗବାନ 'ସ୍ପର୍ଶ' ଇନ୍ଦ୍ରିୟ ଶବ୍ଦ ବ୍ୟବହାର କରିଥିବା ପ୍ରତ୍ୟକ୍ଷ ପ୍ରମାଣ ରହିଛି। ଗୀତାଜ୍ଞାନରୁ ଗୌଡ଼ପାଦ ଏହା ବ୍ୟବହାର କରିଥିବେ। ମାନସିକ ସମ୍ପର୍କ ଭାବରେ ଗୀତାରେ 'ସ୍ପର୍ଶ' ବ୍ୟବହାର କରାଯାଇଛି। ଜଣେ ସାଧାରଣ, ଅଜ୍ଞାନ ବ୍ୟକ୍ତି ବାହ୍ୟ ବିଷୟଜଗତକୁ ସ୍ପର୍ଶ କରିଥାଏ ଏବଂ ତାହାର ଜୀବନରେ ସୁଖ ବା ଦୁଃଖ ଅନୁଭବ କରେ। ମନୁଷ୍ୟଠାରେ କୌଣସି ନିର୍ଦ୍ଦିଷ୍ଟ ଅନୁଭୂତି ସୃଷ୍ଟି କରିବା ପାଇଁ ବାହ୍ୟ ଜଗତର ବିଷୟମାନଙ୍କରେ କୌଣସି ସାମର୍ଥ୍ୟ ନାହିଁ। ଆମ ଭିତରେ ଥିବା ଜୀବ ଇନ୍ଦ୍ରିୟ ମାନଙ୍କ ମାଧ୍ୟମରେ ବିଷୟକୁ ଯାଇ ବାହ୍ୟଜଗତର ସଂସ୍ପର୍ଶରେ ଆସେ ଏବଂ ପ୍ରକ୍ଷେପଣ କରି ପରିଶେଷରେ ନିଜ ଉପରେ ଅତ୍ୟାଚାର କରିବାକୁ ଓ ଆମକୁ ପ୍ରତାରଣା କରିବାକୁ ବିଷୟମାନଙ୍କୁ ବଳଶାଳୀ କରିଥାଏ। ଗୀତାର ପଞ୍ଚମ ଅଧ୍ୟାୟରେ ଏହି ଧାରଣାର ସୁନ୍ଦର ଅବତାରଣା କରଯାଇଛି। ଆତ୍ମାନୁଭୂତିର ବେଦାନ୍ତିକ ଧାରାର ଏକ ଧାରଣା ଆମ ମନରେ ସୃଷ୍ଟି କରିବା ପାଇଁ ଗୌଡ଼ପାଦ ଏଠାରେ 'ଅସ୍ପର୍ଶ ଯୋଗ'- ଏହି ଅପୂର୍ବ ଶବ୍ଦଟି ବ୍ୟବହାର କରିଛନ୍ତି।

ବୌଦ୍ଧିକ ବିଶ୍ଳେଷଣ କରି ଏବଂ ଯଥାର୍ଥ ଭାବରେ ବୁଝି, ମନକୁ ବିଷୟରୁ ବିଚ୍ଛିନ୍ନ କରିବା ହେଉଛି ଆଧ୍ୟାତ୍ମିକ କ୍ରମବିକାଶର ବେଦାନ୍ତିକ ପଦ୍ଧତି। ଅସ୍ପର୍ଶ ଯୋଗ ବ୍ୟତୀତ ଏହି ଧାରଣାକୁ ଅଧିକ ସ୍ପଷ୍ଟ ଭାବରେ ବ୍ୟକ୍ତ କରାଯାଇ ପାରି ନଥାନ୍ତା।

ଏହି ପଦଟିରେ ବଡ଼ ସୁନ୍ଦର ବିରୋଧାଭାସ ରହିଛି। 'ଯୁଜ୍'(ଯୋଗ କରିବା) ଧାତୁରୁ ଉତ୍ପନ୍ନ 'ଯୋଗ', ଜୀବର ବ୍ରହ୍ମଙ୍କ ସହିତ ତାଦାତ୍ମ୍ୟ ସ୍ଥାପନ କରିବାର ଧାରା ନିର୍ଦ୍ଦେଶ କରେ। ଏହି ଧାରାରେ ଜୀବ, ନିଜେ ଆତ୍ମାରେ ମିଶି ନଯିବା ପର୍ଯ୍ୟନ୍ତ ଶରୀର, ମନ, ବୁଦ୍ଧି ଇତ୍ୟାଦି ସହିତ ବିଷୟ ଜଗତରୁ ନିଜକୁ ବିଚ୍ଛିନ୍ନ କରିବାର ଚେଷ୍ଟା କରେ। ତେଣୁ, ଆତ୍ମାନୁଭୂତି ପାଇଁ ଋଷିମାନେ ନିର୍ଦ୍ଧାରଣ କରିଥିବା ସର୍ତ୍ତ ପୂରଣ କରିବା ପାଇଁ ଏକା ସାଙ୍ଗରେ ଅନୁସରଣ କରିବାକୁ ବେଦାନ୍ତରେ ଦୁଇଟି ଧାରା ଅଛି।

ଜଣେ ସାଧକ ପରମସତ୍ୟ ଏବଂ ତାଙ୍କର ସମ୍ବନ୍ଧରେ କେବଳ ଧ୍ୟାନ କରିବା ଯଥେଷ୍ଟ ହେବ ନାହିଁ, ବରଂ ଇନ୍ଦ୍ରିୟ ବିଷୟମାନଙ୍କରେ ଛନ୍ଦି ହୋଇଥିବା ତାର ମନକୁ , ଭାବିଚିନ୍ତି ସେହି ବନ୍ଧନରୁ ବିଚ୍ଛିନ୍ନ ହେବାପାଇଁ ଶିକ୍ଷା ଲାଭ କରିବାକୁ ହେବ। ତେଣୁ ଗୋଟିଏ ଦିଗରେ ଅନାତ୍ମାର ଖଣ୍ଡନ ସହିତ ଆତ୍ମାଙ୍କର ଶାଶ୍ୱତଗୁଣ ପ୍ରତିପାଦନ କରି ଶକ୍ତିଶାଳୀ ଧାରାରେ ଚାଲିବା ଦରକାର।

ତେଣୁ 'ଅସ୍ପର୍ଶଯୋଗ' ପଦ ଆଧ୍ୟାତ୍ମିକ ସାଧନାର ଉଭୟ ଖଣ୍ଡନ ଏବଂ ମଣ୍ଡନ ଦିଗ ସୂଚାଇ ଦିଏ। ଅସତ୍ୟ ସହିତ ମିଥ୍ୟା ଆସକ୍ତି ଏବଂ ତାପାଇଁ ଆମର ମିଥ୍ୟା ମୂଲ୍ୟବୋଧର ପରିତ୍ୟାଗର ଧାରା 'ଅସ୍ପର୍ଶ' ଦ୍ୱାରା ନିର୍ଦ୍ଦେଶ କରା ଯାଉଥିବାବେଳେ ବ୍ରହ୍ମଙ୍କ ସହିତ ଜୀବର ଅଭିନ୍ନତା ଆବିଷ୍କାର କରିବାକୁ ସାଧକର ଶୁଦ୍ଧ ଅହଂ (ଜୀବ)ର ପ୍ରଚେଷ୍ଟା ହେଉଛି ଯୋଗ।

କାଳ୍ପନିକ ପ୍ରେତ ପଛରେ ଥିବା ସତ୍ୟର ଆବିଷ୍କାର କରିବାକୁ ହେଲେ ଦୁଇଟି ଧାରାର ଅନୁସରଣ କରିବାକୁ ହେବ, ଅସତ୍ୟ ଭୂତ-ଭୟର ଭାବନାରୁ ଆମକୁ ସଂପୂର୍ଣ୍ଣରୂପେ ବିଚ୍ଛିନ୍ନ କରିବାକୁ ହେବ ଏବଂ ଖମ୍ଭର ସ୍ୱରୂପ ବିଷୟରେ ମଧ୍ୟ ବିଚାର କରିବାକୁ ହେବ। କୌଣସି ମିଥ୍ୟା ଧାରଣା ପଛରେ ଥିବା ସତ୍ୟ ସମ୍ବନ୍ଧରେ ଜାଣିବା ପାଇଁ ସମାନ ଜୋର ଦେଇ ଉଭୟ ଧାରା ଏକାସାଙ୍ଗରେ ଗ୍ରହଣ କରିବାକୁ ହେବ। ମିଳିତ ଭାବରେ ଆଧ୍ୟାତ୍ମିକ ସାଧନା ସମ୍ପନ୍ନ କରୁଥିବା ଖଣ୍ଡନ-ମଣ୍ଡନର ଏହି ଦ୍ୱୈତ ଧାରା ଯୋଗୀଙ୍କ ପାଇଁ ମଧ୍ୟ କଷ୍ଟକର ବୋଲି ବିଚାର କରାଯାଏ।

ଏହି ଧାରା ଉଚ୍ଚସ୍ତରର ଯୋଗୀଙ୍କ ପାଇଁ ମଧ୍ୟ କଷ୍ଟକର ବୋଲି ବ୍ୟାଖ୍ୟା କରି ଆଚାର୍ଯ୍ୟ ପ୍ରତ୍ୟେକ ସାଧକଙ୍କର ପୂର୍ଣ୍ଣାଙ୍ଗତା ପ୍ରାପ୍ତିର ସମ୍ଭାବନାକୁ ଖଣ୍ଡନ କରୁ ନାହାଁନ୍ତି, ପରନ୍ତୁ ଆତ୍ମାନୁଭୂତିର ପଥ କେତେ କଷ୍ଟକର ତାହା ସାଧକଙ୍କୁ ଚେତାଇ ଦିଆଯାଇଛି କେବଳ। ସାଧକଙ୍କୁ ନିରୁତ୍ସାହିତ କରିବା ଉଦ୍ଦେଶ୍ୟରେ ଏହା କୁହାଯାଇ ନାହିଁ, ବରଂ ନିଜର ପ୍ରଚେଷ୍ଟାରେ ସମ୍ପୂର୍ଣ୍ଣଭାବେ ଉଦ୍ୟୋଗୀ ହେବା ପାଇଁ ସାଧକଙ୍କୁ ସତର୍କ କରିଦିଆଯାଇଛି।

ଯୋଗୀ ଅର୍ଥାତ୍ ଦ୍ୱୈତବାଦୀ ସାଧକମାନେ ଅଦ୍ୱୈତ ବାଦୀ ସାଧକଙ୍କ ପରି ନୁହନ୍ତି। ସେମାନେ (ଦ୍ୱୈତବାଦୀମାନେ) ଜୀବଙ୍କୁ ପରିଶେଷରେ ବିଲୀନ କରି ପରମସତ୍ୟଙ୍କ ସହିତ ମିଶିଯିବା ପାଇଁ ପ୍ରାୟତଃ ପ୍ରବଳ ଭୟ ଅନୁଭବ କରିଥାନ୍ତି। ଉଭୟ ଜୀବ ଏବଂ ଆତ୍ମାଙ୍କର ଚିରନ୍ତନ ସ୍ଥିତି ସମ୍ବନ୍ଧରେ ସେମାନେ ଜୋର ଦେଇ ଥାଆନ୍ତି। ସେମାନଙ୍କଠାରୁ ସ୍ୱତନ୍ତ୍ର ଏକ ବିଷୟ ଭାବରେ ପରମାତ୍ମାଙ୍କୁ ଦେଖିବାର ଆନନ୍ଦ ଅନୁଭବ କରିବାକୁ ସେମାନେ ଚାହାଁନ୍ତି। ଜୀବଭାବକୁ ସଂପୂର୍ଣ୍ଣରୂପେ ତ୍ୟାଗ କରିବାର ଯେଉଁ ଭୟ ତାଙ୍କ ମନ ଭିତରେ ଥାଏ, ତାହା ପ୍ରକାଶ କରିବାର ଏହା ହେଉଛି ଏକମାତ୍ର ଉପାୟ।

ବାସ୍ତବରେ ପରମସତ୍ୟ ହେଉଛନ୍ତି ନିର୍ଭୟ ଅବସ୍ଥା। ତଥାପି ଦ୍ୱୈତବାଦୀମାନେ ନିଜକୁ ସଂପୂର୍ଣ୍ଣଭାବେ ସମର୍ପଣ କରିବା ପାଇଁ ଜୀବଭାବର ବିନାଶ କରିବା ପାଇଁ ଭୟ

କରନ୍ତି ଏବଂ ସର୍ବତୋଭାବେ ପରମସତ୍ତା ନିଜେ ନିଜ ଉପରେ ଆଧିପତ୍ୟ ବିସ୍ତାର କରନ୍ତି ବୋଲି ଚାହାଁନ୍ତି । ଜୀବଭାବର ସଂପୂର୍ଣ୍ଣ ତ୍ୟାଗ କରିବାକୁ ଶିକ୍ଷା ନ କରିବା ପର୍ଯ୍ୟନ୍ତ ପୂର୍ଣ୍ଣାଙ୍ଗ ଆଧ୍ୟାତ୍ମିକତା ଲାଭ କରିହେବ ନାହିଁ, ଈଶ୍ୱରାନୁଭୂତି ଲାଭ କରି ହେବନାହିଁ।

ଦୁଃଖ ଶୋକର ପରିଚ୍ଛିନ୍ନ ଜୀବନଯାପନ କରୁଥିବା ସଂସାରୀ ହେଉଛି ସ୍ପର୍ଶ-ଯୋଗୀ। ଶାଶ୍ୱତସତ୍ୟର ଅନନ୍ତ ଜୀବନ ଯାପନ କରୁଥିବା ଦେବ-ତୁଲ୍ୟ ମାନବ ହେଉଛନ୍ତି ଅସ୍ପର୍ଶ-ଯୋଗୀ।

**ମନସୋ ନିଗ୍ରହାୟତ୍ତମଭୟଂ ସର୍ବ ଯୋଗିନାମ୍।**

**ଦୁଃଖକ୍ଷୟଃ ପ୍ରବୋଧଶ୍ଚାପ୍ୟକ୍ଷୟା ଶାନ୍ତିରେବ ଚ॥ ୪୦॥**

ମନସଃ = ମନର, ନିଗ୍ରହାୟତ୍ତମ୍ = ସେସାନଙ୍କ ମନର ନିୟନ୍ତ୍ରଣ ଉପରେ ନିର୍ଭରଶୀଳ, ଅଭୟମ୍ = ଅଭୟ ପାଇଁ, ସର୍ବ ଯୋଗିନାମ୍ = ସବୁ ଯୋଗୀ ମାନେ, ସାଧକମାନେ, ଦୁଃଖକ୍ଷୟ = ଦୁଃଖର ବିନାଶ, ପ୍ରବୋଧଃ = ଆତ୍ମଜ୍ଞାନ, ଚ ଅପି = ଏବଂ ମଧ୍ୟ , ଅକ୍ଷୟା ଶାନ୍ତିଃ = ଶାଶ୍ୱତ ଶାନ୍ତି, ଏବ ଚ = ଏବଂ ମଧ୍ୟ ।

*ଏହି କାରିକାରେ କୁହାଯାଇଥିବା ଜ୍ଞାନମାର୍ଗର ଅନୁସରଣ କରୁନଥିବା ଯୋଗୀ (ସାଧକ) ମାନେ ନିର୍ଭୟ ହେବା ପାଇଁ, ଦୁଃଖର ବିନାଶ କରିବା ପାଇଁ, ଆତ୍ମଜ୍ଞାନ ଓ ଶ୍ୱାଶତ ଶାନ୍ତି ପାଇଁ ମଧ୍ୟ, ସେମାନଙ୍କ ମନର ନିୟନ୍ତ୍ରଣ ଉପରେ ନିର୍ଭୟ କରନ୍ତି ॥୪୦॥*

ପୂର୍ବ ଶ୍ଳୋକରେ କୁହାଯାଇଥିବା କଥାର ବିପରୀତରେ ଏଠାରେ ଆତ୍ମାନୁଭୂତି ପାଇଁ ବେଦାନ୍ତୀମାନଙ୍କ ପନ୍ଥା ବ୍ୟତୀତ ଅନ୍ୟ ପନ୍ଥାର ଅନୁସରଣ କରୁଥିବା ସାଧକମାନଙ୍କ ବିଷୟରେ କୁହାଯାଇଛି। ମନନାଶ ପାଇଁ ସେମାନେ ପୂରାପୂରି ଶାରୀରିକ ପ୍ରକ୍ରିୟା ଉପରେ ନିର୍ଭର କରନ୍ତି। ଭକ୍ତି ମାର୍ଗରେ ଅନୁସରଣ କରୁଥିବା ସାଧକମାନେ ଆବେଗ ଉପରେ ନିର୍ଭର କରୁଥିବା ବେଳେ ହଠଯୋଗର ଅନୁସରଣକାରୀମାନେ ବିଷୟଜଗତରେ ବିଚରଣ କରୁଥିବା ଇନ୍ଦ୍ରିୟମାନଙ୍କୁ ନିବୃତ୍ତ କରିବା ପାଇଁ ପ୍ରାଣାୟମ ଉପରେ ନିର୍ଭର କରନ୍ତି। ଏପରି ଭାବେ ମନକୁ ସଂପୂର୍ଣ୍ଣଭାବେ ନିଷ୍କଳ କରନ୍ତି।

ଏହା ବେଦାନ୍ତୀମାନଙ୍କର ରୀତି ପଦ୍ଧତି ନୁହେଁ। ବେଦାନ୍ତୀ ମନକୁ ଶୁଦ୍ଧ କରି ଉଚ୍ଚତର ସାଧନ ବୁଦ୍ଧି ଦ୍ୱାରା ଏହାକୁ ନିୟନ୍ତ୍ରଣ କରନ୍ତି। ଭକ୍ତ ମନଦ୍ୱାରା ମନର ନିୟନ୍ତ୍ରଣ କରନ୍ତି, ହଠଯୋଗୀ ପ୍ରାଣାୟମ ଦ୍ୱାରା ମନର ନିୟନ୍ତ୍ରଣ କରନ୍ତି। କିନ୍ତୁ ବେଦାନ୍ତୀ କ୍ଷେତ୍ରରେ ଉଚ୍ଚତର ସାଧନ- ବୁଦ୍ଧି ଦ୍ୱାରା ମନର ନିୟନ୍ତ୍ରଣ କରାଯାଏ। ବିବେକ ପରି ସୂକ୍ଷ୍ମ ଅଭିପ୍ରାୟ ବଳରେ ବେଦାନ୍ତୀ ତାଙ୍କ ମନର ନିୟନ୍ତ୍ରଣ କରି ତାକୁ ଶୃଙ୍ଖଳିତ କରନ୍ତି।

ଏହି ଶ୍ଳୋକରେ ବ୍ୟବହାର କରା ଯାଇଥିବା ଉକ୍ତି– ଅଭୟ, ଦୁଃଖକ୍ଷୟ, ଆତ୍ମଜ୍ଞାନ ବା ଅକ୍ଷୟ ଶାନ୍ତି ଆଦି ଈଶ୍ୱରତ୍ୱ ବା ଶୁଦ୍ଧ ଚୈତନ୍ୟର ଗନ୍ତବ୍ୟସ୍ଥଳକୁ ନିର୍ଦ୍ଦେଶ କରେ। ସବୁ ସାଧକମାନେ ଏହାଙ୍କର (ଶୁଦ୍ଧ ଚୈତନ୍ୟଙ୍କର) ହିଁ ଅନୁସନ୍ଧାନ କରନ୍ତି। ପୂର୍ବ ପ୍ରବଚନମାନଙ୍କରେ ଏସବୁ ବିଷୟରେ ବିଶଦ ଭାବରେ ବ୍ୟାଖ୍ୟା କରାଯାଇଥିବାରୁ ଏଠାରେ ଗୋଟି ଗୋଟି କରି ବ୍ୟାଖ୍ୟା କରିବାର ଆଉ ଆବଶ୍ୟକତା ନାହିଁ।

**ଉତ୍ସେକ ଉଦଧେର୍ଯଦ୍‌ବତ୍କୁଶାଗ୍ରେଣୈକବିନ୍ଦୁନା।**

**ମନସୋ ନିଗ୍ରହସ୍ତଦ୍‌ବଦ୍ ଭବେଦପରିଖେଦତଃ ॥୪୧॥**

ଉତ୍ସେକଃ = ( ନିର୍ଦ୍ଦେଶ କରି) ଖାଲି କରି, ଉଦଧେଃ = ସମୁଦ୍ର, ଯଦ୍‌ବତ୍ = ଯେପରି କୁଶ ଅଗ୍ରେଣ = କୁଶ ଘାସର ଅଗ୍ରଭାଗର (ମୁନରୁ), ଏକ ବିନ୍ଦୁନା = ଟୋପେ ଟୋପେ କରି, ମନସଃ = ମନର, ନିଗ୍ରହ = ନିୟନ୍ତ୍ରଣ, ଯଦ୍‌ବତ୍ = ସେହିପରି ମଧ୍ୟ, ଭବେତ୍ = ସମ୍ଭବପର, ଅପରି–ଖେଦତଃ = ଦୃଢ଼ ପ୍ରଚେଷ୍ଟାରେ।

*କୁଶ ଘାସର ଅଗ୍ରଭାଗ ସାହାଯ୍ୟରେ ଟୋପେ ଟୋପେ କରି ସମୁଦ୍ରକୁ ଖାଲି କରିବା ପରି ଦରକାର ହେଉଥିବା ଦୃଢ଼ ପ୍ରଚେଷ୍ଟା ଦ୍ୱାରା ହିଁ ମନକୁ ନିୟନ୍ତ୍ରଣ କରି ହେବ ॥୪୧॥*

କୁଶ ଘାସର ମୁନ ସାହାଯ୍ୟରେ ସମୁଦ୍ରକୁ ଖାଲି କରିବାର ଚେଷ୍ଟା କରିବା କଥା କହିବାବେଳେ ହିତୋପଦେଶର 'ଟିଟ୍ଟିଭ' କାହାଣୀ ମନେ ପଡ଼େ। ମୂଳ କାହାଣୀରେ କୁହାଯାଇଛି ଯେ, ଛୋଟ ଗୋଟିଏ ପକ୍ଷୀ ଥରେ ସମୁଦ୍ର କୂଳରେ ଅଣ୍ଡା ଦେଲା। ଜୁଆର ସମୟରେ ପାଣି ଆସି ଅଣ୍ଡା ଗୁଡ଼ିକୁ ବୁଡ଼େଇ ଦେଲା। ସମୁଦ୍ର କୂଳକୁ ଫେରି ପକ୍ଷୀଟି ଦେଖିଲା ଯେ, ସମୁଦ୍ର ତାର ଅଣ୍ଡା ଗୁଡ଼ିକ ନେଇ ଯାଇଛି। ସମୁଦ୍ର ଶୁଖିଯାଉ ବୋଲି ପକ୍ଷୀଟି ଇଚ୍ଛାକଲା। ତାହା ହେଲେ ସେ ଅଣ୍ଡା ଗୁଡ଼ିକୁ ଫେରିପାଇବ। ଖଣ୍ଡେ ଘାସ ସାହାଯ୍ୟରେ ସେ ସମୁଦ୍ରକୁ ଶୁଖାଇବାକୁ ଆରମ୍ଭ କଲା। ସେ ସମୟରେ ଗରୁଡ଼ ଆକାଶରେ ଯାଉଥିଲେ। ତାଙ୍କର ଜଣେ ଜାତିଭାଇ ଉଦ୍ୟମ ସହକାରେ ଏପରି ଏକ ସାହସିକ କାର୍ଯ୍ୟ କରୁଥିବାର ଦେଖି ତାକୁ ସାହାଯ୍ୟ କରିବାକୁ ସ୍ଥିର କଲେ। ଗରୁଡ଼ଙ୍କ କୋପ ଦେଖି ସମୁଦ୍ର ଭୟଭୀତ ହୋଇ ପଡ଼ିଲା ଏବଂ ଚଢ଼େଇଟିକୁ ଅଣ୍ଡାଗୁଡ଼ିକ ଫେରେଇ ଦେଲା।

ଆତ୍ମାନୁଭୂତି ଲାଭ କରିବା ଯେତେ କଷ୍ଟକର ହେଲେ ମଧ୍ୟ ଜଣେ ସାଧକ ବିଶ୍ୱାସ (ଆସ୍ଥା)ସହିତ ନିରବଚ୍ଛିନ୍ନ ଭାବରେ ସେହି ମାର୍ଗର ଅନୁସରଣ କଲେ, ପକ୍ଷୀରାଜ ଆସିବାପରି ଜୀବନରେ ମହତ୍ କାର୍ଯ୍ୟ ସମ୍ପାଦନ କରିବାକୁ ସାଧକଙ୍କ ପାଖେ ଭଗବଦ୍‌କୃପା

ପହଞ୍ଚିଯିବ । ମହାନ ଦ୍ୱୈତବାଦୀମାନେ ସେକଥା ନିର୍ଦ୍ଦେଶ କରିବାକୁ ପ୍ରାୟତଃ ଏହି କାହାଣୀଟି ବ୍ୟବହାର କରିଥାନ୍ତି । ଏଠାରେ ଅବଶ୍ୟ ଏକ ଭିନ୍ନ ପରିପ୍ରେକ୍ଷୀରେ କାହାଣୀଟି ବ୍ୟବହାର କରାଯାଇଛି । ଉଭୟ ଶ୍ରୀ ବିଦ୍ୟାରଣ୍ୟ ପଞ୍ଚଦଶୀରେ ଏବଂ ମଧୁସୂଦନ ସରସ୍ୱତୀ ତାଙ୍କର ଭାଗବତ ବ୍ୟାଖ୍ୟାରେ ଏହି କାହଣୀଟିର ଉଲ୍ଲେଖ କରିଛନ୍ତି ।

ଜ୍ଞାନୀ ଅନୁସରଣ କରୁଥିବା ଆତ୍ମପ୍ରାପ୍ତି ମାର୍ଗର ବିପରୀତରେ ସାଧକ ଗ୍ରହଣ କରୁଥିବା ଉପାୟ ସମ୍ବନ୍ଧରେ ପୂର୍ବ ଶ୍ଳୋକରେ ଆଲୋଚନା କରାଯାଇଛି । ଗୋଟିଏ ଗୋଟିଏ କରି ଚିନ୍ତାର ବିନାଶ କରିବା ବା ନିରାକରଣ କରିବା ହେଲା ଯୋଗୀଙ୍କର ରୀତି । ଚିନ୍ତା ଦ୍ୱାରା ସେ ମନର ଚିନ୍ତା-ପାତ୍ର ଶୂନ୍ୟ କରନ୍ତି । ବିନାଶ କରିବା ପ୍ରକ୍ରିୟାରେ ମନକୁ ଚିନ୍ତାଶୂନ୍ୟ କରନ୍ତି । ଏହା ବଡ଼ କଷ୍ଟସାଧ୍ୟ ଉପାୟ ଏବଂ କୁଶାଗ୍ରରେ ସମୁଦ୍ରକୁ ଶୂନ୍ୟ କରି ପାରିବା ପରି ପ୍ରାୟ ଅସମ୍ଭବ ବୋଲି ଦେଖାଇ ଦେବା ହେଉଛି କାରିକାରେ ଗୌଡ଼ପାଦଙ୍କର ଅଭିପ୍ରାୟ ।

ଯାହା ହେଉ ସେହି ରୀତି ସଫଳ ହେବ ନାହିଁ ବୋଲି ଆଚାର୍ଯ୍ୟ ଏଠାରେ କହି ନଥିବାର ଲକ୍ଷ୍ୟ କରିବା କଥା, ସେହି ରୀତିରେ ମଧ୍ୟ ଆମେ ନିଶ୍ଚିତ ଭାବରେ ଚିନ୍ତାଶୂନ୍ୟ ଅବସ୍ଥା ଲାଭ କରି ପାରିବା, କିନ୍ତୁ ଏହା ବଡ଼ କଷ୍ଟସାଧ୍ୟ ଏବଂ ନିରବିଚ୍ଛିନ୍ନ ଏବଂ ନିଷ୍ପାପର ଧ୍ୟାନ ଦ୍ୱାରା ଲାଭ କରାଯାଇ ପାରୁଥିବା ଭଗବତ୍ କୃପା ବା ଗୁରୁକୃପା ବ୍ୟତୀତ ଜଣେ ସାଧାରଣ ସାଧକ ପାଇଁ ଏହା ପ୍ରାୟ ଅସମ୍ଭବ ।

ଏହି ଅଧ୍ୟାୟର ଶେଷ ସାତୋଟି ଶ୍ଳୋକ ପାଇଁ ଏହି ଶ୍ଳୋକଟି ଏକ ଉପକ୍ରମଣିକା ପରି । ପୂର୍ବରୁ ଆମେ ଦେଖିଛେ, ଏହା ହେଉଛି ଉପଦେଶ ଗ୍ରନ୍ଥ । ସେଥିପାଇଁ ଏହି ନିର୍ଦ୍ଦିଷ୍ଟ ସାହିତ୍ୟର ନିୟମ ଅନୁସାରେ ଗୌଡ଼ପାଦ ଆତ୍ମାନୁଭୂତିର ସାଧକମାନଙ୍କୁ ସ୍ପଷ୍ଟ ନିର୍ଦ୍ଦେଶ ଦେବା ଦରକାର । ଏହି ସାତୋଟି ଶ୍ଳୋକରେ ସତ୍ୟପଥର ନିର୍ଦ୍ଦେଶରେ ଉପଦେଶର ଏକ ଗନ୍ତାଘର ଥିବାର ଆମେ ଦେଖିବାକୁ ପାଉ । ଜଣେ ସାଧକ ଯଦି ପ୍ରକୃତରେ ଉଦ୍ୟମୀ ହୋଇ ଥାଆନ୍ତି, ତେବେ ଏହା ପରଠାରୁ ତାଙ୍କ ସାଧନା ମାର୍ଗରେ କୌଣସି ଗୁରୁତର ସମସ୍ୟା ଦେଖାଦେବ ନାହିଁ ।

**ଉପାୟେନ ନିଗୃହ୍ଣୀୟାଦ୍‌ବିକ୍ଷିପ୍ତଂ କାମଭୋଗୟୋଃ ।**
**ସୁପ୍ରସନ୍ନଂ ଲୟେ ଚୈବ ଯଥା କାମୋ ଲୟସ୍ତଥା ॥୪୨॥**

ଉପାୟେନ = ଯଥାଯଥ ଉପାୟ ଦ୍ୱାରା, ଗୃହ୍ଣୀୟାତ୍ = (ମନକୁ) ଶୃଙ୍ଖଳିତ କରିବା କଥା, ବିକ୍ଷିପ୍ତମ୍ = ଯାହା(ଚିତ୍ତ) ବିଚଳିତ ହୁଏ, କାମ = କାମନା ଯୋଗୁଁ, ଭୋଗୟୋଃ = ଏବଂ ଉପଭୋଗ, ସୁପ୍ରସନ୍ନମ୍ = ସୁଖ ଉପଭୋଗ କରି, ଲୟେ = ସୁଷୁପ୍ତିରେ, ଚ ଏବ = ଏବଂ ମଧ୍ୟ, ଯଥା = ଯେପରି, କାମ = କାମନା, ଲୟଃ = ଯେଉଁଠାରେ ସବୁ ଲୀନ ହୋଇଯାଏ, ଯଥା : ନିଦ, ବିସ୍ମରଣ, ତଥା = ସେହିପରି ।

*କାମନା ଏବଂ ଉପଭୋଗରେ ବିକ୍ଷିପ୍ତ ମନ ତଥା ସଂପୂର୍ଣ୍ଣ ବିସ୍ମରଣ(ଲୟ)ର ସୁଖ ଉପଭୋଗ କରୁଥିବା ମନକୁ ଯଥାଯଥ ଉପାୟରେ ଜାଗ୍ରତ କରି ଶୃଙ୍ଖଳିତ କରିବାକୁ ହେବ । କାରଣ, କାମନାର ବିକ୍ଷେପ ପରି ଲୟ ବା ସମ୍ମୋହିତ ଅବସ୍ଥା ମଧ୍ୟ କ୍ଷତିକାରକ ॥୪୨॥*

ସମ୍ଭାବ୍ୟ ପ୍ରତିବନ୍ଧକ ସମ୍ବନ୍ଧରେ ଏବଂ ସେମାନଙ୍କର ନିରାକରଣ ସମ୍ବନ୍ଧରେ ଧ୍ୟାନମାର୍ଗର ସାଧକମାନଙ୍କୁ ଆବଶ୍ୟକୀୟ ସୂଚନା ଦେବା ପାଇଁ ଗୌଡ଼ପାଦ ଏହି ଶ୍ଲୋକରେ ଚେଷ୍ଟା କରୁଛନ୍ତି । ଏହା ଦ୍ୱାରା ଧ୍ୟାନାସନରେ ସେ ସଚେତନ ଭାବରେ ମନକୁ ସେହି ସବୁ ବିପଦରୁ ଅପସାରିତ କରି ପାରିବେ ଏବଂ ପୁନଃ ଯାତ୍ରାପାଇଁ ଏହାକୁ ବାଧ୍ୟ କରି ପାରିବେ ।

ଧ୍ୟାନ ସମୟରେ ଅଜାଣତରେ ମନ ଯେଉଁ ଦୁଃଖଦ ବାଧାରେ ପଡ଼ିଯାଏ, ସଂସ୍କୃତରେ ତାକୁ ଲୟ (ସୁଷୁପ୍ତି, ଚେତନାହୀନତା) କୁହାଯାଏ । ଧ୍ୟାନ ସମୟରେ ମନକୁ ବିଷୟ ଜଗତରୁ ଅପସାରିତ କଲେ, ଏକାଗ୍ରଚିତ୍ତ ମାଧ୍ୟମରେ ଶାନ୍ତ ମନ ଏକାଗ୍ର ହୋଇଗଲେ ଏହା ସୁଷୁପ୍ତି ରୂପକ ଗଭୀର ଅଜ୍ଞାନରେ ପଡ଼ିଯିବାର ସମ୍ଭାବନା ଥାଏ । ସାଧରଣତଃ ଆମେ ଯେଉଁ ନିଦ୍ରା ଯାଉ ବା ଶୋଇଥାଉ, ଏହା ସେପରି ନୁହେଁ । ବାସ୍ତବରେ ଏହା ଏକ ଆନନ୍ଦଦାୟକ, ଆକର୍ଷଣୀୟ ମୁହୂର୍ତ୍ତ । ଅନେକ ସମୟରେ ଏହାକୁ 'ସଂଜ୍ଞାହୀନତା' ବୋଲି କୁହାଯାଇଥାଏ । କିନ୍ତୁ ଏହି ପଦଟି ବିଜ୍ଞାନସମ୍ମତ ନୁହେଁ । ମହାନ ଆଚାର୍ଯ୍ୟଙ୍କର ଉପଦେଶ ହେଲା -ଏପରି ସମୟରେ ଆମେ ମନକୁ ସଚେତନ ରଖି ତାକୁ ପୁଣି ସକ୍ରିୟ ରଖିବା ଉଚିତ ।

ପୁନଶ୍ଚ ମନ ଅତୀତରେ ଅନୁଭବ କରିଥିବା ଆନନ୍ଦର ସ୍ମୃତିରେ, କିମ୍ବା ବର୍ତ୍ତମାନ ଅନୁଭବ କରୁଥିବା ଆନନ୍ଦରେ କିମ୍ବା ଭବିଷ୍ୟତରେ ପରିପୂର୍ଣ୍ଣ ହେବାକୁ ଥିବା ଇନ୍ଦ୍ରିୟ ସନ୍ତୁଷ୍ଟିର ଗୋଲକ ଧନ୍ଦାରେ ଘୂରିବୁଲେ । ଆତ୍ମାନୁଭୂତି ପଥର ଜଣେ ପ୍ରକୃତ ପଥିକ

ପାଇଁ, 'ଆଧ୍ୟାତ୍ମିକ ନିଦ୍ରା (ଲୟ)'ର ସୁଖ ପ୍ରତି ଆକର୍ଷଣ, କାମନା ପରି କ୍ଷତିକାରକ। ଲୟ ବା ଅସୀମ କାମନା-ବିକ୍ଷେପର ଶିକାର ହେଉଥିବା ପର୍ଯ୍ୟନ୍ତ ଧ୍ୟାନକର୍ତ୍ତା ମାନସିକ ବିଜୟରେ  ଅଗ୍ରଗତି କରି ପାରିବ ନାହିଁ।

**ଦୁଃଖଂ ସର୍ବମନୁସ୍ମୃତ୍ୟ କାମ ଭୋଗାନ୍ନିବର୍ତୟେତ୍।**
**ଅଜଂ ସର୍ବମନୁସ୍ମୃତ୍ୟ ଜାତଂ ନୈବ ତୁ ପଶ୍ୟତି ॥୪୩॥**

ଦୁଃଖଂ = ଦୁଃଖଗ୍ରସ୍ତ, ସର୍ବମ୍ = ସମସ୍ତ, ଅର୍ଥାତ୍ ଇନ୍ଦ୍ରିୟମାନେ, ଅନୁସ୍ମୃତ୍ୟ = ବୃଦ୍ଧି ପାଉଥିବା ବିଶ୍ୱାସରେ, କାମ ଭୋଗାତ୍ = (କାମନା ପ୍ରଣୋଦିତ) ଆନନ୍ଦ ଉପଭୋଗରୁ, ନିବର୍ତୟେତ୍ = ଅପସରଣ କର, ମନକୁ ଫେରାଇ ଆଣ; ଅଜମ୍ = ଅଜ, ବ୍ରହ୍ମ; ସର୍ବମ୍ = ସମସ୍ତ ଅର୍ଥାତ୍ ସୃଷ୍ଟି କରାଯାଇଥିବା ଦ୍ୱୈତବାଦ, ଅନୁସ୍ମୃତ୍ୟ = ନିରନ୍ତର ଚିନ୍ତନ କରି, ଜାତମ୍ = ସୃଷ୍ଟ ଦ୍ୱୈତବାଦ (ଆକ୍ଷରିକ ଅର୍ଥରେ ଜନ୍ମ ନେଇଥିବା), ନ ଏବ = (ସତ ପରି) ଆଦୌ ନୁହେଁ, ତୁ ପଶ୍ୟତି = ଆମର ଦେଖିବାରେ ଅନଧିକାର ପ୍ରବେଶ କରିଥିବା (ଆକ୍ଷରିକ ଅର୍ଥରେ, ପ୍ରକୃତରେ ଦେଖେ)।

*ବିଷୟ ପଦାର୍ଥ ସର୍ବଦା ଦୁଃଖ ଦାୟକ, ଏହି ବିଶ୍ୱାସ ବଢ଼ାଇ ମନକୁ ସୁଖର ଉପଭୋଗରୁ ଫେରାଇ ଆଣ। ଅଜ, ଅବିକାରୀ ବ୍ରହ୍ମଙ୍କ ସମ୍ବନ୍ଧରେ ନିରନ୍ତର ଚିନ୍ତନ କଲେ ସୃଷ୍ଟି ହୋଇଥିବା ଦ୍ୱୈତଭାବ ଆମ ଉପଲବ୍ଧିରେ ପ୍ରବେଶ କରିବ ନାହିଁ ॥୪୩॥*

କାମନାରୁ ଆମେ ଆମର ମନକୁ କିପରି ଦୂରେଇ ନେବା ବୋଲି ପୂର୍ବବର୍ତ୍ତୀ ଶ୍ଳୋକରେ କୁହା ଯାଇଛି। ଆମକୁ କୁହାଯାଇ ସାରିଛି ଯେ, ଆଧ୍ୟାତ୍ମିକ ଜଗତରେ ମନର କାର୍ଯ୍ୟକଳାପକୁ ପୋଛି ଦେବାକୁ ହେବ ଏବଂ ତାପରେ ଏହା ନାଶ ହୋଇଯିବାର ଅବସ୍ଥାରେ ପହଞ୍ଚିବା ପାଇଁ ଆମେ ଉଦ୍ୟମ କରିବା। ହଜାର ହଜାର ବିକ୍ଷୁବ୍ଧ ଚିନ୍ତାରେ ଘାରି ହେଉଥିବା ଆମର ମନକୁ କିପରି  ନିୟନ୍ତ୍ରଣ  କରିବାକୁ ହେବ ଏଠାରେ ତାର ନିର୍ଦ୍ଦେଶ ଦିଆ ଯାଇଛି।

ଉପଭୋଗର କାମନାରେ ମନ ସାଧାରଣତଃ ଇନ୍ଦ୍ରିୟ-ବିଷୟରେ ରମଣ କରିଥାଏ। ଇନ୍ଦ୍ରିୟ-ବିଷୟମାନଙ୍କ ସମ୍ବନ୍ଧରେ ସାଧାରଣତଃ ନିମ୍ନୋକ୍ତ ତିନିଗୋଟି ମିଥ୍ୟା (ଅସତ୍ୟ) ବିଶ୍ୱାସ ଯୋଗୁଁ  ମନ ଏହିସବୁ ବିଷୟ ପାଖକୁ ଦଉଡ଼ି ପାରେ -

(କ) ଯେ ସେମାନେ ସତ୍ୟ(ସତ୍ୟତ୍ୱ ଭାବନା)

(ଖ) ଯେ ସେମାନେ ନିତ୍ୟ (ନିତ୍ୟତ୍ୱ ଭାବନା) ଏବଂ

(ଗ) ଯେ ସମ୍ଭବତଃ ସେମାନଙ୍କଠାରେ ସୁଖ ଅଛି (ସମଚିତ୍ତତ୍ୱ ଭାବନା)।

ମନ ବିଷୟ ଉପରେ ଏହି ତିନିଗୋଟି ମିଥ୍ୟା ମୂଲ୍ୟବୋଧର ଅଧ୍ୟାସ କରିଥାଏ। ବିଷୟମାନଙ୍କଠାରେ ଏହି ମୂଲ୍ୟ ନ ଥାଏ।

ଜଗତର ବିଷୟମାନଙ୍କଠାରେ ଏହି ମହାନ ମୂଲ୍ୟ ଥିବାର ଏକ ଅନ୍ଧ-ବିଶ୍ୱାସ ସ୍ୱାଭାବିକ ଭାବେ ଆମଠାରେ ରହିଛି। ଏହି ମୂଲ୍ୟ କାମ କରୁନଥିବା ସ୍ଥାନକୁ ମନ ପହଞ୍ଚିବା ପାଇଁ କାମନା କରେ ନାହିଁ- ଏହା ମଧ୍ୟ ସତ୍ୟ । ମନକୁ ଶିକ୍ଷା ଦେବା ପାଇଁ ଆମଠାରେ ଏକମାତ୍ର ଶିକ୍ଷକ ହେଲା ଆମର ଶୁଦ୍ଧ ବୁଦ୍ଧି। କିନ୍ତୁ ବର୍ତ୍ତମାନ ଅଧିକାଂଶ ର ବୁଦ୍ଧି ହେଉଛି ଏକ ଖୋଳରେ ଥିବା ଅସ୍ତ୍ର। ନିଜେ ନିଜ ଉପରେ ପକାଇଥିବା ଆବରଣରୁ ମନକୁ ମୁକ୍ତ କରିବା ପାଇଁ ସାଧକକୁ ଉପଦେଶ ଦିଆଯାଇଥାଏ।

ବୁଦ୍ଧିର ସ୍ୱଚ୍ଛ ଆଲୋକକୁ ଅସ୍ପଷ୍ଟ କରୁଥିବା ମାନସିକ କୁହୁଡ଼ିର ନିରାବରଣ କର। ମନର କୁହୁକ ଜାଲରୁ ବୁଦ୍ଧିକୁ ମୁକ୍ତ କରିବାକୁ ଆଧ୍ୟାତ୍ମିକ ସାହିତ୍ୟରେ ବିବେକର ବିକାଶ କୁହାଯାଇଥାଏ। ଇନ୍ଦ୍ରିୟ ବିଷୟମାନଙ୍କରେ ଥିବା ଆନନ୍ଦକୁ ବୁଦ୍ଧିମତ୍ତାର ସହିତ ବିଶ୍ଳେଷଣ କରିବାକୁ ଆରମ୍ଭ କଲେ ଆମେ ସେମାନଙ୍କର ଅନ୍ତଃସାରଶୂନ୍ୟତା ବୁଝି ପାରିବା। ତାପରେ ବ୍ୟକ୍ତି ତା ନିଜର କୁସଂସ୍କାରଗ୍ରସ୍ତ ମିଥ୍ୟା ମୂଲ୍ୟବୋଧର ଭ୍ରମାତ୍ମକ ଯୁକ୍ତି ବୁଝିପାରେ ଏବଂ ସେ ଆଉ ଇନ୍ଦ୍ରିୟ-ବିଷୟମାନଙ୍କର ମିଥ୍ୟା ଆଶାଯୁକ୍ତ ଦୁଃଖଦ ନୃତ୍ୟରେ ବିମୋହିତ ହୋଇ ପବିତ୍ର ମାର୍ଗରୁ ବିଚ୍ୟୁତ ହୁଏ ନାହିଁ। ଜାଗ୍ରତ ବୁଦ୍ଧିର ଉଚ୍ଚ ଶିଖରରୁ ଜଗତକୁ ନିରୀକ୍ଷଣ କରୁଥିବା ବୁଦ୍ଧି ପାଇଁ ବିଷୟରେ କୌଣସି ସୁଖ ନାହିଁ ବା ଦୁଃଖ ନାହିଁ। ମୁକୁଳା ଅବସ୍ଥାରେ ସେମାନେ ତାଙ୍କର ଶୂନ୍ୟତା ଏବଂ ଅକର୍ମଣ୍ୟତାର ବାସ୍ତବ ସ୍ୱରୂପ ପ୍ରକାଶ କରନ୍ତି। ସ୍ଥିର ବୁଦ୍ଧି ହିଁ କେବଳ ଏହି ମିଥ୍ୟା ଆବରଣ ଭିତରେ ପ୍ରବେଶ କରି ବିଷୟ-ଜଗତର ଯନ୍ତ୍ରଣାଦାୟକ କ୍ଷତ ଧରି ପାରିବ।

ଶୁଦ୍ଧ ଯୁକ୍ତି ମାଧ୍ୟମରେ ଜୀବନକୁ ନିରୀକ୍ଷଣ କରି ଏବଂ ତାର ମୂଲ୍ୟାୟନ କରି ଜୀବନଯାପନ କରିବାର ଶିକ୍ଷା କରିବାକୁ ଶ୍ରୀ ଗୌଡ଼ପାଦ ଜ୍ଞାନ ମାର୍ଗୀମାନଙ୍କୁ ଏଠାରେ ଉପଦେଶ ଦେଇଛନ୍ତି। ନିୟମିତ ଭାବରେ ଜ୍ଞାନମାର୍ଗର ଅନୁସରଣ କରୁଥିବା ସାଧକ ଅତୀତ ଉପଭୋଗର ସ୍ମୃତି ଦ୍ୱାରା କିମ୍ବା ବର୍ତ୍ତମାନର ଆନନ୍ଦରେ ମଗ୍ନ ହେବା ଦ୍ୱାରା କିମ୍ବା ଭବିଷ୍ୟତରେ ପୂରଣ ହେବାକୁ ଥିବା ଜିନିଷର ଆନନ୍ଦଦାୟକ କାମନା ଦ୍ୱାରା ଧ୍ୟାନାସନରେ ଆଉ ବିଚଳିତ ହେବ ନାହିଁ। ଏହି ଅଭ୍ୟାସ ଦ୍ୱାରା ଜ୍ଞାନମାର୍ଗୀ ତାର ମାନସିକ ବିକ୍ଷେପକୁ ନିୟନ୍ତ୍ରଣ କରେ।

ଏହିପରି ଭାବରେ ମନର ବିଚରଣକୁ ଜୟ କଲେ ମଧ୍ୟ ନିରନ୍ତର ଭୁକୁଥିବା ପରି ମନେ ହେଉଥିବା ଇନ୍ଦ୍ରିୟରୁପୀ ପାଞ୍ଚୋଟି କୁକୁର ଆତ୍ମାର ନୀରବତାକୁ ଭାଙ୍ଗି ଦିଅନ୍ତି। ଧ୍ୟାନାବସ୍ଥାରେ ଯେକୌଣସି ସାଧକ ଏହା ଆଉ ଅନୁଭବ କରନ୍ତି ନାହିଁ। ଏଠାରେ ଗୌଡ଼ପାଦ ସେମାନଙ୍କୁ ମଧ୍ୟ କହିଛନ୍ତି ଯେ ସର୍ବବ୍ୟାପୀ ସତ୍ୟଙ୍କ ସମ୍ବନ୍ଧରେ ସଦା-ସଚେତନ ଥିବା ସାଧକର ମନରେ ଏହି ଇନ୍ଦ୍ରିୟମାନେ କୌଣସି ଆଲୋଡ଼ନ ସୃଷ୍ଟି କରିପାରିବେ ନାହିଁ। ଏପରି ସାଧକଙ୍କ ପାଇଁ ଇନ୍ଦ୍ରିୟ-ବିଷୟ ତା ନିଜର ଇନ୍ଦ୍ରିୟ ବ୍ୟତୀତ ଅନ୍ୟ କିଛି ନୁହେଁ, 'ଧ୍ୱନି' ତାର 'କାନ' ବ୍ୟତୀତ ଅନ୍ୟ କିଛି ନୁହେଁ, 'ରୂପ' 'ଦୃଷ୍ଟି'ବ୍ୟତୀତ ଅନ୍ୟ କିଛି ନୁହେଁ। କାରଣ ଜଗତରେ ଯଦି ରୂପ ବା ରଙ୍ଗ ନଥାନ୍ତା, ଆମର ଚକ୍ଷୁ- ଇନ୍ଦ୍ରିୟକୁ ଆମେ ଚିହ୍ନି ପାରନ୍ତେ ନାହିଁ। ସେତେବେଳେ ଆଖି ଦୁଇଟି ନାକର ଦୁଇ ପାଖେ ଦୁଇଟି ଅର୍ଥହୀନ କଣା ବ୍ୟତୀତ ଅନ୍ୟ କିଛି ହେବେ ନାହିଁ। ନାଭି ପରି ତାହାକୁ ମଧ୍ୟ ବ୍ୟାଖ୍ୟା କରି ହୁଅନ୍ତା ନାହିଁ।

ସେହିପରି ସୁଦୂର ପ୍ରସାରିତ 'କର୍ଣ୍ଣ' ହେଉଛି 'ଶବ୍ଦ'; ପ୍ରକ୍ଷେପିତ 'ଦୃଷ୍ଟି' 'ରୂପ' ଏବଂ 'ରଙ୍ଗ' ଇତ୍ୟାଦି। କିନ୍ତୁ ଆଖି ଏବଂ ଅନ୍ୟାନ୍ୟ ଇନ୍ଦ୍ରିୟମାନଙ୍କ ପଛରେ ଥିବା ଚେତନ-ତତ୍ତ୍ୱ ହେଉଛନ୍ତି ପରମସତ୍ୟ, ମନ ଏବଂ ବୁଦ୍ଧି ପଛରେ ଥିବା ଚେତନ-ତତ୍ତ୍ୱ ମଧ୍ୟ ସେହି ପରମସତ୍ୟ। ନିଜର ଦିବ୍ୟ ସର୍ବବ୍ୟାପକତାର ଅଖଣ୍ଡ ଚେତନାରେ ଅବସ୍ଥାପିତ ସେ ଇନ୍ଦ୍ରିୟ ଆକର୍ଷଣର ଅନନ୍ତ ଗୋଲକଧନ୍ଦାରେ ଆଉ ପଶିବେ ନାହିଁ।

**ଲୟେ ସଂବୋଧୟେତ୍‌ଚିତ୍ତଂ ବିକ୍ଷିପ୍ତଂ ଶମୟେତ୍ ପୁନଃ।**

**ସକଷାୟଂ ବିଜାନୀୟାତ୍‌ସମପ୍ରାପ୍ତଂ ନ ଚାଲୟେତ୍ ॥୪୪॥**

ଲୟେ = (ଜଣେ ଯେତେ ବେଳେ) ବିସ୍ମରଣରେ ମିଶିଯାଏ(ଶୋଇପଡ଼େ), ସଂବୋଧୟେତ୍ = ଜାଗ୍ରତ ହେବା କଥା, ଚିତ୍ତମ୍ = ମନ, ବିକ୍ଷିପ୍ତମ୍ = (କାମନା ଏବଂ ଉପଭୋଗରେ) ଯେତେବେଳେ ବିକ୍ଷିପ୍ତ ହୋଇଯାଏ, ଶମୟେତ୍ = ଶାନ୍ତ କରିବାକୁ ହେବ, ପୁନଃ = ପୁଣି, ସକଷାୟମ୍ = ସୁପ୍ତ କାମନା, ବିଜାନୀୟାତ୍ = ଜାଣିବାକୁ ହେବ, ସମପ୍ରାପ୍ତମ୍ = ଶାନ୍ତ ହୋଇଯାଏ, ନ ଚାଲୟେତ୍ = ବିଚଳିତ ହେବ ନାହିଁ।

*ଏହି ବିସ୍ମରଣ ଅବସ୍ଥାରେ ଆମେ ମନକୁ ପୁଣି ଜାଗ୍ରତ କରିବା ଦରକାର, ବିକ୍ଷିପ୍ତ ହେଲେ ତାକୁ ଶାନ୍ତ କରିବା ଦରକାର, ଏ ଭିତରେ ଆମେ ବୁଝିବା କଥା ଯେ, ଅବ୍ୟକ୍ତ କିନ୍ତୁ ସମର୍ଥ କାମନାରେ ମନ ପରିପୂର୍ଣ୍ଣ। ମନ ସଂପୂର୍ଣ୍ଣ ସାମ୍ୟାବସ୍ଥାରେ ପହଞ୍ଚିଗଲେ ତାକୁ ପୁଣି ବିଚଳିତ କରନାହିଁ ॥୪୪॥*

ଏହି ଶ୍ଳୋକଟିର ଦିବ୍ୟତା ଏତେ ବିଶଦ ଏବଂ ସବିଶେଷ ବର୍ଣ୍ଣନାରେ ଏପରି ପରିପୂର୍ଣ୍ଣ ଯେ ପରମସତ୍ୟ ଅଭିମୁଖେ ଯାତ୍ରା କରିବା ପାଇଁ ଏହାର ପ୍ରତ୍ୟେକଟି ଅକ୍ଷର ହେଉଛି ଅପରିହାର୍ଯ୍ୟ ମାଇଲ ଖୁଣ୍ଟ ସଦୃଶ।

ସାଧନାର ପ୍ରାଥମିକ ଅବସ୍ଥାରେ ଅଜ୍ଞାନ ମଧ୍ୟ ଦେଇ ଲୟରେ ପହଞ୍ଚିଥିବା ବେଳେ ମନ ଧୀରେ ଧୀରେ ଶାନ୍ତ ହୁଏ। ମନକୁ ଲୟରୁ ଜାଗ୍ରତ କରି ପୁନଃପୁନଃ ସକ୍ରିୟ କରିବା ପାଇଁ ଏଠାରେ ଉପଦେଶ ଦିଆ ଯାଇଛି। ବାରମ୍ବାର ଆତ୍ମ-ପ୍ରଚେଷ୍ଟା ଦ୍ୱାରା ମନକୁ ଜୟ କଲେ ଆମେ ଏପରି ଏକ ଅବସ୍ଥାରେ ପହଞ୍ଚିବା, ଯେଉଁଥିରେ ମନ ନିଜେ ନିଜେ ଲୟକୁ ସ୍ଖଳିତ ହେବ ନାହିଁ।

ଏହି ଅବସ୍ଥାରେ ସାଧକ ପାଇଁ ବିଘ୍ନ ହେଲା ଏପରି ଜାଗ୍ରତ ମନକୁ ଏକାଗ୍ର କଲେ ତାହା ସହଜରେ ସେଠାରେ ନରହି ଭୁଲ ଚିନ୍ତା ପ୍ରବାହରେ ନିଜେ ନିଜେ ଭାସିଯାଏ। ଏହା ଅତୀତର ଉପଭୋଗ ସ୍ମୃତିକି ଚାଲିଯାଏ କିମ୍ବା ବର୍ତ୍ତମାନ ଆନନ୍ଦର କ୍ଷେତ୍ରରେ ବିଚରଣ କରେ ଅଥବା ଆନନ୍ଦ-ପୂର୍ତ୍ତିର କାମନା କରୁଥିବା ସୁଦୂରବର୍ତ୍ତୀ ଭବିଷ୍ୟତକୁ ଉଡ଼ିଯାଏ। ମନର ଏପରି ବିକ୍ଷିପ୍ତ ଅବସ୍ଥାରେ, ମନକୁ କିପରି ଶିକ୍ଷା ଦିଆଯିବ ଏବଂ ଏହାର ମିଥ୍ୟା ମୂଲ୍ୟବୋଧ ଦୂରକରି, ବିବେକ ଦ୍ୱାରା ଏହାକୁ ଧ୍ୟାନର ଚରମ ଅବସ୍ଥାରେ କିପରି ଅଧିକ ସ୍ଥିର କରାଯିବ ବୋଲି ପୂର୍ବ ଶ୍ଳୋକରେ ଉପଦେଶ ଦିଆଯାଇଛି।

ଏପରି ଭାବରେ ମନକୁ ଲୟରୁ ଜାଗ୍ରତ କରି ଗତିପଥରେ ଉଦ୍ୟମର ସହିତ ଏହାକୁ ଆଗେଇ ନେଲେ ବ୍ରହ୍ମବିଦ୍ୟାର ସାଧକ ହଠାତ୍ ହୁଏତ ନିଜ ସମ୍ବନ୍ଧରେ ଏବଂ ନିଜର ମନ ସମ୍ବନ୍ଧରେ ଏକ ଅତି ଆଶାବାଦୀ ମତ ପୋଷଣ କରି ବସିବ ଏବଂ ମନ ଜୟ କରିଛି ତ ଆତ୍ମାନୁଭୂତି ଦିଗରେ ସହଜରେ ଆଗେଇଯିବ ବୋଲି ଏକ ତରବରିଆ ସିଦ୍ଧାନ୍ତରେ ପହଞ୍ଚିଯିବ।ଗୌଡ଼ପାଦ କରୁଣାପରବଶ ହୋଇ ଏଠାରେ ଜଣେ ଅପରିପକ୍ୱ ସାଧକର ଆଶାକୁ ମୂଳରୁ ମାରି ଦେଇଛନ୍ତି।

ଭଗବାନ କହୁଛନ୍ତି ଯେ ସେହି ସମୟ ପାଇଁ ମନ ନିୟନ୍ତ୍ରିତ ହୋଇ ସଂସ୍କୃତି ସମ୍ପନ୍ନ ପରି ବ୍ୟବହାର କରୁଥିବାର ମନେ ହେଉଥିଲେ ବି ମନ ଉପରେ ସାଧକର ଏପରି ଆଧିପତ୍ୟ ହେଲେ ମଧ୍ୟ, ତା ମନର ଅବଚେତନତାରେ ଶକ୍ତିର ନିଷେଧାତ୍ମକ ଛାପ ରହିଛି ବୋଲି ସେ ବୁଝିବା ଦରକାର। ଅନାଦିକାଳରୁ, ଜନ୍ମ ସମୟରେ ତାଦ୍ୱାରା ସଂଗୃହୀତ ପାଶବିକ ପ୍ରବୃତ୍ତି ବର୍ତ୍ତମାନ ଅବଚେତନ ମନରେ ସୁପ୍ତ ହୋଇ ରହିଛି - ଶୃଙ୍ଖଳା ବିରୁଦ୍ଧରେ ଯେକୌଣସି ମୁହୂର୍ତ୍ତରେ ସେମାନେ ବିଦ୍ରୋହ କରି ପାରନ୍ତି ଏବଂ

ସାଧକର ସଫଳତାର ସ୍ୱପ୍ନକୁ ହତାଶାରେ ଧୂଳିସାତ୍ କରିଦେଇ ପାରନ୍ତି। ଆଧ୍ୟାତ୍ମିକ ଅନ୍ୱେଷଣରେ ଏହାପର ଠାରୁ ସାଧକ ହତାଶ ନହେବା ପାଇଁ ଏହା ଏକ ସାବଧାନ ବାଣୀ ଏବଂ ଏହା ସାହାଯ୍ୟ ମଧ୍ୟ କରିବ।

ତା ମନରେ ବର୍ତ୍ତମାନ ସୁପ୍ତ ଅବସ୍ଥାରେ ଥିବା ଏହି ଅବଚେତନ ପାଶବିକ ପ୍ରବୃତ୍ତି, ବିବେକଶୀଳ ସମୁଜ୍ଜ୍ୱଳ ଧ୍ୟାନର ଅଗ୍ନିରେ ଭସ୍ମୀଭୂତ ହେବା ପୂର୍ବରୁ ଥରକ ପାଇଁ ଅନ୍ତତଃ ଦେଖା ଦେବ। ମନର ଏହି ପାଶବିକ ପ୍ରବୃତ୍ତିକୁ କଷାୟ ବୋଲି କୁହାଯାଏ।

ଏହିପରି ଭାବରେ ସାଧକ ବିକ୍ଷେପ ଏବଂ କଷାୟ ଉପରେ ବିଜୟ ଲାଭ କଲେ ପରମସତ୍ୟର ଦ୍ୱାରଦେଶରେ କରାଘାତ କରିପାରିବ। "କବାଟରେ ଆଘାତ କର, ଭିତରକୁ ପଶି ପାରିବ", ଏହା ହିଁ ପ୍ରଭୁଙ୍କର ପ୍ରତିଶ୍ରୁତି, ଏବଂ କବାଟ ଆଘାତ କରୁଥିବାବେଳେ ଏହା ଖୋଲିବା ପର୍ଯ୍ୟନ୍ତ ତୁମର ଧୈର୍ଯ୍ୟ ରହିବା ଦରକାର। ମନ ସମ-ଅବସ୍ଥା ଲାଭ କରିବା ପରେ ତାକୁ ପୁଣି ବିଚଳିତ କର ନାହିଁ, କହି ଏହି କଥାକୁ ସୂଚାଇ ଦିଆଯାଇଛି।

ନଶ୍ୱର ପାଇଁ ଧ୍ୟାନର ଉଜ୍ଜ୍ୱଳ ପ୍ରଭାରେ ମନ ଶୋଇ ନଥିବା ବା ବିଚଳିତ ହୋଇ ନଥିବା ସମୟରେ- ନୀରବ, ଶକ୍ତିଶାଳୀ ଶୂନ୍ୟତାର ଭାବାତୀତ ଅନୁଭୂତି ସମୟରେ ଏହାକୁ ବିଚଳିତ କରିବା ନିଜ ବିରୁଦ୍ଧରେ ମହାପାପ କରିବା।

**ନାଽଽ ସ୍ୱାଦୟେତ୍ସୁଖଂ ତତ୍ର ନିଃସଙ୍ଗଃ ପ୍ରଜ୍ଞୟା ଭବେତ୍।**
**ନିଶ୍ଚଳଂ ନିଶ୍ଚରତ୍‌ଚିତ୍ତମ୍ ଏକୀ କୁର୍ଯ୍ୟାତ୍ ପ୍ରଯତ୍ନତଃ ॥୪୫॥**

ନ ଆସ୍ୱାଦୟେତ୍ = ଉପଭୋଗ କରିବା ଉଚିତ ନୁହେଁ, ସୁଖମ୍ = ସୁଖ, ତତ୍ର = ସେହି ସମୟରେ , ନିଃସଙ୍ଗଃ = ଆସକ୍ତି ହୀନ ହୋଇ, ପ୍ରଜ୍ଞୟା = (ପ୍ରଜ୍ଞା) ଦ୍ୱାରା, ଭବେତ୍ = ରହିବା ଦରକାର, ନିଶ୍ଚଳମ୍ = ନିଶ୍ଚଳ, ଶାନ୍ତ; ନିଶ୍ଚରିତ୍ = ବାହାରିଯିବା ପାଇଁ ଚାହେଁ, ଚିତ୍ତମ୍ = ମନ, ଏକୀ କୁର୍ଯ୍ୟାତ୍ = ଏକୀଭୂତ କରିବା ଉଚିତ୍, ପ୍ରଯତ୍ନତଃ = ଉପଯୁକ୍ତ ପ୍ରଚେଷ୍ଟା ଦ୍ୱାରା।

*ସମାଧି ଅବସ୍ଥାରୁ ମିଳୁଥିବା ଆନନ୍ଦକୁ ମନ ଉପଭୋଗ କରିବା ଉଚିତ୍ ନୁହେଁ। ସ୍ଥିର ବିବେକ ଦ୍ୱାରା ଏହି ଆନନ୍ଦ ପ୍ରତି ନିରାସକ୍ତ ହେବାକୁ ହେବ। ମନ ଥରେ ପ୍ରଶାନ୍ତି ଲାଭ କରିବା ପରେ, ବାହ୍ୟବିଷୟକୁ ଦଉଡ଼ିବା ପାଇଁ ଚାହିଁଲେ ଉପଯୁକ୍ତ ପ୍ରଚେଷ୍ଟା ଦ୍ୱାରା ତାକୁ ପୁଣି ଆତ୍ମା ସହିତ ଏକ କରିବାକୁ ହେବ ॥୪୫॥*

ପୂର୍ବର ଦୁଇ ଶ୍ଳୋକରେ ଆମେ ଯାହା ଦେଖିଛେ, ସାଧକ ଲୟ, ବିକ୍ଷେପ ବା ଅବଚେତନର ଛାପର ଅତୀତ ହେଲେ ସମାଧି ଅବସ୍ଥାରେ ପଦାର୍ପଣ କରିବ। ଏହା

ବାସ୍ତବରେ ଏକ ଉପଭୋଗ୍ୟ ଅନୁଭୂତି । ଏଥିରେ ପ୍ରକୃତରେ ଭାବାତୀତ ଆନନ୍ଦର ସୁଗନ୍ଧ ରହିଛି । ଏହାକୁ ନିର୍ବିକଳ୍ପ ଆନନ୍ଦ ବୋଲି ଭାବି ସାଧକ ଆତ୍ମ-ପ୍ରତାରଣାର ଶିକାର ନହେବା ପାଇଁ ଗୌଡ଼ପାଦ ଏଠାରେ ସାବଧାନବାଣୀ ଶୁଣାଇଛନ୍ତି । ବାସ୍ତବରେ ସତ୍ୟର ଏହା ଏକ କୃତ୍ରିମ ଅବବୋଧ ।

ଦ୍ୱୈତ ଜଗତରେ ଆମେ ଯେପରି ଅନୁଭୂତି ଲାଭ କରୁ, ନିର୍ବିକଳ୍ପଙ୍କର ସେପରି ଅନୁଭୂତି ସମ୍ଭବ ନୁହେଁ । ବେଦାନ୍ତିକ ସାଧନା ଦ୍ୱାରା ଯେଉଁ ମାନସିକ ସ୍ଥିରତା ଲାଭ କରାଯାଇଥାଏ, ତାହା ନୀରବ ଏବଂ ଭାବଗର୍ଭକ ହେଲେ ମଧ୍ୟ, ଆତ୍ମାନୁଭୂତିର ପରମ ଅନୁଭୂତି ନୁହେଁ । ତାହାକୁ ତା'ର ନିଜ ଭାବରେ ବିଚାର କଲେ ତାହା ହେଉଛି ଶାନ୍ତିର ଏକ ତୁଳନାତ୍ମକ ଅନୁଭୂତି ମାତ୍ର ଏବଂ ଅନୁଭୂତି ଜଗତରେ ତାର ସ୍ଥାନ ଅଛି ତେଣୁ ଆମକୁ ସାବଧାନ କରାଇ ଦିଆଯାଇଛି ଯେ, ସଜାଗ ଭାବରେ ଆନନ୍ଦର ଏହି ଅବସ୍ଥାକୁ ଅନୁଭବ କରି ଉପଭୋଗ କରିବାକୁ ହେବ ନାହିଁ । କାରଣ, ଏପରି ସୂକ୍ଷ୍ମ ଆନନ୍ଦ ଅପେକ୍ଷା ବାହ୍ୟଜଗତର ଅନୁଭୂତିରୁ ନିରାସକ୍ତ ହେବାର ଭାବ ବିକଶିତ କରିବା ସହଜସାଧ୍ୟ ।

ବିଷୟଜଗତର ଆନନ୍ଦରେ ଦୁଃଖର ଟିକିଏ ବିଷ ମିଶିଥାଏ ବୋଲି ଆମମାନଙ୍କ ଭିତରୁ ପ୍ରତ୍ୟେକେ ଅନୁଭବ କରିଥିବେ । ମନ ଭିତରେ ଆମେ ଯେଉଁ ଶାନ୍ତି ବା ପ୍ରଶାନ୍ତି ଅନୁଭବ କରୁ, ତାହା ଅନେକ ବେଶୀ ପୂର୍ଣ୍ଣାଙ୍ଗ, ଏବଂ ଏପରି ହୋଇଥିବାରୁ ଧ୍ୟାନ ସମୟରେ ପ୍ରଶାନ୍ତିର ଯେଉଁ ମୋହିନେବା ପରି ଉତ୍ତେଜନା ଅନୁଭବ କରୁ, ସେଥିରୁ ଅଲଗା ହୋଇ ରହିବା ଏବଂ ସେଥିରୁ ବାହାରି ଆତ୍ମାନୁଭବ କରି ପାରିବା ବଡ଼ କଷ୍ଟକର । ତେଣୁ ଆମକୁ ସାବଧାନ କରାଇ ଦିଆଯାଇଛି ଯେ, ପ୍ରକୃତ ସାଧକ ହେବାକୁ ହେଲେ, ଧ୍ୟାନାଭ୍ୟାସ ସମୟରେ ଅନୁଭୂତ ହେଉଥିବା ଆନନ୍ଦ, ପ୍ରଶାନ୍ତିରେ ଆମେ ମଜ୍ଜିଯିବା ନାହିଁ । ଭାବାତୀତ ଆନନ୍ଦ ଏବଂ ଶାନ୍ତିର ସେଇ ମୁହୂର୍ତ୍ତରେ ମଧ୍ୟ ସେଥିରୁ ଦୂରେଇ ରହି , ସେହି ଆନ୍ତରିକ ଶାନ୍ତିର 'ପ୍ରକାଶ'ଙ୍କୁ ପୁଣି ଖୋଜିବା ପାଇଁ ଆମର ଯଥେଷ୍ଟ ବୌଦ୍ଧିକ ସଜାଗତା ଏବଂ ନିରାସକ୍ତତା ରହିବା ଦରକାର । ଶାଶ୍ୱତ ଅନୁଭୂତିର ଅହଂକାରଶୂନ୍ୟ 'ମୁଁ' ଦ୍ୱରେ ପହଞ୍ଚିବା ପର୍ଯ୍ୟନ୍ତ ଦ୍ୱୈତ ସ୍ତରର ସମସ୍ତ ଅନୁଭୂତି ପରିତ୍ୟାଗ କର ।

ଏହି ବିଷୟ-ବିହୀନ କର୍ତ୍ତା ଅବସ୍ଥାରେ ମନ ଥରେ ପହଞ୍ଚିଗଲେ, ବୁଲିବା ପାଇଁ ଏହାକୁ କଦାପି ଅନୁମତି ଦିଆଯିବା ଉଚିତ ନୁହେଁ ବୋଲି ଉପଦେଶ ଦିଆଯାଇଛି ଏବଂ ମନ ଯଦି ସ୍ୱାଭାବିକ ଭାବେ ପୁଣି ବିଷୟକୁ ଖୋଜେ, ସନ୍ଦେହ କରେ, ତେବେ ମନର ବିକ୍ଷିପ୍ତ ଚିନ୍ତାକୁ ଶୁଦ୍ଧ-ଚୈତନ୍ୟଙ୍କ ଠାରେ କେନ୍ଦ୍ରବିନ୍ଦୁକୁ ପୁଣି ଫେରାଇ ଆଣିବାକୁ ଆମକୁ

ଉପଦେଶ ଦିଆ ଯାଇଛି। ନିଜର ପ୍ରଚେଷ୍ଟା ବ୍ୟତୀତ ଅନ୍ୟ କେଉଁଠାରୁ ଆସୁଥିବା ଈଶ୍ୱର-କୃପା ବା ଗୁରୁ-କୃପା ଦ୍ୱାରା ସଫଳତାର ସହିତ ଏହା କରିହେବ ନାହିଁ, ଆତ୍ମ-କୃପା ଦ୍ୱାରା ହିଁ କରିବାକୁ ହେବ।

**ଯଦା ନ ଲୀୟତେ ଚିତ୍ତଂ ନ ଚ ବିକ୍ଷପ୍ୟତେ ପୁନଃ।**

**ଅନିଙ୍ଗନମନାଭାସଂ ନିଷ୍ପନ୍ନଂ ବ୍ରହ୍ମ ତତ୍ତଦା ॥୪୬॥**

ଯଦା = ଯେତେବେଳେ, ନ ଲୀୟତେ = ହୁଏ ନାହିଁ, ସମାଧିରେ ମଗ୍ନ, ଚିତ୍ତମ୍ = ମନ, ଚ ନ ବିକ୍ଷିପ୍ୟତେ = ଏବଂ କାମନାର ବିକ୍ଷେପରେ ବିଚଳିତ ହୁଏ ନାହିଁ, ପୁନଃ = ପୁଣି, ଅନିଙ୍ଗନମ୍ = ଗତିହୀନ ହୋଇଯାଏ, ଅନାଭାସମ୍ = ଚିନ୍ତା ଭୂତର ଉଦୟ ହୁଏ ନାହିଁ, ନିଷ୍ପନ୍ନମ୍ = ହୁଏ, ବ୍ରହ୍ମ = ବ୍ରହ୍ମ, ତତ୍ = ତାହା (ମନ), ତଦା = ସେତେବେଳେ।

*ସମାଧି ଅବସ୍ଥାରୁ ବିଚ୍ଛିନ୍ନ ହେଲେ ଏବଂ ଏହାର କାମନା-ବିକ୍ଷେପ ନ ରହିଲେ, ମନ ଯେତେବେଳେ ଶାନ୍ତ ହୋଇଯାଏ ଏବଂ ଭାବନା-ଭୂତର ଉଦୟ ହୁଏ ନାହିଁ, ସେତେବେଳେ ବାସ୍ତବରେ ଏହା ବ୍ରହ୍ମ ହୋଇଯାଏ। ପ୍ରେତ ଆମକୁ ଚାହିଁ ମୁଣ୍ଡ ହଲାଉ ନଥିବା, ଆମକୁ ବିକ୍ଷିପ୍ତ କରୁ ନଥିବା ସମୟ ହିଁ ହେଉଛି ଆତ୍ମ-ଜ୍ଞାନ ଉଦୟ ହେବାର ପବିତ୍ର ମୁହୂର୍ତ୍ତ ॥୪୬॥*

ମନ ଅଜ୍ଞାନର ଆବରଣରେ ନରହିବା , ବିକ୍ଷିପ୍ତ ନହେବା ମୁହୂର୍ତ୍ତରେ ହିଁ ମନ, ମନ ହୋଇ ରହେ ନାହିଁ, କାରଣ ଆମେ ଜାଣୁ ଯେ, ମନ ହେଉଛି ଚିନ୍ତାର ପ୍ରବାହ । ମନର ଏହିପରି ଭାବରେ ଯେଉଁଠାରେ ପରିସମାପ୍ତି ଘଟେ, ଆମ ଧାରଣା ଶକ୍ତି ଆତ୍ମାଙ୍କୁ ଅନୁଭବ କରେ, ଆତ୍ମାଙ୍କୁ ପ୍ରକାଶ କରେ।

ସଂସ୍କୃତରେ ବ୍ୟକ୍ତିକୁ ଆତ୍ମା କୁହାଯାଏ। ଏଠାରେ ଲକ୍ଷ୍ୟ କରିବା କଥା ଯେ, ଶରୀର, ମନ, ବୁଦ୍ଧି ଦେଇ ବିଷୟଜଗତ ମାଧ୍ୟମରେ ଗୌଡ଼ପାଦ ସାଧକକୁ ଆତ୍ମାର ସ୍ୱର୍ଗକୁ ବାଟ କଢ଼ାଇ ନେଉଛନ୍ତି। କିନ୍ତୁ ଆତ୍ମ-ଦର୍ଶନ ସମୟରେ ସାଧକ ଆତ୍ମାନୁଭୂତି ଲାଭ ନ କରି ବ୍ରହ୍ମାନୁଭୂତି ଲାଭ କରେ। ଏହା ଋଷିଙ୍କର କଲମର ଅସାବଧାନତା ନୁହେଁ ବା ଛାପାରେ ଭୁଲ ନୁହେଁ। ପୂର୍ଣ୍ଣାଙ୍ଗତାର ଏକ ଅତୁଳନୀୟ କଲମରୁ ବୁଝିଶୁଝି ଏହା ଲେଖା ଯାଇଛି। ଆଚାର୍ଯ୍ୟଙ୍କର କହିବାର କଥା ହେଲା, ଆତ୍ମାନୁଭୂତିର ମୁହୂର୍ତ୍ତରେ ସାଧକ କେବଳ ନିଜର ବ୍ୟକ୍ତିଗତ ସତ୍ତା ସମ୍ବନ୍ଧରେ ମାତ୍ର ସଚେତନ ନ ଥାଏ, ବରଂ ତା ସହିତ ସର୍ବବ୍ୟାପୀ ବ୍ରହ୍ମଙ୍କ ସମ୍ବନ୍ଧରେ ସଂପୂର୍ଣ୍ଣ ସଚେତନ ରହେ।

ଏହି ସଂକ୍ରାନ୍ତରେ ଆମେମାନେ ମନେ ରଖିଲେ ଭଲ ହେବ ଯେ ଶ୍ରୀଶଙ୍କରାଚାର୍ଯ୍ୟଙ୍କର ସମସ୍ତ ବ୍ୟାଖ୍ୟାରେ ଜ୍ଞାନ ହେଉଛି 'ଆତ୍ମ-ଜ୍ଞାନ'। ଏମିତି କୌଣସି ଅବସର ପ୍ରାୟ ହିଁ ନାହିଁ, ଯେଉଁଠାରେ ଭଗବାନ ଶ୍ରୀ ଶଙ୍କରାଚାର୍ଯ୍ୟ ତାଙ୍କର ବ୍ୟାଖ୍ୟାରେ 'ଆତ୍ମ-ବ୍ରହ୍ମୈକ' ଅନୁଭୂତିର ତାତ୍ପର୍ଯ୍ୟ ବିନା ଜ୍ଞାନ ଶବ୍ଦର ବ୍ୟବହାର କରିଛନ୍ତି।

ସଂକ୍ଷେପରେ, ମନ-ବିହୀନ ମଣିଷ ହିଁ ଭଗବାନ, ମନଯୁକ୍ତ ଭଗବାନ ମଣିଷ। ଅଶାନ୍ତିରେ ହିଁ ମନ ରହିଥାଏ। ଶାନ୍ତି ଥିବା ସ୍ଥାନରେ ଭଗବାନ ଥାଆନ୍ତି। ଆମ ଅଜ୍ଞାନର ଗୋବର-ଗଦାରୁ ଫୁଟି ଉଠୁଥିବା କାମନା-ବିକ୍ଷେପ, ଚିନ୍ତା-କମ୍ପନ, ଏବଂ ଅଶାନ୍ତିର ଅନନ୍ତ ଧାରା ସେଠାରେ ଅନ୍ତ ହେଲେ ଅଶାନ୍ତି ରହିବ ନାହିଁ। ଏହିପରି ଭାବରେ ମନ ସେଠାରେ ମନ ହୋଇ ରହିବ ନାହିଁ -ମନବିହୀନ ମନୁଷ୍ୟ ଆତ୍ମତ୍ୱ ଲାଭ କରେ।

ଆତ୍ମାନୁଭୂତି ସମୟରେ ଏହି ଶ୍ଲୋକରେ ବ୍ୟବହାର କରା ଯାଇଥିବା 'ତତ୍' ଏବଂ 'ତଦା' ସର୍ବନାମ ପଦ ଦୁଇଟି ହେଉଛି ଲକ୍ଷ୍ୟାର୍ଥ। ତତ୍ ର ଅର୍ଥ ତାହା ଏବଂ ତଦା ର ଅର୍ଥ ସେତେବେଳେ, ସର୍ବବ୍ୟାପୀ ପରମଚୈତନ୍ୟଙ୍କୁ ସୂଚାଇ ଦେବାପାଇଁ ତତ୍ (ତାହା) ପଦର ବ୍ୟବହାର କରାଯାଇଛି। ସବୁ ଉପନିଷଦ୍‌ରେ ଏପର୍ଯ୍ୟନ୍ତ ଏହି ସର୍ବବ୍ୟାପୀ ପରମଚୈତନ୍ୟଙ୍କୁ ସୂଚୀତ କରାଯାଇଛି। ସାଧନାର ପ୍ରାଥମିକ ଅବସ୍ଥାରେ ସାଧକଙ୍କୁ ସେହି ସର୍ବବ୍ୟାପୀ ପରମଚୈତନ୍ୟ ତାଠାରୁ ବହୁ ଦୂରସ୍ଥ ପରି ମନେହୁଅନ୍ତି ବୋଲି 'ତାହା' ସର୍ବନାମ ଦ୍ୱାରା ତାଙ୍କୁ ସୂଚୀତ କରାଯାଇଛି। ତେଣୁ ଆମର ଗୁରୁମାନଙ୍କ ଦ୍ୱାରା ବ୍ୟାଖ୍ୟା କରାଯାଇଥିବା ପରମସତ୍ୟଙ୍କୁ ସେହି ସତ୍ୟ ଭାବରେ ବୁଝାଯାଏ, କାରଣ ଉପରୋକ୍ତ ଅବସ୍ଥାରେ ମନ ପହଞ୍ଚିବା ସମୟରେ ଆମେ ଏହାକୁ ଆମର ଘନିଷ୍ଠ ଭାବରେ ଅନୁଭବ କରିପାରୁ।

**ସ୍ୱସ୍ଥଂ ଶାନ୍ତଂ ସନିର୍ବାଣମକଥ୍ୟଂ ସୁଖମୁତ୍ତମମ୍ ।**
**ଅଜମଜେନ ଜ୍ଞେୟେନ ସର୍ବଜ୍ଞ ପରିଚକ୍ଷତେ ॥୪୭॥**

ସ୍ୱସ୍ଥଂ = ଆତ୍ମାଙ୍କର ପୁନରାବିଷ୍କାରରେ ପର୍ଯ୍ୟବେସିତ, ଶାନ୍ତଂ = ଶାନ୍ତି, ସନିର୍ବାଣମ୍ = ମୁକ୍ତି ସହିତ ଅଭିନ୍ନ, ଅକଥ୍ୟଂ = ଅବର୍ଣ୍ଣନୀୟ, ଉତ୍ତମମ୍ ସୁଖମ୍ = ଉତ୍ତମ ଆନନ୍ଦ, ଅଜମ୍ = ଅଜ, ଅଜେନ = ଅଜ ସହିତ, ଜ୍ଞେୟେନ = ଜ୍ଞେୟ ସହିତ ଅର୍ଥାତ୍ ଯାହା ନିର୍ବିକଳ୍ପ ଜ୍ଞାନର ବିଷୟ, ସର୍ବଜ୍ଞମ୍ = ସର୍ବଜ୍ଞ ବ୍ରହ୍ମ, ପରିଚକ୍ଷତେ = (ଜ୍ଞାନୀମାନେ)କହନ୍ତି ।

*ଆତ୍ମାଙ୍କର ପୁନରାବିଷ୍କାରରେ ପରମଶାନ୍ତି ମିଳେ । ଏହି ଶାନ୍ତି ମୋକ୍ଷରୁ ଭିନ୍ନ ନୁହେଁ, ଅବର୍ଣ୍ଣନୀୟ ଏବଂ ଅଜ । ଏହାକୁ ପୁଣି ସର୍ବଜ୍ଞ ବ୍ରହ୍ମ ଭାବରେ ବର୍ଣ୍ଣନା କରାଯାଇଛି, କାରଣ ଏହା ନିର୍ବିକଳ୍ପ ଜ୍ଞାନର ବିଷୟ ଅଜ ଆତ୍ମାଙ୍କ ସହିତ ସମାନ ॥୪୭॥*

ଏହି ଶ୍ଳୋକରେ ଆତ୍ମାନୁଭୂତିର ସ୍ଥାନ ଏବଂ ବିଷୟର ସୂଚନା ଦିଆଯାଇଛି ଏବଂ ସାଧନା ଦ୍ୱାରା ନିଜ ଭିତରେ ଆବଶ୍ୟକୀୟ ଅବସ୍ଥା ସୃଷ୍ଟି କରିବା ପାଇଁ କୁହାଯାଇଛି । ତାପରେ ହିଁ ତାଙ୍କର ଈଶ୍ୱରତ୍ୱର ଶାଶ୍ୱତ ଅନୁଭୂତି ହେବ । ଆତ୍ମାନୁଭୂତିରେ ଏହି ମହାନ ଆନନ୍ଦ ପର୍ଯ୍ୟବସିତ । ଏହା ଅବର୍ଣ୍ଣନୀୟ, ଅଜ, ମୁକ୍ତିରୁ ଅଭିନ୍ନ ଶାନ୍ତି । ଏହାଙ୍କୁ ପୁଣି ସର୍ବଜ୍ଞ ବ୍ରହ୍ମ ଭାବରେ ବର୍ଣ୍ଣନା କରାଯାଇଛି । କାରଣ ଜ୍ଞାନ ଅନୁସନ୍ଧାନ କରୁଥିବା ବିଷୟ ଅଜ ଆତ୍ମା ସହିତ ଏହା ଏକ ଓ ଅଭିନ୍ନ । ଏହି ଅଧ୍ୟାୟରେ ବର୍ତ୍ତମାନ ପର୍ଯ୍ୟନ୍ତ ଯାହା ଆଲୋଚନା କରାଯାଇଛି ଏବଂ ବ୍ୟାଖ୍ୟା କରାଯାଇଛି, ସେହି ଦୃଷ୍ଟିରୁ ଏହି ଶ୍ଳୋକର ଅଧିକ ବ୍ୟାଖ୍ୟା ଦରକାର ନାହିଁ, କାରଣ ଏହି ପଦଗୁଡ଼ିକର ଆଲୋଚନା କରାଯାଇ ସାରିଛି ।

ବିକ୍ଷେପରହିତ ଶାନ୍ତ ମନରେ ଉପରୋକ୍ତ ଯେଉଁ ଆନନ୍ଦ ଅନୁଭବ କରାଯାଇ ପାରିବ, ତାହା ହେଉଛି ପରମ ଶାନ୍ତି, ସର୍ବୋଚ୍ଚ ମୁକ୍ତି । ଆମର ସସୀମ ଭାଷାରେ ଶ୍ୱାସରୋଧକାରୀ ଭାବପ୍ରକାଶ ସାହାଯ୍ୟରେ ଏହା ଅଜ ଏବଂ ଅବର୍ଣ୍ଣନୀୟ ।

**ନକଶ୍ଚିତ୍ ଜାୟତେ ଜୀବଃ ସମ୍ଭୋବଂସ୍ୟ ନ ବିଦ୍ୟତେ ।**

**ଏତତ୍ତଦୁତ୍ତମଂ ସତ୍ୟଂ ଯତ୍ର କିଞ୍ଚିନ୍ନ ଜାୟତେ ॥୪୮॥**

ନ କଶ୍ଚିତ = ଆଦୌ ନୁହେଁ , ଜାୟତେ = ଜନ୍ମ ନିଏ, ଜୀବଃ = ଜୀବ, ନ ସମ୍ଭବଃ = ଉତ୍ସ ନଥାଏ, କାରଣ ନଥାଏ, ଅସ୍ୟ = ଏହା ପାଇଁ, ବିଦ୍ୟତେ = ଥାଏ, ଦେଖାଯାଏ; ଏତତ୍ = ଏହା , ତତ୍ = ତାହା, ଉତ୍ତମମ୍ = ଉତ୍ତମ, ଉଚ୍ଚତମ; ସତ୍ୟମ୍ = ସତ୍ୟ, ଯତ୍ର = ଯେଉଁଠାରେ, ନ କିଞ୍ଚିତ୍ ଜାୟତେ = କିଛି ହେଲେ କଦାପି ଜନ୍ମ ନିଏ ନାହିଁ ।

*କୌଣସି ଜୀବ କେବେ ବି ଜନ୍ମ ନିଏ ନାହିଁ । କାର୍ଯ୍ୟ ଭାବରେ ସେମାନଙ୍କୁ ଉତ୍ପନ୍ନ କରିବାକୁ କୌଣସି କାରଣ ନାହିଁ । ଯେଉଁଠାରେ କେବେହେଲେ କିଛି ବି ଜନ୍ମ ନିଏ ନାହିଁ, ତାହା (ବ୍ରହ୍ମ) ହେଉଛନ୍ତି ସେହି ମହତ୍ତମ ସତ୍ୟ ॥୪୮॥*

ଏହି ଶ୍ଳୋକଟି ହେଉଛି ଗୌଡ଼ପାଦଙ୍କ ଅଜାତବାଦ ଦର୍ଶନର ସାର-ସଂକ୍ଷେପ । ଅଜାତବାଦ ହେଉଛି ଗୌଡ଼ପାଦ ଏବଂ ବଶିଷ୍ଠ ମୁନି (ଯୋଗବାଶିଷ୍ଠରେ)ଙ୍କର ଅଧାର । ଏହି ଆଚାର୍ଯ୍ୟ ଦୁଇଜଣ ଆମକୁ ବେଦାନ୍ତର ପୁରାତନ ପନ୍ଥା ବ୍ୟାଖ୍ୟା ଦେଉଛନ୍ତି । ଶଙ୍କର ଆରମ୍ଭ କରିଥିବା ନୂତନ ପନ୍ଥାର ଏହା ବିପରୀତ । ନୂତନ ପନ୍ଥାରେ ଶ୍ରୀ ଶଙ୍କର ବିଷୟଜଗତର ଆପେକ୍ଷିକ ସତ୍ୟତାକୁ ସ୍ୱୀକାର କରିଛନ୍ତି । ଗୌଡ଼ପାଦ ଏବଂ ବଶିଷ୍ଠ ହେଉଛନ୍ତି ପରମସତ୍ୟଙ୍କର ମୂଳ ପୂଜାରୀ । କିଛି ସମୟ ବିତାଇବା ପାଇଁ ମଧ୍ୟ ସେମାନେ ଆମ ସ୍ତରକୁ ଓହ୍ଲାଇ ଆସନ୍ତି ନାହିଁ । ଯେଉଁଠାରେ ଅଛନ୍ତି, ସେହିଠାରେ ବସି ସେମାନେ ଆମକୁ ଡାକନ୍ତି, ଏବଂ ତାଙ୍କର ଜ୍ଞାନ-ଚକ୍ଷୁମାରେ ଚାହିଁ ସେମାନେ ଆମଠାରେ ମଧ୍ୟ ତାଙ୍କ ବ୍ୟତୀତ ଅନ୍ୟ କିଛି ଦେଖନ୍ତି ନାହିଁ ।

ଖମ୍ଭକୁ ଦେଖିବା ପରେ ଖମ୍ଭ ଜ୍ଞାନ ଲାଭ କରିଥିବା ବ୍ୟକ୍ତି ପ୍ରେତ ଖୋଜୁଥିବା ଅସତ୍ୟ ବିକ୍ଷେପକୁ ଅପସନ୍ଦ କରିବେ । ଗୌଡ଼ପାଦ ଠିକ୍ ଏହାହିଁ କରୁଛନ୍ତି । ପ୍ରତ୍ୟେକଙ୍କ ହୃଦୟକୁ ଶାସନ କରୁଥିବା ମହାନ ଗୁରୁଙ୍କ ଦୃଷ୍ଟିରେ ତାଙ୍କଠାରୁ ଭିନ୍ନ ବିଷୟ-ଜଗତ ନାହିଁ । ଏହି ଅଧ୍ୟାୟର ଅନ୍ତିମ ଶ୍ଳୋକରେ ଗୌଡ଼ପାଦଙ୍କର ସମଗ୍ର ଦର୍ଶନର ସମ୍ପୂର୍ଣ୍ଣ ଆଧ୍ୟାତ୍ମିକ-ରସାୟନର ସାର-ସଂକ୍ଷେପ ରହିଛି । କାରିକାକାରଙ୍କ ଦର୍ଶନର ମୂଳ-ତତ୍ତ୍ୱ ହେଲା -କେବେହେଲେ କିଛି ହିଁ ଜନ୍ମ ନିଏ ନାହିଁ, ବୌଦ୍ଧ-ଦର୍ଶନରେ ଶୂନ୍ୟବାଦୀମାନେ କହୁଥିବା ପରମସତ୍ୟ 'ଶୂନ୍ୟ' ନୁହେଁ, କିନ୍ତୁ 'ଆତ୍ମା' ହିଁ କେବଳ ମାତ୍ର ସତ୍ୟ ।

ଜନ୍ମ ହେଉଛି ଏକ ଭ୍ରମ ମାତ୍ର। ଅଜାତ ହିଁ ଏକମାତ୍ର ସତ୍ୟ- ପରମସତ୍ୟ। କେହି ଯଦି ବହୁବିଧ ଜଗତ ଦେଖି ଏହାର କାରଣ ଖୋଜିବ, ତେବେ 'ଆକାଶରେ ପକ୍ଷୀଙ୍କ ପାଦଛାପ ଖୋଜିବା' ପରି ହେବ। କିଛି ହେଲେ ଜନ୍ମ ନିଏ ନାହିଁ, ତେଣୁ ବୌଦ୍ଧିକ ସ୍ତରରେ ଆମେ ଏହାପାଇଁ ଏକ ଉପଯୁକ୍ତ କାରଣ ପାଇପାରୁ ନାହିଁ। ଗୌଡ଼ପାଦ କହନ୍ତି ଯେ, ଏହା ପାଇଁ କୌଣସି କାରଣ ନାହିଁ। କେତେକ କାରଣରୁ ବହୁବିଧତା ଦେଖାଯିବ, କିନ୍ତୁ ଉଚ୍ଚତମ ସତ୍ୟ ବ୍ୟତୀତ ଅନ୍ୟ କିଛି ନାହିଁ। ତେଣୁ କିଛି ହେଲେ କେବେ ବି ଜନ୍ମ ନେଇ ନାହିଁ।

# ଚତୁର୍ଥ ଅଧ୍ୟାୟ

## ଅଲାତଶାନ୍ତି ପ୍ରକରଣ

(ବିକ୍ଷେପର ପ୍ରଶମନ ପାଇଁ)

ସମଗ୍ର ଶାସ୍ତ୍ର ପ୍ରସଙ୍ଗରେ ଏହି ଅଧ୍ୟାୟର ଏକ ମୁଖ୍ୟ ସ୍ଥାନ ରହିଛି ।ଏହି ଅଧ୍ୟାୟର ସ୍ଥିତିକୁ ନେଇ କେତେକ ସମାଲୋଚକ ପ୍ରଶ୍ନ ଉଠାଇଛନ୍ତି । ସେମାନଙ୍କ ସହିତ ଏକମତ ହେବା ଆମ ପାଇଁ କଷ୍ଟକର ହୁଏ । ଚତୁର୍ଥ ପ୍ରକରଣଟି ଏକ ପ୍ରାର୍ଥନାରୁ ଆରମ୍ଭ ହୋଇଥିବାରୁ ଏହାକୁ ଏକ ସ୍ୱତନ୍ତ୍ର ଶାସ୍ତ୍ର ଭାବରେ ବିଚାର କରିବା ହେଉଛି ସେମାନଙ୍କର ମୁଖ୍ୟ ଯୁକ୍ତି । ସେମାନଙ୍କ ମତରେ ଚତୁର୍ଥ ପ୍ରକରଣଟି ଏକ ସ୍ୱତନ୍ତ୍ର ଶାସ୍ତ୍ର ଏହାକୁ ମୂଳ ଗ୍ରନ୍ଥରେ ସନ୍ନିବେଶିତ କରାଯାଇଛି । ଏହି ଯୁକ୍ତିକୁ ଗ୍ରହଣ କରିବା ପାଇଁ ବାସ୍ତବରେ କୌଣସି ଯୌକ୍ତିକତା ପ୍ରାୟ ନାହିଁ । ଅନ୍ୟ କେତେକ ଏକଥା ମଧ୍ୟ କହନ୍ତି ଯେ ଗୌଡ଼ପାଦ କାରିକା କେବଳ ଜଣେ ମହାନ ଲେଖକଙ୍କର କାମ ନୁହେଁ । ବେଦାନ୍ତ ସମ୍ବନ୍ଧରେ ଏକ ସାଧାରଣ ସାର ସଂଗ୍ରହ କରିବା ପାଇଁ ଚାରିଗୋଟି ଗ୍ରନ୍ଥକୁ ସଂକଳିତ କରାଯାଇଛି । ଏହି ଅତୁଳନୀୟ ପ୍ରକରଣ ଚାରିଗୋଟି ଗ୍ରନ୍ଥକୁ ଶ୍ରୀ ଶଙ୍କରାଚାର୍ଯ୍ୟ ଗୋଟିଗୋଟି କରି ଭାରି ସୁନ୍ଦର ଭାବରେ ଗୁନ୍ଥି ଶ୍ରୁତି ମାଙ୍କ ବେଦିକାରେ ଅର୍ପଣ କରି ଦେଇଛନ୍ତି ।

ଏହି ଅଧ୍ୟାୟ ଗୋଟିଏ ଶ୍ଳୋକରୁ ଆରମ୍ଭ ହୋଇଥିବାରୁ ସମଗ୍ର ଅଧ୍ୟାୟଟି ଏକ ସ୍ୱତନ୍ତ୍ର ଶାସ୍ତ୍ର ଭାବରେ ଗ୍ରହଣୀୟ ନୁହେଁ, କିନ୍ତୁ ସଂସ୍କୃତ ସାହିତ୍ୟରେ ଏହା ବିରଳ ନୁହେଁ । ଏହି ସାହିତ୍ୟରେ ପ୍ରାୟ ପ୍ରତ୍ୟେକ ଅଧ୍ୟାୟ ଅନେକ ସମୟରେ ଗୋଟିଏ ପ୍ରାର୍ଥନାରୁ ଆରମ୍ଭ ହୋଇଥିବାର ଦେଖିବାକୁ ମିଳେ ।

ଅନ୍ୟଏକ ସମାଲୋଚନା ହେଲା- ଏହି ଅଧ୍ୟାୟରେ ଅନେକ ଶ୍ଳୋକ ରହିଛି; ଯାହା ପୂର୍ବର ତିନୋଟି ଅଧ୍ୟାୟରୁ ଆନୀତ (ପୁନରାବୃତ୍ତି କରା ଯାଇଛି) । ଉପନିଷଦ୍ ଗ୍ରନ୍ଥରେ ଏହା ଏକ ତ୍ରୁଟି ନୁହେଁ ବା ଦୋଷାବହ ନୁହେଁ । କେତେକ ବିଶେଷ ମୁଖ୍ୟ ବିଷୟ ଉପରେ ଆଚାର୍ଯ୍ୟ ଜୋର ଦେବାପାଇଁ ଏ କାମ କରିଛନ୍ତି ଏବଂ ବିଷୟ ବସ୍ତୁ ଅତି ସୂକ୍ଷ୍ମ ହୋଇଥିବାରୁ ଶିଷ୍ୟମାନେ ଏହାକୁ ଭୁଲ ବୁଝିପାରନ୍ତି ବା ଅଣଦେଖା କରି ପାରନ୍ତି ।

ସଂସ୍କୃତ ଦର୍ଶନରେ 'ଉପଦେଶ ଗ୍ରନ୍ଥ'ର ପୁନରାବୃତ୍ତି ଆବଶ୍ୟକ ଏବଂ କାରିକା ଏକ ଉପଦେଶ ଗ୍ରନ୍ଥ - ଏହା ଅତି ସ୍ପଷ୍ଟ । କେତେକ ଅତି ପ୍ରାଚୀନ ପାଣ୍ଡୁଲିପିର ଶେଷାଂଶରେ (ଯେଉଁଠାରେ ପ୍ରକାଶର ସ୍ଥାନ ଓ ତାରିଖ ପ୍ରଭୃତି ଥାଏ) କାରିକା ଏକ ଉପଦେଶ ଗ୍ରନ୍ଥ ବୋଲି ସ୍ପଷ୍ଟ ଭାବରେ ଉଲ୍ଲେଖ କରାଯାଇଛି ।

ପୂର୍ବ ଅଧ୍ୟାୟରେ ଦେଇ ସାରିଥିବା କେତେ ଗୁଡ଼ିଏ ଯୁକ୍ତିକୁ ଗୌଡ଼ପାଦ ଏହି ଅଧ୍ୟାୟରେ ଇଚ୍ଛା କରି ଦୋହରାଇଛନ୍ତି । ଏହି ଅଧ୍ୟାୟର ମୁଖ୍ୟ ବିଷୟ ହେଲା:-

(କ) ଦ୍ୱନ୍ଦ ମାଧ୍ୟମରେ ହେତୁବାଦର ଅବୋଧତା ଦେଖାଇବା,

(ଖ) ନିଆଁହୁଳା (ଅଲାତ) ହଲାଇଲେ ଯେଉଁସବୁ ମିଥ୍ୟା ଆକାର ସୃଷ୍ଟି ହୁଏ, ତାସହିତ ବହୁବିଧ ଜଗତର ଭ୍ରାନ୍ତିର ତୁଳନା କରି ବ୍ୟାଖ୍ୟା କରିବା,

(ଗ) ପରମସତ୍ୟ ଅଦ୍ୱୈତ, ଅଜ ଏବଂ ଶାଶ୍ୱତ - ଏହା ପ୍ରତିଷ୍ଠା କରିବା ପାଇଁ ବୌଦ୍ଧତର୍କର ନମୁନାକୁ ଉଦାର ଭାବରେ ସ୍ୱଚ୍ଛନ୍ଦ ବ୍ୟବହାର କରିବା ମଧ୍ୟ ।

ଏହି ଅଧ୍ୟାୟରେ ଗୌଡ଼ପାଦ ସ୍ୱଚ୍ଛନ୍ଦ ଭାବରେ ଅନେକ ବୌଦ୍ଧ ପରିଭାଷାର ବ୍ୟବହାର କରିଥିବାର ଦେଖିବାକୁ ମିଳେ । ଆମେ ମଧ୍ୟ ଦେଖିବା ଯେ ଅନ୍ଧ ଭାବରେ ସେ ଏସବୁ ଉଦ୍ଧାର କରି ନାହାଁନ୍ତି, କିନ୍ତୁ ତାଙ୍କ ନିଜର କଳ୍ପନା ଏବଂ ଅର୍ଥବୋଧକୁ ପ୍ରକାଶ କରିବା ପଇଁ ଗୌଡ଼ପାଦ ବୌଦ୍ଧଗ୍ରନ୍ଥରୁ ଏସବୁ ସୁବିଧାଜନକ ପଦ ଉଠାଇ ଆଣିଛନ୍ତି ।

ଏହି ଅଧ୍ୟାୟ ବିରୁଦ୍ଧରେ ଏକ ସମାଲୋଚନା କରାଯାଇଛି - ବିଶେଷକରି ବୌଦ୍ଧ ଆଦର୍ଶବାଦର ଅନୁସରଣ କରିବା ପାଇଁ ଗୌଡ଼ପାଦ ଆମକୁ ଦାୟିତ୍ୱ ଅର୍ପଣ କରୁଛନ୍ତି ବୋଲି ପ୍ରମାଣ କରିବାକୁ ଚାହୁଁଥିବା ଲୋକମାନେ କହିଛନ୍ତି ଯେ ଏହି ଅଧ୍ୟାୟରେ ଉପନିଷଦୀୟ ଉଦ୍ଧୃତି ନାହିଁ । ପ୍ରଫେସର ଭି. ଭଟ୍ଟାଚାର୍ଯ୍ୟ (ଗୌଡ଼ପାଦଙ୍କ ଦ୍ୱାର ଆଗମ ଶାସ୍ତ୍ର) କହିଛନ୍ତି ଯେ, "ତାଙ୍କର ଅନ୍ତିମ ପୁସ୍ତକ 'ଅଲାତ ଶାନ୍ତି' ରେ ଆମର ପ୍ରଣେତା ଉପନିଷଦକୁ ଆଦୌ ଉଦ୍ଧାର କରି ନାହାଁନ୍ତି ବା ଉଲ୍ଲେଖ କରି ନାହାଁନ୍ତି ।" ଏଠାରେ ଏହି ଧରଣର କିଛି ହେଲେ ନାହିଁ, କିନ୍ତୁ ଏହା ଅଧ୍ୟାୟଟିର ନିର୍ଦ୍ଦୋଷ ସମାଲୋଚନା ନୁହେଁ । ଏପରି କହିବା ଏକ ଦାର୍ଶନିକ ମିଥ୍ୟା ହେବ । ଏପରି ଅନେକ ପଂକ୍ତି ଅଛି, ଯାହା ଉପନିଷଦ୍ ସହିତ ପରିଚିତ ଶିଷ୍ୟର ମନରେ ବେଦରେ ଥିବା ଶାଶ୍ୱତ ଜ୍ଞାନ ସ୍ମରଣ କରାଇ ଦିଏ । ଚତୁର୍ଥ ଅଧ୍ୟାୟର ୭୮, ୮୦, ୮୫ ଏବଂ ୯୨ ଶ୍ଳୋକରେ ଉପନିଷଦୀୟ ଉକ୍ତି ବ୍ୟବହାର କରାଯାଇଥିବାର ଡ.ବେଲୱାଲକର ଦର୍ଶାଇଛନ୍ତି ।

ବେଦାନ୍ତର ଆଚାର୍ଯ୍ୟ ଗୌଡ଼ପାଦଙ୍କର କେତେକ ବିରୋଧୀ ସମାଲୋଚକ ଏହି ଅଧ୍ୟାୟର ଶିରୋନାମା ଦେଖି କହିଛନ୍ତି ଯେ ବୌଦ୍ଧ ଆଦର୍ଶବାଦକୁ ପ୍ରତିଷ୍ଠିତ କରିବା ପାଇଁ ଏବଂ ବୌଦ୍ଧ ଧର୍ମରେ ବେଦାନ୍ତ ଖୋଜିବା ପାଇଁ ସେ ଚେଷ୍ଟା କରିଛନ୍ତି । ଆଚାର୍ଯ୍ୟ ବୌଦ୍ଧଗ୍ରନ୍ଥରୁ 'ଅଲାତ' ଉପମା ଉଧାର କରିଥିବାରୁ ଭୁଲ ବୁଝାମଣାର ଶିକାର ହୋଇଛନ୍ତି । ଏହା ପ୍ରକୃତରେ ଆଚାର୍ଯ୍ୟଙ୍କର ଉଦ୍ଦେଶ୍ୟ ପୂରଣ କରିଛି ଏବଂ ଦର୍ଶନର କୌଣସି ଗୋଷ୍ଠୀ ପ୍ରାକୃତିକ ଘଟଣାବଳୀ ଉପରେ ଅଧିକାର ସାବ୍ୟସ୍ତ କରି ପାରିବେ ନାହିଁ, ଚନ୍ଦ୍ରକୁ କାହା ସହିତ ତୁଳନା କରିବାରେ କେହିହେଲେ ତାର ସର୍ବସତ୍ତ୍ୱର ସଂରକ୍ଷଣ କରି ପାରିବେ ନାହିଁ।

ପୁନଶ୍ଚ ଗୌଡ଼ପାଦ ଏଠାରେ ଯାହା ବ୍ୟବହାର କରିଛନ୍ତି, ଆମେ ତାର ସମର୍ଥନ କରି ପାରିବା, କାରଣ ଅଲାତର ଉପମା ମୈତ୍ରାୟଣୀ ଉପନିଷଦ୍ (୪-୨୪) ରେ ବ୍ୟବହାର କରାଯାଇଥିବାରୁ ଏହି କଳ୍ପନା ଉଧାର ଆଣିବା ପାଇଁ ଉଭୟ ଗୌଡ଼ପାଦ ଏବଂ ବୌଦ୍ଧଧର୍ମାବଲମ୍ବୀ ସେହି ଏକା ଉତ୍ସକୁ ଯାଇଥିବେ । "ଘୂର୍ଣ୍ଣାୟମାନ ନିଆଁହୁଳାର ଚକ୍ରରେ ସେ ସୂର୍ଯ୍ୟସମ ବର୍ଣ୍ଣରେ ବ୍ରହ୍ମଙ୍କୁ ଦର୍ଶନ କଲେ" । ଏହି ଅଧ୍ୟାୟରେ ବ୍ୟବହାର କରାଯାଇଥିବା 'କୁହୁକ ହାତୀର' ଉପମା ମଧ୍ୟ ଉଧାର କରି ଅଣାଯାଇଛି ବୋଲି ସମାଲୋଚକମାନେ କହନ୍ତି । କିନ୍ତୁ ସେମାନେ ଭୁଲିଯାଆନ୍ତି ଯେ ଭାସଙ୍କ ନାଟକର ରାଜା ଉଦୟନଙ୍କ ଜୀବନ କାହାଣୀରୁ ଏହା ଅଣାଯାଇ ପାରିଥାଏ ।

ପ୍ରାଚୀନ ଶାସ୍ତ୍ରୀୟ ଗ୍ରନ୍ଥର ବ୍ୟାଖ୍ୟା କଲାବେଳେ ଆମେ ଆମର ପ୍ରଚଳିତ ସାଧାରଣ ଜ୍ଞାନ - ବୈଜ୍ଞାନିକ ଏବଂ ଖ୍ରୀଷ୍ଟଧର୍ମରେ ପ୍ରଚଳିତ ଶବ୍ଦର ବ୍ୟବହାର କଲା ପରି, ଏହି ଗ୍ରନ୍ଥକୁ ଛାପି ବିକ୍ରି କରିବାର ଉଦ୍ଦେଶ୍ୟ ପୋଷଣ କରି ନଥିବା ଗୌଡ଼ପାଦ, ଏହି ମହାନ୍ ଜ୍ଞାନକୁ ତାଙ୍କ ସମୟର ସାଧାରଣ ନେତାଙ୍କୁ ଅବଗତ କରାଇବା ଲକ୍ଷ୍ୟରେ ସେ ସମୟରେ ପ୍ରଚଳିତ ପଦାବଳୀକୁ ଉଦାରଭାବରେ ବ୍ୟବହାର କରିଛନ୍ତି । ଜଣେ ସନ୍ଥଙ୍କର କାମ ହେଲା - ଶାଶ୍ୱତ ପ୍ରାଧାନ୍ୟ ଥିବା ବିଷୟକୁ ପ୍ରଚଳିତ ଭାଷାରେ ସେହି ସମୟର ଲୋକଙ୍କୁ ଅବଗତ କରାଇବା ।

ନିଶ୍ଚିତ ଭାବେ ଗୌଡ଼ପାଦ ହେଉଛନ୍ତି ବେଦାନ୍ତ ଦର୍ଶନର ପ୍ରଥମ ଶୃଙ୍ଖଳିତ ବ୍ୟାଖ୍ୟାକାର । ବ୍ରହ୍ମସୂତ୍ର ଆହୁରି ପ୍ରାଚୀନ ଗ୍ରନ୍ଥ, ଏଥିରେ ସନ୍ଦେହ ନାହିଁ, ତେବେ ବି ଏକ ବ୍ୟବସ୍ଥିତ ଦର୍ଶନ ବଦଳରେ ଉପନିଷଦ୍‌ର ଧର୍ମତାତ୍ତ୍ୱିକ ସାର-ସଂକ୍ଷେପ ଭାବରେ ଗ୍ରହଣୀୟ ହୋଇଥିବାରୁ ଏହା ବିଶେଷ କ୍ଷମତା ଦାବି କରି ପାରିବ ନାହିଁ । ପରମ୍ପରାନୁସାରେ ଗୌଡ଼ପାଦ ପ୍ରକୃତରେ ଶ୍ରୀ ଶଙ୍କରଙ୍କର ଦାର୍ଶନିକ ପୂର୍ବଜ ।

**ନାରାୟଣଂ ପଦ୍ମଭବଂ ବଶିଷ୍ଟଂ ଶକ୍ତିଂ ଚ ତତ୍‌ପୁତ୍ର ପରାଶରଂ ଚ।**

**ବ୍ୟାସଂ ଶୁକଂ ଗୌଡ଼ପାଦଂ ମହାନ୍ତମ୍ ଗୋବିନ୍ଦଯୋଗୀନ୍ଦ୍ରମଥାସ୍ୟ ଶିଷ୍ୟମ୍॥**

**ଶ୍ରୀ ଶଙ୍କରାଚାର୍ଯ୍ୟମଥାସ୍ୟ ପଦ୍ମପାଦଂ ଚ ହସ୍ତାମଲକଂଚ ଶିଷ୍ୟମ୍।**

**ତଂ ତ୍ରୋଟକଂ ବାର୍ତ୍ତିକକାରମନ୍ୟାନ୍-ଅସ୍ମଦ୍‌ଗୁରୁନ୍ ସନ୍ତତମାନତୋଽସ୍ମି॥**

ନାରାୟଣମ୍ = ଶ୍ରୀ ନାରାୟଣ, ପଦ୍ମଭବମ୍ = ପଦ୍ମର (ଉଭବ)ସ୍ଥାନ, ବଶିଷ୍ଟଂ = ବଶିଷ୍ଠ, ଶକ୍ତିମ୍ = ଶକ୍ତି, ଚ = ଏବଂ, ତତ୍ ପୁତ୍ର = ତାଙ୍କ ପୁତ୍ର, ପରାଶରମ୍ = ପରାଶର, ଚ = ଏବଂ, ବ୍ୟାସମ୍ = ବ୍ୟାସ, ଶୁକମ୍ = ଶୁକ, ଗୌଡ଼ପାଦମ୍ = ଗୌଡ଼ପାଦ, ମହାନ୍ତମ୍ = ମହାନତା, ଗୋବିନ୍ଦ = ଗୋବିନ୍ଦପାଦ, ଯୋଗୀନ୍ଦ୍ରମ୍ = ଯୋଗୀମାନଙ୍କର ରାଜା, ଅଥ ଅସ୍ୟ = ଏବଂ, ଏହିପରି; ଶିଷ୍ୟମ୍ = ଶିଷ୍ୟ, ଶ୍ରୀ ଶଙ୍କରାଚାର୍ଯ୍ୟମ୍ = ଶ୍ରୀ ଶଙ୍କରାଚାର୍ଯ୍ୟଙ୍କର , ଅଥ ଅସ୍ୟ = ଏବଂ ମଧ୍ୟ; ପଦ୍ମପାଦମ୍ = ପଦ୍ମପାଦ, ଚ = ଏବଂ, ହସ୍ତାମଲକମ୍ = ହସ୍ତାମଲକ, ଚ = ଏବଂ, ଶିଷ୍ୟମ୍ = ଶିଷ୍ୟ, ତମ୍ = ତାହାଙ୍କର, ତ୍ରୋଟକମ୍ = ତ୍ରୋଟକ, ବାର୍ତ୍ତିକକାରମ୍ = ବ୍ୟାଖ୍ୟାକାର, ଅର୍ଥାତ୍ ସୁରେଶ୍ୱର; ଅନ୍ୟାନ୍ = ଅନ୍ୟମାନେ, ଅସ୍ମଦ୍ = ଏହିପରି, ଗୁରୁନ୍ = ଗୁରୁମାନେ, ସନ୍ତତ = କ୍ରମ, ମାନତୋ = ବିଶ୍ୱାସ କରାଯିବା, ଗ୍ରହଣ କରାଯିବା; ଅସ୍ମି = (ମୁଁ) ଅଛି।

*ଏହି ପ୍ରସିଦ୍ଧ ଶ୍ଳୋକରେ ଆମେ ଶ୍ରୀଶଙ୍କର ଏବଂ ତାଙ୍କ ଶିଷ୍ୟମାନଙ୍କର କ୍ରମ ଦେଖିବାକୁ ପାଉ। ବିଷ୍ଣୁଙ୍କ ସହିତ ଏହି ଧାଡ଼ି ଆରମ୍ଭ ହୋଇଛି। ତାଙ୍କଠାରୁ ନିମ୍ନୋକ୍ତ ଅନୁକ୍ରମରେ ମହାନ ଜ୍ଞାନ ଆମ ପାଖେ ପହଞ୍ଚିଛି -ଶ୍ରୀ ନାରାୟଣ, ବଶିଷ୍ଠ, ଶକ୍ତି, ତାଙ୍କ ପୁତ୍ର ପରାଶର, ବ୍ୟାସ, ଶୁକ, ଗୌଡ଼ପାଦ, ଗୋବିନ୍ଦପାଦ, ଶ୍ରୀ ଶଙ୍କର, ପଦ୍ମପାଦ, ହସ୍ତମଲକ, ତୋଟକାଚାର୍ଯ୍ୟ ଏବଂ ବାର୍ତ୍ତିକାକାର ଅର୍ଥାତ୍ ସୁରେଶ୍ୱର।*

ଏହି କ୍ରମରେ ଶ୍ରୀ ଶଙ୍କରାଚାର୍ଯ୍ୟଙ୍କର ଗୁରୁ ଗୋବିନ୍ଦପାଦ, ଗୌଡ଼ପାଦଙ୍କର ଶିଷ୍ୟ ବୋଲି ଆମେ ଦେଖିବାକୁ ପାଉ।

**ଜ୍ଞାନେନାକାଶକଲ୍ପେନ ଧର୍ମାନ୍ୟୋ ଗଗନୋପମାନ୍ ।**
**ଜ୍ଞେୟାଭିନ୍ନେନ ସଂବୁଦ୍ଧସ୍ତଂ ବନ୍ଦେ ଦ୍ୱିପଦାଂ ବରମ୍ ॥୧॥**

ଜ୍ଞାନେନ = ଜ୍ଞାନ ଦ୍ୱାରା, ଆକାଶ କଲ୍ପେନ = ଆକାଶ ପରି, ଆକାଶ ସହିତ ସାଦୃଶ୍ୟ ଥିବା, ଧର୍ମାନ୍ = ବ୍ୟକ୍ତିଗତ ଆତ୍ମା, ଗଗନଃ ଉପମାନ = ଯାହା ଆକାଶ ପରି, ଜ୍ଞେୟ = ଜ୍ଞେୟ, ଜାଣିବାର ବସ୍ତୁ; ଅଭିନ୍ନେନ = ଅଭିନ୍ନ ଭାବରେ, ଯଃ ସଂବୁଦ୍ଧଃ = ଯିଏ ଏହା ସଂପୂର୍ଣ୍ଣଭାବରେ ଅନୁଭବ କରି ପାରିଛନ୍ତି, ତମ୍ = ତାହା, ବନ୍ଦେ = ମୁଁ ବନ୍ଦନା କରୁଛି, ଦ୍ୱିପଦାମ୍ ବରମ୍ = ମଣିଷମାନଙ୍କ ମଧ୍ୟରେ ଉତ୍ତମ ।

*ଯିଏ ଜ୍ଞେୟ ଠାରୁ ଅଭିନ୍ନ (ଆକାଶ ପରି ତାଙ୍କ ଜ୍ଞାନ ଦ୍ୱାରା), ଆକାଶ ସହିତ ସାଦୃଶ୍ୟ ଥିବା ତାଙ୍କର ଜ୍ଞାନ ଦ୍ୱାରା ପ୍ରତ୍ୟେକ ବ୍ୟକ୍ତିର ଆତ୍ମାର ସ୍ୱରୂପକୁ ସଂପୂର୍ଣ୍ଣଭାବେ ଅନୁଭବ କରି ପାରୁଛନ୍ତି, ମନୁଷ୍ୟମାନଙ୍କ ମଧ୍ୟରେ ଉତ୍ତମ, ତାଙ୍କୁ ମୁଁ ବନ୍ଦନା କରୁଛି ॥୧॥*

ଏହି ପ୍ରାର୍ଥନା ଶ୍ଳୋକ ସହିତ ଗୌଡ଼ପାଦ ତାଙ୍କ କାରିକାର ଅନ୍ତିମ ପ୍ରକରଣ ଆରମ୍ଭ କରୁଛନ୍ତି । ଯିଏ ଦ୍ୱିପାଦ (ମଣିଷ) ମାନଙ୍କ ମଧ୍ୟରେ ଉତ୍ତମ, ପ୍ରତ୍ୟେକ ବ୍ୟକ୍ତିର ଏବଂ ବିଶ୍ୱଆତ୍ମାର ଶାଶ୍ୱତ ଏକତ୍ୱକୁ ଯିଏ ନିଜ ଭିତରେ ଅନୁଭବ କରି ପାରିଛନ୍ତି, ସେ ତାଙ୍କର ସେହି ଗୁରୁଙ୍କର ବନ୍ଦନା କରୁଛନ୍ତି । ଦ୍ୱିପାଦମାନଙ୍କ ମଧ୍ୟରେ ଉତ୍ତମ (ଦ୍ୱିପାଦମ୍ ବରମ୍)-ଏହି ପଦକୁ ନେଇ ଅନେକ ବାଦାନୁବାଦ ରହିଛି । କେତେକଙ୍କ ମତରେ ଏହା ହେଉଛି କରୁଣା ଏବଂ ଆତ୍ମାନୁଭୂତିରେ ମନୁଷ୍ୟମାନଙ୍କ ମଧ୍ୟରେ ଉତ୍ତମ ବୁଦ୍ଧଙ୍କର ବନ୍ଦନା ।

କିନ୍ତୁ ପରମ୍ପରାବାଦୀଙ୍କ ମତରେ ଗୌଡ଼ପାଦଙ୍କର ଏହି ବନ୍ଦନା ହେଉଛି ତାଙ୍କର ଇଷ୍ଟ ଦେବତା, ବଦ୍ରୀନାଥର ନାରାୟଣଙ୍କର ବନ୍ଦନା । ପରମ୍ପରାରୁ ଜଣାପଡ଼େ ଯେ ଗୌଡ଼ପାଦ ବଦ୍ରୀନାଥ ଉପତ୍ୟକାରେ ବେଦାନ୍ତର ସତ୍ୟ ଉପରେ ଅନେକ ବର୍ଷ ଧରି ଧ୍ୟାନ କରିଥିଲେ ଏବଂ ପ୍ରଭୁ ନାରାୟଣଙ୍କ ଆଶୀର୍ବାଦରୁ ଦିବ୍ୟଜ୍ଞାନ ଲାଭ କରିଥିଲେ ।

କାରିକାରେ ଥିବା ଶ୍ଳୋକମାନଙ୍କରେ ସେ ନିଜର ଅନୁଭୂତିଲବ୍ଧ ଦାର୍ଶନିକ ତଥ୍ୟର ପ୍ରକାଶ କରିଛନ୍ତି । ତେଣୁ ଶଙ୍କରଙ୍କ ସମେତ ପରମ୍ପରାବାଦୀ ବୈଦିକ ବ୍ୟାଖ୍ୟା କାରମାନେ ଏହାକୁ ବଦ୍ରୀନାଥ ପ୍ରଭୁଙ୍କର ବନ୍ଦନା ବୋଲି କହନ୍ତି । ସଫଳତାର ସହିତ କୌଣସି ଗ୍ରନ୍ଥ ଶେଷ କରିବା ପାଇଁ ଏବଂ ଏହି ସଂପୂର୍ଣ୍ଣ କରିବା ପଥରେ ବାଧାବିଘ୍ନ ଦୂର କରିବା ପାଇଁ କୌଣସି ଗ୍ରନ୍ଥ ରଚନା ଆରମ୍ଭ କରିବା ପୂର୍ବରୁ ଭଗବାନଙ୍କୁ ପ୍ରାର୍ଥନା କରିବା ସଂସ୍କୃତ ସାହିତ୍ୟରେ ସାଧାରଣ ଘଟଣା । ଅନେକ ସମାଲୋଚକଙ୍କ ମତରେ ଏହି ଚତୁର୍ଥ ପ୍ରକରଣଟି

ନିଜେ ଏକ ସ୍ୱତନ୍ତ୍ର ଗ୍ରନ୍ଥ, କାରଣ ଏଠାରେ ପ୍ରାର୍ଥନା ଶ୍ଳୋକଟିଏ ଅଛି। ଏହି ତଥ୍ୟକୁ ସ୍ୱୀକାର କରିବା ପାଇଁ ଉପକ୍ରମଣିକାରେ ଯୁକ୍ତି ଦିଆ ଯାଇ ସାରିଛି।

ଜୀବ ନିଜେ ହିଁ ସର୍ବବ୍ୟାପୀ ବ୍ରହ୍ମ - ଏହି ଶ୍ଳୋକରୁ ଏହି ବୈଦାନ୍ତିକ ସତ୍ୟର ଯଥେଷ୍ଟ ଆଭାସ ମିଳେ। ଉଭୟ ଜୀବ ଏବଂ ବ୍ରହ୍ମ ଆକାଶ ପରି ବୋଲି ପୂର୍ବ ଅଧ୍ୟାୟରେ ବିଶଦ ଭାବରେ ଆଲୋଚନା କରାଯାଇଛି।

**ଅସ୍ପର୍ଶଯୋଗୋ ବୈ ନାମ ସର୍ବସତ୍ତ୍ୱସୁଖୋ ହିତଃ।**

**ଅବିବାଦୋଽବିରୁଦ୍ଧଶ୍ଚ ଦେଶିତସ୍ତଂ ନମାମ୍ୟହଂ ॥୨॥**

ଅସ୍ପର୍ଶ ଯୋଗଃ = ଅସ୍ପର୍ଶ ଯୋଗ, ବୈ ନାମ = ପ୍ରକୃତରେ ହିଁ, ସର୍ବ ସତ୍ତ୍ୱ ସୁଖଃ = ସମସ୍ତଙ୍କର ସୁଖ ଆଣିଦିଏ, ହିତଃ = (ସମସ୍ତଙ୍କର) ମଙ୍ଗଳ ପାଇଁ ଉଦ୍ଦିଷ୍ଟ, ଅବିବାଦଃ = ସମସ୍ତ ବିବାଦର ଅତୀତ, ଅବିରୁଦ୍ଧଃ = ବିରୋଧମୁକ୍ତ, ଚ ଦେଶିତଃ = ଏବଂ (ଶାସ୍ତ୍ର ମାଧ୍ୟମରେ) ଶିକ୍ଷା ଦିଆ ଯାଇଛି, ଅହମ୍ ନମାମି ତମ୍ = ମୁଁ ତାଙ୍କୁ ପ୍ରଣାମ କରୁଛି।

*ଅସ୍ପର୍ଶଯୋଗ (ଆକ୍ଷରିକ ଅର୍ଥରେ ସ୍ପର୍ଶ ନଥିବା , ଅର୍ଥାତ୍ କୌଣସି ସମୟରେ କାହା ସହିତ କିଛି ସମ୍ପର୍କ ନଥିବା)କୁ ମୁଁ ପ୍ରଣାମ କରୁଛି। ଯାହାକୁ ଶାସ୍ତ୍ରମାନଙ୍କ ମାଧ୍ୟମରେ ଶିକ୍ଷା ଦିଆ ଯାଇଛି, ଯାହା ସମସ୍ତଙ୍କୁ ସୁଖ ଆଣିଦିଏ, ଯାହା ସମସ୍ତଙ୍କର ମଙ୍ଗଳ ପାଇଁ ଅନୁକୂଳ, ଯାହା ସମସ୍ତଙ୍କର ବିରୋଧର ଅତୀତ ଏବଂ ତତ୍ ସହିତ ଯାହା ସମସ୍ତ ବିବାଦରୁ ମୁକ୍ତ ॥୨॥*

ଜ୍ଞାନଦେବଙ୍କୁ ପ୍ରଣାମ କରିବା ପରେ, ଆଚାର୍ଯ୍ୟ ଯେଉଁ ଯୋଗ ମାଧ୍ୟମରେ ଆତ୍ମାନୁଭୂତିର ଅବସ୍ଥାରେ ପଦାର୍ପଣ କରିଛନ୍ତି, ସେହି ଯୋଗକୁ ପ୍ରଣିପାତ ଜଣାଉଛନ୍ତି। ଆତ୍ମାନୁଭବ କରିଥିବା ବ୍ୟକ୍ତି ନିଜେ ଆତ୍ମା ହୋଇ ଯାଆନ୍ତି - ଏହା ଶାସ୍ତ୍ରବାଣୀ ଏବଂ ସବୁ ଆଚାର୍ଯ୍ୟ ଏହାକୁ ଅନୁମୋଦନ କରନ୍ତି। ଏପରି ହୋଇଥିବାରୁ ଆତ୍ମାନୁଭବୀଙ୍କୁ ପ୍ରଣାମ କରିବା ବ୍ରହ୍ମଙ୍କୁ ପ୍ରଣାମ କରିବା ହୋଇଥାଏ।

ହିନ୍ଦୁଦର୍ଶନରେ ଗନ୍ତବ୍ୟ ପରି ମାର୍ଗ ମଧ୍ୟ ମୁଖ୍ୟ ସ୍ଥାନ ଅଧିକାର କରିଥାଏ। ଆଚାର୍ଯ୍ୟ ମାନେ ଯେଉଁ ସତ୍ୟ-ସଂସ୍କୃତିର ଅନୁସରଣ କରୁଥିଲେ, ଲକ୍ଷ୍ୟସ୍ଥଳ ପରି ଉପାୟ ମଧ୍ୟ ସେଥିରେ ପବିତ୍ର। ତେଣୁ ଗୌଡ଼ପାଦ ବିଶେଷ ଭାବରେ ସ୍ୱତନ୍ତ୍ର ଜ୍ଞାନମାର୍ଗକୁ ପ୍ରଣାମ କରିବା ଯଥାର୍ଥ।

ପୂର୍ବ ଅଧ୍ୟାୟରେ ଅସ୍ପର୍ଶ ଯୋଗର ବିଶଦ ବର୍ଣ୍ଣନା କରା ଯାଇଛି। ଆତ୍ମାନୁଭୂତିର ମାର୍ଗରେ ଏକ ସଫଳ ତୀର୍ଥଯାତ୍ରା ପାଇଁ ପ୍ରତ୍ୟେକ ସାଧକଙ୍କୁ ସମର୍ଥ କରିବାକୁ ଏଠାରେ କେତେକ ବିଶେଷ ଯୋଗ୍ୟତାର ଇଙ୍ଗିତ ଦିଆ ଯାଇଛି। ଗଭୀର ସଙ୍କେତରେ ଏସବୁ ଭାବଗର୍ଭକ ।

ଜଗତରେ ଯେକୌଣସି କାର୍ଯ୍ୟ ଲୋକଙ୍କର ସୁଖ ବା ସନ୍ତୋଷର ଅନୁକୂଳ ହେବା ଦରକାର। ଯାହା ସୁଖ ଆଣିଦିଏ ସବୁବେଳେ ତାହା ହିତକର ହୋଇ ନପାରେ। ଉଭୟ ହିତ ଏବଂ ସୁଖ ପାଇଁ ଅନୁକୂଳ ହେଉଥିବା କାର୍ଯ୍ୟ ପ୍ରକୃତରେ ବିରଳ। ଅସ୍ପର୍ଶ ଯୋଗ ସମସ୍ତଙ୍କର ସୁଖ ଆଣିଦିଏ ଏବଂ ପ୍ରତ୍ୟେକଙ୍କ ପାଇଁ ହିତକର ବୋଲି ଗୌଡ଼ପାଦ ଏଠାରେ କହୁଛନ୍ତି। ଆତ୍ମାନୁଭୂତି ପାଇଁ ଆହୁରି ଅନେକ ମାର୍ଗ ରହିଛି। ଏହି ମାର୍ଗ ବ୍ୟକ୍ତିବିଶେଷ ପାଇଁ ମଙ୍ଗଳମୟ ହୋଇଥିଲେ ମଧ୍ୟ ଅନ୍ୟମାନଙ୍କର ହିତ ହୁଏତ କରି ନ ପାରେ।

ଏପରି ହେବାର ମୁଖ୍ୟ କାରଣ ହେଲା, ଅନ୍ୟ ସବୁ ମାର୍ଗରେ ଅନେକ ବାହ୍ୟ ଆଡ଼ମ୍ବର ରହିଛି। ଭକ୍ତି ମାର୍ଗରେ ପୂଜା-ଅର୍ଚ୍ଚନାର ବିଧିବିଧାନ ସହିତ ମନ୍ତ୍ରୋଚ୍ଚାରଣ, ଭଜନ ଇତ୍ୟାଦି ରହିଛି। ନାସ୍ତିକ ପଡ଼ୋଶୀମାନଙ୍କ ପାଇଁ ଏହା ଅସ୍ୱସ୍ତିକର ହୋଇପାରେ। ହଠଯୋଗରେ ମଧ୍ୟ ଆଚରଣର ଏପରି ଅନେକ ବାହ୍ୟ ନିୟମ ଅଛି। ବ୍ୟକ୍ତି ପାଇଁ ଯାହା ପ୍ରାୟ ତପଶ୍ଚର୍ଯ୍ୟା ପରି ହୋଇଥାଏ। ଏହି ମାର୍ଗ ସମ୍ବନ୍ଧରେ ବୁଝି ନଥିବା ଲୋକଙ୍କ ପାଇଁ ଜଣେ ତପସ୍ୱୀ ସାଧାରଣତଃ ଦୃଷ୍ଟିକଟୁ ହୋଇଥାଏ। କର୍ମଯୋଗରେ ନିଶ୍ଚିତ ଭାବରେ କିଛି ପରିମାଣର ରାଗ ଏବଂ ଦ୍ୱେଷ ରହିଥାଏ। ଅନ୍ୟ ମାର୍ଗମାନଙ୍କରେ କୌଣସି ନା କୌଣସି ଭାବରେ କିଛି ପରିମାଣର ଦୁଃଖ ବା କଷ୍ଟ ଥାଏ। ଅସ୍ପର୍ଶଯୋଗ ମୁଖ୍ୟତଃ ବ୍ୟକ୍ତିର ଆନ୍ତରିକ ବିକାଶ ହୋଇଥିବାରୁ ହୃଦୟର ନିଭୃତଗୁହାରେ ଏହା କରାଯାଇଥାଏ। ଏହା ଅନ୍ୟମାନଙ୍କ ପାଇଁ କଦାପି ଯନ୍ତ୍ରଣାଦାୟକ ନୁହେଁ ଏବଂ ସାଧକଙ୍କ ପାଇଁ ସର୍ବଦା ମଙ୍ଗଳକର।

ନକାରାତ୍ମକ ଭାବନାର ଅରଣ୍ୟ ସଫା କରି, ହୃଦୟରେ ମହାନ ଭାବ ସ୍ଥାପନ କରି ଧୀର ଏବଂ ସ୍ଥିର ଗତିରେ ହୃଦୟର ବିସ୍ତାର କରି ଆତ୍ମାନୁଭୂତିରେ ଏହି ମାର୍ଗର ଧାରା ଆରମ୍ଭ କରାଯାଇଥାଏ। ସ୍ଥିର ଆତ୍ମବିକାଶର ଏହି ବିଜ୍ଞାନସମ୍ମତ ଧାରା ବିରୁଦ୍ଧରେ କୌଣସି ବାଦାନୁବାଦ ବା ଦ୍ୱନ୍ଦ୍ୱ ରହିବ ନାହିଁ।

ଅନ୍ୟ ମାର୍ଗରେ ବାଦାନୁବାଦର ବହୁତ ବେଶୀ ସମ୍ଭାବନା ରହିଛି। ଜଣେ ଗୁରୁଙ୍କଠାରୁ ଆଉ ଜଣେ ଗୁରୁଙ୍କର କାର୍ଯ୍ୟଶୈଳୀ ଭିନ୍ନ ହୋଇପାରେ ଏବଂ ଗୋଟିଏ

ନିର୍ଦ୍ଦିଷ୍ଟ ମାର୍ଗର ଅନୁସରଣ କରୁଥିବା ଶିଷ୍ୟମାନେ ନିୟମିତ ଭାବରେ ସେହି ମାର୍ଗ ଅନୁସରଣ କରିବା ଏତେ ଦରକାର ନାହିଁ। କିନ୍ତୁ ବେଦାନ୍ତ ସାଧନାରେ ଅନ୍ୟ କୌଣସି ଗଳି-ଉପଗଳି ନାହିଁ। ଏହା ଏକମାତ୍ର ରାଜରାସ୍ତା, ଏହାର ଦୂରତ୍ୱ ସବୁଠାରୁ କମ୍ ଏବଂ ତୀର ପରି ଏହା ଲକ୍ଷ୍ୟ ଭେଦ କରେ। ଯେଉଁ ପରିମାଣର ନିଷ୍ଠା, ଆତ୍ମନିୟୋଗ ଏବଂ ବିବେକ -ବୁଦ୍ଧିର ଜାଳେଣି ଯୋଗାଇ ଦିଆଯିବ, ପ୍ରଗତି ସେହି ପରିମାଣରେ ହେବ।

**ଭୂତସ୍ୟ ଜାତିମିଚ୍ଛନ୍ତି ବାଦିନଃ କେଚିଦେବ ହି।**

**ଅଭୂତସ୍ୟାପରେ ଧୀରା ବିବଦନ୍ତଃ ପରସ୍ପରମ୍ ।।୩।।**

ଭୂତସ୍ୟ = ଲୋପ ପାଇ ଯାଇଥିବା ସତ୍ତାର, ଜାତିମ୍ = (ବିବର୍ତ୍ତିତ) ପରିବର୍ତ୍ତନ ଲାଭ କରେ(ଜନ୍ମ), ଇଚ୍ଛନ୍ତି = ଇଚ୍ଛା କରନ୍ତି, ବାଦିନଃ = ବିବାଦକାରୀ(ଦାର୍ଶନିକମାନେ), କେଚିତ୍ = କେତେକ, ଏବ = ମଧ୍ୟ, ହି = ପ୍ରକୃତରେ, ଅଭୂତସ୍ୟ = ସତ୍ତାହୀନ ବସ୍ତୁର, ଅପରେ = ଅନ୍ୟ କେତେକ, ଧୀରାଃ = ବିଜ୍ଞ ବ୍ୟକ୍ତି, ବିବଦନ୍ତଃ = ବିବାଦ କରନ୍ତି, ପରସ୍ପରମ୍ = ପରସ୍ପର ମଧ୍ୟରେ।

*ପରସ୍ପର ମଧ୍ୟରେ ବିବାଦ କରି କେତେକ ବିବାଦକାରୀ ଏକଥା ସ୍ୱୀକାର କରନ୍ତି ଯେ ବିଦ୍ୟମାନ ସତ୍ତା ବିବର୍ତ୍ତିତ ହୁଏ। ଆଉ କେତେକ ବିଜ୍ଞ ଅବିଦ୍ୟମାନ ସତ୍ତାରୁ ବିବର୍ତ୍ତନ (କ୍ରମବିକାଶ) ହେବା କହନ୍ତି ।।୩।।*

ଏହି ଶ୍ଳୋକ ଏବଂ ପରବର୍ତ୍ତୀ ଶ୍ଳୋକରେ ଖଣ୍ଡନ କରାଯାଇଥିବା ସାଂଖ୍ୟ-ଦର୍ଶନର ବିଶ୍ୱାସର ମୂଲ୍ୟ ନିରୂପଣ କରାଯାଇଛି। ଉଭୟ ହେଉଛି ଦ୍ୱୈତବାଦୀ ଏବଂ ଗୋଡ଼ପାଦ ଏଠାରେ ଗୋଟିକ ଦ୍ୱାରା ଅନ୍ୟଟିର ପାରସ୍ପାରିକ ବାଦାନୁବାଦକୁ ପ୍ରକାଶ କରି ଦେଇଛନ୍ତି। ସମସ୍ତ ବାଦାନୁବାଦ ଏବଂ ବିରୋଧୋକ୍ତିର ଅତୀତ ସଠିକ୍ (ଯଥାର୍ଥ) ମାର୍ଗଟି ସେ ଶିଷ୍ୟମାନଙ୍କୁ ଦେଖାଇ ଦେଇଛନ୍ତି।

ଏହି ଦୁଇ ବିପରୀତଧର୍ମୀ ଦର୍ଶନକୁ ବୁଝିବା, ଶିଷ୍ୟମାନଙ୍କୁ ସେମାନଙ୍କର ନିଜର ଦାର୍ଶନିକ ବିଶ୍ୱାସକୁ ଜାଣିବାରେ ସାହାଯ୍ୟ କରିବ। ସାଂଖ୍ୟବାଦୀମାନେ ସତ୍‌କାର୍ଯ୍ୟ ତତ୍ତ୍ୱ ବା ପରିଣାମ ତତ୍ତ୍ୱରେ ବିଶ୍ୱାସ କରନ୍ତି।

ଦେଖାଦେବା ପୂର୍ବରୁ କାର୍ଯ୍ୟ ପ୍ରକୃତରେ କାରଣରେ ଥାଏ ବୋଲି ଜୋର ଦିଆ ଯାଉଥିବା ଏକ ସିଦ୍ଧାନ୍ତ। ଉଦାହରଣ ସ୍ୱରୂପ ଘଟ ମାଟିରେ ଥାଏ। ସେମାନଙ୍କ ମତରେ କିଛିହେଲେ ସୃଷ୍ଟି ହୁଏ ନାହିଁ। କାର୍ଯ୍ୟ ପ୍ରଚ୍ଛନ୍ନଭାବେ କାରଣରେ ନଥିଲେ କାରଣରୁ ତାହା ବାହାରିବ ନାହିଁ। ତେଣୁ ସେମାନଙ୍କ ପାଇଁ କାରଣ ହେଉଛି ହେତୁ, କାରଣରେ ସୂକ୍ଷ୍ମରୂପେ, ପ୍ରଚ୍ଛନ୍ନ ଭାବେ କାର୍ଯ୍ୟ ଆଗରୁ ରହିଥାଏ।

ସେମାନଙ୍କ ପାଇଁ ଫଳାଫଳ ହେଉଛି କାରଣ କାର୍ଯ୍ୟରେ ପରିବର୍ତ୍ତିତ ହେବା (ପରିଣାମ)। ମୃତ୍ତିକାର ରୂପ ଦ୍ୱାରା ଘଟର ରୂପ (କାର୍ଯ୍ୟ) ମୃତ୍ତିକାରେ (କରଣ) ତିରୋହିତ ରହିଥାଏ। ତେଣୁ ସମସ୍ତ କାର୍ଯ୍ୟର ଗୁଣ ଉପରେ କାରଣ ଆବରଣ ପକାଇ ଦେଇଥାଏ। କାରକ ବ୍ୟବହାର, ଆବରଣ ଦୂର କରିଦେଲେ ଘଟର ରୂପ ପ୍ରକାଶ ପାଏ।

ସାଂଖ୍ୟବାଦୀମାନେ କହନ୍ତି ଯେ ଏହା ଯଦି ଗ୍ରହଣୀୟ ହେବ ନାହିଁ, ତେବେ କୌଣସି ଗୋଟିଏ କାର୍ଯ୍ୟ, ଯେକୌଣସି କାରଣରୁ ଉତ୍ପନ୍ନ ହେବାରେ କିଛି ପ୍ରତିବନ୍ଧକ ରହିବ ନାହିଁ। ଉଦାହରଣ ସ୍ୱରୂପ, ଅଗରା ଗଛରୁ ଆମେ ଡିମିରି ଫଳ ସଂଗ୍ରହ କରି ପାରିବା, ଆମଲେଟ୍ କରିବା ପାଇଁ ବାଲିକୁ ଫେଣ୍ଟି ପାରିବା କିମ୍ବା ଲହୁଣୀ ପାଇଁ ପାଣିକୁ ଫୁଟେଇ ପାରିବା। ସେମାନେ କହନ୍ତି ଯେ ନିର୍ଦ୍ଦିଷ୍ଟ ଗୋଟିଏ କାରଣ ନିର୍ଦ୍ଦିଷ୍ଟ ଗୋଟିଏ କାର୍ଯ୍ୟ ଉତ୍ପନ୍ନ କରି ପାରିବ। ତେଣୁ କାର୍ଯ୍ୟ ପୂର୍ବରୁ କାରଣରେ ନିହିତ ଥାଏ ବୋଲି ସେମାନେ ଦାବୀ କରନ୍ତି। ତେଣୁ ସାଂଖ୍ୟବାଦୀଙ୍କ ପାଇଁ କାର୍ଯ୍ୟ, ସୂକ୍ଷ୍ମ ଓ ଅବ୍ୟକ୍ତ ରୂପେ କାରଣରେ ବରାବର ଥାଏ। ତତ୍ତ୍ୱତଃ କାରଣ ଏବଂ କାର୍ଯ୍ୟ ଉଭୟ ଅଭିନ୍ନ।

ଏହି ମତବାଦର ବିରୋଧ କରି ନ୍ୟାୟ-ବୈଶେଷିକ ଗୋଷ୍ଠୀର ଦାର୍ଶନିକମାନେ ଅସତ୍ କାର୍ଯ୍ୟ-ବାଦ ବା ଆରମ୍ଭ ବାଦ ନାମକ ଏକ ସ୍ୱାଧୀନ ମତବାଦର ଉପସ୍ଥାପନା କରନ୍ତି। କାରଣରେ କାର୍ଯ୍ୟ ପୂର୍ବରୁ ଥାଏ ବୋଲି ସେମାନେ ବିଶ୍ୱାସ କରନ୍ତି ନାହିଁ। ତାଙ୍କର ଯୁକ୍ତି ହେଲା, କାର୍ଯ୍ୟ ଯଦି ପୂର୍ବରୁ କାରଣରେ ରହିଛି, ତାକୁ ସୃଷ୍ଟି କରିବା ଦରକାର ନାହିଁ। ସାଂଖ୍ୟବାଦୀମାନଙ୍କ ଯୁକ୍ତିରେ ସେମାନେ ଛିଦ୍ରଟିଏ ଦେଖାଇବାର ଚେଷ୍ଟା କରନ୍ତି। ସେମାନେ ପଚାରନ୍ତି ଯେ ମୃତ୍ତିକାରୁ ଘଟ ଅନାବରିତ କରିବାର ହେତୁବୋଧକ କାର୍ଯ୍ୟର ମାନେ କଣ? ନ୍ୟାୟ-ବୈଶେଷିକମାନେ ଏକ ସୂକ୍ଷ୍ମ ପ୍ରଭେଦ ସୃଷ୍ଟି କରି ସାଂଖ୍ୟବାଦୀମାନଙ୍କୁ ପଚାରନ୍ତି -ଘଟ ସୃଷ୍ଟି କରୁଥିବା ହେତୁବୋଧକ କାର୍ଯ୍ୟ ଏବଂ ଅନ୍ଧାରରେ ଅଜ୍ଞାତ ଭାବରେ ରହିଥିବା ଘଟକୁ ପ୍ରକାଶ କରିବାର ହେତୁବୋଧକ କାର୍ଯ୍ୟ ଭିତରେ ପ୍ରଭେଦ କଣ?

ସାଂଖ୍ୟଦର୍ଶନକୁ ନିର୍ଦ୍ଦିଷ୍ଟ ଭାବରେ ସୂଚୀତ କରି ସେମାନେ ତାଙ୍କ ଯୁକ୍ତି ଖଣ୍ଡନ କରନ୍ତି। ସେମାନେ କହନ୍ତି, ସାଂଖ୍ୟବାଦୀଙ୍କ ମତ ହେଲା କାରଣରେ ପୂର୍ବରୁ ଥିବା କାର୍ଯ୍ୟର ଉତ୍ପନ୍ନ ହୁଏ। କଥାଟା ଏହିପରି ହେବ- ଘଟ ଏବଂ ମୃତ୍ତିକା ଏକ ଏବଂ ସେମାନେ ଭିନ୍ନ। ଏହା କହି ବୈଶେଷିକ ମାନେ ତାଙ୍କର ଯୁକ୍ତି ଶେଷ କରନ୍ତି।ଜଣେ ସମାଲୋଚକ ଯଥାର୍ଥ

ଭାବରେ କହିଛନ୍ତି ଯେ, ସାଂଖ୍ୟବାଦୀମାନଙ୍କର 'ପ୍ରଭେଦରେ ଅଭିନ୍ନତା'ରେ ବିଶ୍ୱାସ କରିବାର ଅର୍ଥ ହେଲା ଏହି ବିରୋଧୋକ୍ତିକୁ ହଜମ କରିବା ।

ତେଣୁ ନ୍ୟାୟ-ବୈଶେଷିକ ଗୋଷ୍ଠୀ ମତରେ କାର୍ଯ୍ୟ ହେଉଛି କାରଣଠାରୁ ଏକଦମ୍ ଭିନ୍ନ; ଉତ୍ପନ୍ନ ପରେ ହିଁ କାର୍ଯ୍ୟର ସ୍ଥିତି ଆରମ୍ଭ ହୁଏ। ଏଠାରେ ଲକ୍ଷ୍ୟ କରିବା କଥା ଯେ କାର୍ଯ୍ୟ କାରଣଠାରୁ ସଂପୂର୍ଣ୍ଣରୂପେ ଭିନ୍ନ ବୋଲି ସେମାନେ ବିଶ୍ୱାସ କରନ୍ତି ନାହିଁ, କାରଣ ସେ କ୍ଷେତ୍ରରେ ପୂର୍ବରୁ କୁହାଯାଇଥିବା ଅସମ୍ଭବ କଥା ସମ୍ଭବ ହୋଇଯିବ। ଏପରିକି ତେଲକୁ ମନ୍ଥି ଆମେ ମହୁ ପାଇପାରିବା । ଏସବୁ ଆପାତବିରୋଧୀ ସତ୍ୟକୁ ଦୃଢ଼ଭାବେ ଯୋଡ଼ିଦେବା ପାଇଁ ସେମାନେ କାର୍ଯ୍ୟ ଏବଂ କାରଣ ଭିତରେ ସହଜାତ ସମ୍ବନ୍ଧ ଥିବାର ସ୍ୱୀକାର କରନ୍ତି। ତେଣୁ ସେମାନଙ୍କ ପାଇଁ କାର୍ଯ୍ୟ ସର୍ବଦା ଉତ୍ପନ୍ନ ହେଉଥିଲେ ମଧ୍ୟ କାରଣର କାର୍ଯ୍ୟ ସହିତ ଏକ ସମ୍ବନ୍ଧ (ସହଜାତ ସମ୍ବନ୍ଧ) ରହିଛି।

ଏହି ଦର୍ଶନମାନଙ୍କର ବିଶେଷ ବର୍ଣ୍ଣନାକୁ ଯିବା ଆମର ଦରକାର ନାହିଁ। ଆମର ଉଦ୍ଦେଶ୍ୟ ପାଇଁ ଏଠାରେ କେବଳ ଏତିକି ଜାଣିଲେ ଯଥେଷ୍ଟ ହେବ ଯେ ଏହି ଦୁଇ ଶ୍ଳୋକରେ ଗୌଡ଼ପାଦ ବହୁବିଧତାର ପରସ୍ପର ବିରୋଧୀ ବିଷୟକୁ ଏକତ୍ର କରୁଛନ୍ତି ଏବଂ ଅଜେୟ ବେଦାନ୍ତକୁ ବିନାଶ କରିବାକୁ ଯାଇ ସେମାନେ ପରସ୍ପରର ବିପତ୍ତି ଘୋଷଣା କରିଛନ୍ତି ବୋଲି ଆମକୁ ଦେଖାଇ ଦେଇଛନ୍ତି।

ଶ୍ଳୋକର ପ୍ରଥମ ପଂକ୍ତିଟି ସାଂଖ୍ୟବାଦୀଙ୍କ ମତ ସୂଚାଇ ଦିଏ ଯେ ବିଦ୍ୟମାନ ଥିବା ବସ୍ତୁ କୌଣସି ଏକ କାରଣରୁ ସୃଷ୍ଟି ହୋଇଥାଏ; ଅପରପକ୍ଷରେ ଅବିଦ୍ୟମାନ କାରଣରୁ କୌଣସି ଏକ ବସ୍ତୁ ସୃଷ୍ଟି ହୋଇଥାଏ ବୋଲି ନ୍ୟାୟ ବୈଶେଷିକ ବାଦୀମାନେ ବିଶ୍ୱାସ କରନ୍ତି।

**ଭୂତଂ ନ ଜାୟତେ କିଞ୍ଚିଦଭୂତଂ ନୈବ ଜାୟତେ ।**

**ବିବଦନ୍ତୋଽଦ୍ୱୟା ହ୍ୟେବମଜାତିଂ ଖ୍ୟାପୟନ୍ତି ତେ ॥୪॥**

ଭୂତମ୍ = ଭୂତ, ଯାହା ପୂର୍ବରୁ ଥିଲା, ନ ଜାୟତେ = ଜନ୍ମ ହୁଏ ନାହିଁ, କିଞ୍ଚିତ୍ = କିଛିବି, ଅଭୂତମ୍ = ନଥିବା, ନ ଏବ ଜାୟତେ = କେବେ ବି ପୁଣି ଜନ୍ମ ହେବ ନାହିଁ, (ରହି ପାରିବ ନାହିଁ), ବିବଦନ୍ତ = ପରସ୍ପର ମଧ୍ୟରେ ବିବାଦ କରନ୍ତି, ଅଦ୍ୱୟାଃ = ଅଦ୍ୱୈତବାଦୀ ମାନେ, ହିଁ = କାରଣ, ଏବମ = ଏହିପରି ଭାବରେ, ଅଜାତିମ୍ = ଜନ୍ମ, ହେଉନଥିବା, ଅର୍ଥାତ୍ ଅଜାତବାଦ ସିଦ୍ଧାନ୍ତ; ତେ ଖ୍ୟାପୟନ୍ତି = ସେମାନେ ସମର୍ଥନ କରନ୍ତି ।

*ଭୂତ (ଯାହା ପୂର୍ବରେ ଥିଲା) ଆଉ ଥରେ ଜନ୍ମ ହେବ ନାହିଁ, କିମ୍ବା ଅବିଦ୍ୟମାନ ବସ୍ତୁ ପୁଣି ବିଦ୍ୟମାନ ହେବ ନାହିଁ । ଏହିପରି ଭାବରେ ପରସ୍ପର ମଧ୍ୟରେ ବିବାଦ କରି ସେମାନେ ବାସ୍ତବରେ ଅଜାଣତରେ ଅଦ୍ୱୈତ ମତର ଘୋଷଣା କରନ୍ତି ଏବଂ ଅଜାତବାଦର ସମର୍ଥନ କରନ୍ତି ॥୪॥*

ବିଜ୍ଞ ପରି ମନେ ହେଉଥିବା ଅନ୍ତଃସାରଶୂନ୍ୟତାକୁ କାରିକାକାର ଏଠାରେ ଉପହାସ କରୁଛନ୍ତି । ସେମାନେ ଯେତେ ଯୁକ୍ତି କଲେ ମଧ୍ୟ ଏହି ଦର୍ଶନ ଶେଷରେ ଯେଉଁ ସତ୍ୟ ପ୍ରତିଷ୍ଠା କରେ, ତାହା ନିଜେ ହିଁ ବିରୋଧକ୍ତି ।

ଗୌଡ଼ପାଦ କହୁଛନ୍ତି ଯେ, ପୂର୍ବରୁ ଥିବାରୁ ଭୂତ (ଅତୀତ) ପୁଣି ଅସ୍ତିତ୍ୱ ପାଇବ ନାହିଁ ।

ଅବିଦ୍ୟମାନ କେବେ ବି ଜନ୍ମ ନେଇ ପାରିବ ନାହିଁ କିମ୍ବା ବିଦ୍ୟମାନ ହେବ ନାହିଁ । " ମୁଁ ଗୋଟିଏ ଇନ୍ଦ୍ରଧନୁ କିଣିଲି", ଏହା ସତ୍ୟର ବିରୋଧୋକ୍ତି । "ସେ ମୋତେ ଗୋଟିଏ ଆକାଶ-କୁସୁମ ଦେବ", ଏହା କେବଳ ଏକ ମିଥ୍ୟା ଆଶା ହେବ । ଅବିଦ୍ୟମାନ ପଦାର୍ଥକୁ ସୃଷ୍ଟି କରିହେବ ନାହିଁ । ତେଣୁ ଉଭୟ ସାଂଖ୍ୟ ଏବଂ ବୈଶେଷିକଙ୍କର କୈଫିୟତ୍ ବାସ୍ତବରେ ଜଗତରେ ବହୁବିଧତାର ଦୃଶ୍ୟର ବ୍ୟାଖ୍ୟା କରିପାରିବ ନାହିଁ । ତେଣୁ ଗୌଡ଼ପାଦ କହୁଛନ୍ତି ଯେ ସେମାନେ ହେତୁବାଦର ନିୟମ କାର୍ଯ୍ୟ-କାରଣର ନିୟମର ବ୍ୟାଖ୍ୟା କରିବାରେ ଅସଫଳ ହୋଇଛନ୍ତି । କିଛି ହେଲେ କେବେବି ସୃଷ୍ଟି ହୋଇ ନାହିଁ ଏବଂ କାର୍ଯ୍ୟ-କାରଣର ନିୟମ ସବୁ ଅନ୍ଧବିଶ୍ୱାସମାନଙ୍କ ମଧ୍ୟରେ ନିକୃଷ୍ଟତର ବୋଲି କହି ସେମାନେ ବୈଦାନ୍ତିକ ମତର ପ୍ରତିଷ୍ଠା କରୁଛନ୍ତି ।

**ଖ୍ୟାପ୍ୟମାନାମଜାତିଂ ତୈରନୁମୋଦାମହେ ବୟମ୍ ।**
**ବିବଦାମୋ ନ ତୈଃ ସାର୍ଧମବିବାଦଂ ନିବୋଧତ ।।୫।।**

ଖ୍ୟାପ୍ୟମାନାମ୍ = ଘୋଷଣା କରାଯାଇଛି, ଅଜାତିମ୍ = ଅଜାତବାଦ ସିଦ୍ଧାନ୍ତ, ତୈଃ = ସେମାନଙ୍କ ଦ୍ୱାରା(ଦ୍ୱୈତବାଦୀଙ୍କ ଦ୍ୱାରା), ଅନୁମୋଦାମହେ = (ଆମେ) ଅନୁମୋଦନ କରୁ; ବୟମ୍ = ଆମେ ସମସ୍ତେ, ନ ବିବଦାମ୍ = ବିବାଦ କରୁ ନାହିଁ, ସାର୍ଧମ୍ ତୈଃ = ସେମାନଙ୍କ ସହିତ, ଅବିବାଦମ୍ = ବିବାଦ ବା ବିରୋଧରୁ ମୁକ୍ତ, ନିବୋଧତ = (ତୁମେ) ଶୁଣ ।

*ଦ୍ୱୈତବାଦୀଙ୍କ ଦ୍ୱାରା ଘୋଷିତ ଏହି ଅଜାତବାଦ ସିଦ୍ଧାନ୍ତ ଆମେ ଅନୁମୋଦନ କରୁ । ଆମେ ସେମାନଙ୍କ ସହିତ ବିବାଦ କରୁ ନାହୁଁ । ଏବେ ଆମ ପାଖରୁ ଶୁଣ, ଯାହା ସମସ୍ତ ବିରୋଧ ଏବଂ ବିବାଦରୁ ମୁକ୍ତ ।।୫।।*

ଦ୍ୱୈତବାଦୀ ମାନଙ୍କୁ ଏବଂ (ଯେଉଁମାନେ ସାଧାରଣତଃ ଭାରି ଯୁକ୍ତି କରନ୍ତି) ତାଙ୍କର ଅତୀବ ଧର୍ମାନ୍ଧ ବିଶ୍ୱାସକୁ ଗୌଡ଼ପାଦ ଏଠାରେ ସୂକ୍ଷ୍ମ ଉପହାସରେ ସମାଲୋଚନା କରୁଛନ୍ତି । କାରିକାକାର କହୁଛନ୍ତି ଯେ ନିଜ ଦର୍ଶନ ମାଧ୍ୟମରେ ସେମାନେ ବାସ୍ତବରେ ଆମ ଅଜାତବାଦ ସିଦ୍ଧାନ୍ତର ଘୋଷଣା କରୁଛନ୍ତି । ସେଥିପାଇଁ ଆମର କିଛି ଆପତ୍ତି ନାହିଁ ଏବଂ ଆମେ ତାଙ୍କର ଭଲ କଥା ଏବଂ ଉଚିତ ମନୋଭାବକୁ ଗ୍ରହଣ କରୁଛୁ । ବର୍ତ୍ତମାନ ଆମେ ଆମର ଦୃଷ୍ଟିଭଙ୍ଗୀ ଏବଂ ହେତୁବାଦର ସିଦ୍ଧାନ୍ତ କେବଳ ଅନ୍ଧବିଶ୍ୱାସ ଏବଂ ଗୋଟିଏ କଳ୍ପନା ବୋଲି ବ୍ୟାଖ୍ୟା କରିବାର ଚେଷ୍ଟା କରିବା । ଦ୍ୱୈତବାଦୀମାନେ ସେମାନଙ୍କର ଅସମର୍ଥନୀୟ ଦାର୍ଶନିକ ଅନୁମାନର ଅକୁହା ତାତ୍ପର୍ଯ୍ୟ ଦ୍ୱାରା ଏହି ସତ୍ୟ ଘୋଷଣା କରିଛନ୍ତି ।

ବେଦାନ୍ତ ଏବଂ ତାର ସିଦ୍ଧାନ୍ତ ହେଲା, ବହୁବିଧ ଜଗତ ହେଉଛି ମନର ଏକ ଭ୍ରାନ୍ତ ଧାରଣା । ଏହା ବ୍ୟାଖ୍ୟା କରିବାର ପ୍ରତିଶ୍ରୁତି ସହିତ ମିଥ୍ୟା ମୂଲ୍ୟବୋଧର ଜଙ୍ଗଲ ଭିତରେ ଆରପାରିର ଶାନ୍ତିପୂର୍ଣ୍ଣ ଜଗତକୁ ଅପରିପକ୍ୱମାନଙ୍କ ପାଇଁ ପଥ ପରିଷ୍କାର କରିବାକୁ ପ୍ରସ୍ତୁତ ହୋଇ ଗୌଡ଼ପାଦ ଏହି ଅଧ୍ୟାୟରେ ପ୍ରବେଶ କରିଛନ୍ତି ।

**ଅଜାତସ୍ୟୈବ ଧର୍ମସ୍ୟ ଜାତିମିଛନ୍ତି ବାଦିନଃ ।**

**ଅଜାତୋ ହ୍ୟମୃତୋ ଧର୍ମୋ ମର୍ତ୍ତ୍ୟତାଂ କଥମେଷ୍ୟତି ।।୬।।**

ଅଜାତସ୍ୟ = ଅଜାତ, ଏବ = ଏହା, ଧର୍ମସ୍ୟ = ବାସ୍ତବତା, ସତ୍ୟ; ଜାତିମ୍ = ପରିବର୍ତ୍ତିତ ହୁଏ (ଜନ୍ମ ନିଏ), ଇଛନ୍ତି = କାମନା କରନ୍ତି, ବାଦିନଃ = ବାଦୀମାନେ, ବିବାଦକାରୀ -ମାନେ; ଅଜାତଃ = ଅଜାତ, ହି = ପ୍ରକୃତରେ, ଅମୃତଃ ଧର୍ମଃ = ଅମୃତ ଧର୍ମ, ଅପରିବର୍ତ୍ତନୀୟ ସତ୍ତା; ମର୍ତ୍ତ୍ୟତାମ୍ = ମରଣଶୀଳ, ନଶ୍ୱର; କଥମ୍ = କିପରି ପାରିବେ, ଏଷ୍ୟତି = ସ୍ୱରୂପର ଅଂଶ ଗ୍ରହଣ କରିବେ ।

*ନିଜ ନିଜ ଭିତରେ ସର୍ବଦା ବିବାଦ କରୁଥିବା ଦ୍ୱୈତବାଦୀମାନେ ତର୍କ କରନ୍ତି ଯେ ଚିର, ଅଜ ଅର୍ଥାତ୍ ଅପରିବର୍ତ୍ତନୀୟ ସତ୍ତା, ଆତ୍ମାଙ୍କର ପରିବର୍ତ୍ତନ ହୁଏ । ନିଜେ ଅପରିବର୍ତ୍ତନୀୟ, ଅବିନଶ୍ୱର ଏକ ସତ୍ତା ନଶ୍ୱର ସ୍ୱରୂପ ଗ୍ରହଣ କରିବେ କିପରି ? ।।୬।।*

କାରିକାରେ ୩-୨୦ ଶ୍ଳୋକରେ ଏହି ଶ୍ଳୋକର ବ୍ୟାଖ୍ୟା କରାଯାଇ ସାରିଛି ।

**ନ ଭବତ୍ୟମୃତଂ ମର୍ତ୍ତ୍ୟଂ ନ ମର୍ତ୍ତ୍ୟମମୃତମ ତଥା ।**

**ପ୍ରକୃତେରନ୍ୟଥାଭାବୋ ନ କଥଂଚିଦ୍‌ଭବିଷ୍ୟତି ।।୭।।**

ନ ଭବତି = ହୋଇ ପାରିବ ନାହିଁ; ଅମୃତମ୍ = ଅମୃତ, ଅବିନଶ୍ୱର; ମର୍ତ୍ତ୍ୟମ୍ = ନଶ୍ୱର; ମର୍ତ୍ତ୍ୟମ ନ = ନଶ୍ୱର (ହେବା) ନାହିଁ; ଅମୃତମ୍ = ଅବିନଶ୍ୱର; ତଥା = ସେହିପରି ; ପ୍ରକୃତେଃ = ମୂଳ ପ୍ରକୃତିରେ; ଅନ୍ୟଥା ଭାବଃ = ଅନ୍ୟ କିଛିରେ ରୂପାନ୍ତର ବା ପରିବର୍ତ୍ତିତ ହେବା; କଥଂଚିତ୍ = କୌଣସି ଭାବରେ ; ନ ଭବିଷ୍ୟତି = ହୁଏ ନାହିଁ ।

*ଅବିନଶ୍ୱର ନଶ୍ୱର ହୋଇ ପାରିବେ ନାହିଁ, ନଶ୍ୱର ମଧ୍ୟ କେବେ ବି ଅବିନଶ୍ୱର ହୋଇ ପାରିବ ନାହିଁ କୌଣସି ପଦାର୍ଥର ପ୍ରକୃତରେ ପରିବର୍ତ୍ତନ ହୋଇ ସେହିପରି ଭାବରେ ରହି ପାରିବା କଦାପି ସମ୍ଭବ ନୁହେଁ ।।୭।।*

**ସ୍ୱଭାବେନାମୃତୋ ଯସ୍ୟ ଧର୍ମୋ ଗଚ୍ଛତି ମର୍ତ୍ୟତାମ୍ ।**

**କୃତକେନାମୃତସ୍ତସ୍ୟ କଥଂ ସ୍ଥାସ୍ୟତି ନିଶ୍ଚଳଃ ।।୮।।**

ସ୍ୱଭାବେନ ଅମୃତଃ = ସ୍ୱଭାବତଃ ଅବିନଶ୍ୱର, ଯସ୍ୟ = ଯାହା ପାଇଁ (ଯେଉଁ ବ୍ୟକ୍ତି ପାଇଁ) ଧର୍ମଃ = ଧର୍ମ, ଗଚ୍ଛତି ମର୍ତ୍ୟତାମ୍ = ନଶ୍ୱର ହୁଏ, କୃତକେନ = ପରିବର୍ତ୍ତନ ପରେ, ଏହା ଏକ ଉତ୍ପାଦ ହୋଇଥିବାରୁ, ଅମୃତଃ = ସେହି ଅବିନଶ୍ୱର, ତସ୍ୟ = ତାଙ୍କ ପାଇଁ, କଥମ୍ = କିପରି ହୋଇପାରିବ, ସ୍ଥାସ୍ୟତି = ରହେ, ସେହିପରି ହୋଇ, ନିଶ୍ଚଳଃ = ଅପରିବର୍ତ୍ତନୀୟ ସ୍ୱରୂପ ।

*ଅବିନଶ୍ୱରଙ୍କର ସ୍ୱରୂପ ନଶ୍ୱର ହେବାର ଯେଉଁମାନେ ବିଶ୍ୱାସ କରନ୍ତି, ସେମାନେ କିପରି କହନ୍ତି ଯେ ପରିବର୍ତ୍ତନ ପରେ ଅବିନଶ୍ୱର ତାଙ୍କର ଅପରିବର୍ତ୍ତନୀୟ ସ୍ୱରୂପ ରଖି ପାରିବେ ? ।।୮।।*

ଏହି ଉଭୟ ଶ୍ଳୋକ କାରିକା ୩-୨୧ ଏବଂ ୨୨ରେ ବିଶଦ ଭାବରେ ବ୍ୟାଖ୍ୟା କରା ଯାଇଛି । ଜୋର ଦେବା ଉଦ୍ଦେଶ୍ୟରେ ଉପରୋକ୍ତ ସନ୍ଦର୍ଭରେ ଗୌଡ଼ପାଦ ତାର ପୁନରୁକ୍ତି କରିଛନ୍ତି କେବଳ ।

ଗତ ଅଧ୍ୟାୟରେ ଏହି ଦୁଇ ଶ୍ଳୋକର ଧାରଣାକୁ ସଂପୂର୍ଣ୍ଣଭାବେ ସ୍ପଷ୍ଟ କରାଯାଇ ନଥିଲା । କୌଣସି ପଦାର୍ଥ ପାଇଁ ତାର ସ୍ୱରୂପର ପରିବର୍ତ୍ତନ କିପରି ଏବଂ କାହିଁକି ସମ୍ଭବ ନୁହେଁ, ସେ ସମ୍ବନ୍ଧରେ କୌଣସି ବ୍ୟାଖ୍ୟା ନାହିଁ । ନିମ୍ନରେ ତାର ବ୍ୟାଖ୍ୟା କରାଯାଇଛି ।

**ସାଂସିଦ୍ଧିକୀ ସ୍ୱାଭାବିକୀ ସହଜା ଅକୃତା ଚ ଯା ।**

**ପ୍ରକୃତିଃ ସେତି ବିଜ୍ଞେୟା ସ୍ୱଭାବଂ ନ ଜହାତି ଯା ।।୯।।**

ସାଂସିଦ୍ଧିକୀ = ଭଲ ଭାବରେ ପାଇ ପାରିଥିବା, ସ୍ୱାଭାବିକୀ = ସ୍ୱସ୍ୱଭାବ, ସହଜା = ସ୍ୱଭାବଗତ, ଚ ଅକୃତା = ଏବଂ ସୃଷ୍ଟି କରାଯାଇ ନଥିବା, ଅପ୍ରାକୃତିକ ନୁହେଁ; ଯା = ଯାହା, ପ୍ରକୃତିଃ = (ନିଜର) ସ୍ୱରୂପ, ଇତି ସା = ତାହା ପରି, ବିଜ୍ଞେୟା = ଜାଣିବା ବା ବୁଝିବା ଦରକାର, ସ୍ୱଭାବମ୍ = ସ୍ୱଭାବ, ନ ଜହାତି = ତ୍ୟାଗ କରେ ନାହିଁ, ଯା = ଯାହା ।

*ପ୍ରକୃତି ବା ବସ୍ତୁର ଅନ୍ତର୍ନିହିତ ସ୍ୱଭାବ କହିଲେ ଆମେ ଯାହାବୁଝୁ ତାହା ହେଲା- ଯାହା ପ୍ରାପ୍ତ ହେବା ପରେ ପ୍ରାପ୍ତ ବସ୍ତୁରୁ ଏହା ଅବିଚ୍ଛିନ୍ନ ହୁଏ, ଯାହା ବସ୍ତୁର ସହଜାତ କିମ୍ବା ଅନ୍ତର୍ନିହିତ, ଯାହା କୃତ୍ରିମ ନୁହେଁ, ଏବଂ କେହି ବା କିଛି ବି ନିଜର ପ୍ରକୃତି ଛାଡି ପାରନ୍ତି ନାହିଁ ।।୯।।*

ବେଦାନ୍ତ ସମୟରେ ବିଜ୍ଞାନସମ୍ମତ ଚିନ୍ତାଧାରା ଯେପରି ଉନ୍ନତ ଶିଖରରେ ପଦାର୍ପଣ କରିଥିଲା, ବିଶେଷକରି ଶାସ୍ତ୍ରୀୟ ସାହିତ୍ୟରେ, ଅନ୍ୟ କୌଣସି ସମୟର ସାହିତ୍ୟରେ ସେପରି କଦାପି ଦେଖାଯାଇ ନାହିଁ। ପ୍ରାଚୀନ କାଳରୁ ମହାନ୍ ଆର୍ଯ୍ୟ ଆଚାର୍ଯ୍ୟଗଣ ସମସ୍ତ ବସ୍ତୁର ସ୍ୱରୂପକୁ ସୁବିଧାଜନକ ଭାବରେ ଚାରିଗୋଟି ଶ୍ରେଣୀରେ ବିଭକ୍ତ କରିଥିଲେ। ଏପରି କୌଣସି ବସ୍ତୁ ନାହିଁ, ଯାହାର ସ୍ୱରୂପ ଏହି ଚାରିଗୋଟି ଶ୍ରେଣୀମାନଙ୍କ ମଧ୍ୟରୁ କୌଣସି ଗୋଟିଏରେ ଅନ୍ତର୍ଭୂକ୍ତ ହୋଇ ପାରିବ ନାହିଁ।

ସାଂସିଦ୍ଧିକୀ–ଉତ୍ତମ ଭାବରେ ପ୍ରାପ୍ତ – ଏପରି କେତେକ ବୈଶିଷ୍ଟ୍ୟ ଅଛି, ଯାହା ଭଲ ଭାବରେ ଲାଭ କରି ପାରିଥିଲେ, ମଣିଷକୁ କେବେ ଛାଡ଼ି ଯାଇପାରେ ନାହିଁ। ଯଥା – ଯୌଗିକ ଶକ୍ତି, ଶିକ୍ଷା, ଅକ୍ଷର ଜ୍ଞାନ ଇତ୍ୟାଦି।

ସ୍ୱାଭାବିକୀ– ଅନ୍ତର୍ନିହିତ ସ୍ୱଭାବ। ଉଦାହରଣ ସ୍ୱରୂପ –ଅଗ୍ନିରେ ତେଜ ଏବଂ ଉତ୍ତାପକୁ ନିର୍ଦ୍ଦେଶ କରି ଆଚାର୍ଯ୍ୟ କହିଛନ୍ତି ଯେ, ନିଜର ସ୍ୱରୂପ ଉତ୍ତାପ ବିନା ଅଗ୍ନି, ଅଗ୍ନି ହୋଇ ରହି ପାରିବ ନାହିଁ।

ଅକୃତା– କୃତ୍ରିମ ନୁହେଁ– ତରଳ ପଦାର୍ଥ ତଳକୁ ବୋହିଯିବା ପରି। କୌଣସି ଯନ୍ତ୍ରର ଚାପରେ ଏହା ହୁଏ ନାହିଁ। ଏହା କୃତିମ ନୁହେଁ, ନିମ୍ନ ସ୍ତରକୁ ବୋହିଯିବା ତରଳ ପଦାର୍ଥର ସ୍ୱଭାବ।

ସହଜା– ସହଜାତ– ଆଉଏକ ପ୍ରକାରର ସ୍ୱଭାବ ବା ସ୍ୱରୂପ ଅଛି, ଯାହାକୁ ସହଜାତ କୁହାଯାଏ। ହଂସ ପାଣିକୁ ଯିବା, ପକ୍ଷୀମାନଙ୍କର ଉଡ଼ି ପାରିବାର କ୍ଷମତା ଏହାର ଉଦାହରଣ।

କାରିକାକାର ଏହି ଶ୍ଳୋକରେ ଚାରିଗୋଟି ସ୍ୱାଭାବିକ ଲକ୍ଷଣ ନିର୍ଦ୍ଦେଶ ଦେଇଛନ୍ତି, କିନ୍ତୁ ଶାସ୍ତ୍ର ଅନୁସାରେ ଆଉ ଗୋଟିଏ ମଧ୍ୟ ଅଛି, ହୁଏତ 'ଏବଂ' (ଚ) ଦ୍ୱାରା ଗୌଡ଼ପାଦ ତାହାକୁ ଏଠାରେ ନିର୍ଦ୍ଦେଶ କରିଛନ୍ତି। ଏହାକୁ ସ୍ୱରୂପ ପ୍ରକୃତି କୁହାଯାଇଛି। ବସ୍ତ୍ରରେ ବସ୍ତ୍ରର ସ୍ୱଭାବ, ଘଟରେ ଘଟତ୍ୱ ଇତ୍ୟାଦି ଏହାର ଉଦାହରଣ। ଅଭାବ ଦୂର କରିଦେଲେ ଲୁଗା ଲୁଗା ହୋଇ ରହିବ ନାହିଁ, ବିଡ଼ାଏ ସୂତା ବା ଗଦାଏ ତୁଳାକୁ ଲୁଗା କୁହାଯାଏ ନାହିଁ। ଲୁଗାରେ ଲଗାତ୍ୱ ଥାଏ।

କୌଣସି ବସ୍ତୁ ନିଜେ ଅପରିବର୍ତ୍ତିତ ନହୋଇ ନିଜର ଆତ୍ୟନ୍ତିକ ସ୍ୱଭାବକୁ ତ୍ୟାଗ କରିପାରିବେ ନାହିଁ। ନିଜର ପ୍ରକୃତିରୁ କେହି ଅଲଗା ହୋଇ ରହି ପାରିବେ ନାହିଁ; ଯେପରି 'ଶୀତଳ ଅଗ୍ନି', 'ଅନ୍ଧାରୀ ସୂର୍ଯ୍ୟ', ପ୍ରକୃତିରେ ଏବେ ବି ଜନ୍ମ ନେଇ ନାହାଁନ୍ତି।

ଯାହା ସୂଚାଇ ଦିଆ ଯାଇଛି, ତାହା ହେଲା-ନିଜର ସ୍ୱରୂପରୁ, ପ୍ରକୃତିରୁ କେହି ଅଲଗା ହୋଇ ପାରିବେ ନାହିଁ। ଷଷ୍ଠ ଏବଂ ସପ୍ତମ ଶ୍ଲୋକରେ କୁହା ଯାଇଛି ଯେ, ଅବିନଶ୍ୱର ନଶ୍ୱର ହୋଇ ପାରିବେ ନାହିଁ, ନଶ୍ୱର ମଧ୍ୟ ଅବିନଶ୍ୱର ପଦବୀ ପାଇ୍ ପାରିବ ନାହିଁ, କାରଣ କେହିହେଲେ ନିଜର ପ୍ରକୃତି ବଦଳାଇ ପାରିବେ ନାହିଁ। ନଶ୍ୱର ପ୍ରକୃତି ବଦଳାଇ ପାରିବେ ନାହିଁ। ନଶ୍ୱର କେବେ ବି ଅବିନଶ୍ୱର ହୋଇ ପାରିବ ନାହିଁ ଏବଂ ନିଜର ନଶ୍ୱରତାରେ ରହିବ। ଆମଠାରେ ଥିବା ପରମସତ୍ୟ ବିକାଶ ମାଧ୍ୟମରେ ନିଜେ ଯଦି ନଶ୍ୱର ବହୁବିଧ ଜଗତ ହୋଇଯିବ, ତେବେ ପରମସତ୍ୟ ଭାବରେ କୌଣସି ଶାଶ୍ୱତ ବିଷୟ ଆଉ ରହି ପାରିବ ନାହିଁ। ଏପରି କହିବା ସବୁ ତର୍କର ବିରୁଦ୍ଧାଚରଣ କରିବ।

ପୃଥିବୀର ଅନ୍ୟ ସମସ୍ତ ଦର୍ଶନର ବିପରୀତରେ ବେଦାନ୍ତ କୌଣସି ଗୋଟିଏ ହେଲେ ଅଯୌକ୍ତିକ ବିଷୟକୁ ସ୍ୱୀକାର କରେ ନାହିଁ। ବେଦାନ୍ତରେ ଅନ୍ଧବିଶ୍ୱାସର ସ୍ଥାନ ନାହିଁ।

**ଜରାମରଣ ନିର୍ମୁକ୍ତାଃ ସର୍ବେ ଧର୍ମାଃ ସ୍ୱଭାବତଃ।**

**ଜରାମରଣମିଚ୍ଛନ୍ତଶ୍ଚ୍ୟବନ୍ତେ ତନ୍ମନୀଷୟା ॥୧୦॥**

ଜରା = ଜରା, ମରଣ = ମରଣ, ନିର୍ମୁକ୍ତାଃ = ସମ୍ପୂର୍ଣ୍ଣରୂପେ ମୁକ୍ତ, ସର୍ବେ = ସବୁ, ଧର୍ମାଃ = ଜୀବ(ଆତ୍ମା) ମାନେ, ସ୍ୱଭାବତଃ = ସେମାନଙ୍କ ସ୍ୱଭାବ ଦ୍ୱାରା, ଜରାମରଣମ୍ = ଜରା ଏବଂ ମରଣ; ଇଚ୍ଛନ୍ତଃ = କେବଳ କଳ୍ପନା କରି, ଚ୍ୟବନ୍ତେ = ଭ୍ରାନ୍ତ ହେବାପରି ମନେ ହୁଏ, ତତ୍ ମନୀଷୟା = ସେମାନଙ୍କର (ଜରା, ମରଣର) ଚିନ୍ତା ଦ୍ୱାରା।

*ସ୍ୱଭାବବଶତଃ ସବୁ ଜୀବମାନେ ଜରା-ମରଣରୁ ମୁକ୍ତ । ସେମାନେ ଏହି ବିକାରର ଅଧୀନ ବୋଲି କେବଳ କଳ୍ପନା କରନ୍ତି, ତେଣୁ ତାଙ୍କର ଚିନ୍ତା ଦ୍ୱାରା ହିଁ ସେମାନେ ନିଜର ପ୍ରକୃତିରୁ ଦୂରେଇ ଯିବା ପରି ମନେହୁଏ ॥୧୦॥*

ଆତ୍ମା ପ୍ରତ୍ୟେକ ଜୀବର ସ୍ୱରୂପ ହୋଇଥିବା ଯୋଗୁଁ -ସବୁ ଜୀବମାନେ ଆତ୍ମାଙ୍କର ସ୍ୱରୂପ ହେବା ଦରକାର। ଏହା ଅନ୍ୟ ପ୍ରକାର ହୋଇ ପାରିବ ନାହିଁ ଏବଂ ତଥାପି ମୋ ପରି ଏବଂ ଆପଣଙ୍କ ପରି ମଣିଷମାନେ ମାନସିକ ପରିଚ୍ଛିନ୍ନତାର କଷ୍ଟ ପାଉ।

ଆମେମାନେ ବାସ୍ତବରେ ଈଶ୍ୱରଙ୍କ ସ୍ୱରୂପ ହେଲେ ହେଁ ବରାବର ଭାବୁ ଯେ, ଆମେମାନେ ଆତ୍ମ-ସ୍ୱରୂପର ବିପରୀତ। ଆମେ ନଶ୍ୱର ବ୍ୟତୀତ ଅନ୍ୟ କିଛି ନୁହେଁ

ବୋଲି ଅନୁଭବ କରୁ। ଜରାମରଣ ପଦ ଦ୍ୱାରା ନଶ୍ୱରତାର ଏହି ଧାରଣା ନିର୍ଦ୍ଦେଶ କରା ଯାଉଛି।

ଜୀବନକାଳ ମଧ୍ୟରେ ଶରୀର ପାଞ୍ଚଗୋଟି ବିକାର ଦେଇ ଗତି କରେ। ସେସବୁ ହେଲା -ଜନ୍ମ, ବୃଦ୍ଧି, ଜରା, କ୍ଷୟ ଏବଂ ମୃତ୍ୟୁ। ଏଠାରେ ଯଦିଓ 'ଜରା-ମରଣ'ର ନିର୍ଦ୍ଦେଶ କରାଯାଇଛି, କେବଳ ଏହି ହଳକ ନୁହେଁ, ଏ ସବୁର ଅର୍ଥରେ କାରିକାକାର କହିଛନ୍ତି। ଆମର ଅଜ୍ଞ ଅହଂକାର ଏବଂ ମିଥ୍ୟା ତାଦାତ୍ମ୍ୟ ହିଁ ଜନ୍ମ ହୋଇ ବୃଦ୍ଧି ପାଉଥିବାର ଅସୀମ ସ୍ୱପ୍ନ ସୃଷ୍ଟି କରେ। ରୋଗ, ଜରା, ମରଣ ସହିତ ଏମାନେ ଜୀବନର ସମସ୍ତ ଦୁଃଖ ସୃଷ୍ଟି କରନ୍ତି। ଏହି ବିକାର ସହିତ ଆମର ତାଦାତ୍ମ୍ୟ ଯୋଗୁଁ ଲାଭ କରା ଯାଉଥିବା ମାନସିକ ଦୃଷ୍ଟିଭଙ୍ଗୀ ଏବଂ ଅନୁଭୂତି ବ୍ୟତୀତ ଏମାନେ ଅନ୍ୟ କିଛି ନୁହେଁ। ଏହି ସବୁ ବିକାର ହେଉଛି କେବଳ ଶରୀର, ମନ ଏବଂ ବୁଦ୍ଧି ପାଇଁ, ଆମ ଭିତରେ ଥିବା ଆତ୍ମା, ଶୁଦ୍ଧ -ଚୈତନ୍ୟଙ୍କ ପାଇଁ ନୁହେଁ ବୋଲି ବୌଦ୍ଧିକ ସ୍ତରରେ ସାମାନ୍ୟ ଜିଜ୍ଞାସା କଲେ ବିଶ୍ୱାସ ହେବ।

ଶରୀର ଜନ୍ମ ନିଏ, ମନ ଏବଂ ବୁଦ୍ଧିର ବୃଦ୍ଧି ହୁଏ, ରୋଗ ହେଉଛି ଶରୀରର, ଦୁଃଖ-କଷ୍ଟ ସବୁ ମନର, ସୂକ୍ଷ୍ମ-ଶରୀରର କ୍ଷମତା ଏବଂ ଇନ୍ଦ୍ରିୟ ମାନଙ୍କର କ୍ଷୟ ହୁଏ, ମୃତ୍ୟୁ ହେଉଛି ସ୍ଥୁଳ ଶରୀରରୁ ସୂକ୍ଷ୍ମ ଶରୀରର ବିଚ୍ଛେଦ। ତେଣୁ ଆମ ଭିତରେ ଥିବା ପରମାତ୍ମାଙ୍କୁ ଏମାନଙ୍କ ମଧ୍ୟରୁ କେହିହେଲେ ଛୁଇଁ ପାରନ୍ତି ନାହିଁ।

ଆମ ସ୍ୱସ୍ୱରୂପ ଭୁଲିଯାଇ ପରମାତ୍ମାଙ୍କ ଉପରେ ଥିବା ବିଷୟ-ସ୍ତର ସହିତ ଆମେ ଏତେ ତାଦାତ୍ମ୍ୟ କରି ପକାଇଛୁ ଯେ, ବିଷୟର ବିକାର ଆତ୍ମାର ବିକାର ଭାବରେ ଅନୁଭବ କରୁ। ବାସ୍ତବରେ ଜୀବ ସଂପୂର୍ଣ୍ଣଭାବେ ପୂର୍ଣ୍ଣାଙ୍ଗ, ଅବିକାରୀ ଏବଂ ଆନନ୍ଦମୟ। ତଥାପି ଏହାର ସ୍ୱରୂପ ବୁଝି ନପାରି, ଏବଂ ପରିଛିନ୍ନତାର ବିଭିନ୍ନ ଗୁଣ ଏହା ଉପରେ ଆରୋପ କରି ଅଜ୍ଞାନବଶତଃ, ଆମେ ଆମ ନଶ୍ୱର ଜୀବନର ଦୁଃଖ ଭୋଗ କରୁ। ପରିଛିନ୍ନ ଜୀବନ ବା ସଂସାର ଆମର ନୁହେଁ।

ବହୁବିଧ ଜଗତରେ ଜୀବନର ସଂଘର୍ଷ ଏବଂ ବଞ୍ଚି ରହିବାର ଦୁଃଖ ସବୁ, ଆତ୍ମା ଆତ୍ମାକୁ ପୁନରାବିଷ୍କାର କରିବାର ସଂଘର୍ଷ ବ୍ୟତୀତ ଅନ୍ୟ କିଛି ନୁହେଁ। ସ୍ୱସ୍ୱରୂପରୁ ବିଚ୍ଛିନ୍ନ ହୋଇ ନିଜ ଆତ୍ମା ପାଖରୁ ଆମେ ନିର୍ବାସନର ଜୀବନ ଯାପନ କରୁଛୁ। ସ୍ୱସ୍ୱରୂପଠାରୁ ଅଲଗା ହୋଇ କେହି ରହି ପାରିବେ ନାହିଁ - ଏହା ପ୍ରକୃତିର ନିୟମ ହୋଇଥିବାରୁ ନିଜର ସ୍ୱରୂପ ଆବିଷ୍କାର କରିବା ପାଇଁ ଆତ୍ମା ଆମ କ୍ଷୁଦ୍ର ଅହଂକୁ ପ୍ରବର୍ତ୍ତାଇବେ।

ଆମ ସ୍ୱରୂପର ଏହି ଦୁଇ ବିପରୀତ ଧର୍ମୀ ଘଟଣା ପ୍ରବାହରେ ଚିପି ହୋଇ ଆମର ଜୀବ; ଜୀବନ ରୂପକ ଜାଲରେ ଛନ୍ଦି ହୋଇ କଷ୍ଟ ପାଉଛି। ଆମ ଜୀବନର ସମସ୍ତ ଦୁଃଖ ଜୀବ-ଭାବର ମିଥ୍ୟା କଳ୍ପନା ମାତ୍ର।

**କାରଣଂ ଯସ୍ୟ ବୈ କାର୍ଯ୍ୟଂ କାରଣଂ ତସ୍ୟ ଜାୟତେ।**

**ଜାୟମାନଂ କଥମଜଂ ଭିନ୍ନଂ ନିତ୍ୟଂ କଥଂ ଚ ତତ୍ ॥୧୧॥**

କାରଣଂ = କାରଣ, ଯସ୍ୟ ବୈ = ଯିଏ ବାସ୍ତବରେ ତାହା ସାବ୍ୟସ୍ତ କରେ, ଜାୟତେ = ଜନ୍ମ ନିଏ, ଜାୟମାନମ୍ = ଯାହା ଜନ୍ମ ନେଇଥାଏ, କାର୍ଯ୍ୟଂ = ନିଜେ (କାର୍ଯ୍ୟ), କାରଣମ୍ = କାରଣ, ତସ୍ୟ = ଯାହା ଅନୁସାରେ, କଥମ୍ = କିପରି, ଅଜମ୍ = ଅଜ, ଭିନ୍ନମ୍ = ଭିନ୍ନ, ନିତ୍ୟମ୍ = ନିତ୍ୟ, ଶାଶ୍ୱତ; ଚ କଥମ୍ = ଏବଂ କିପରି, ତତ୍ = ତାହା (କାରଣ)।

*ବିବାଦକାରୀଙ୍କ ମତରେ ନିଜେ କାରଣ ହିଁ ହେଉଛି କାର୍ଯ୍ୟ। ସେମାନେ କହନ୍ତି ଯେ ଅବଶ୍ୟ କାରଣ କାର୍ଯ୍ୟ ଭାବରେ ଜନ୍ମ ନେଇଥାଏ। ଏହା ଯଦି କାର୍ଯ୍ୟ ଭାବରେ ଜନ୍ମ ନେବ, ତେବେ କାରଣ ଅବିକାରୀ ରହିବା ସମ୍ଭବ କିପରି ? ବାରମ୍ବାର ବିକାର ମଧ୍ୟେ ଗତି କରୁଥିବାବେଳେ କାରଣ ଶାଶ୍ୱତ ହେବ କିପରି ? ॥୧୧॥*

ଏଠାରେ ଗୌଡ଼ପାଦ ସାଂଖ୍ୟ ଦର୍ଶନର ସମାଲୋଚନା କରୁଛନ୍ତି। ସେମାନଙ୍କ ମତରେ, ପୂର୍ବରୁ ଆମେ ଯାହା ଦେଖିଛୁ, କାର୍ଯ୍ୟ କାରଣର ପୂର୍ବରୁ ଥାଏ। କାର୍ଯ୍ୟ ଯଦି କାରଣରେ ରହିଛି ଏବଂ ଏହାର (କାରଣର) ବିକାରର ଫଳସ୍ୱରୂପ ଏହା କାରଣରୁ ଜନ୍ମ ନିଏ, ତେବେ କାରଣ କାର୍ଯ୍ୟ ରୂପେ ପରିବର୍ତ୍ତିତ ହୁଏ। ପରିବର୍ତ୍ତନ ମାନେ ପରିଚ୍ଛିନ୍ନତା (ସସୀମତା)। ଯାହାର ପରିବର୍ତ୍ତନ ହୁଏ, ତାହା ଏକ ନଶ୍ୱର ପଦାର୍ଥ। ତେଣୁ ଗୌଡ଼ପାଦ ପଚାରୁଛନ୍ତି ଯେ, କାର୍ଯ୍ୟ କାରଣରୁ ଜନ୍ମ ବୋଲି ସାଂଖ୍ୟବାଦୀମାନେ କହୁଥିବାବେଳେ କାରଣ ନିର୍ବିକଳ୍ପ ଏବଂ ଶାଶ୍ୱତ ବୋଲି ଜୋର ଦେଉଛନ୍ତି କିପରି।

ବାସ୍ତବରେ ଗୌଡ଼ପାଦ ଏହି ଶ୍ଳୋକରେ ଦର୍ଶାଉଛନ୍ତି ଯେ, ଏହି ଦାର୍ଶନିକ ସିଦ୍ଧାନ୍ତ ଏକ ନିରପେକ୍ଷ, ଗତିଶୀଳ ବୁଦ୍ଧିର ସମୀକ୍ଷାର ଯୋଗ୍ୟ ନୁହେଁ। କାରଣ କାର୍ଯ୍ୟଠାରୁ ଅଭିନ୍ନ ବୋଲି ବିଶ୍ୱାସ କରିବା ସତ୍ୟ ହେବ ନାହିଁ କିମ୍ବା କାର୍ଯ୍ୟ କାରଣଠାରୁ ଅଭିନ୍ନ ବୋଲି ଆମେ ଭାବି ପାରିବା ନାହିଁ। ଉଭୟ କ୍ଷେତ୍ରରେ କାର୍ଯ୍ୟ- କାରଣ ସଂପର୍କକୁ ଆମେ ଗ୍ରହଣ କରିବାକ୍ଷଣି କାରଣ ପରିଚ୍ଛିନ୍ନ ଏବଂ ନଶ୍ୱର ହୋଇଯିବ।

ଆମେ ଯଦି କହିବା ଯେ ଜଗତ ନାରାୟଣଙ୍କ ବ୍ୟତୀତ ଅନ୍ୟ କିଛି ନୁହେଁ ବା ନାରାୟଣ ଜଗତ ବ୍ୟତୀତ ଅନ୍ୟ କିଛି ନୁହେଁ, ଉଭୟ କ୍ଷେତ୍ରରେ ଜଗତ ନାରାୟଣଙ୍କଠାରୁ

ସୃଷ୍ଟି ହୋଇଛି ବୋଲି ଗ୍ରହଣ କରିବା ମାନେ ନାରାୟଣଙ୍କୁ ହତ୍ୟା କରିବା ! ଭଗବାନଙ୍କ କାରଣରୁ ବହୁବିଧ ଜଗତ ସୃଷ୍ଟି ହୋଇଛି ବୋଲି ଆମେ ଗ୍ରହଣ କଲେ ପରମସତ୍ୟ ଭଗବାନ ପରିଚ୍ଛିନ୍ନ ବା ନଶ୍ୱର ହୋଇଯିବେ।

**କାରଣାତ୍ ଯଦ୍ୟନନ୍ୟତ୍ୱଂ ଅତଃ କାର୍ଯ୍ୟମଜଂ ଯଦି ।**

**ଜାୟମାନାଦ୍‌ଭି ବୈ କାର୍ଯ୍ୟାତ୍ କାରଣଂ ତେ କଥମ୍ ଧ୍ରୁବମ୍ ॥୧୨॥**

କାରଣାତ୍ = କାରଣରୁ ; ଯଦି = ଯଦି; ଅନନ୍ୟତ୍ୱଂ = ଅଭିନ୍ନତା; ଅତଃ = ତେବେ; କାର୍ଯ୍ୟମ୍ = କାର୍ଯ୍ୟ; ଅଜମ୍ = ଅଜ; ଜନ୍ମ ରହିତ; ଯଦି = ଯଦି; ଜାୟମାନାତ୍ ହି ବୈ = ଯାହା ପ୍ରକୃତରେ ଜନ୍ମ ନେଇଛି; କାର୍ଯ୍ୟାତ୍ = କାର୍ଯ୍ୟରୁ; କାରଣମ୍ = କାରଣ; ତେ = ତୁମ ପାଇଁ; କଥମ୍ ଧ୍ରୁବମ୍ = ଏହା କିପରି ଶାଶ୍ୱତ ହେବ।

*ତୁମେ ଯଦି କହିବ, କାରଣ କାର୍ଯ୍ୟଠାରୁ ଅଭିନ୍ନ, ତେବେ କାର୍ଯ୍ୟ ମଧ୍ୟ ଶାଶ୍ୱତ ଏବଂ ଅଜ ହେବ। ଆହୁରି ମଧ୍ୟ କାରଣ ଯଦି ଜନ୍ମ ନେଇଥିବା କାର୍ଯ୍ୟଠାରୁ ଅଭିନ୍ନ ନ ହୁଏ, ତେବେ ତାହା ଶାଶ୍ୱତ ବା ଚିରନ୍ତନ ହେବ କିପରି ?॥୧୨॥*

ଶାଶ୍ୱତ ପରମସତ୍ୟ ଜଗତର କାରଣ ଏବଂ ଅସୀମ (ଅପରିଚ୍ଛିନ୍ନ) ଅବିନଶ୍ୱର ସତ୍ୟଙ୍କଠାରୁ ପରିଚ୍ଛିନ୍ନ (ସସୀମ) ନଶ୍ୱର ବାହାରିଥିବା କଥା ଯୁକ୍ତିଯୁକ୍ତ ବୋଲି କୌଣସି ପ୍ରକାରେ ପ୍ରମାଣ କରି ପାରିବା ନାହିଁ। ଗୋଟିଏ ନଡ଼ିଆରୁ ଅସରପାଟିଏ ସୃଷ୍ଟି ହୋଇ ପାରିବ ନାହିଁ। ଭଗବାନଙ୍କଠାରୁ ଜଗତ ସୃଷ୍ଟି ହୋଇ ପାରିବ ନାହିଁ। କୌଣସି ମା ଗୋଟିଏ ପଥର ପିତୁଳା ଜନ୍ମ କରି ନାହିଁ। ଚୈତନ୍ୟଙ୍କଠାରୁ ଜଡ଼, ଅବିନଶ୍ୱରଙ୍କଠାରୁ ନଶ୍ୱର, ଅନନ୍ତଙ୍କଠାରୁ ସାନ୍ତ କଦାପି ଜନ୍ମ ନେବ ନାହିଁ। ଜଗତ ସତ୍ୟ ଏବଂ ପରମସତ୍ୟ ଏହାର ଜନ୍ମର କାରଣ ବୋଲି ଆମେ ଯଦି ଗ୍ରହଣ କରିବା ତେବେ ଏହାର ଦାର୍ଶନିକ ତାତ୍ପର୍ଯ୍ୟ ହେବ, ଯେଉଁ ଶାଶ୍ୱତ କାରଣଙ୍କଠାରୁ ପରିଚ୍ଛିନ୍ନ ପଦାର୍ଥ ବାହାରିଛି, ସେ ନିଜେ ନଶ୍ୱର ଏବଂ ଜରାଗ୍ରସ୍ତ।

ଦ୍ୱୈତବାଦୀ ମାନେ ତାଙ୍କର ଦାର୍ଶନିକ ବିଶ୍ୱାସ ଉପରେ ଜୋର ଦେବାର ତଥାପି ଗୋଟିଏ ସମ୍ଭାବନା ଅଛି ଏବଂ ତାହା ଅଯୌକ୍ତିକ, ହାସ୍ୟାସ୍ପଦ । ସେମାନେ କହି ପାରନ୍ତି ଏବଂ କହନ୍ତି ମଧ୍ୟ ଯେ, ଭଗବାନ ତାଙ୍କର ସର୍ବଶକ୍ତିମାନ ଗୁଣ ଦ୍ୱାରା ତାଙ୍କ ନିଜଠାରୁ ଏହି ବହୁବିଧ ଜଗତ ସୃଷ୍ଟି କରିଛନ୍ତି ଏବଂ ସୃଷ୍ଟି କରିବା ପରେ ତାଙ୍କର ଶାଶ୍ୱତ ମହିମାରେ ସେ ସେଠାରେ ତଥାପି ବିରାଜମାନ। ଏହି ଶ୍ଳୋକର ତାତ୍ପର୍ଯ୍ୟ ତାଙ୍କ ଦର୍ଶନର ହାସ୍ୟାସ୍ପଦ ଅବସ୍ଥା ଏବଂ ଶ୍ରୀ ଶଙ୍କର ତାଙ୍କର ବ୍ୟାଖ୍ୟାରେ ଦୈନନ୍ଦିନ ଜୀବନର ସମାନ୍ତରାଳ ଏହି

ଯୁକ୍ତିରେ ଅବ୍ୟକ୍ତ ମିଥ୍ୟା ସିଦ୍ଧାନ୍ତକୁ ସୁନ୍ଦର ଭାବରେ ଦର୍ଶାଇଛନ୍ତି। ଶଙ୍କର କହିଛନ୍ତି ଯେ, ଗୋଟିଏ କୁକୁଡ଼ାକୁ ଦୁଇଖଣ୍ଡ କରି କାଟି, ଗୋଟିଏ ଖଣ୍ଡକୁ ଆଜି ରାନ୍ଧି ଆର ଖଣ୍ଡକୁ କାଲି ଅଣ୍ଡାଦେବାକୁ ସାଇତି ରଖିବା ପରି ହାସ୍ୟାସ୍ପଦ।

**ଅଜାଦ୍ୱୈ ଜାୟତେ ଯସ୍ୟ ଦୃଷ୍ଟାନ୍ତସ୍ତସ୍ୟ ନାସ୍ତି ବୈ।**

**ଜାତାଚ୍ଚ ଜାୟମାନସ୍ୟ ନ ବ୍ୟବସ୍ଥା ପ୍ରସଜ୍ୟତେ ॥ ୧୩॥**

ଅଜାତ ବୈ = ଅଜ କାରଣରୁ, ଜାୟତେ = ଜନ୍ମ ନିଏ, ଯସ୍ୟ = ଯିଏ ବିଶ୍ୱାସକୁ ସମର୍ଥନ କରେ, ଦୃଷ୍ଟାନ୍ତ = ଦୃଷ୍ଟାନ୍ତ, ତସ୍ୟ = ତାହା ପାଇଁ, ନାସ୍ତି ବୈ = ନିଶ୍ଚିତ ଭାବରେ ନାହିଁ, ଜାତାତ୍ ଚ = ଏବଂ ଯାହା ନିଜେ ଜନ୍ମ ନେଇଛି, ଜାୟମାନସ୍ୟ = (କାରଣରୁ) ଯେଉଁ ପଦାର୍ଥ ଉତ୍ପନ୍ନ ହୁଏ, ନ ବ୍ୟବସ୍ଥା = ଅସୀମ ପ୍ରତ୍ୟାବର୍ତ୍ତନ (ଗୋଟିଏ ଯୁକ୍ତି ସଂଗତ ମିଥ୍ୟା); ପ୍ରସଜ୍ୟତେ = ହେବ।

*ଅଜନ୍ମା କାରଣଠାରୁ ଗୋଟିଏ କାର୍ଯ୍ୟ ଜନ୍ମ ନେଇଛି - ଏହି ବିଶ୍ୱାସକୁ ସମର୍ଥନ କରିବା ପାଇଁ ଜୀବନରେ ନିଶ୍ଚିତ ଭାବରେ କୌଣସି ଦୃଷ୍ଟାନ୍ତ ସମ୍ଭବ ନୁହେଁ। ପୁନଶ୍ଚ ଯଦି କୁହାଯାଏ ଯେ, ଜନ୍ମ ନେଇଥିବା କୌଣସି କାରଣରୁ କାର୍ଯ୍ୟର ଉତ୍ପତ୍ତି ହୋଇଛି ତେବେ ଏହା ଏକ ଯୁକ୍ତିସଙ୍ଗତ ମିଥ୍ୟା ହେବ (ଅନାବସ୍ଥା ଦୋଷ) ॥୧୩॥*

ଦ୍ୱୈତବାଦୀମାନେ ତାଙ୍କ ମତରେ ତଥାପି ଦୃଢ଼ ରହିଲେ ଯୁକ୍ତି କରି ପାରିବେ ଯେ, ଏକ ଅଜନ୍ମା କାରଣରୁ କାର୍ଯ୍ୟର ଉତ୍ପତ୍ତି ହୋଇଛି। ଏହି ବିଶ୍ୱାସ ଯେକୌଣସି ଲୋକ ପାଇଁ ହାସ୍ୟାସ୍ପଦ ହେବ। ମୋର ଜନ୍ମ ହୋଇ ନଥିବା ପୁଅର ବଡ଼ ଝିଅର ଦାନ୍ତ ଟିକିଏ ବି ବିନ୍ଧା ହେବନାହିଁ। କାରଣ ଯେତେବେଳେ ଜନ୍ମ ହୋଇ ନାହିଁ, ସେ କାର୍ଯ୍ୟ ଉତ୍ପନ୍ନ କରିବ କିପରି? ମୁଁ ମାତ୍ର ଆଠବର୍ଷର ବାଳକ ହୋଇଥିବାବେଳେ ମୋ ଝିଅ ପୃଥିବୀର ଯେକୌଣସି ରୋଗ ଦ୍ୱାରା ମଧ୍ୟ ଆକ୍ରାନ୍ତ ହୋଇ ପାରିବ କିପରି ?

ଅନ୍ୟ ଯେଉଁ ସମ୍ଭାବନା ଦ୍ୱାରା ଏହି କାରଣ-କାର୍ଯ୍ୟର ସମ୍ପର୍କକୁ ସାବ୍ୟସ୍ତ କରାଯାଇ ପାରିବ ନାହିଁ, ତାହା ହେଲା -ମୁଁ ମୋ ବାପାଙ୍କଠାରୁ ଏବଂ ସେ ତାଙ୍କ ବାପାଙ୍କଠାରୁ ଜନ୍ମ ନେଇଥିବା ପରି କାରଣ, କାର୍ଯ୍ୟ ମଧ୍ୟ ଉତ୍ପନ୍ନ ହୋଇଥାଏ। ଏ କ୍ଷେତ୍ରରେ ଏକ ଚରମ ଏବଂ ଶାଶ୍ୱତ ସତ୍ୟରେ ପଦାର୍ପଣ କରିହେବ ନାହିଁ, କାରଣ ମନ ଯେଉଁଠିକୁ ଯାଇ ପାରିଲେ ବି, ଯେତେ ପୂର୍ବ ପୁରୁଷର ବାପାଙ୍କ-ବାପାଙ୍କ -ବାପା ହେଲେ ବି (ବା କାରଣ ହେଲେ ବି) ତାଙ୍କର ମଧ୍ୟ ଜଣେ ବାପା (କାରଣ)ଥିବେ। ତେଣୁ ଯୁକ୍ତି ସଂଗତ ଭାବରେ ଏହା ଅନବସ୍ଥା ଦୋଷରେ ଦୂଷିତ ହୁଏ। ନିର୍ବିକଳ୍ପ ଏବଂ ଶାଶ୍ୱତ କାରଣ ନଥିବା ଗୋଟିଏ

କାରଣ ହିଁ କେବଳ ସତ୍ୟ ହୋଇ ପାରିବେ ଏବଂ ଏହା ଆମେ ସ୍ୱୀକାର (ଗ୍ରହଣ) କରିନେଲେ ପରମସତ୍ୟଙ୍କ କାରଣରୁ ହୋଇଥିବା ବହୁବିଧ ଜଗତକୁ ଗ୍ରହଣ କରି ପାରିବା ନାହିଁ।

**ହେତୋରାଦୀଃ ଫଳଂ ୟେଷାମାଦିର୍ହେତୁଃ ଫଲସ୍ୟ ଚ।**

**ହେତୋଃ ଫଲସ୍ୟ ଚାନାଦିଃ କଥଂ ତୈରୁପବର୍ଣ୍ୟତେ ॥୧୪॥**

ହେତୋଃ = କାରଣର, ଆଦିଃ = କାରଣ (ମୂଳ), ଫଲମ୍ = କାର୍ଯ୍ୟ, ୟେଷାମ୍ = (ଯେଉଁମାନେ ସମର୍ଥନ କରନ୍ତି) ସେମାନେ ; ଆଦିଃ = ମୂଳ(କାରଣ); ଚ ହେତୁଃ = ଏବଂ କାରଣ, ଫଲସ୍ୟ = କାର୍ଯ୍ୟର, ହେତୋଃ = କାରଣର, ଚ ଫଲସ୍ୟ = ଏବଂ କାର୍ଯ୍ୟ, ଅନାଦିଃ = ଆରମ୍ଭ, କଥମ୍ = କିପରି, ତୈଃ = ତାଙ୍କ ଦ୍ୱାରା, ଉପବର୍ଣ୍ୟତେ = ସମର୍ଥନ କରନ୍ତି।

*କାର୍ଯ୍ୟ କାରଣର କାରଣ ଏବଂ କାରଣ କାର୍ଯ୍ୟର କାରଣ ବୋଲି ଯେଉଁମାନେ ସମର୍ଥନ କରନ୍ତି, ଉଭୟ କାରଣ ଓ କାର୍ଯ୍ୟ ଅନାଦି ବୋଲି ସେମାନେ ସମର୍ଥନ କରିବେ କିପରି ? ॥୧୪॥*

ଏଠାରେ ଗ୍ରହଣ ଯୋଗ୍ୟ ହେଉ ନଥିବା ମୀମାଂସକଙ୍କ ଉପରେ ପାହାର ପଡ଼ିଛି। ମୀମାଂସକମାନେ ବିଶ୍ୱାସ କରନ୍ତି ଯେ, ଅତୀତର କର୍ମରୁ ଜଗତର ଉତ୍ପତ୍ତି ହୋଇଛି ଏବଂ ଏହି ଜଗତରେ ଆମେ କରୁଥିବା କର୍ମ ପରବର୍ତ୍ତୀ ଜଗତର କାରଣ ହେବ।

ଆମ୍ଭିକ ଏହାକୁ ଏପରି କୁହାଯାଇ ପାରିବ, ମୋର ବର୍ତ୍ତମାନ ଜୀବନ ହେଉଛି ପୂର୍ବର କାର୍ଯ୍ୟର ଫଳର କାରଣ ଏବଂ ଏଇ ଜନ୍ମରେ ପ୍ରତିମୁହୂର୍ତ୍ତର କାର୍ଯ୍ୟ ମୋର ଭବିଷ୍ୟତର ଜନ୍ମ ନିର୍ଦ୍ଧାରଣ କରେ। ତେଣୁ କର୍ମକାଣ୍ଡରେ ବିଶ୍ୱାସ କରୁଥିବା ମୀମାଂସକଙ୍କ ମତରେ ଜଗତ ହେଉଛି ପୂର୍ବ କର୍ମର ଫଳ ଏବଂ ଫଳ, ଅର୍ଥାତ୍ ଜଗତରେ ଜୀବନ (କର୍ମ) ହିଁ ହେଉଛି ପରବର୍ତ୍ତୀ ଜଗତର କାରଣ। ତେଣୁ ସେମାନଙ୍କ ପାଇଁ କାର୍ଯ୍ୟ ହେଉଛି କାରଣର କାରଣ। ଏହି ଶ୍ଳୋକରେ ଆମେ ମୀମାଂସକଙ୍କର ମିଥ୍ୟା ଦେଖିବାକୁ ପାଉ । ପରବର୍ତ୍ତୀ ଶ୍ଳୋକରେ ଏହାର ସମାଲୋଚନା କରାଯାଇଛି।

**ହେତୋରାଦିଃ ଫଳଂ ଯେଷାମାଦିର୍ହେତୁଃ ଫଲସ୍ୟ ଚ।**

**ତଥା ଜନ୍ମ ଭବେତ୍ତେଷାଂ ପୁତ୍ରାତ୍‌ଜନ୍ମ ପିତୁର୍ଯଥା ॥୧୫॥**

ହେତୋଃ = କାରଣର, ଫଲମ୍ ଆଦିଃ = ଫଳ (କାର୍ଯ୍ୟ) ହେଉଛି କାରଣ(ମୂଳ), ଯେଷାମ୍ = ଯେଉଁମାନେ (ସମର୍ଥନ କରନ୍ତି), ଆଦି = ମୂଳର, ଚ ହେତୁଃ = ଏବଂ କାରଣ, ଫଲସ୍ୟ = ଫଳ, କାର୍ଯ୍ୟ; ତଥା = ଏବଂ, ଜନ୍ମ ଭବେତ୍ =ଜନ୍ମ ହେବ, ତେଷାମ୍ = ସେମାନଙ୍କ ମତରେ, ପୁତ୍ରାତ୍ = ପୁତ୍ରଠାରୁ, ଜନ୍ମ ପିତୁଃ = ପିତାଙ୍କ ଜନ୍ମ, ତଥା = ଠିକ୍ ସେହିପରି।

*କାର୍ଯ୍ୟ (ଫଳ) କାରଣର କାରଣ ଏବଂ କାରଣ କାର୍ଯ୍ୟର କାରଣ ବୋଲି ଯେଉଁମାନେ ସମର୍ଥନ କରନ୍ତି ବାସ୍ତବରେ ଏପରି ବିବର୍ତ୍ତନର କଥା କହନ୍ତି ସତେଯେପରି ପୁଅଠାରୁ ବାପା ଜନ୍ମ ନେଇଛନ୍ତି ॥୧୫॥*

ପୂର୍ବ ଶ୍ଳୋକରେ ମୀମାଂସକଙ୍କ ପାଇଁ ଉଠା ଯାଇଥିବା ପାହାର ଏହି ଶ୍ଳୋକରେ ତାର ସଂପୂର୍ଣ୍ଣ ବିନାଶ ପାଇଁ ନିର୍ଦ୍ଦିଷ୍ଟ ଶିକାର ଉପରେ ପଡ଼ିଛି। ଏହି ପ୍ରଚଣ୍ଡ ବ୍ୟଙ୍ଗ-ଦାର୍ଶନିକଙ୍କର ଦୁର୍ବାର ଉପହାସ ମୀମାଂସକଙ୍କ ଉପରେ ପୂରା ଦମ୍‌ରେ ପାହାର ବସେଇଛି। ସେ କହୁଛନ୍ତି ଯେ କାର୍ଯ୍ୟ (ଫଳ) ଯଦି କାରଣର କାରଣ ହୁଏ, ତାହାହେଲେ ପୁଅଠାରୁ ବାପା ଜନ୍ମ ନେଇଛି ବୋଲି ଦର୍ଶନ କହିବ। ଦୁନିଆରେ କୌଣସିଠାରେ ହେଲେ ବି ପୁଅ ତା ବାପାର ବାପା ହୋଇ ପାରିବ ନାହିଁ। ଏହା ଯେଉଁଠାରେ ସମ୍ଭବ ହେବ, ମୀମାଂସକଙ୍କ ସିଦ୍ଧାନ୍ତ ସେହିଠାରେ ହିଁ ପୂର୍ଣ୍ଣାଙ୍ଗ ଏବଂ ନିର୍ବିକଳ୍ପ ଭାବରେ କୃତକାର୍ଯ୍ୟ ହେବ।

**ସମ୍ଭବେ ହେତୁଫଲୟୋରେଷିତବ୍ୟଃ କ୍ରମସ୍ତ୍ୱୟା।**

**ୟୁଗପତ୍‌ସମ୍ଭବେ ୟସ୍ମାଦସମ୍ବନ୍ଧୋ ବିଷାଣବତ୍ ॥୧୬॥**

ସମ୍ଭବେ = ଗୋଟିଏ ସମ୍ଭାବନା ଅଛି, ହେତୁ-ଫଲୟୋଃ = କାରଣ ଏବଂ କାର୍ଯ୍ୟର, ଏଷିତବ୍ୟ = ଦେଖିବାକୁ ହେବ, କ୍ରମଃ = (ସେମାନଙ୍କର) କ୍ରମ, ତ୍ୱୟା = ତୁମ ଦ୍ୱାରା, ୟୁଗପତ୍ = ଏକ ସଙ୍ଗରେ, ସମ୍ଭବେ = ମୂଳ, ୟସ୍ମାତ୍ = ପାଇଁ, ଅସମ୍ବନ୍ଧ = ପରସ୍ପର ସହିତ ସମ୍ପର୍କିତ ହୋଇ ପାରିବେ ନାହିଁ; ବିଷାଣବତ୍ = (ପଶୁମାନଙ୍କର) ଦୁଇଟି ଶିଙ୍ଗ ପରି।

*କାରଣ ଏବଂ କାର୍ଯ୍ୟର ମଧ୍ୟରେ ସମ୍ପର୍କର ଯଦି କିଛି ସମ୍ଭାବନା ଥାଏ, ତେବେ ତା'ର ସଂଘଟଣର ଏକ କ୍ରମ ରହିବା କଥା। ଯଦି ଏକାସାଙ୍ଗରେ ଉଦ୍ଭବ ହୋଇଥାଏ, ପଶୁମାନଙ୍କର ଦୁଇଟି ଶିଙ୍ଗପରି ସେମାନେ ପରସ୍ପର ସହିତ ସମ୍ପର୍କିତ ହୋଇ ପାରିବେ ନାହିଁ ॥୧୬॥*

ପୂର୍ବରୁ ମୀମାଂସକ ଏବଂ ନ୍ୟାୟ-ବୈଶେଷିକ ଦର୍ଶନର ଏକ ତୁଳନାତ୍ମକ ଅଧ୍ୟୟନରୁ ଆମେ ଜାଣିଛେ ଯେ, ଯେକୌଣସି କାରଣରୁ କାର୍ଯ୍ୟ ହେବ ନାହିଁ। କାରଣ କାର୍ଯ୍ୟଠାରୁ ଅଭିନ୍ନ ହେବ ନାହିଁ କିମ୍ବା କାର୍ଯ୍ୟ କାରଣଠାରୁ ଅଭିନ୍ନ ବୋଲି ଆମେ କୌଣସି ସୁଦୃଢ଼ ସିଦ୍ଧାନ୍ତ ପ୍ରତିପାଦିତ କରିପାରିବା ନାହିଁ। କାର୍ଯ୍ୟ କାରଣର କାରଣ ବୋଲି ମୀମାଂସକଙ୍କ ସିଦ୍ଧାନ୍ତ ମଧ୍ୟ ଯଥାର୍ଥ ନୁହେଁ ଏବଂ ଯୌକ୍ତିକତା ଦୃଷ୍ଟିରୁ ହାସ୍ୟାସ୍ପଦ ବୋଲି ଆମେ ଦେଖିଛେ। ସ୍ୱାଭାବିକଭାବେ, କାରଣ-କାର୍ଯ୍ୟ ସମ୍ପର୍କ ଉପରେ ଜୋର ଦେଉଥିବା ଦ୍ୱୈତବାଦୀମାନଙ୍କୁ ଗୌଡ଼ପାଦ ସମ୍ବୋଧନ କରିଛନ୍ତି ଏବଂ କହିଛନ୍ତି ଯେ କୌଣସି ଯୁକ୍ତିଯୁକ୍ତ ବୁଦ୍ଧି ସମ୍ପନ୍ନ ଶିଷ୍ୟ ସନ୍ତୋଷ ଓ ଦୃଢ଼ବିଶ୍ୱାସର ସହିତ ଗ୍ରହଣ କରି ପାରିବା ପରି କାରଣ ଓ କାର୍ଯ୍ୟର ଗୋଟିକୁ ଅନ୍ୟଟିକୁ ଅନୁସରଣ କରିବାର କ୍ରମ, ନିର୍ଦ୍ଦିଷ୍ଟ ଭାବରେ ଆମକୁ କହିବା ଦରକାର।

ଯେଉଁମାନେ ଏହି ଭିନ୍ନତାର ସମର୍ଥନ କରନ୍ତି, ପୂର୍ବରୁ ଥିବା କାରଣ ସର୍ବଦା ପରବର୍ତ୍ତୀ କାର୍ଯ୍ୟ ଉତ୍ପନ୍ନ କରେ ବୋଲି ସେମାନେ ଦେଖାଇ ଦେବା ଦରକାର। ସେମାନେ ଯଦି କହିବେ ଯେ, କାରଣ ଏବଂ କାର୍ଯ୍ୟ କ୍ରମରେ ନଥାଇ ଏକା ସମୟରେ ଉତ୍ପନ୍ନ ହୁଅନ୍ତି, ତେବେ କାରଣ-କାର୍ଯ୍ୟ ଭାବରେ ସେମାନଙ୍କର ସମ୍ପର୍କ ରହିବ ନାହିଁ, କାରଣ ଏକାସଙ୍ଗେ ଉତ୍ପନ୍ନ ହେଉଥିବା ଗୋଟିଏ ଗାଈର ଦୁଇଟି ଶିଙ୍ଗ ମଧ୍ୟରେ ନୈମିତ୍ତିକ ସମ୍ପର୍କ ଥିବା ସାବ୍ୟସ୍ତ କରିବା କଦାପି ସମ୍ଭବ ନୁହେଁ। କୌଣସି ପଶୁର ହଳେ ଶିଙ୍ଗ ଏକାସାଙ୍ଗେ ବଢ଼ିବା ପରି କୌଣସି ଦୁଇଟି ବିଷୟ ମଧ୍ୟରେ ସମ୍ପର୍କ ରହି ପାରିବ ନାହିଁ।

'କାଳ' ଦୃଷ୍ଟିରୁ ଏହି କାରିକା ହେତୁବାଦ ମତ ଖଣ୍ଡନ କରେ।

**ଫଳାଦୁତ୍ପଦ୍ୟମାନଃ ସନ୍ନ ତେ ହେତୁଃ ପ୍ରସିଦ୍ଧ୍ୟତି।**
**ଅପ୍ରସିଦ୍ଧଃ କଥଂ ହେତୁଃ ଫଳମୁତ୍ପାଦୟିଷ୍ୟତି ॥୧୭॥**

ଫଳାତ୍ = କାର୍ଯ୍ୟ ଫଳରୁ, ଉତ୍ପଦ୍ୟମାନଃ ସନ୍ = ଯଦି ତାହା ଉତ୍ପନ୍ନ ହୋଇଛି, ତେ ହେତୁଃ = ତୁମର କାରଣ, ନ ପ୍ରସିଦ୍ଧ୍ୟତି = ସାବ୍ୟସ୍ତ କରି ହେବ ନାହିଁ, ଅପ୍ରସିଦ୍ଧଃ = ସାବ୍ୟସ୍ତ ହୋଇ ନ ଥିବା , କଥମ୍ = କିପରି, ହେତୁଃ = କାରଣ, ଫଳମ୍ = ଫଳ, କାର୍ଯ୍ୟ; ଉତ୍ପାଦୟିଷ୍ୟତି = ଜନ୍ମ ଦେବ।

*କାର୍ଯ୍ୟରୁ କାରଣ ଉତ୍ପନ୍ନ ହୁଏ ବୋଲି ସାବ୍ୟସ୍ତ କରିହେବ ନାହିଁ। ସାବ୍ୟସ୍ତ କରାଯାଇ ପାରି ନଥିବା ତୁମର କାରଣ କାର୍ଯ୍ୟକୁ ଜନ୍ମ ଦେବ କିପରି ? ॥୧୭॥*

ଜନ୍ମ ନେଇ ନଥିବା କାର୍ଯ୍ୟର ମରୀଚିକା ପରି ସ୍ଥିତି ନାହିଁ। ଯେଉଁ କାର୍ଯ୍ୟ ତଥାପି ନିଜେ ଜନ୍ମ ହୋଇ ନାହିଁ, ତା ଠାରୁ ଜନ୍ମ ନେଇଥିବା କାରଣର ସ୍ଥିତି ରହି ପାରିବ ନାହିଁ। ଏହି କାରିକାର ପରାମର୍ଶ- ନୈମିତ୍ତିକ ହେତୁବୋଧକ ସମ୍ପର୍କର ଧାରଣାଟିରେ ଯୁକ୍ତିସମ୍ମତ ବିବେକହୀନତା ରହିଛି।

ନୈମିତ୍ତିକ ସମ୍ବନ୍ଧରେ ବିଶ୍ୱାସ କରୁଥିବା ଲୋକଙ୍କ ମତରେ, ପାରସ୍ପରିକ ଉତ୍ପାଦନ ପାଇଁ କାରଣ ଏବଂ କାର୍ଯ୍ୟ ପ୍ରତ୍ୟେକେ ପ୍ରତ୍ୟେକ ଉପରେ ନିର୍ଭର କରନ୍ତି। କିନ୍ତୁ ନୈମିତ୍ତିକତାର ସାଧାରଣ ନିୟମ ହେଲା, କାରଣ କାର୍ଯ୍ୟର ପୂର୍ବବର୍ତ୍ତୀ ଏବଂ କାର୍ଯ୍ୟ କାରଣର ପରବର୍ତ୍ତୀ।

ଦ୍ୱୈତବାଦୀଙ୍କର କୌଣସି ଯୁକ୍ତି ଶୁଦ୍ଧ ବୁଦ୍ଧିର ପ୍ରହାର ସହ୍ୟ କରି ପାରିବ ନାହିଁ।

**ଯଦି ହେତୋଃ ଫଲାତ୍‌ସିଦ୍ଧିଃ ଫଲସିଦ୍ଧିଶ୍ଚ ହେତୁତଃ।**

**କତରତ୍ ପୂର୍ବନିଷ୍ପନ୍ନଂ ଯସ୍ୟ ସିଦ୍ଧିରପେକ୍ଷୟା ॥୧୮॥**

ଯଦି = ଯଦି, ହେତୋ = କାରଣ, ଫଲାତ୍ = କାର୍ଯ୍ୟ(ଫଳ)ରୁ; ସିଦ୍ଧି = ଉତ୍ପନ୍ନ ହୁଏ, ଚ ଫଲସିଦ୍ଧଃ = ଏବଂ କାର୍ଯ୍ୟ (ଫଳ) ପୁଣି ଉତ୍ପନ୍ନ ହୁଏ, ହେତୁତଃ = କାରଣରୁ, କତରତ୍ = କେଉଁଟି, ପୂର୍ବ = ପ୍ରଥମ, ନିଷ୍ପନ୍ନମ୍ = ଜନ୍ମ ନେଇଛି, ଯସ୍ୟ = ଯାହା ଉପରେ, ସିଦ୍ଧି = ଜନ୍ମ ଅପେକ୍ଷୟା = ନିର୍ଭର କରେ।

*ଯଦି କାରଣ କାର୍ଯ୍ୟଠାରୁ ଜନ୍ମ ନେଇଛି ଏବଂ ପୁଣି କାର୍ଯ୍ୟ କାରଣଠାରୁ ଜନ୍ମ ନେଇଛି; (ଉଭୟଙ୍କ ମଧ୍ୟରୁ) ତେବେ କେଉଁଟି ପ୍ରଥମେ ଜନ୍ମ ନେଇଛି; ଏବଂ (ଅନ୍ୟଟିର) ଜନ୍ମ ସେମାନଙ୍କ ମଧ୍ୟରୁ କାହା ଉପରେ ନିର୍ଭର କରେ? ॥୧୮॥*

କାର୍ଯ୍ୟ ଏବଂ କାରଣ ମଧ୍ୟରେ ସମ୍ବନ୍ଧ ଅସମ୍ଭବ ବୋଲି ଜଣାପଡ଼ିଥିଲେ ବି ବିରୋଧୀମାନେ ଯୁକ୍ତି କରି ପାରନ୍ତି ଯେ କାରଣ ଏବଂ କାର୍ଯ୍ୟ ମଧ୍ୟରେ ନୈମିତ୍ତିକ ସମ୍ବନ୍ଧ ନଥିଲେ ମଧ୍ୟ ପାରସ୍ପରିକ ସ୍ଥିତି ପାଇଁ ସେମାନେ ପରସ୍ପର ଉପରେ ନିର୍ଭରଶୀଳ। ଏହି ଯୁକ୍ତିର ଉତ୍ତରରେ ଗୌଡ଼ପାଦ ଏଠାରେ ପଚାରିଛନ୍ତି-କାରଣ ଏବଂ କାର୍ଯ୍ୟ- ଏହି ଦୁଇଟି ପଦ ମଧ୍ୟରୁ କିଏ କାହାର ପୂର୍ବବର୍ତ୍ତୀ? ଏହା ସ୍ଥିର କରାଯାଇ ନପାରିଲେ ପାରସ୍ପରିକ ନିର୍ଭରଶୀଳତା ଅଛି ବୋଲି ଆମେ କହି ପାରିବା ନାହିଁ।

**ଅଶକ୍ତିର ପରିଜ୍ଞାନଂ କ୍ରମକୋପୋଽଥ ପୁନଃ ।**

**ଏବଂ ହି ସର୍ବଥା ବୁଦ୍ଧୈଃ ଅଜାତିଃ ପରିଦୀପିତା ॥୧୯॥**

ଅଶକ୍ତିଃ = ଅଶକ୍ତି, ଅସାମର୍ଥ୍ୟ; ଅପରିଜ୍ଞାନଂ = ବସ୍ତୁ ବିଷୟରେ ଅଜ୍ଞାନ (ସତ୍ୟର ଜ୍ଞାନର ଅଭାବ); କ୍ରମକୋପଃ = କ୍ରମର ଧାରା ପ୍ରମାଣ କରିବାରେ ଅସାମର୍ଥ୍ୟ, ଅଥଃ ବା ପୁନଃ = ଏବଂ ପୁନଶ୍ଚ, ଏବଂ ହି = ଏହିପରି ପ୍ରକୃତରେ, ସର୍ବଥା = ସବୁ ଭାବରେ, ବୁଦ୍ଧୈଃ = ଜ୍ଞାନୀଙ୍କ ଦ୍ୱାରା, ଅଜାତିଃ = ଅସୃଷ୍ଟି, ପରିଦୀପିତା = ସ୍ପଷ୍ଟରୂପେ, ବାଟ ଦେଖାଇଛନ୍ତି ।

*ଉତ୍ତର ଦେବାରେ ଅସାମର୍ଥ୍ୟ, ବସ୍ତୁ ସମ୍ବନ୍ଧରେ ଅଜ୍ଞାନ ଏବଂ 'ପୁନଶ୍ଚ କାରଣ ଏବଂ କାର୍ଯ୍ୟର ଅନୁକ୍ରମର ଧାରା ପ୍ରମାଣ କରିବାରେ ଅସମ୍ଭବତା'– ଏହିସବୁ ଅଜାତବାଦ ସିଦ୍ଧାନ୍ତରେ ସବୁ ପ୍ରକାରେ ଦୃଢ଼ ରହିବା ପାଇଁ ଜ୍ଞାନୀମାନଙ୍କୁ ଆଗେଇ ନେଇଛି ॥୧୯॥*

ବାଦବିବାଦରେ ଉଲ୍ଲିଖିତ ଭୂଲ ତଥ୍ୟ ଯୋଗୁଁ ବେଦାନ୍ତର ବୁଦ୍ଧିମାନ ଛାତ୍ର ଏବଂ ଆତ୍ମାନୁଭବୀ ଜ୍ଞାନୀ ସାଧୁମାନେ କାରଣ ଏବଂ କାର୍ଯ୍ୟ ମଧ୍ୟରେ କୌଣସି ନୈମିତ୍ତିକ ସମ୍ବନ୍ଧ ଗ୍ରହଣ କରିବାର ଅନୁପଯୁକ୍ତତା ଘୋଷଣା କରିଛନ୍ତି । ଯେଉଁ ବିଜ୍ଞଜନମାନେ ତାର୍କିକଙ୍କର ତର୍କରେ ମିଥ୍ୟାର ବୋଧ କରନ୍ତି, କୌଣସି ପଦାର୍ଥର ବିବର୍ତ୍ତନ ନାହିଁ ବୋଲି ଘୋଷଣା କରିବାକୁ ଫଳତଃ ଏହା ସେମାନଙ୍କୁ ବାଟ କଢ଼ାଇ ନିଏ । କାରିକାକାର ମାଣ୍ଡୁକ୍ୟକାରିକାରେ ଠିକ୍ ଏହା ଉପରେ ଜୋର ଦେବାକୁ ଚାହିଁଛନ୍ତି ।

**ବୀଜାଙ୍କୁରାଖ୍ୟୋ ଦୃଷ୍ଟାନ୍ତଃ ସଦା ସାଧ୍ୟସମୋ ହି ସଃ ।**

**ନ ହି ସାଧ୍ୟସମୋ ହେତୁଃ ସିଦ୍ଧୌ ସାଧ୍ୟସ୍ୟ ଯୁଜ୍ୟତେ ॥୨୦॥**

ବୀଜ = ମଞ୍ଜିର, ଅଙ୍କୁର = ଗଜା, ଆଖ୍ୟଃ = ଏହା ହିଁ, ଦୃଷ୍ଟାନ୍ତଃ = ଦୃଷ୍ଟାନ୍ତ, ସଦା = ସର୍ବଦା, ସାଧ୍ୟସମଃ = ପ୍ରମାଣ କରିବାକୁ ହେବ, ହି = ବାସ୍ତବରେ, ସଃ ହିଁ = କେବଳ ତାହା ହିଁ, ସାଧ୍ୟସମଃ = ପ୍ରମାଣ କରିବାକୁ ହେବ, ହେତୁ = ଉଦ୍ଦେଶ୍ୟରେ, ସିଦ୍ଧୌ = ଦୃଢ଼ କରିବା ପାଇଁ, ସାଧ୍ୟସ = ଯାହା ପ୍ରମାଣ କରିବାକୁ ଅଛି, ପ୍ରମାଣ୍ୟ; ନ ଯୁଜ୍ୟତେ = ବ୍ୟବହାର କରାଯାଇ ପାରିବ ନାହିଁ ।

*ମଞ୍ଜି ଏବଂ ଗଜା ଏପରି ଏକ ଦୃଷ୍ଟାନ୍ତ, ଯାହାର ଅନୁକ୍ରମ ଏବେ ବି ପ୍ରମାଣ କରାଯାଇ ପାରି ନାହିଁ । ଯାହା (ଦୃଷ୍ଟାନ୍ତ) ନିଜେ ପ୍ରମାଣିତ ହେବାର ଅଛି, ପ୍ରମାଣ କରିବାକୁ ଥିବା ପ୍ରସଙ୍ଗରେ ତାହାକୁ ବ୍ୟବହାର କରାଯାଇ ପାରିବ ନାହିଁ ॥୨୦॥*

ଗୌଡ଼ପାଦଙ୍କର ସନ୍ଦେହ-ରହିତ ଦୃଢ଼ ଉକ୍ତି ବିରୋଧରେ ତର୍କ କରିବା ପାଇଁ କେତେକ ପ୍ରତିବାଦୀ ଏଠାରେ ସତ୍‌ସଙ୍ଗରେ ଠିଆହୋଇ ପଡ଼ିଛନ୍ତି ଯେମିତି ! ସେମାନେ ଦର୍ଶାଇଛନ୍ତି ଯେ ମଞ୍ଜି ଏବଂ ଗଛ ଭିତରେ ନୈମିତ୍ତିକ ସମ୍ବନ୍ଧ ଥିବା ପରି କାରଣ ଏବଂ କାର୍ଯ୍ୟ ମଧ୍ୟରେ ନୈମିତ୍ତିକ ସମ୍ବନ୍ଧ ରହିଛି ।

ଏହି ଯୁକ୍ତି ପାଇଁ, ଆଲୋଚିତ ହେବାକୁ ଥିବା ଶ୍ଲୋକରେ କାରିକାରଙ୍କର ଉତ୍ତର ଦିଆ ଯାଇଛି । ସେ କହିଛନ୍ତି ଯେ, ମଞ୍ଜି ଏବଂ ଗଛ ଭିତରେ ଥିବା ନୈମିତ୍ତିକ ସମ୍ବନ୍ଧ ନିଜେ ଏପର୍ଯ୍ୟନ୍ତ ପ୍ରତିଷ୍ଠିତ ହୋଇ ନାହିଁ । ଗଛ ବାହାରିବା ପୂର୍ବବର୍ତ୍ତୀ ମଞ୍ଜିକୁ ଅନୁକୂଳ ବାତାବରଣରେ ରଖିବା ପୂର୍ବରୁ ମଞ୍ଜି ହେଉଛି ଗଛର କାର୍ଯ୍ୟ । ମଞ୍ଜିରୁ ଗଛ ବାହାରିବାକୁ ଆରମ୍ଭ କଲେ ମଞ୍ଜି ଗଛର କାରଣ ହୋଇଯାଏ ।

ତେଣୁ ଦୁଇଟି ବିଭିନ୍ନ ସମୟରେ ସେହି ମଞ୍ଜି ଗଛର କାରଣ ଏବଂ କାର୍ଯ୍ୟ ହୋଇଯାଏ । ଅନ୍ୟ ଏକ ସ୍ଥାନ ଏବଂ ଅନ୍ୟ ଏକ ସମୟ ପ୍ରସଙ୍ଗରେ ସେହି ଏକା କାରଣ ଗୋଟିଏ କାର୍ଯ୍ୟ ହୋଇଯାଏ ଏବଂ କାର୍ଯ୍ୟ ପୁନଶ୍ଚ କାରଣ ହୋଇଯାଏ । ତେଣୁ ମଞ୍ଜି ଏବଂ ଗଛ କ୍ଷେତ୍ରରେ କିଏ କାହାର କାରଣ ବୋଲି ଆମେ ଶେଷରେ କହି ପାରିବା ନାହିଁ । ଗୋଟିଏ ସମୟର ପ୍ରସଙ୍ଗରେ ଯାହା କାରଣ ହୋଇଥାଏ, ଅନ୍ୟ ଗୋଟିଏ ପ୍ରସଙ୍ଗରେ ତାହାହିଁ କାର୍ଯ୍ୟ ହୋଇଯାଏ ।

ତେଣୁ ଗୌଡ଼ପାଦ କାରିକାରେ ଜୋରଦେଇ କହିଛନ୍ତି ଯେ, ମଞ୍ଜି-ଗଛର ଦୃଷ୍ଟାନ୍ତ ଯୋଗୁଁ ଆମେ ତୁମର କାରଣ-କାର୍ଯ୍ୟର ପ୍ରସ୍ତାବ ଗ୍ରହଣ କରି ପାରିବୁ ନାହିଁ । ଏହି ଦୃଷ୍ଟାନ୍ତ ଏବେ ବି ପ୍ରମାଣିତ ହୋଇପାରି ନାହିଁ ।

**ପୂର୍ବାପରାପରିଜ୍ଞାନଂ ଅଜାତେଃ ପରିଦୀପକମ୍ ।**

**ଜାୟମାନାଦ୍ଧି ବୈ ଧର୍ମାତ୍ କଥଂ ପୂର୍ବଂ ନ ଗୃହ୍ୟତେ ॥ ୨୧॥**

ପୂର୍ବ = ପୂର୍ବ, ଅପରା = **ସ୍ପଷ୍ଟ**, ପରିଜ୍ଞାନମ୍ = **ସ୍ପଷ୍ଟ** ଭାବରେ ପ୍ରମାଣ କରେ, ଅଜାତେ = ସୃଷ୍ଟିର ଅନୁପସ୍ଥିତି (ଅଜାତି); ପରିଦୀପକମ୍ = ନିର୍ଦ୍ଦିଷ୍ଟ ଭାବରେ ଦେଖାଇ ଦିଏ, ଜାୟମାନାତ୍ = ଯାହା ଜନ୍ମ ନେଇଛି, ହି ବୈ = ତାହା ପ୍ରକୃତରେ, ଧର୍ମାତ୍ = ଫଳ, ପରିଣାମ କଥମ୍ = ଏହା କାହିଁକି, ପୂର୍ବମ୍ = କାରଣ ପୂର୍ବ, ନ ଗୃହ୍ୟତେ = ଦେଖାଇ ଦେବା ପାଇଁ ଅସମର୍ଥ ।

*କାରଣ ଏବଂ କାର୍ଯ୍ୟର ପୂର୍ବାପର ଦେଖାଇ ଦେବାର ଅସାମର୍ଥ୍ୟ, ଅଜାତ(ବାଦ)ର ସ୍ପଷ୍ଟ ପ୍ରମାଣ କରେ । କାର୍ଯ୍ୟ ରୂପକ ଜୀବ ଯଦି ପ୍ରକୃତରେ କୌଣସି କାରଣରୁ ଉତ୍ପନ୍ନ ହୋଇଛି, ତେବେ କାରଣର ପୂର୍ବ କଣ ବୋଲି ନିର୍ଦ୍ଦିଷ୍ଟ ଭାବରେ ଦେଖାଇ ଦେବାକୁ ତୁମେ ଅସମର୍ଥ କାହିଁକି ?॥୨୧॥*

ଆମେ ବିଜ୍ଞଜନ, ଅସୃଷ୍ଟିବାଦର ପ୍ରତିପାଦନ କରିବା କିପରି ? କାରଣ ଏବଂ କାର୍ଯ୍ୟ ମଧ୍ୟରୁ ପ୍ରକୃତରେ ପୂର୍ବ କିଏ ଏବଂ ପର କିଏ ବୋଲି ଦ୍ୱୈତବାଦୀମାନେ ନିର୍ଦ୍ଦିଷ୍ଟ ଭାବରେ ଦେଖାଇ ପାରୁନଥିବାରୁ ଏବଂ ବ୍ୟାଖ୍ୟା କରିପାରୁନଥିବାରୁ, ଏହା ସ୍ପଷ୍ଟ ଭାବରେ ସୂଚାଇ ଦିଏ ଯେ କାରଣରୁ କାର୍ଯ୍ୟ ହେବାର କୌଣସି କାରଣ ନାହିଁ । କାର୍ଯ୍ୟର ପୂର୍ବ ଭାବରେ ଦେଖାଇବା ପାଇଁ କୌଣସି କାର୍ଯ୍ୟର କାରଣ ନଥିବାରୁ ବାସ୍ତବରେ ଦ୍ୱୈତବାଦୀମାନେ ବ୍ୟାଖ୍ୟା କରିପାରୁ ନଥିବାରୁ ଅସୃଷ୍ଟିବାଦ ସିଦ୍ଧାନ୍ତ ଘୋଷଣା କରୁଛନ୍ତି । କାରଣ ବହୁବିଧ ଜଗତ ପ୍ରକୃତରେ ଯଦି ଗୋଟିଏ କାରଣର କାର୍ଯ୍ୟ ହୋଇ ଥାଏ; ତେବେ ପ୍ରକୃତରେ ଯେଉଁ କାରଣରୁ ତଥାକଥିତ କାର୍ଯ୍ୟର ଉଦ୍ଭବ ହୋଇଛି ତାହା ଦର୍ଶାଇବାକୁ ଦ୍ୱୈତବାଦୀମାନେ ଅସମର୍ଥ ହେଉଛନ୍ତି କିପରି ବୋଲି ଗୌଡପାଦ ପଚାରୁଛନ୍ତି ।

**ସ୍ୱତୋ ବା ପରତୋ ବାଽପି ନ କିଞ୍ଚିତ୍‌ବସ୍ତୁ ଜାୟତେ ।**

**ସଦସତ୍ ସଦସଦ୍‌ବାଽପି ନ କିଞ୍ଚିତ୍‌ବସ୍ତୁ ଜାୟତେ ॥୨୨॥**

ବା ସ୍ୱତଃ = ଏହା ମଧ୍ୟରୁ ଯେକୌଣସି, ବା ଅପି ପରତଃ = କିମ୍ବା ଅନ୍ୟଟି, ନ କିଞ୍ଚିତ୍ ବସ୍ତୁ = କିଛି ନୁହେଁ, ଜାୟତେ = ଜନ୍ମ ନିଏ ନାହିଁ, ସତ୍ = ସତ, ଥିବା ; ଅସତ୍ = ଅସତ( ନଥିବା); ବା ଅପି ସତ୍ ଅସତ୍ = କିମ୍ବା ସତ ଏବଂ ଅସତ ମଧ୍ୟ, ନ କିଞ୍ଚିତ୍ ବସ୍ତୁ = ଆଦୌ କିଛି ନୁହେଁ; ଜାୟତେ = ଜନ୍ମ ନିଏ ।

*ନିଜଠାରୁ ନିଜେ, ବା ଅନ୍ୟ କାହାଠାରୁ ଅନ୍ୟ କେହି କେବେ ଜନ୍ମ ନିଅନ୍ତି ନାହିଁ। ସତ୍ ହେଉ ବା ଅସତ୍ ହେଉ କିମ୍ବା ଉଭୟ ସତ୍ ବା ଅସତ୍, ନିଜେ ନିଜଠାରୁ ଜନ୍ମ ହୁଅନ୍ତି ନାହିଁ ॥୨୨॥*

ସାଂଖ୍ୟ ଏବଂ ନ୍ୟାୟ-ବୈଶେଷିକଙ୍କ ଦ୍ୱାରା ଉଠା ଯାଇଥିବା ତର୍କକୁ ସଂକ୍ଷିପ୍ତ କରି ଗୌଡ଼ପାଦ ବର୍ତ୍ତମାନ, କେବେହେଲେ କିଛି ହିଁ ଜନ୍ମ ନିଏ ନାହିଁ- ଏହି ବୈଦାନ୍ତିକ ସିଦ୍ଧାନ୍ତରେ ଉପନୀତ ହେଉଛନ୍ତି। କେଉଁଠାରେ ସୃଷ୍ଟି ହୋଇ ପାରିବ, ସେ ସମ୍ବନ୍ଧରେ ସେ ଆମ ପାଇଁ ଛଅଗୋଟି ସମ୍ଭାବନା ଉପସ୍ଥାପିତ କରୁଛନ୍ତି ଏବଂ ଏମାନଙ୍କ ମଧ୍ୟରୁ କୌଣସି ସମ୍ଭାବନାରେ ସୃଷ୍ଟି ହୋଇ ପାରିବ ନାହିଁ ବୋଲି ଉପସଂହାର କରୁଛନ୍ତି।

ନିଜେ ନିଜେ କିଛି ଜନ୍ମ ହୁଏ ନାହିଁ (ସ୍ୱତଃ): ବୋତଲଟିଏ ବୋତଲଠାରୁ ଜନ୍ମ ନିଏ ନାହିଁ। ମୁଁ ମୋଠାରୁ ଜନ୍ମ ନେଇନାହିଁ। ଗୋଟିଏ ପଦାର୍ଥ ତାଠାରୁ ଭିନ୍ନ ଅନ୍ୟ ପଦାର୍ଥଠାରୁ ଜନ୍ମ ନେଇ ପାରିବ ନାହିଁ। (ପରତଃ) – ପାଣିରୁ ଚଉକିଟିଏ ଉତ୍ପନ୍ନ କରିହେବ ନାହିଁ, ବୋତଲରୁ ଲୁଗା ଉତ୍ପନ୍ନ କରିହେବ ନାହିଁ କିମ୍ବା କୌଣସି ପଦାର୍ଥ ନିଜଠାରୁ ଏବଂ ଅନ୍ୟଠାରୁ ଉତ୍ପନ୍ନ କରିହେବନାହିଁ, କାରଣ ଏଥିରେ ବିରୋଧଭାବ ଥାଏ। ଗୋଟିଏ ବୋତଲ ବା ଖଣ୍ଡେ ଲୁଗା ମିଳିତଭାବରେ ଆଉ ଗୋଟିଏ ବୋତଲ ବା ଆଉ ଖଣ୍ଡେ ଲୁଗା ଉତ୍ପନ୍ନ କରି ପାରିବେ ନାହିଁ।

ବର୍ତ୍ତମାନ ଆଲୋଚନାର ଏହି ସମୟରେ ବିରୋଧୀ ପକ୍ଷ ଗୋଟିଏ ତର୍କ ଉଠାଇବାର ସମ୍ଭାବନା ଅଛି ଯେ, ମୋଟ ଉପରେ, ଦୁନିଆଁରେ ଆମେ ଏପରି ଦେଖୁଁ ଯେ ବାପାଠାରୁ ପୁଅଟିଏ ଜନ୍ମ ନେଇଛି କିମ୍ବା ମାଟିରୁ ଘରଟିଏ ତିଆରି ହୋଇଛି। ଜନ୍ମ ଏବଂ ଉତ୍ପନ୍ନର ଏପରି ପରିପ୍ରକାଶ ହେଉଛି ମିଥ୍ୟା।

ନାମ- ଶ୍ରୁତି ମଧ୍ୟ ଏହି ଉକ୍ତିର ପୁଷ୍ଟି ସାଧନ କରେ। ଶାସ୍ତ୍ର କହେ ଯେ ପ୍ରତ୍ୟେକ କାର୍ଯ୍ୟ (ଫଳ) ହେଉଛି କେବଳ ନାମ ବା ନାମଧେୟ (ବାଚାରମ୍ଭଣମ୍ ବିକାରୋ ନାମଧେୟମ୍ ମୃତ୍ତିକେତ୍ୟେବ ସତ୍ୟମ୍)। ଯଦି କୌଣସି ପଦାର୍ଥ କେବେ ବି ଅଛି (ସତ୍), ତେବେ ଏହା ଉତ୍ପନ୍ନ ହେବା ଦରକାର ନାହିଁ, ବାସ୍ତବରେ ଏହାକୁ ଉତ୍ପନ୍ନ କରିହେବ ନାହିଁ। ମୁଁ ବର୍ତ୍ତମାନ ମୋତେ ଜନ୍ମ ଦେଇ ପାରିବିନାହିଁ। ମୁଁ ତ ରହିଛି , ମୋତେ ଉତ୍ପନ୍ନ କରାଯାଇ ପାରିବ ନାହିଁ।

ତୁମେ ଯଦି କହିବ ଯେ ଅସତ୍ ପଦାର୍ଥ ଉତ୍ପନ୍ନ କରାଯାଏ, ତେବେ ତାହା ବିରୋଧୋକ୍ତି ହେବ। ମୁଁ ମରୀଚିକା-ଜଳ ସୃଷ୍ଟି କିମ୍ବା ସଂଗ୍ରହ କରି ପାରିବି ନାହିଁ। ମୁଁ ମଧ୍ୟ ହଳେ ଶିଙ୍ଗ ବା ଜଣେ ମହିଳାଙ୍କର ଗୋଟିଏ ଲାଞ୍ଜ ଉତ୍ପନ୍ନ କରି ପାରିବି ନାହିଁ। ଯାହା ଅସତ୍, ତାହା କୌଣସି ସମୟରେ, ଜଣାଥିବା କୌଣସି ଉପାୟରେ ମଧ୍ୟ ସୃଷ୍ଟି କରିହେବ ନାହିଁ।

ତର୍କର ପରବର୍ତ୍ତୀ ସମ୍ଭାବନା ହେଲା, ଯେଉଁ ପଦାର୍ଥ ଉଭୟ ସତ୍ ଏବଂ ଅସତ୍ ତାହା ସୃଷ୍ଟି ହୁଏ। ଏପରିକି ଏକ ବିରୋଧୀ ଧାରଣାକୁ ସେହି ଗୋଟିଏ ଜିନିଷ ସହିତ ସଂଶ୍ଳିଷ୍ଟ କରାଯାଇ ନ ପାରିବାରୁ ଏହା ମଧ୍ୟ ସମ୍ଭବ ନୁହେଁ। ଏକା ସାଙ୍ଗରେ ସତ୍ ଏବଂ ଅସତ୍ ହେବା ପରି କୌଣସି ପଦାର୍ଥ ଦୁନିଆରେ ରହି ପାରିବ ନାହିଁ। କ୍ଷଣିକ-ବିଜ୍ଞାନବାଦୀ ନାମକ ଏକ ବୌଦ୍ଧ ଗୋଷ୍ଠୀ ଏହି ତର୍କ ଉଠାନ୍ତି। ସେମାନଙ୍କ ମତରେ ବାହ୍ୟ ପଦାର୍ଥ ମନର କଳ୍ପନା ବ୍ୟତୀତ ଅନ୍ୟ କିଛି ନୁହେଁ ଏବଂ ମନର କଳ୍ପନା ପ୍ରତି ମୁହୂର୍ତ୍ତରେ ପରିବର୍ତ୍ତିତ ହେଉଛି। ପ୍ରତ୍ୟେକ କଳ୍ପନା ଦେଖାଦିଏ ଏବଂ ତତ୍କ୍ଷଣାତ୍ ଅପସରି ଯାଏ । ବାସ୍ତବରେ ଏହାକୁ ହିଁ ସତ ଏବଂ ଅସତ୍ ଭାବରେ ବ୍ୟାଖ୍ୟା କରାଯାଇ ପାରିବ। ଏହି ଦର୍ଶନ ଗ୍ରହଣୀୟ ନୁହେଁ, କାରଣ କୌଣସି ପଦାର୍ଥ ଏଇ କିଛି ବୋଲି କହିବା ସାଙ୍ଗେ ସାଙ୍ଗେ ତାହା ନରହିବା କଥା ବିଶ୍ୱାସ କରିବା ବଡ଼ କଷ୍ଟକର। ତେଣୁ ଏହା ଯୁକ୍ତିଯୁକ୍ତ ନୁହେଁ। ଏହା ଯଦି ସତ୍ୟ ହୋଇଥାନ୍ତା, ତେବେ କୌଣସି ପଦାର୍ଥର ସ୍ମୃତି ରହିବା ସମ୍ଭବ ହୁଅନ୍ତା ନାହିଁ।

କୌଣସି ପଦାର୍ଥର ସୃଷ୍ଟି ର ବ୍ୟାଖ୍ୟା କରିବାର ଏଇ ଛଅଗୋଟି ପରିବର୍ତ୍ତନକ୍ଷମ ସମ୍ଭାବନାକୁ ଏହି କାରିକା ହସରେ ଉଡ଼ାଇ ଦିଏ। ଅଜାତ ସିଦ୍ଧାନ୍ତକୁ ଏହା ଚୂଡ଼ାନ୍ତ ଭାବରେ ସମର୍ଥନ କରେ।

**ହେତୁର୍ନ ଜାୟତେଽନାଦେଃ ଫଳଂ ଚାପି ସ୍ୱଭାବତଃ।**
**ଆଦିର୍ନ ବିଦ୍ୟତେ ୟସ୍ୟ ତସ୍ୟ ହ୍ୟାଦିର୍ନ ବିଦ୍ୟତେ ॥୨୩॥**

ହେତୁଃ ନ ଜାୟତେ = କାରଣ (ହେତୁ) ସୃଷ୍ଟି କରାଯାଇ ପାରିବ ନାହିଁ, ଅନାଦେଃ = (ଯାହା) ଅନାଦି, ଫଳଂ ଚ ଅପି = ଏବଂ କାର୍ଯ୍ୟ (ଫଳ)ରୁ ମଧ୍ୟ, ସ୍ୱଭାବତଃ = (ନିଜଠାରୁ) ଜନ୍ମ ନିଏ; ନ ଆଦି = ଅନାଦି, ବିଦ୍ୟତେ = ଥାଏ, ତସ୍ୟ ଅସ୍ୟ = ତାହା ଯାହା, ହିଁ = ନିଶ୍ଚିତ ଭାବରେ, ବିଦ୍ୟତେ ନ ଆଦିଃ = ଜନ୍ମରୁ ମୁକ୍ତ।

*ଅନାଦି କାର୍ଯ୍ୟରୁ କାରଣ ସୃଷ୍ଟି ହୋଇ ପାରିବ ନାହିଁ। କାର୍ଯ୍ୟ ନିଜଠାରୁ ମଧ୍ୟ ସୃଷ୍ଟି ହୋଇ ପାରିବ ନାହିଁ। ଯାହା ଅନାଦି, ନିଶ୍ଚିତ ଭାବରେ ତାହା ଜନ୍ମରୁ ମୁକ୍ତ ॥୨୩॥*

ବିରୋଧୀମାନଙ୍କ ତରଫରୁ ଉଠାଯାଇ ପାରିବା ଆଉ ହଳେ ସମ୍ଭାବନାର ଏଠାରେ ପରୀକ୍ଷା କରାଯାଉଛି, ଗୋଟିଏ କାର୍ଯ୍ୟ (ଫଳ) ଅନାଦି କାରଣ (ହେତୁ)ରୁ ସୃଷ୍ଟି କରାଯାଇପାରେ କିମ୍ବା ନିଜଠାରୁ ବାହାରି ପାରେ। ଏଠାରେ ଏହି ଉଭୟର ନିଷେଧ କରାଯାଇଛି।

ଅନାଦି କାରଣ ନିଶ୍ଚିତ୍ ଭାବରେ ଅଜ ହେବ। ଯାହା ଅନାଦି, ତାହା ଅସୀମ, ଶାଶ୍ୱତ । ଶାଶ୍ୱତ, ଅର୍ଥାତ୍ ଯାହାର ବିକାର (ପରିବର୍ତ୍ତନ) ନାହିଁ । ଗୋଟିଏ କାର୍ଯ୍ୟ ସୃଷ୍ଟି କରିବା ମାନେ ବିକାରର କାରଣ ହେବା। ତେଣୁ ଅନାଦି କାରଣରୁ କାର୍ଯ୍ୟ ସୃଷ୍ଟି ହେବା କଥା କହିବାର ଯୁକ୍ତି ଯୁକ୍ତ ଅର୍ଥ ହେବ, ବରଫରୁ ନିଆଁ ସୃଷ୍ଟି କରିବା। ଏହି ଶ୍ଳୋକରେ କାରଣ ଏବଂ କାର୍ଯ୍ୟ ସମ୍ବନ୍ଧୀୟ ଆଲୋଚନାର ପରିସମାପ୍ତି ହୋଇଛି।

ମନ ଏବଂ ବୁଦ୍ଧିର ଅତୀତ ହେବା ହେଉଛି ସେହି ମୁହୂର୍ତ୍ତରେ ଶାସ୍ତ୍ର ନିର୍ଦ୍ଦେଶିତ ଲକ୍ଷ୍ୟସ୍ଥଳର ଅନୁଭୂତି ଲାଭ କରିବାର ମାର୍ଗ। ମନାତୀତ ହେବାର ଅନେକ ଉପାୟ ରିହିଛି। କାଳ, ସ୍ଥାନ ଏବଂ କାରଣ ଏହି ତିନିସ୍ଥାନରେ ହିଁ ମନ ରହିପାରିବ ଏବଂ ସେହି ସ୍ଥାନରୁ କାର୍ଯ୍ୟ କରିପାରିବ। କାଳ, ସ୍ଥାନ ଏବଂ କାରଣ ବାସ୍ତବରେ ତିନୋଟି ସ୍ୱତନ୍ତ୍ର ସତ୍ତା ନୁହେଁ। କିନ୍ତୁ ସାଧକଙ୍କର ସମସ୍ତ ବ୍ୟାବହାରିକ ଉଦ୍ଦେଶ୍ୟ ପାଇଁ ସେମାନେ ଏକ ଏବଂ ଅଭିନ୍ନ। କୌଣସି ସ୍ଥାନ, କାଳ ଏବଂ କାରଣ ଧାରଣା ବିହୀନ ହୋଇ ରହି ପାରିବ ନାହିଁ। ଏମାନଙ୍କ ମଧ୍ୟରୁ ଯେ କୌଣସି ଗୋଟିଏ ଅନ୍ୟ ଦୁଇଟି ବ୍ୟତୀତ ରହି ପାରିବ ନାହିଁ।

ଭୁଲ ବୁଝି ଆମେ କାରଣ ବା ନିମିତ୍ତକୁ ଶାଶ୍ୱତ ଏବଂ ପୂର୍ଣ୍ଣାଙ୍ଗ ବୋଲି ମନେ କରିଥାଉ। ତେଣୁ ବେଦାନ୍ତର ଏହି ମହାନ ଗ୍ରନ୍ଥରେ ମହାନ ଆଚାର୍ଯ୍ୟ ବୌଦ୍ଧିକ ସ୍ତରରେ ଏହି କଳ୍ପନାର ସାର କିଛି ନାହିଁ ବୋଲି ଶିଷ୍ୟମାନଙ୍କୁ ନିର୍ଦ୍ଦେଶ କରୁଛନ୍ତି। ବୌଦ୍ଧିକ ଭାବରେ କାରଣରେ ଆମର ଶ୍ରଦ୍ଧାକୁ ଭାଙ୍ଗିଦେଇ ପରିମାଣତଃ ସ୍ଥାନ ଏବଂ କାଳରେ ଥିବା ଆମର ଶ୍ରଦ୍ଧା ଏବଂ ବିଶ୍ୱାସକୁ ଆଚାର୍ଯ୍ୟ ଧ୍ୱଂସ କରି ଦେଉଛନ୍ତି। ମନର ଏହି ସୀମା ଭିତରୁ ଯେକୌଣସି ଗୋଟିଏ ଥରେ ଭାଙ୍ଗିଗଲେ ବହୁବିଧ ଜଗତର ଭ୍ରାନ୍ତ ଧାରଣା ଦେବାପାଇଁ ମନ ଆଉ ମନ ହୋଇ ରହିବ ନାହିଁ ଏବଂ ତାପରେ ଯେଉଁ ଅନୁଭୂତି ହେବ, ତାହା ହେଉଛି ଆତ୍ମାନୁଭୂତି।

**ପ୍ରଜ୍ଞପ୍ତେଃ ସନିମିତ୍ତତ୍ୱମନ୍ୟଥା ଦ୍ୱୟନାଶତଃ।**

**ସଂକ୍ଲେଶସ୍ୟୋପଲବ୍ଧେଶ୍ଚ ପରତନ୍ତ୍ରାସ୍ତିତା ମତା ॥୨୪॥**

ପ୍ରଜ୍ଞପ୍ତେଃ = ନିଜେ ଅନୁଭବ କରୁଥିବା ଜ୍ଞାନ (ଶବ୍ଦ ଇତ୍ୟାଦି ଜାଣିବା); ସନିମିତ୍ତତ୍ୱମ୍ = ଏହାର ନିଶ୍ଚୟ କିଛି ଆଙ୍ଗିକ କାରଣ ଥିବ, ଅନ୍ୟଥା = ନଚେତ୍; ଦ୍ୱୟ = ଉଭୟ (ଦ୍ୱୈତବାଦୀ ଅନୁଭୂତି), ନାଶତଃ = ରହି ନଥିବ, ସଂକ୍ଲେଶସ୍ୟ = କ୍ଳେଶର, ଯନ୍ତ୍ରଣାର; ଉପଲବ୍ଧେଃ = ଅନୁଭୂତି ଯୋଗୁଁ; ଚ = ପୁନଶ୍ଚ, ପରତନ୍ତ୍ର = ବାହ୍ୟ ପଦାର୍ଥ; ଅସ୍ତିତା = ଯାହାର ସ୍ଥିତି ଅଛି, ମତା = ଗ୍ରହଣ କରାଯିବ।

*ନିଜେ ଜାଣିବା ପାଇଁ ବାହାରର କୌଣସି ଏକ କାରଣ ଥିବ। ନଚେତ୍ ଉଭୟ ରହିବେ ନାହିଁ। ଏହି କାରଣ ଏବଂ କ୍ଳେଶର ଅନୁଭୂତି ପାଇଁ ଦ୍ୱୈତବାଦୀମାନେ ଗ୍ରହଣ କରୁଥିବା ବାହ୍ୟ ପଦାର୍ଥର ସ୍ଥିତି ସ୍ୱୀକାର କରିବାକୁ ହେବ ॥୨୪॥*

ପୂର୍ବଶ୍ଳୋକରେ କରାଯାଇଥିବା ଅର୍ଥକୁ ଦୃଢ଼ କରିବା ପାଇଁ ଏଠାରେ ଏକ ଆପତ୍ତି ଉଠାଯାଇଛି। ପ୍ରଜ୍ଞପ୍ତିର ଅର୍ଥ ହେଲା ବିଷୟର ଜ୍ଞାନ, ଯଥା- ଶବ୍ଦ, ସ୍ପର୍ଶ, ସ୍ୱାଦ ଇତ୍ୟାଦି। ଏହି ଆଙ୍ଗିକ ଜ୍ଞାନର ବାହ୍ୟ ପଦାର୍ଥରେ କିମ୍ବା ଏହାର ଅନୁରୂପ କୌଣସି ପଦାର୍ଥରେ ଗୋଟିଏ କିଛି କାରଣ ଅଛି। ଅର୍ଥାତ୍, ବିରୋଧୀଙ୍କ ମତରେ, ଅନୁରୂପ ପଦାର୍ଥ ଥିବାରୁ ଆମେ କୌଣସି ପଦାର୍ଥର ଜ୍ଞାନ ଆହରଣ କରୁଁ। ପଦାର୍ଥ ବିଷୟରେ ଆମର ଜ୍ଞାନ ନହେଲେ ତାର ଅର୍ଥ ହେବ, ପଦାର୍ଥ ନାହିଁ ବା ତାର ଜାଣିବାର କ୍ଷମତା ନାହିଁ।

ଇନ୍ଦ୍ରିୟ ବିଷୟର ବାସ୍ତବତା ପ୍ରମାଣ କରିବା ପାଇଁ ପଦାର୍ଥ ଜ୍ଞାନ ଏକମାତ୍ର ଯୁକ୍ତି ନୁହେଁ ବରଂ ବିଷୟଜଗତ ଯଦି ପ୍ରକୃତରେ ସୃଷ୍ଟି ହୋଇ ନଥାନ୍ତା, ତେବେ ଆମର

କୌଣସି ଦୁଃଖ ରହି ନଥାନ୍ତା। କ୍ଲେଶ(ଦୁଃଖ) ପୂର୍ଣ୍ଣ ଜଗତ ବାସ୍ତବ ନହେଲେ ଦଃଖା - ନୁଭୂତି ସମ୍ଭବ ହେବ ନାହିଁ। ଏଠାରେ ଗୌଡ଼ପାଦଙ୍କୁ ଆହ୍ୱାନ ଦେଉଥିବା ବିରୋଧୀମାନେ ବର୍ତ୍ତମାନ ହେଉଛନ୍ତି ବିଷୟ ବୁଦ୍ଧି ସମ୍ପନ୍ନ ବ୍ୟକ୍ତି, ସେମାନଙ୍କ ମତରେ ବାହ୍ୟ ବିଷୟ-ଜଗତ ହେଉଛି ବାସ୍ତବ। ସେମାନଙ୍କ ମତ ହେଲା, ବିଷୟକୁ ଜାଣିବା ପାଇଁ ଆମର କ୍ଷମତା ଯୋଗୁଁ ଏବଂ ଆମେ ଦୁଃଖ ଅନୁଭବ କରୁଥିବା୍ ଯୋଗୁଁ ବାହ୍ୟ ବିଷୟ ଜଗତର ବାସ୍ତବତା ଅଛି।

ଗୌଡ଼ପାଦ ଯଥାର୍ଥବାଦୀଙ୍କର ଏହି ତର୍କ ସହିତ ମୁହାଁମୁହିଁ ହୋଇଛନ୍ତି । ବେଦାନ୍ତ ତର୍କ ଦ୍ୱାରା ନୁହେଁ, ବରଂ ବୌଦ୍ଧଧର୍ମରେ କୁହାଯାଉଥିବା ବିଜ୍ଞାନବାଦୀ ନାମକ ଏକ ବିରୋଧୀ ଗୋଷ୍ଠୀର ଚିନ୍ତାଧାରାକୁ ଆଗେଇ ଆଣିଛନ୍ତି। ପରବର୍ତ୍ତୀ ଶ୍ଳୋକରେ ବୌଦ୍ଧଧର୍ମର ଆତ୍ମ୍ବାଦୀ ଗୋଷ୍ଠୀ ଉଠାଇଥିବା ତର୍କ ଦେଖିବାକୁ ମିଳେ। ଏହି ଶ୍ଳୋକରେ ଯଥାର୍ଥବାଦୀମାନେ ଉଠାଇଥିବା ତର୍କ ପାଇଁ ସେହି ଉତ୍ତର ଯଥେଷ୍ଟ ।

ଯୁକ୍ତିସଂଗତ କାରଣ ଦୃଷ୍ଟିରୁ ନିଜର ଅନୁଭୂତି ଗ୍ରହଣ କରାଯାଇପାରେ, କିନ୍ତୁ ପରମ ସତ୍ୟ ବା ବିଷୟର ବାସ୍ତବ ସ୍ୱରୂପ ଦୃଷ୍ଟିରୁ ତଥାକଥିତ କାରଣ ଆଦୌ କାରଣ ନୁହେଁ।

ବୌଦ୍ଧଧର୍ମର ବିଜ୍ଞାନବାଦୀମାନେ ହେଉଛନ୍ତି ଆତ୍ମିକ ଆଦର୍ଶବାଦୀ ଏବଂ ସେମାନଙ୍କ ମତରେ "ସମସ୍ତ ପଦାର୍ଥ ବାସନା ରୂପେ ଥାଏ।" (୨୫ଶ,୨୬ଶ ଏବଂ ୨୭ଶ ଶ୍ଳୋକରେ ଏହି ଧାରଣାର ବ୍ୟାଖ୍ୟା କରାଯାଇଛି )।

ବିଷୟଜଗତର ବାସ୍ତବତା ଆମେ ସ୍ୱୀକାର କରିବା କିମ୍ବା ନ ହେଲେ ନାନା ପ୍ରକାରର ଦୁଃଖ ଜାଣିବା ବା ଅନୁଭବ କରିବା ସମ୍ଭବ ହେବ ନାହିଁ ବୋଲି କହି ବାସ୍ତବବାଦୀମାନେ ବିରୋଧ କରିଛନ୍ତି। ବର୍ତ୍ତମାନ ବିଜ୍ଞାନବାଦୀଙ୍କ ମୁହଁରେ ସେମାନଙ୍କର ନିଜର ବୌଦ୍ଧ ଭାଇ ବାସ୍ତବବାଦୀଙ୍କୁ ଉତ୍ତର ଦିଆଯାଇଛି। ସାଂଖ୍ୟ ଏବଂ ବୈଶେଷିକ ବାଦୀମାନେ ମଧ୍ୟ ବାସ୍ତବବାଦୀ।

**ପ୍ରଜ୍ଞପ୍ତେଃ ସନିମିତ୍ତତ୍ୱମ୍ ଇଷ୍ୟତେ ଯୁକ୍ତିଦର୍ଶନାତ୍ ।**
**ନିମିତ୍ତ ସ୍ୟାନିମିତ୍ତତ୍ୱମ୍ ଇଷ୍ୟତେ ଭୂତଦର୍ଶନାତ୍ ॥୨୫॥**

ପ୍ରଜ୍ଞପ୍ତେଃ = ଜ୍ଞାନ, ସନିମିତ୍ତତ୍ୱମ୍ = ବାହ୍ୟ କାରଣ ଥିବା, ଇଷ୍ୟତେ = ଗ୍ରହଣ କରିବାକୁ ହେବ, ଯୁକ୍ତି = ଯୁକ୍ତି, ଦର୍ଶନାତ୍ = ଦୃଷ୍ଟିକୋଣ, ନିମିତ୍ତସ୍ୟ = କାରଣ (ନିମିତ୍ତ)ର; ଅନିମିତ୍ତତ୍ୱମ୍ = କାରଣହୀନ, ଇଷ୍ୟତେ = ଇଚ୍ଛା କରାଯାଏ, ଭୂତ = ବାସ୍ତବତା, ଦର୍ଶନାତ୍ = ଦୃଷ୍ଟିକୋଣରୁ ।

*ଯୁକ୍ତି ଦର୍ଶନ ଦୃଷ୍ଟିରୁ ବହୁବିଧତା ବିଷୟକୁ ଗ୍ରହଣ କରିବାକୁ ହେବ କିନ୍ତୁ ଭୂତ ଦର୍ଶନ ଦୃଷ୍ଟିରୁ ନିଜର ସମସ୍ତ ବିବିଧତା ଏବଂ ସମ୍ବନ୍ଧ ସହିତ ବହୁବିଧ ଜଗତ ହେଉଛି ମିଥ୍ୟା ॥୨୫॥*

ବାସ୍ତବବାଦୀଙ୍କ ଦୃଷ୍ଟିକୋଣକୁ ପରାସ୍ତ କରିବା ପାଇଁ ହିଁ କେବଳ ନିଜର ଅନୁଭୂତିସମ୍ପନ୍ନ ତର୍କ ଉଧାର କରାଯାଇଛି । ଏହାର ଅର୍ଥ ନୁହେଁ ଯେ, ବେଦାନ୍ତ (ଭୂତ ଦର୍ଶନ) ନିଜର ଅନୁଭୂତି ସମ୍ପନ୍ନ ନୁହେଁ । ଏହି ଦୁଇଟି ଧାରଣା ଅଭିନ୍ନ ବୋଲି ଅନେକ ସମାଲୋଚକ ଘାବୁରେଇ ଯାଇଥିବା ପରି ମନେ ହୁଏ । ଗୌଡ଼ପାଦଙ୍କର ଆଗମ ଶାସ୍ତ୍ରରେ ପ୍ରଫେସର ଭଟ୍ଟାଚାର୍ଯ୍ୟ ତିକ୍ତ ସମାଲୋଚନାର ମନୋଭାବ ନେଇ କହିଛନ୍ତି, "ଚତୁର୍ଥ ପ୍ରକରଣରେ କୌଣସି ପ୍ରକାରର ବୈଦାନ୍ତିକ ଦର୍ଶନ ମିଳୁନଥିବାରୁ ଗୌଡ଼ପାଦ ବେଦାନ୍ତର କିଛି ସିଧାସଳଖ ଆଲୋଚନା କରି ନାହାନ୍ତି" ।

ଏଥିରେ ଚମକି ପଡ଼ିବାର କିଛି ନାହିଁ । ସମାଲୋଚକମାନେ ଆହୁରି ଭଲ କଥା କହି ପାରନ୍ତି । A History of Indian Philosophy (ପ୍ରଥମ ଖଣ୍ଡ, ପୃଷ୍ଠା - ୪୨୩)ରେ ଦାସଗୁପ୍ତା କହିଛନ୍ତି ଗୌଡ଼ପାଦ ବୌଦ୍ଧମାନଙ୍କର ଶୂନ୍ୟବାଦ ଏବଂ ବିଜ୍ଞାନବାଦ ଶିକ୍ଷାର ଏକୀଭୂତ କରି ଦେଇଛନ୍ତି ଏବଂ ଉପନିଷଦ୍ ପ୍ରଚାର କରୁଥିବା ପରମସତ୍ୟଙ୍କ ପାଇଁ ଯଥାର୍ଥ ବୋଲି ଭାବିଛନ୍ତି । ତାଙ୍କ ପାଇଁ ଗୌଡ଼ପାଦ ହେଲେ ଶାସ୍ତ୍ରୀୟ ଭାଷାରେ, ଆମ୍ଭାଙ୍କ ମନ୍ଦିରରେ ବୌଦ୍ଧଧର୍ମର ପ୍ରଚାର କରୁଥିବା ଜଣେ ବୌଦ୍ଧ ପ୍ରଚାରକ । ମୁଁ ଏଠାରେ ଏହାର ସିଧାସଳଖ ସମାଲୋଚନା କରିବାକୁ ଯାଉ ନାହିଁ । ଏଇ ଚତୁର୍ଥ ପ୍ରକରଣ ଶେଷ ହେବାବେଳକୁ ପ୍ର.ଦାସଗୁପ୍ତା ଏବଂ ପ୍ରଫେସର ଭଟ୍ଟାଚାର୍ଯ୍ୟ ତାଙ୍କର ସିଦ୍ଧାନ୍ତରେ କେତେ ଦୂର ଯଥାର୍ଥ, ତୁମମାନଙ୍କ ମଧ୍ୟରୁ ପ୍ରତ୍ୟେକ ଏହା ନିଜେ ବିଚାର କରିପାରିବ ।

**ଚିତ୍ତଂ ନ ସଂସ୍ପୃଶତ୍ୟର୍ଥଂ ନାର୍ଥାଭାସଂ ତଥୈବ ଚ।**
**ଅଭୂତୋ ହି ଯତଶ୍ଚାର୍ଥୋ ନାର୍ଥାଭାସସ୍ତତଃ ପୃଥକ୍ ॥୨୬॥**

ଚିତ୍ତଂ = ମନ, ନ = ନୁହେଁ, ସଂସ୍ପୃଶତି = ସଂସ୍ପର୍ଶରେ ଆସିବା, ଅର୍ଥମ୍ = ଗୋଟିଏ (ବାସ୍ତବ) ପଦାର୍ଥ; ଅର୍ଥାଭାସମ୍ = ଗୋଟିଏ ପ୍ରତୀୟମାନ ହେଉଥିବା ବା ଅଳୀକ ପଦାର୍ଥ; ନ ତଥା ଏବ ଚ = ଏବଂ ନୁହେଁ ମଧ୍ୟ, ଅଭୂତଃ = ଯାହା ନାହିଁ, ହି ଯତଃ ଚ = କାରଣ, ପ୍ରକୃତରେ; ଅର୍ଥ = ଗୋଟିଏ ପ୍ରକୃତ ପଦାର୍ଥ ଅଛି, ନ ଅର୍ଥାଭାସ = ପ୍ରତୀୟମାନ ହେଉଥିବା ପଦାର୍ଥ ମଧ୍ୟ ନାହିଁ, ପୃଥକ୍ ତତଃ = ତାହା (ମନ) ଠାରୁ ଭିନ୍ନ।

*ମନ ଉପରେ ଅଳୀକ ଛାପ ପକାଉଥିବା ବାହ୍ୟ ବସ୍ତୁ ପରି ମନେ ହେଉଥିବା ବାହ୍ୟଜଗତ ବା ଭାବନା ସହିତ ମନର ସଂସ୍ପର୍ଶ ନଥାଏ। ଆମେ ଏପରି କହୁ, କାରଣ ବସ୍ତୁର ସ୍ଥିତି ନାହିଁ ଏବଂ ବାହ୍ୟ ଜଗତରେ ବସ୍ତୁ ପରି ଦେଖା ଯାଉଥିବା ଧାରଣା ମଧ୍ୟ କୌଣସି ଭାବରେ ମନଠାରୁ ସ୍ୱତନ୍ତ୍ର ନୁହେଁ ॥୨୬॥*

ଏହା ହେଉଛି ବୌଦ୍ଧ ବିଜ୍ଞାନବାଦୀମାନଙ୍କର ତର୍କ। ବାସ୍ତବବାଦୀଙ୍କର ତର୍କ ହେଲା, ଆମେ ବସ୍ତୁରୁ ଅନୁଭୂତି ଲାଭ କରୁଥିବାରୁ ଏବଂ ଦୁଃଖର ଅନୁଭୂତି ମଧ୍ୟ ଲାଭ କରୁଥିବାରୁ ଏହା ବାସ୍ତବ ହୋଇଥିବ। ଗୌଡ଼ପାଦ ଏଠାରେ ବିଜ୍ଞାନବାଦୀମାନଙ୍କୁ ବାସ୍ତବବାଦୀଙ୍କ ସହିତ ଲଢ଼ିବା ପାଇଁ ଛାଡ଼ି ଦେଇଛନ୍ତି। ବିଜ୍ଞାନବାଦୀମାନଙ୍କ ମତରେ ବାହ୍ୟ ବିଷୟ ଜଗତ ହେଉଛି ଅବାସ୍ତବ, ତେଣୁ ମନ ଉପରେ ତାର ଅଧ୍ୟାସ ହୋଇ ପାରିବ ନାହିଁ, ଏବଂ ମାନସିକ କଳ୍ପନା ନିଜେ ମନ ବ୍ୟତୀତ ଅନ୍ୟ କିଛି ନୁହେଁ।

ବାହ୍ୟଜଗତର ବ୍ୟାଖ୍ୟା କରିବା ପାଇଁ ଦୁଇଟି ମାର୍ଗ ଅଛି, ଗୋଟିଏ ହେଲା - (କ) ବାହ୍ୟ ବିଷୟ ପ୍ରବୃତ୍ତି ଭାବରେ କାମ କରି ମାନସିକ ଭାବନା ସୃଷ୍ଟି କରେ ଏବଂ ଭାବନାର ସଂଯୋଗରୁ ମନର ଧାରଣା ଜନ୍ମେ। ଏହି ତତ୍ତ୍ୱ ଅନୁସାରେ ବିଷୟ ଦ୍ୱାରା ମନର ସୃଷ୍ଟି ହୁଏ। କିନ୍ତୁ ଏହା ଦ୍ୱାରା ଦାର୍ଶନିକ ଗ୍ରହଣ କରୁଛନ୍ତି ଯେ, ବାହ୍ୟ ବିଷୟଜଗତ ହେଉଛି ବାସ୍ତବ। ବାହ୍ୟ ବିଷୟଜଗତର ବାସ୍ତବତା ନାହିଁ, ତେଣୁ ସେମାନେ ମନ ସୃଷ୍ଟି କରିପାରିବେ ନାହିଁ ବୋଲି କହି ବିଜ୍ଞାନବାଦୀମାନେ ଏହି ଧାରଣା ଭାଙ୍ଗି ଦିଅନ୍ତି। ମରୀଚିକା-ଜଳ ପାର ହେବା ପାଇଁ ଆମେ ଗୋଟିଏ ବୈଦ୍ୟୁତିକ ମୋଟର ବୋଟ ବ୍ୟବହାର କରି ପାରିବା ନାହିଁ। ମରୀଚିକା ଜଳ ନିଜେ ହେଉଛି ଅବାସ୍ତବ। ବାହ୍ୟ ବିଷୟଜଗତ ଯଦି ଅବାସ୍ତବ, ତେବେ ସେମାନେ ମନର କୌଣସି ଧାରଣାର କାରଣ ହେବେ ନାହିଁ।

ବାହ୍ୟ ବିଷୟଜଗତର ଅନ୍ୟ ବ୍ୟାଖ୍ୟାଟି ହେଲା- (ଖ) ମନ ତା'ର କଳ୍ପନା ସହିତ ଏକାଠି ହୋଇ ପ୍ରକ୍ଷେପ କରି ଅଳୀକ ଜଗତର ଧାରଣା ଦିଏ। ଏହି ଧାରଣା ଉପରେ ମଧ୍ୟ ବିଜ୍ଞାନବାଦୀ-ମାନେ ପ୍ରଶ୍ନ ଉଠାଇଛନ୍ତି। ଏଥିପାଇଁ ତାଙ୍କର ଯୁକ୍ତି ହେଲା କଳ୍ପନା ନିଜେ ମନଠାରୁ ସ୍ୱତନ୍ତ୍ର ନୁହେଁ। କଳ୍ପନା ନଥିବା ମନ, ମନ ନୁହେଁ। କଳ୍ପନା ବିପର୍ଯ୍ୟସ୍ତ ହେଲେ ମନ ମଧ୍ୟ ବିପର୍ଯ୍ୟସ୍ତ ହୋଇଥାଏ। ଏବଂ କଳ୍ପନା ଶାନ୍ତ ଏବଂ କୋମଳ ହେଲେ ମନ ମଧ୍ୟ ଶାନ୍ତ ଏବଂ କୋମଳ ହୋଇଯାଏ। ବାହ୍ୟ ବହୁବିଧ ଜଗତ ପାଇଁ ଯଦି କୌଣସି ଯଥାର୍ଥତା ଅଛି, ତେବେ ତାକୁ ମନ ଭିତରେ ଖୋଜିବାକୁ ହେବ। ତେଣୁ ସେମାନଙ୍କର ତର୍କ ଏବଂ ସିଦ୍ଧାନ୍ତ ହେଲା- ଜଗତଟି ମନ ବ୍ୟତୀତ ଅନ୍ୟ କିଛି ନୁହେଁ।

ବିଜ୍ଞାନବାଦୀମାନେ ବାସ୍ତବବାଦୀଙ୍କ ମତ ବିରୁଦ୍ଧରେ ତର୍କ କରନ୍ତି।

**ନିମିତ୍ତଂ ନ ସଦା ଚିତ୍ତଂ ସଂସ୍ପୃଶତ୍ୟଧ୍ୱସୁ ତ୍ରିଷୁ।**

**ଅନିମିତ୍ତୋ ବିପର୍ଯ୍ୟାସଃ କଥଂ ତସ୍ୟ ଭବିଷ୍ୟତି ॥୨୭॥**

ନିମିତ୍ତଂ = ନିମିତ୍ତ, କାରଣ, କୌଣସି ବାହ୍ୟ ବିଷୟ; ସଦା = ସର୍ବଦା, ନ ସଂସ୍ପୃଶତି = କୌଣସି ନୈମିତ୍ତିକ ସମ୍ବନ୍ଧ ଘଟାଏ ନାହିଁ (ଆକ୍ଷରିକ ଅର୍ଥରେ ସ୍ପର୍ଶ); ଚିତ୍ତମ୍ = ମନ, ତ୍ରିଷୁ ଅଧ୍ୱସୁ = ତିନି କାଳ, ଅନିମିତ୍ତ = କୌଣସି କାରଣ ନଥାଇ, ବିପର୍ଯ୍ୟାସଃ = ଭୁଲ ଧାରଣା, ଭ୍ରାନ୍ତି ; କଥମ୍ = କିପରି, ତସ୍ୟ = ତାହାର, (ମନର); ଭବିଷ୍ୟତି = ହେବ।

*ତ୍ରିକାଳ ମଧ୍ୟରୁ କୌଣସି ଗୋଟିକରେ ମନ କୌଣସି ବାହ୍ୟ ବିଷୟ ସହିତ ସମ୍ବନ୍ଧ କରେ ନାହିଁ ବା ସେମାନଙ୍କୁ ସ୍ପର୍ଶ କରେ ନାହିଁ। ମାନସିକ ବିକ୍ଷେପ ପାଇଁ କୌଣସି କାରଣ ନଥିବା ବେଳେ ମନର ଭ୍ରମ ହେବ କିପରି ? ॥୨୭॥*

ଶ୍ରୀ ଶଙ୍କରଙ୍କ ମତରେ ଏଠାରେ ଜଣେ ବିରୋଧୀ ନିଜ ବିରୋଧାଭାସ ରଖିଛନ୍ତି। ସନ୍ଦେହଟି ବୋଧହୁଏ ଏହିପରି: ମନ ଗୋଟିଏ ଆଧାର ଆଦି ପରି ମନେ ହୁଏ; ଯଦିଓ ଏପରି ବସ୍ତୁର ଅସ୍ତିତ୍ୱ ନାହିଁ। ତେଣୁ 'ମିଥ୍ୟା ଜ୍ଞାନ' ନିଶ୍ଚୟ ରହୁଛି। ଏପରି ହୋଇଥିବାରୁ, ଦର୍ଶାଯାଇଥିବା 'ମିଥ୍ୟା' ସହିତ ସମ୍ବନ୍ଧିତ କିମ୍ବା ମିଥ୍ୟାଠାରୁ ପୃଥକ୍ 'ସତ୍ୟ ଜ୍ଞାନ' କେଉଁଠାରେ ହେଲେ ଥିବ। ତାର୍କିକମାନେ ଏହି ତର୍କ ଉଠାଇଛନ୍ତି।

ନ୍ୟାୟିକଙ୍କ ମତରେ, ଅତୀତରେ ଆମର ମନ କେବେ ଯଦି ଗୋଟିଏ ସର୍ପର ପ୍ରତ୍ୟକ୍ଷ ଅନୁଭୂତି ଲାଭ କରିଥାଏ, ତେବେ ଯାଇ ମନରେ ସାପ ବିଷୟରେ ଏକ ଭ୍ରାନ୍ତ ଧାରଣା ଉତ୍ପନ୍ନ ହେବ। ସେମାନଙ୍କ ମତରେ, ଆମ ମନରେ ବିଷୟ ସମ୍ବନ୍ଧରେ ମିଥ୍ୟା

ଜ୍ଞାନର ଧାରଣା ରହିଥିଲେ ହିଁ ଭୁଲ ଧାରଣା ସମ୍ଭବ ହେବ। ତେଣୁ ସେମାନଙ୍କର ଯୁକ୍ତି ହେଲା, ମନ ଯଦି ଜଗତକୁ ପରିକଳ୍ପନା କରିଛି, ଯେଉଁ ସଂସ୍କାରବଶତଃ ଆମେ ବର୍ତ୍ତମାନ ଧାରକ, ଘଟ ଏବଂ ସମ୍ପର୍କର ଯେଉଁ ଜଗତ ପରିକଳ୍ପନା କରୁଛୁ, ତାପଛରେ ବାସ୍ତବ ଜଗତଟିଏ କେଉଁଠି ହେଲେ ଥିବ।

ସଂକ୍ଷେପରେ ଏହି ଜଗତ ଏକ ପ୍ରକ୍ଷେପଣ ବୋଲି ବିଶ୍ୱାସ କରିବାକୁ ହେଲେ କେଉଁଠିହେଲେ ନ୍ୟାୟିକମାନଙ୍କ ପାଇଁ ବାସ୍ତବ ଜଗତଟିଏ ଦରକାର ଯାହାକି କୌଣସି ଭ୍ରାନ୍ତ ମନର ପ୍ରଚ୍ଛନ୍ନ ଛାପକୁ ସହଜରେ ପ୍ରକାଶ କରି ପାରିବ। ତେଣୁ ନ୍ୟାୟିକମାନେ ସତ୍‌ସଙ୍ଗରେ ଏହି ପ୍ରଶ୍ନ ଉଠାଇଛନ୍ତି। ଗୌଡ଼ପାଦ ଏହି ଶ୍ଳୋକରେ ତାହାର ଉତ୍ତର ଦେଇଛନ୍ତି।

ଗୌଡ଼ପାଦ କହୁଛନ୍ତି ଯେ, ତ୍ରିକାଳ ଭିତରେ ମନ କାହା ସହିତ ହେଲେ କୌଣସି ନୈମିତ୍ତିକ ସମ୍ବନ୍ଧ ସ୍ଥାପନ କରେ ନାହିଁ ଏବଂ ଏକଥା କହି ଗୋଟିଏ ବାସ୍ତବ ଜଗତର ସ୍ଥିତିକୁ ସେ କେବଳ ଅସ୍ୱୀକାର କରି ନାହାଁନ୍ତି, ବରଂ ତତ୍ ସହିତ ପ୍ରମାଣ କରିଛନ୍ତି ଯେ କୌଣସି ଏକ ଜଗତ ଥିଲେ ବି ମନରେ ତାର ଛାପ ରହେ ନାହିଁ।

**ତସ୍ମାନ୍ନ ଜାୟତେ ଚିତ୍ତଂ ଚିତ୍ତଦୃଶ୍ୟଂ ନ ଜାୟତେ।**

**ତସ୍ୟ ପଶ୍ୟନ୍ତି ଯେ ଜାତିଂ ଖେ ବୈ ପଶ୍ୟନ୍ତି ତେ ପଦମ୍ ॥୨୮॥**

ତସ୍ମାତ୍ = ତେଣୁ, ଜାୟତେ = ଜନ୍ମ ନେଲା, ନ ଚିତ୍ତମ୍ = ମନ ନୁହେଁ, ଚିତ୍ତ ଦୃଶ୍ୟମ୍ = ମନ ଦେଖୁଥିବା ବିଷୟ, ନ ଜାୟତେ = ଜନ୍ମ ନେଇ ନାହିଁ, ତସ୍ୟ = ତାହା (ଚୈତନ୍ୟ); ଯେ ପଶ୍ୟନ୍ତି = ଯିଏ ଦେଖନ୍ତି, ଜାତିମ୍ = ଏପରି ଜନ୍ମର, ଖେ = ଆକାଶରେ, ବୈ ପଶ୍ୟନ୍ତି = ଦେଖି ପାରନ୍ତି, ତେ = ସେହି, ପଦମ୍ = ପାଦ-ଛାପ।

*ମନ କିମ୍ବା ମନ ଦେଖୁଥିବା ବିଷୟ କେବେ ବି ଜନ୍ମ ହୋଇ ନାହିଁ। ଏପରି ଜନ୍ମ ଦେଖୁଥିବା ଲୋକମାନେ ଆକାଶରେ ଚଢ଼େଇଙ୍କର ପାଦଛାପ ଦେଖିବାର (କିମ୍ବା ଆବିଷ୍କାର କରିବାର) ଚେଷ୍ଟା କରନ୍ତି ॥୨୮॥*

ଚିରାଚରିତ ରୀତିରେ ଗୌଡ଼ପାଦ ଶକ୍ତିଶାଳୀ ଭାବେ ପ୍ରତିରୋଧ କରିଛନ୍ତି। ଦ୍ୱୈତବାଦୀଙ୍କ ଦର୍ଶନର ମିଥ୍ୟା ସିଦ୍ଧାନ୍ତ ଯୋଗୁଁ ସେ ଏପରି ଅଟଳ ହୋଇ ନାହାଁନ୍ତି, ବରଂ ତାଙ୍କ ସମ୍ମୁଖରେ ଥିବା ଦ୍ୱୈତବାଦୀତାର ମିଥ୍ୟା ଧାରଣାରୁ ନିଜକୁ ମୁକ୍ତ କରିପାରିନଥିବା କିଶୋର ବୟସର ଶିଷ୍ୟମାନଙ୍କ ପାଇଁ ଏପରି କରିଛନ୍ତି। ଶିଷ୍ୟମାନଙ୍କୁ ପୂର୍ଣ୍ଣାଙ୍ଗ କରିବାରେ

ଗୁରୁଙ୍କ ଆଗ୍ରହ ନେଇ ସେ ସେମାନଙ୍କଠାରୁ ବହୁବିଧ ଧାରଣାର ଶେଷ ଧୂଳି ଟିକକ ଝାଡ଼ି ଦେଉଛନ୍ତି ।

ଅଧିକ ପ୍ରାଧାନ୍ୟ ଲାଭ କରିଥିବା ଶ୍ଳୋକମାନଙ୍କ ମଧ୍ୟରେ ଏହି ଶ୍ଳୋକଟି ଦ୍ୱିତୀୟ । ବିଷୟଜଗତ କଳ୍ପନା ଜଗତ ପରି ଅବାସ୍ତବ ବୋଲି ଏଠାରେ ଆଲୋଚନାରେ ଦେଖାଇ ଦେଇଛନ୍ତି । ଉଭୟ ବାହ୍ୟ ବିଷୟଜଗତ ଏବଂ ଅନ୍ତରର କଳ୍ପନା ଜଗତ ମିଥ୍ୟା ଭ୍ରାନ୍ତି ବୋଲି ପ୍ରମାଣ କରିବା ପରେ ଆଚାର୍ଯ୍ୟ କହିଛନ୍ତି ଯେ, ଶିଷ୍ୟମାନେ ତଥାପି ଯଦି ଭ୍ରାନ୍ତ କଳ୍ପନାର ଅନୁସରଣ କରିବାର ଚେଷ୍ଟା କରନ୍ତି, ତାହାହେଲେ ସେମାନେ ଅସମ୍ଭବର ଅନ୍ୱେଷଣ କରିବେ ଏବଂ ହାସ୍ୟାସ୍ପଦ କଥା ପ୍ରତିଷ୍ଠା କରିବାର ଚେଷ୍ଟା କରିବେ । ଆକାଶରେ ଚଢ଼େଇଙ୍କ ପାଦଚିହ୍ନ ଖୋଜିବା ପରି ତାଙ୍କର ଚେଷ୍ଟା ନିରର୍ଥକ ।

**ଅଜାତଂ ଜାୟତେ ଯସ୍ମାତ୍ ଅଜାତିଃ ପ୍ରକୃତିସ୍ତତଃ ।**

**ପ୍ରକୃତେରନ୍ୟଥାଭାବୋ ନ କଥଂଚିଦ୍ ଭବିଷ୍ୟତି ।।୨୯।।**

ଅଜାତମ୍ = ଅଜାତ, ଜାୟତେ = ଜନ୍ମ ନେଇଛି, ଯସ୍ମାତ = ଯାହାଠାରୁ, ଅଜାତିଃ = ସର୍ବଦା ଅଜାତ, ପ୍ରକୃତିଃ = ପ୍ରକୃତି, ସ୍ୱଭାବ; ତତଃ = ତେଣୁ, ପ୍ରକୃତେଃ = ସେହି ସ୍ୱଭାବର; ଅନ୍ୟଥା ଭାବଃ = ନିଜ ସ୍ୱରୂପରୁ ଭିନ୍ନ, କଥଂଚିତ୍ = ଯେ କୌଣସି ଭାବରେ, ନ ଭବିଷ୍ୟତି = କଦାପି ସମ୍ଭବ ନୁହେଁ ।

*ବିବାଦୀଙ୍କ ମତରେ ଅଜନ୍ମା ଜନ୍ମ ନେଇଛି । 'ତାହା'ଙ୍କର ସ୍ୱରୂପ ହେଲା କେବେ ବି ଜନ୍ମ ନ ନେବା । ଗୋଟିଏ ପଦାର୍ଥ ଯାହା, ତାହାଠାରୁ ସ୍ୱତନ୍ତ୍ର କିଛି ହେବା କଦାପି ସମ୍ଭବ ନୁହେଁ ।।୨୯।।*

ପୂର୍ବରୁ ଯାହା କିଛି କୁହାଯାଇଛି, ସେହି କାରଣରୁ ବ୍ରହ୍ମ ଏକ ଏବଂ ଅଜାତ ବୋଲି ଅକାଟ୍ୟ ଭାବରେ ସାବ୍ୟସ୍ତ । ହେତୁବାଦୀତାର ନିୟମ ଅଜ୍ଞ ମନର ଏକ ହାସ୍ୟାସ୍ପଦ ଅନ୍ଧବିଶ୍ୱାସ ବୋଲି ଶ୍ଳୋକଟି ହେଉଛି ଗୌଡ଼ପାଦଙ୍କ ମତବାଦର ସାର-ସଂକ୍ଷେପ । ଅଜନ୍ମା ମନ ବ୍ରହ୍ମ ବ୍ୟତୀତ ଅନ୍ୟ କିଛି ନୁହେଁ । ତାହା ଜନ୍ମ ନେଇଛି ବୋଲି ବିବାଦୀମାନେ କଳ୍ପନା କରନ୍ତି । ତେଣୁ ସେମାନଙ୍କ ମତରେ, ଚିର ଅଜନ୍ମା ଜନ୍ମ ନେଇଛି ।

ପୂର୍ବରୁ ଆମେ ଦେଖିଛେ ଯେ, ପ୍ରକୃତରେ କୌଣସି ପଦାର୍ଥ ସ୍ୱରୂପର ପରିବର୍ତ୍ତନ କରି ତାର ଅଭିନ୍ନତା ରକ୍ଷା କରି ପାରିବ ନାହିଁ ଗରମ ବରଫ ମିଳିବ ନାହିଁ, ଥଣ୍ଡା ନିଆଁ ଅସମ୍ଭବ । ସେହିପରି ଅଜାତରୁ କିଛି ଜନ୍ମ ନେବା ହେଉଛି ଏପରି ଏକ ହାସ୍ୟାସ୍ପଦ ପ୍ରସଙ୍ଗ, ବିଜ୍ଞ ଦାର୍ଶନିକ ତାହା ଧାରଣା ମଧ୍ୟ କରି ପାରିବେ ନାହିଁ ।

**ଅନାଦେରନ୍ତବତ୍ତ୍ୱଂ ଚ ସଂସାରସ୍ୟ ନ ସେତ୍ସ୍ୟତି।**
**ଅନନ୍ତତା ଚାଽଦିମତୋ ମୋକ୍ଷସ୍ୟ ନ ଭବିଷ୍ୟତି ॥୩୦॥**

ଅନାଦେ = ଅନାଦିର, ଅନ୍ତ-ବତ୍ତ୍ୱଂ ଚ = ଏବଂ ସମାପ୍ତି ପରି, ସଂସାରସ୍ୟ = ସଂସାରର, ନ ସେତ୍ସ୍ୟତି = ସାବ୍ୟସ୍ତ କରିହେବ ନାହିଁ, ଅନନ୍ତତା = ଅନନ୍ତତା, ଚ = ଏବଂ, ଆଦିମତଃ = ଯାହାର ଆଦି (ଆରମ୍ଭ) ଅଛି; ମୋକ୍ଷସ୍ୟ = ମୋକ୍ଷର, ନ ଭବିଷ୍ୟତି = ହେବ ନାହିଁ।

*ବିବାଦୀମାନଙ୍କ ମତାନୁଯାୟୀ - ଜଗତକୁ ଅନାଦି ବୋଲି ସ୍ୱୀକାର କଲେ ଏହା ନଶ୍ୱର ହୋଇପାରିବ ନାହିଁ। ମୋକ୍ଷ ଆରମ୍ଭ ରହିତ ଓ ତତ୍ ସଙ୍ଗେସଙ୍ଗେ ମଧ୍ୟ ଅବିନଶ୍ୱର ହୋଇପାରିବ ନାହିଁ। ॥୩୦॥*

ଆତ୍ମା ପ୍ରକୃତିରେ ବନ୍ଧନ ଏବଂ ମୁକ୍ତିର ଅଧୀନ ବୋଲି ଯେଉଁମାନେ ମନେ କରନ୍ତି ଗୌଡ଼ପାଦ ଏଠାରେ ସେମାନଙ୍କର ଅନ୍ୟ ଏକ ଦୋଷ ଦର୍ଶାଉଛନ୍ତି। ଜଗତ, ଅର୍ଥାତ ଆତ୍ମାଙ୍କର ବନ୍ଧନ ଅବସ୍ଥା ଯଦି ଅନାଦି ବା ତାର ନିର୍ଦ୍ଦିଷ୍ଟ ଅତୀତ ନାହିଁ, ତେବେ ତର୍କ ଦ୍ୱାରା ତାର ସମାପ୍ତି ସାବ୍ୟସ୍ତ କରିହେବ ନାହିଁ, କାରଣ ଯାହା ଅନାଦି, ତାହା ଅନନ୍ତ ମଧ୍ୟ ହେବ। ପୁନଶ୍ଚ ମୋକ୍ଷରେ ଯଦି ଏକ ଆଦି ଅଛି, ତେବେ ଏହା ଏକ ସସୀମ ଅନୁଭୂତି ହେବ। ଜଣେ ମୋକ୍ଷ ଲାଭ କଲାପରେ ପୁଣି ଜନ୍ମ-ମୃତ୍ୟୁ ର ଚକ୍ରରେ ନିଶ୍ଚୟ ପଡ଼ିଯିବ। ତେବେ ଏହା ଦର୍ଶନର ଲକ୍ଷ୍ୟ ଏବଂ ଲକ୍ଷ୍ୟସ୍ଥଳକୁ ବିଭ୍ରାନ୍ତ କରିଦେବ। ତେଣୁ ଜଗତ ଅନାଦିବୋଲି ସ୍ୱୀକାର କଲେ, ତାହା ସସୀମ ହୋଇ ପାରିବନାହିଁ–ଏହାକୁ ଶାଶ୍ୱତ ହେବାକୁ ହେବ। ତେବେ ନଶ୍ୱରତା ଯଦି ତୁମର ଓ ମୋର ଶାଶ୍ୱତ ଅବସ୍ଥା ହେବ, ତେବେ ଆଧାତ୍ମିକ ମାର୍ଗବୋଲି କିଛି ରହିବନାହିଁ ଯେ ଏହା ତୀର୍ଥଯାତ୍ରୀମାନଙ୍କୁ ଶାଶ୍ୱତ ସଫଳତା ଓ ଅସୀମ ପୂର୍ଣ୍ଣାଙ୍ଗତାକୁ ନେଇଯିବ। ସେହିପରି ମୋକ୍ଷର କୌଣସି ଆଦି ରହି ପାରିବ ନାହିଁ, କାରଣ ଏହାର ଆଦି ରହିଲେ ଅନ୍ତ ମଧ୍ୟ ରହିବ। ଯାହା ଜନ୍ମ ନିଏ ବା ଯାହା ତିଆରି କରାଯାଏ, ତାର ବିଲୁପ୍ତି ନିଶ୍ଚୟ ହେବ।

ସଂକ୍ଷେପରେ, ଶୁଦ୍ଧ ଯୁକ୍ତି କହିବ ଯେ ବହୁବିଧ ବିଷୟଜଗତ ହେଉଛି ମନର ଏକ କାଳ୍ପନିକ ସୃଷ୍ଟି ମାତ୍ର, ଏବଂ ମନାତୀତ ହେବାର ଅନୁଭୂତି ବ୍ୟକ୍ତିର ଆତ୍ମାନୁଭୂତି ହେବ। ଆତ୍ମାନୁଭୂତି କୌଣସି ନୂତନ ଆବିଷ୍କାର ନୁହେଁ, ବରଂ ଏହା ହେଉଛି ତାର ଶାଶ୍ୱତ ସ୍ୱରୂପର ପୁନରାବିଷ୍କାର।

ସ୍ୱପ୍ନାବସ୍ଥାରେ ସ୍ୱପ୍ନାନୁଭୂତି ଏତେ ବାସ୍ତବ ମନେ ହେଲେ ବି, ଦାରିଦ୍ର୍ୟ ବିଷୟରେ ଜଣେ ସ୍ୱପ୍ନ ଦେଖିଲେ ନିଜେ ବାସ୍ତବରେ ଦରିଦ୍ର ହୋଇଯିବ ନାହିଁ। ମଣିଷର ଆତ୍ମ-ବିସ୍ମରଣ ଯୋଗୁଁ ଏବଂ ନିଜର ମାନସିକ ଚିନ୍ତା ସହିତ ଭୂଲ ତାଦାତ୍ମ୍ୟ ଯୋଗୁଁ ସ୍ୱପ୍ନ ଆସିଥାଏ। ବ୍ୟକ୍ତି ଯାହା, ଜାଗ୍ରତ ହେବାକ୍ଷଣି ତାହା ଭାବରେ ଜାଣିପାରେ ଏବଂ ସ୍ୱପ୍ନର ଦରିଦ୍ର ବ୍ୟକ୍ତିଟିକୁ ବର୍ତ୍ତମାନ ହସରେ ଉଡ଼ାଇ ଦିଏ।

ସେହିପରି, ଜଗତ ଏବଂ ତାର ବହୁବିଧତା, ମିଥ୍ୟା ଧାରଣାର ଅନୁଭୂତି, ନଶ୍ୱରତା ଇତ୍ୟାଦି ହେଉଛି ମନ ଏବଂ ଅନ୍ୟାନ୍ୟ ସ୍ଥୂଳ କୋଷ ଆତ୍ମବିସ୍ମୃତି ସହିତ ତାଦାତ୍ମ୍ୟ କରୁଥିବା ଆତ୍ମାଙ୍କର ସ୍ୱପ୍ନାନୁଭୂତି କେବଳ। ସଚେତନ ଭାବରେ ଚେଷ୍ଟା କରି, ଶରୀର-ମନ-ଏବଂ ବୁଦ୍ଧିରୁ ନିଜକୁ ଅପସାରଣ କଲେ ଆତ୍ମା ନିଜକୁ ଆତ୍ମା ବ୍ୟତୀତ ଅନ୍ୟ କିଛି ନୁହେଁ ଭାବରେ ଚିହ୍ନିପାରେ ଏବଂ ଏହି ପ୍ରକୃତ ଜାଗ୍ରତ ଅବସ୍ଥାରେ, ମୋକ୍ଷର ପ୍ରକୃତ ମୁହୂର୍ତ୍ତରେ, ବନ୍ଧନ ଅବସ୍ଥାର ଜଗତ ଶୂନ୍ୟ ବ୍ୟତୀତ ଅନ୍ୟ କିଛି ନୁହେଁ ବୋଲି ବୁଝିପାରେ।

**ଆଦାବନ୍ତେ ଚ ଯନ୍ନାସ୍ତି ବର୍ତ୍ତମାନେଽପି ତତ୍ତଥା।**

**ବିତଥୈଃ ସଦୃଶାଃ ସନ୍ତୋଽବିତଥା ଇବ ଲକ୍ଷିତାଃ ।।୩୧।।**

ଆଦୌ = ଆରମ୍ଭରେ, ଚ ଅନ୍ତେ = ଏବଂ ଶେଷରେ, ଯତ୍ ନାସ୍ତି = ଯାହା ନାହିଁ, ବର୍ତ୍ତମାନେ ଅପି = ମଧ୍ୟବର୍ତ୍ତୀ-କାଳୀନ ସମୟରେ ମଧ୍ୟ, ତତ୍ = ତାହା, ତଥା = ସେହିପରି, ବିତଥୈଃ = ଅସତ୍ୟ ବିଷୟ ସହିତ, ସଦୃଶାଃ = ସେମାନେ ଏକାପରି, ସନ୍ତଃ = ହେଲେ ମଧ୍ୟ, ଇବ ଅବିତଥାଃ = ବାସ୍ତବ ଯେପରି, ଲକ୍ଷିତାଃ = ବିଚାର କରାଯାଏ।

*ଯାହା ଆରମ୍ଭରେ ନଥିଲା ଏବଂ ଶେଷରେ ନାହିଁ, ବର୍ତ୍ତମାନ ଅବସ୍ଥାରେ ମଧ୍ୟ ତାହା ନ ରହିବା କଥା। ଆମେ ଦେଖୁଥିବା ବିଷୟ ହେଉଛି ମିଥ୍ୟା, ତେବେ ବି ତାହା ସତ୍ୟ ବୋଲି ବିଚାର କରାଯାଏ ।।୩୧।।*

**ସପ୍ରୟୋଜନତା ତେଷାଂ ସ୍ୱପ୍ନେ ବିପ୍ରତିପଦ୍ୟତେ ।**
**ତସ୍ମାଦାଦ୍ୟନ୍ତବତ୍ତ୍ୱେନ ମିଥ୍ୟୈବ ଖଲୁ ତେ ସ୍ମୃତାଃ ॥୩୨॥**

ସପ୍ରୟୋଜନତା = କିଛି ଉଦ୍ଦେଶ୍ୟ ସାଧନ କରେ, ତେଷାମ୍ = ସେହିସବୁ ବିଷୟମାନଙ୍କର (ଜାଗ୍ରତ ଅବସ୍ଥାର), ସ୍ୱପ୍ନେ = ସ୍ୱପ୍ନରେ, ବିପ୍ରତିପଦ୍ୟତେ = ଖଣ୍ଡନ କରାଯାଏ, ତସ୍ମାତ୍ = ତେଣୁ, ଆଦି ଅନ୍ତଃ ବତ୍ ତ୍ୱେନ = ସେମାନଙ୍କର ଆରମ୍ଭ ଏବଂ ଶେଷ ଥିବାରୁ , ମିଥ୍ୟା ଏବ = କେବଳ ମିଥ୍ୟା, ତେ = ସେମାନେ, ଖଲୁ = ପ୍ରକୃତରେ, ସ୍ମୃତାଃ = ବିଚାର କରାଯାଏ, ଗ୍ରହଣ କରାଯାଏ ।

*ତର୍କ ହେଲା- ଜାଗ୍ରତ ଅବସ୍ଥାର ବିଷୟମାନେ ଯେଉଁ କେତେଟା ଉଦ୍ଦେଶ୍ୟ ପୂରଣ କରନ୍ତି, ସ୍ୱପ୍ନରେ ତାହା ଖଣ୍ଡନ କରାଯାଏ । ସେମାନଙ୍କର ଏକ ଆଦି ଏବଂ ଅନ୍ତ ଥିବାରୁ (ବିବେକ ଦ୍ୱାରା) ସେଗୁଡ଼ିକ ମିଥ୍ୟା ବୋଲି ନିଃସନ୍ଦେହ ଗ୍ରହଣ କରାଯାଏ ॥୩୨॥*

ପୂର୍ବରୁ ବୈତଥ୍ୟ ପ୍ରକରଣ (୨ୟ ଅଧ୍ୟାୟ, ୬ ଏବଂ ୭) ରେ ଦୁଇଟି ଶ୍ଳୋକର ବ୍ୟାଖ୍ୟା କରାଯାଇଛି । ବହୁବିଧ ଜଗତ କିପରି ମିଥ୍ୟା ଏବଂ ବାସ୍ତବ ନୁହେଁ ବୋଲି ବ୍ୟାଖ୍ୟା କରିବା ପାଇଁ ଏଠାରେ ପୁଣି ଯଥାର୍ଥ ଭାବରେ ତା'ର ଉଦ୍ଧାର କରା ଯାଇଛି । ବିଚାର ବୁଦ୍ଧି ନଥିବା ଜଣେ ଲୋକ ଯାହା ଦେଖେ, ତତ୍କ୍ଷଣାତ୍ ତାହା ବିଶ୍ୱାସ କରି ପକାଏ । କିନ୍ତୁ ଚିନ୍ତାଶୀଳ ବ୍ୟକ୍ତି ସିଧାସଳଖ ଦେଖିଲେ ମଧ୍ୟ ସର୍ବଦା ପ୍ରଶ୍ନକରେ । ଜଣେ ଦାର୍ଶନିକର ଭାବପ୍ରବଣତା ବା ଆବେଗ ନାହିଁ । ସତ୍ୟର ଆବିଷ୍କାର ପାଇଁ ତାଙ୍କର ପ୍ରଚେଷ୍ଟା ସର୍ବଦା କଠୋର ଏବଂ ସେହି ପ୍ରଗାଢ ପ୍ରଚେଷ୍ଟାରେ "ଦେଖୁଥିବା ବିଷୟ"ର ନିକଟବର୍ତ୍ତୀ ହେଉଥିଲେ ମଧ୍ୟ ସେ ତାଙ୍କର ଅନୁସରଣର ଅନ୍ତ କରି ଦିଅନ୍ତି ନାହିଁ ଏବଂଏହାର ଯଥାର୍ଥତା ସମ୍ବନ୍ଧରେ ପ୍ରଶ୍ନ ଉଠାନ୍ତି ।

ଅନେକ ସମୟରେ ସେ ନ ଥିବା ଜିନିଷ ମଧ୍ୟ ଦେଖି ପାରନ୍ତି, ଏହାର ଅନେକ ଉଦାହରଣ ଅଛି, ମରୀଚିକା ଜଳ, ରଜ୍ଜୁରେ ସର୍ପ, ଖମ୍ବର ଭୂତ- ଏହା ମଧ୍ୟରୁ କେତୋଟି ମାତ୍ର । ଆମେ ସେସବୁ ଦେଖୁଛୁ ବୋଲି ତାହାକୁ ସତ୍ୟବୋଲି ବିଶ୍ୱାସ କରିବା କଥା ନୁହେଁ । ମୋ ସ୍ୱପ୍ନରେ ମୁଁ ମୋର ରାଜ୍ୟାଭିଷେକରେ ଯୋଗ ଦେଇପାରେ, କିନ୍ତୁ ନିଦ ଭାଙ୍ଗିବା ପରେ ମୁଁ ଜଣେ ରାଜା ପରି ବ୍ୟବହାର କଲେ ମୋ ଜୀବନର ବାକି ସମୟଟା ଦୁଃଖରେ ବିତିବ । ବିଛଣାକୁ ଯିବା ପୂର୍ବରୁ ରାଜପଦ ନଥିଲା, ନିଦ ଭାଙ୍ଗିବା ପରେ ମଧ୍ୟ ଏହା ରହିଲା ନାହିଁ । ଯାହା ଆରମ୍ଭରେ ଏବଂ ଅନ୍ତରେ ମଧ୍ୟ ନଥିଲା ତାହା ମଧ୍ୟବର୍ତ୍ତୀ ସମୟରେ ଯଦି ଥାଏ, ଜ୍ଞାନୀ ଏବଂ ବିବେକବାନ ବୁଦ୍ଧି ତାକୁ ମିଥ୍ୟା ବୋଲି କହିବ ।

ସେହିପରି, ବର୍ତ୍ତମାନ ଦେଖା ଯାଉଥିବା ଜଗତ ମନ ଏବଂ ବୁଦ୍ଧିର ଅତୀତ ହେଲେ ଅପସରି ଯିବ। ଆତ୍ମାନୁଭୂତି ସମ୍ପନ୍ନ ବିଜ୍ଞ ବ୍ୟକ୍ତି ଏହା ଏକ ମିଥ୍ୟା ଏବଂ ଭ୍ରାନ୍ତି ବୋଲି ପ୍ରକୃତରେ ବୁଝି ପାରନ୍ତି।

**ସର୍ବେ ଧର୍ମା ମୃଷା ସ୍ୱପ୍ନେ କାୟସ୍ୟାନ୍ତର୍ନିଦର୍ଶନାତ୍ ।**

**ସଂବୃତେଽସ୍ମିନ୍-ପ୍ରଦେଶେ ବୈ ଭୂତାନାଂ ଦର୍ଶନଂ କୁତଃ ॥୩୩॥**

ସର୍ବେ ଧର୍ମାଃ = ଅନୁଭବ କରୁଥିବା ସମସ୍ତ ବିଷୟ, ମୃଷା = ସତ୍ୟ ନୁହଁନ୍ତି, ଅସତ୍ୟ; ସ୍ୱପ୍ନେ = ସ୍ୱପ୍ନରେ, ଅନ୍ତଃ କାୟସ୍ୟ = ଶରୀର ଭିତରେ, ନିଦର୍ଶନାତ୍ = ଥିବା ପରି ଦେଖା ଯାଆନ୍ତି; ସଂବୃତେ = ସସୀମ, ଅସ୍ମିନ୍ = ଏହା ଭିତରେ, ପ୍ରଦେଶେ = ସ୍ଥାନରେ, ବୈ = ବାସ୍ତବରେ, ଭୂତାନାମ୍ = ସେହି (ବିଷୟ) ସବୁ; ଦର୍ଶନମ୍ = ଦେଖିବାକୁ, କୁତଃ = କିପରି ସମ୍ଭବ।

*ସ୍ୱପ୍ନରେ ଯାହାସବୁ ଅନୁଭୂତ ହୁଏ, ତାହା ଅସତ୍ୟ, କାରଣ ସେସବୁ ଶରୀର ଭିତରେ ଦେଖାଯାଏ। ଏହି ସସୀମ ସ୍ଥାନରେ ରହିଥିବା ପରି ଦେଖାଯାଉଥିବା ଜିନିଷକୁ ବାସ୍ତବରେ ଦେଖି ପାରିବା ସମ୍ଭବ ହେବ କିପରି ? ॥୩୩॥*

ପୂର୍ବରୁ (୪ର୍ଥ, ୨୫) ଏହି ଶ୍ଳୋକର ବ୍ୟାଖ୍ୟା କରାଯାଇଛି, କିନ୍ତୁ ଏହାର ଅନ୍ତର୍ଗତ ବିଷୟର ବିସ୍ତୃତ ତାତ୍ପର୍ଯ୍ୟ ବୁଝିବା ପାଇଁ ସେହି ପ୍ରସଙ୍ଗରେ ଏଠାରେ ପୁଣି ଉଦ୍ଧାର କରାଯାଇଛି। ସାଧାରଣତଃ, ସ୍ୱପ୍ନ ଆମ ଭିତରେ ହିଁ ଅନୁଭବ କରାଯାଇଥାଏ ଏବଂ ସ୍ୱପ୍ନରେ ଅନୁଭୂତ ବିଷୟ ପାଇଁ ସ୍ଥାନ ନ ଥାଏ। ତେଣୁ ଭିତରେ ସ୍ଥାନାଭାବ ଯୋଗୁଁ, ଦେଖା ଯାଉଥିଲେ ମଧ୍ୟ, ସ୍ୱପ୍ନ ଜଗତର ବିଷୟ ପ୍ରକୃତରେ ସେଠାରେ ନଥାଏ। ଏହା ଏକ ଭ୍ରାନ୍ତ ଧାରଣା କେବଳ।

ସ୍ୱପ୍ନର ଅନୁଭୂତି ସତ୍ୟ ବୋଲି ଆମେ କାହିଁକି ଗ୍ରହଣ କରିବା ନାହିଁ, ପରବର୍ତ୍ତୀ ଶ୍ଳୋକରେ ଗୌଡ଼ପାଦ ସେଥିପାଇଁ ଅଧିକ ତର୍କ କରିଛନ୍ତି। ସ୍ୱପ୍ନ-ଜଗତ ସତ୍ୟ ବୋଲି ଭାରତର କେତେକ ଶ୍ରେଣୀର ଦର୍ଶନ ତଥାପି ବିଶ୍ୱାସ କରନ୍ତି। ଏହି ଶ୍ଳୋକ ସେମାନଙ୍କ ପାଇଁ ଉତ୍ତର। ସ୍ୱପ୍ନ ସତ୍ୟ ବୋଲି ବିଶ୍ୱାସ କରୁଥିବା ଲୋକମାନେ କହନ୍ତି ଯେ ସ୍ୱପ୍ନଦ୍ରଷ୍ଟା ସ୍ୱପ୍ନ ଦେଖୁଥିବା ପର୍ଯ୍ୟନ୍ତ ସ୍ୱପ୍ନ ସତ୍ୟ ହୋଇଥାଏ। ପରବର୍ତ୍ତୀ ତର୍କ ଏହି ଦାବୀକୁ ମିଥ୍ୟାବୋଲି ପ୍ରକାଶ କରେ।

**ନ ଯୁକ୍ତଂ ଦର୍ଶନଂ ଗତ୍ୱା କାଲସ୍ୟାନିୟମାଦ୍‌ଗତୌ ।**
**ପ୍ରତିବୁଦ୍ଧଶ୍ଚ ବୈ ସର୍ବସ୍ତସ୍ମିନ୍-ଦେଶେ ନ ବିଦ୍ୟତେ ॥୩୪॥**

ନ ଯୁକ୍ତମ୍ = ସମ୍ଭବ ନୁହେଁ, ଦର୍ଶନମ୍ = ଦେଖିବା, ଅନୁଭବ କରିବା; ଗତ୍ୱା = ଯାଇ, କାଲସ୍ୟ = କାଳର, ସମୟର; ଅନିୟମାତ୍ = ପ୍ରତିବନ୍ଧ ଯୋଗୁଁ, ଗତୌ = ଯିବା ସମ୍ବନ୍ଧରେ, ପ୍ରତିବୁଦ୍ଧଃ = ଜାଗ୍ରତ ହେବା ପରେ, ଚ = ପୁନଶ୍ଚ, ନ ବୈ ସର୍ବଃ = କୌଣସିଟି ନୁହେଁ; ତସ୍ମିନ୍ ଦେଶେ = ସେହି (ସ୍ୱପ୍ନର) ଯାଗାରେ; ବିଦ୍ୟତେ = ଥାଏ।

*ଏହା ସୀମିତ ସମୟର ଯାତ୍ରା ହୋଇଥିବାରୁ ସ୍ୱପ୍ନାଦ୍ରଷ୍ଟା ଯାଇ ସ୍ୱପ୍ନ ବିଷୟର ଅନୁଭୂତି ଲାଭ କରିବା ସମ୍ଭବ ନୁହେଁ। ପୁନଶ୍ଚ ଜାଗ୍ରତ ହେବା ପରେ, ସେ ଯେଉଁଠାରେ ଥିଲା ବୋଲି ସ୍ୱପ୍ନରେ ଦେଖିଥାଏ, ସେଠାରେ ସେ ନଥାଏ ॥୩୪॥*

ସ୍ୱପ୍ନ ବାସ୍ତବ ହୋଇ ପାରିବ ନାହିଁ ବୋଲି ପ୍ରମାଣ କରିବାକୁ ଏଠାରେ ଆଉ ଦୁଇଟି ତର୍କ ଯୋଗ କରାଯାଇଛି। ବିରୋଧୀ ମାନେ ଯୁକ୍ତି କରନ୍ତି ଯେ, ସ୍ୱପ୍ନରେ ସ୍ୱପ୍ନଦ୍ରଷ୍ଟା ଶରୀର ତ୍ୟାଗ କରି ଅନୁଭୂତିର ସ୍ଥାନକୁ ଯାଏ ଏବଂ ବିଷୟର ଉପଭୋଗ କରେ। ତେଣୁ ଏଠି, ଭାରତରେ ନିଜର ଆରାମଦାୟକ ଶୋଇବା ଘରେ ଜଣେ ତାର ଆମେରିକୀୟ ବନ୍ଧୁଙ୍କୁ ଏବଂ ନିଉୟର୍କରେ ତାଙ୍କର ସମାଜକୁ ସ୍ୱପ୍ନରେ ଦେଖିପାରେ। ଏପରି ବିଶ୍ୱାସ କରୁଥିବା ଲୋକଙ୍କ ପାଇଁ ସ୍ୱପ୍ନରେ ବ୍ୟକ୍ତି, ବାସ୍ତବରେ ସେହି ଦୂରତ୍ୱ ଅତିକ୍ରମ କରି ଆମେରିକାରେ ଥିବା ଲୋକଙ୍କର ସଂସ୍ପର୍ଶରେ ଆସିବାର ଅନୁଭୂତି ଲାଭ କରେ। ଏହା ଯୁକ୍ତିସଂଗତ ବିଚାରର ବିରୁଦ୍ଧାଚରଣ କରେ, କାରଣ ସେଠିକୁ ଯିବା ଆସିବାରେ ଯେଉଁ ସମୟ ଲାଗିବ, ତାହା ହାସ୍ୟାସ୍ପଦଭାବେ ସଂକ୍ଷିପ୍ତ । ସ୍ୱପ୍ନଦ୍ରଷ୍ଟାର ପ୍ରିୟଜନ ତାକୁ ଛୁଇଁ ଦେବାକ୍ଷଣି ତାର ନିଦ ଭାଙ୍ଗିଯାଏ ଏବଂ ସେ କହେ ଯେ, ଛୁଇଁ ଦେଇ ତାକୁ ହଠାତ୍ ଉଠାଇ ଦେବାବେଳକୁ ସ୍ୱପ୍ନରେ ସେ ଆମେରିକା ଯାଇଥିଲା ଏବଂ ସ୍ୱପ୍ନରେ ସେଠିକାର ଅନୁଭୂତି ଲାଭ କରୁଥିଲା।

ଏଇ ଅବିଶ୍ୱସନୀୟ ସଂକ୍ଷିପ୍ତ ସମୟରେ ନିଜ ଶୋଇବା ଘରେ ପହଞ୍ଚିବା ପାଇଁ କେହି ହଜାର ହଜାର ମାଇଲ ଯାତ୍ରା କରି ଫେରି ପାରିବ ନାହିଁ। ତେଣୁ ବାସ୍ତବରେ କୌଣସି ଯାତ୍ରା ହୋଇ ନଥିବ। ଅତି ବେଶୀରେ ଏକଦା ହୋଇଥିବା ଏବଂ ସ୍ମୃତିରେ ଛାପ ହୋଇ ରହିଯାଇଥିବା ଅନୁଭୂତିକୁ ମାନସିକ ସ୍ତରରେ ସେ ଆଉ ଥରେ ଅନୁଭବ କରୁଥିବ।

ପୁନଶ୍ଚ, ସୁଦୂରବର୍ତ୍ତୀ ଅପୂର୍ବ ଦେଶରେ ବିଭିନ୍ନ ପ୍ରକାର ବିଷୟର ଅନୁଭୂତି ଲାଭ କରିବା ପାଇଁ ସ୍ୱପ୍ନଦ୍ରଷ୍ଟା ଯଦି ପ୍ରକୃତରେ ସ୍ଥାନାନ୍ତର ଗମନ କରୁଥାନ୍ତା, ତେବେ ମାନବ ଇତିହାସରେ ଏପର୍ଯ୍ୟନ୍ତ ଘଟି ନଥିବା ସ୍ୱପ୍ନର ନୂତନ ପରିବେଶରେ ତାର ନିଦ ଭାଙ୍ଗନ୍ତା। ସ୍ୱପ୍ନଦ୍ରଷ୍ଟାର ନିଦ ଯେତେବେଳେ ଭାଙ୍ଗେ, ତା ନିଜ ବିଛଣାରେ ହିଁ ଭାଙ୍ଗେ। ନିଦ ଭାଙ୍ଗିବାବେଳକୁ ସେ ଯେଉଁ ଯାଗାର ସ୍ୱପ୍ନ ଦେଖୁଥିଲା, ସେଇ ଯାଗାରେ କାହାର ଶୋଇବା ଘରେ ବା ବସିବା ଘରେ ତାର ନିଦ ଭାଙ୍ଗିବାର ଘଟଣା କେବେ ବି ଘଟି ନାହିଁ। ଏହି ସବୁ ଅନୁଭୂତି ଏବଂ ପର୍ଯ୍ୟବେକ୍ଷଣକୁ ଯୁକ୍ତିଯୁକ୍ତ ଭାବରେ ବିଚାର କଲେ ଆମର ସିଦ୍ଧାନ୍ତ ହେବ– ସ୍ୱପ୍ନଦ୍ରଷ୍ଟା କେବେ ବି ସ୍ୱପ୍ନଯାତ୍ରା କରି ନାହିଁ।

**ମିତ୍ରାଦ୍ୟୈଃ ସହ ସଂମନ୍ତ୍ର୍ୟ ସଂବୁଦ୍ଧୋ ନ ପ୍ରପଦ୍ୟତେ।**

**ଗୃହୀତଂ ଚାପି ଯତ୍କିଞ୍ଚିତ୍ ପ୍ରତିବୁଦ୍ଧୋ ନ ପଶ୍ୟତି ।।୩୫।।**

ସହ ମିତ୍ର ଆଦ୍ୟୈଃ = ବନ୍ଧୁ ଇତ୍ୟାଦିଙ୍କ ଗହଣରେ, ସଂମ୍ମନ୍ତ୍ର୍ୟ = କଥାବାର୍ତ୍ତା କରିବା ପରେ, ସଂବୁଦ୍ଧଃ = ନିଦ ଭାଙ୍ଗିବା ପରେ, ନ ପ୍ରପଦ୍ୟତେ = ମନେ ରଖେ ନାହିଁ, ମିଥ୍ୟା ସ୍ୱରୂପ ବୁଝିପାରେ; ଗୃହୀତମ୍ = ତାର ଯାହା ଅଛି ବା ସେ ଯାହା ଲାଭ କରିଛି; ଚ ଅପି = ପୁନଶ୍ଚ, ଯତ୍ କିଞ୍ଚିତ୍ = ଯାହା କିଛି ବି, ପ୍ରତିବୁଦ୍ଧ = ନିଦ ଭାଙ୍ଗିବା ପରେ, ନ ପଶ୍ୟତି = ଦେଖେ ନାହିଁ ବା ମନେରଖେ ନାହିଁ।

*ସ୍ୱପ୍ନ ଦ୍ରଷ୍ଟାର ନିଦ ଭାଙ୍ଗିବା ପରେ, (ସ୍ୱପ୍ନ ସମୟରେ) ବନ୍ଧୁ ଇତ୍ୟାଦିଙ୍କ ସହିତ ହୋଇଥିବା କଥପୋକଥନର ଅଳୀକ ସ୍ୱରୂପ ସେ ବୁଝିପାରେ। ପୁନଶ୍ଚ (ସ୍ୱପ୍ନରେ) ସେ ଯାହା ପାଇଥାଏ, ବା ଲାଭ କରିଥାଏ, ନିଦ ଭାଙ୍ଗିବା ପରେ ସେସବୁକୁ ରଖିପାରେ ନାହିଁ ।।୩୫।।*

ପୁନଶ୍ଚ ଗୌଡ଼ପାଦ ଏହି ଶ୍ଳୋକରେ ପ୍ରମାଣ କରିବାକୁ ଚାହୁଁଛନ୍ତି ଯେ ସ୍ୱପ୍ନରେ ଯାତ୍ରା ନାହିଁ ବା ବ୍ୟକ୍ତି କିମ୍ବା ବସ୍ତୁ ସହିତ ବାସ୍ତବ ସମ୍ପର୍କ ନାହିଁ। ତେଣୁ ସ୍ୱପ୍ନ ହେଉଛି ମନରେ ଥିବା ଛାପର ଅଳୀକ ଅନୁଭୂତି। ସେ କହୁଛନ୍ତି ଯେ, ବନ୍ଧୁମାନଙ୍କ ସହିତ ଦେଖାହେବାର ସ୍ୱପ୍ନ ଦେଖି ନିଦ ଭାଙ୍ଗିବା ପରେ ସେ ସବୁ ମିଥ୍ୟା ବୋଲି ଅନୁଭବ କରି ହୁଏ। ତାର କୌଣସି ବନ୍ଧୁ ତା'ପାଖକୁ ଆସି ସେ ସ୍ୱପ୍ନରେ ଦେଖିଥିବା କଥାବାର୍ତ୍ତା ଚାଲୁ ରଖି ପାରିବେ ନାହିଁ। ସ୍ୱପ୍ନରେ ମୋର ବନ୍ଧୁ ସହିତ ସ୍ୱାକ୍ଷରିତ ହୋଇଥିବା ଚୁକ୍ତି ଏକ ପ୍ରମାଣସିଦ୍ଧ ଦଲିଲ ନୁହେଁ। ବାହା ହେବି ବୋଲି ଗୋଟିଏ ଝିଅକୁ ସ୍ୱପ୍ନରେ ଦେଇଥିବା ପ୍ରତିଶ୍ରୁତି ନିଦ ଭାଙ୍ଗିବା ପରେ ରଖିବା ପାଇଁ ମୁଁ ବାଧ୍ୟ ନୁହେଁ, କାରଣ ସଂପୃକ୍ତ ବ୍ୟକ୍ତିଙ୍କ

ସହିତ ପ୍ରକୃତରେ କୌଣସି କଥାବାର୍ତ୍ତା ହୋଇ ନଥାଏ, କାରଣ ମୋ ମନ ଦ୍ୱାରା ସୃଷ୍ଟ ଜଗତରେ ହିଁ କେବଳ ଏହି ଅନୁଭୂତି ହୋଇଥାଏ।

ପୁନଶ୍ଚ ସ୍ୱପ୍ନରେ ଲାଭ କରିଥିବା ଉପହାର ଜାଗ୍ରତ ଅବସ୍ଥାର ଜୀବନକୁ କଦାପି ଧନୀ କରି ପାରିବ ନାହିଁ। ମୁଁ ସ୍ୱପ୍ନ ଦେଖୁଥିବା ବେଳେ ମୋର ସ୍ୱପ୍ନ-ରାଜା ମୋଠାରେ ଥିବା ସ୍ୱପ୍ନଦ୍ରଷ୍ଟାକୁ ଜଣେ ସ୍ୱପ୍ନ-ମନ୍ତ୍ରୀ କରିପାରେ, କିନ୍ତୁ ନିଦ ଭାଙ୍ଗିବା ପରେ, ଅନୁଭୂତିକୁ ସ୍ପଷ୍ଟ ଭାବରେ ମନେ ରଖିଥିଲେ ମଧ୍ୟ, ପାଗଳାଖାନାକୁ ଯିବାକୁ ପ୍ରସ୍ତୁତ ହୋଇ ନ ଥିଲେ, ମୁଁ ଜଣେ ମନ୍ତ୍ରୀ ପରି ବ୍ୟବହାର କରିପାରିବି ନାହିଁ।

ଏହାର ସାରବତ୍ତା ହେଲା, ସ୍ୱପ୍ନ ଥିବା ପର୍ଯ୍ୟନ୍ତ ତାହା ବାସ୍ତବ ବୋଲି ଦାବୀ କରୁଥିବା ମୁଷ୍ଟିମେୟ କେତେକଙ୍କ ପାଇଁ ଗୌଡ଼ପାଦ ସ୍ୱପ୍ନର ଅନ୍ତଃସାର ଶୂନ୍ୟତା ପ୍ରମାଣ କରିବାକୁ ଚାହୁଁଛନ୍ତି। ପୂର୍ବରୁ ଆମକୁ କୁହାଯାଇଛି ଯେ, ସ୍ୱପ୍ନ-ଜଗତ ଯେତିକି ମାତ୍ର ସତ୍ୟ, ଜାଗ୍ରତ-ଜଗତ ମଧ୍ୟ ସେତିକି ମାତ୍ର ସତ୍ୟ।

**ସ୍ୱପ୍ନେ ଚାବସ୍ତୁକଃ କାୟଃ ପୃଥଗ୍‌ଅନ୍ୟସ୍ୟ ଦର୍ଶନାତ୍ ।**
**ଯଥା କାୟ ସ୍ତଥା ସର୍ବଂ ଚିତ୍ତଦୃଶ୍ୟମବସ୍ତୁକମ୍ ॥୩୬॥**

ସ୍ୱପ୍ନେ ଚ = ସ୍ୱପ୍ନରେ, ଅବସ୍ତୁକଃ = ବାସ୍ତବ ନୁହେଁ, କାୟଃ = ଶରୀର, ପୃଥକ = ପୃଥକ, ସ୍ୱତନ୍ତ୍ର; ଅନ୍ୟସ୍ୟ = ଅନ୍ୟର (ଶରୀର); ଦର୍ଶନାତ୍ = ଦେଖାଯାଏ, ଯଥା କାୟଃ = ଯେପରି ଶରୀର, ତଥା = ସେହିପରି, ସର୍ବମ୍ ଚିତ୍ତ-ଦୃଶ୍ୟମ୍ = ଜଣାଯାଉଥିବା ପ୍ରତ୍ୟକଟି ଜିନିଷ; ଅବସ୍ତୁକମ୍ = ଅସତ୍ୟ ଅଟେ।

*ସ୍ୱପ୍ନଦ୍ରଷ୍ଟାର ଶରୀର ତାର ସ୍ୱପ୍ନ-ଶରୀରଠାରୁ ପୃଥକ୍ ଭାବରେ ବିଛଣାରେ ଶୋଇଥିବାର ଦେଖାଯାଉଥିବାରୁ ସ୍ୱପ୍ନ-ଜୀବନରେ ସକ୍ରିୟ ଭାବରେ ଭାଗ ନେଉଥିବା ଶରୀର ନିଶ୍ଚୟ ଅସତ୍ୟ ହେବ। ଶରୀର ପରି ଅନ୍ୟ ଯାହାସବୁ ସ୍ୱପ୍ନରେ ଅନୁଭବ କରାଯାଏ, ତାହା ସତ୍ୟ ନୁହେଁ ॥୩୬॥*

ଗୋଟିଏ ନଦୀରେ ପଡ଼ିଯାଇ ମୁଁ ଓଦା ହୋଇଯିବାର ଭୟଙ୍କର ଅନୁଭୂତି ମୋର ସ୍ୱପ୍ନରେ ହୋଇପାରେ, କିନ୍ତୁ ନିଦ ଭାଙ୍ଗିବା ପରେ ମୋ ଦେହରେ କେଉଁଠି ହେଲେ ବି ଟୋପାଏ ପାଣି ମୁଁ ଦେଖିବି ନାହିଁ। କେହି ମୋତେ ହତ୍ୟା କରିବାର ଅନୁଭୂତି ମୋର ସ୍ୱପ୍ନରେ ହୋଇପାରେ, କିନ୍ତୁ ନିଦ ଭାଙ୍ଗିଲେ ମୋ ଶରୀରରେ ମୁଁ ଆଞ୍ଚୁଡାଏ ଦାଗଟିଏ ବି ଦେଖିବାକୁ ପାଇବି ନାହିଁ। ତେଣୁ ସ୍ୱପ୍ନଦ୍ରଷ୍ଟାର ସ୍ୱପ୍ନ-ଶରୀରଠାରୁ ସ୍ୱତନ୍ତ୍ର ଭାବରେ

ପୃଥକ ଗୋଟିଏ ଜାଗ୍ରତ ଶରୀର ରହିଛି। ନିଦ ଭାଙ୍ଗିଲେ ଜାଗ୍ରତ ପୁରୁଷ ବୁଝିପାରେ ଯେ, ତାର ସ୍ୱପ୍ନ ଶରୀରଟି ବାସ୍ତବ ନୁହେଁ। ଶରୀର ପରି ସ୍ୱପ୍ନ-ଜଗତର ଅନ୍ୟାନ୍ୟ ସବୁ ବିଷୟ ମଧ୍ୟ ଅସତ୍ୟ, ଏକ ମିଥ୍ୟା ଉପସ୍ଥିତି ବ୍ୟତୀତ ବାସ୍ତବରେ ଅନ୍ୟ କିଛି ନୁହେଁ। ସ୍ୱପ୍ନ-ଜଗତରେ ସ୍ୱପ୍ନ-ଶରୀର ଲାଭ କରୁଥିବା ଅବାସ୍ତବ ଅନୁଭୂତି ପରି ଜାଗ୍ରତ-ଜଗତର ଶରୀର ଏବଂ ତାର ଅନୁଭୂତି ମଧ୍ୟ ଅବାସ୍ତବ -ଏହି ସାଦୃଶ୍ୟକୁ ଆମେ ସ୍ପଷ୍ଟ ଭାବେ ବୁଝିବା ପାଇଁ ଗୌଡ଼ପାଦ ଦ୍ୱିତୀୟ ଏବଂ ତୃତୀୟ ପ୍ରକରଣର ବିଷୟକୁ ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି।

**ଗ୍ରହଣାତ୍‌ଜାଗରିତବତ୍ତଦ୍ଧେତୁଃ ସ୍ୱପ୍ନ ଇଷ୍ୟତେ।**

**ତଦ୍ଧେତୁତ୍ୱାତ୍ତୁ ତସ୍ୟୈବ ସଜ୍ଜାଗରିତମିଷ୍ୟତେ ॥୩୭॥**

ଗ୍ରହଣାତ୍ = (ସ୍ୱପ୍ନରେ) ବିଷୟର ଅନୁଭୂତି; ଜାଗରିତବତ୍ = ଜାଗ୍ରତ ଅବସ୍ଥା ପରି, ତଦ୍ ହେତୁଃ = ଜାଗ୍ରତ ଅବସ୍ଥା ଯୋଗୁଁ, ସ୍ୱପ୍ନଃ = ସ୍ୱପ୍ନ, ଇଷ୍ୟତେ = ବିଚାର କରାଯାଏ, ଚିନ୍ତା କରାଯାଏ; ତଦ୍ ହେତୁତ୍ୱାତ୍ = ଏହା ସ୍ୱପ୍ନର କାରଣ ହୋଇଥିବାରୁ, ତୁ = ଯାହାହେଲେ ବି, ତସ୍ୟ ଇବ = ତା(ସ୍ୱପ୍ନଦ୍ରଷ୍ଟା) ପାଇଁ କେବଳ, ସତ୍ = ସତ୍ୟ, ଜାଗରିତମ୍ ଇଷ୍ୟତେ = ଜାଗ୍ରତ ଅବସ୍ଥାକୁ ବିଚାର କରାଯାଏ।

*ସ୍ୱପ୍ନରେ ଅନୁଭୂତ ବିଷୟ ଜାଗ୍ରତ ଅବସ୍ଥାରେ ଅନୁଭୂତ ବିଷୟ ପରି ହୋଇଥିବାରୁ ଜାଗ୍ରତ ଅବସ୍ଥାର ଅନୁଭୂତି ଯୋଗୁଁ ସ୍ୱପ୍ନର ଅନୁଭୂତି ହୋଇଥାଏ ବୋଲି ବିଚାର କରାଯାଏ। ଏହି କାରଣକୁ ବିଚାରକୁ ନେଲେ ସ୍ୱପ୍ନର ହେତୁ (କାରଣ) ହୋଇଥିବା ଜାଗ୍ରତ ଅନୁଭୂତି ହିଁ ସ୍ୱପ୍ନଦ୍ରଷ୍ଟାକୁ କେବଳ ସତ୍ୟ ପରି ମନେ ହୋଇଥାଏ ॥୩୭॥*

ଅନୁଭବକର୍ତ୍ତା ବିଷୟର ସଂସ୍ପର୍ଶରେ ଆସିଲେ ଉଭୟ ସ୍ୱପ୍ନ ଏବଂ ଜାଗ୍ରତ ଅବସ୍ଥାର ଅନୁଭୂତି ଲାଭ କରିଥାଏ। ତେଣୁ ଗୋଟିଏ ଅନୁଭୂତିର ତିନିଗୋଟି ମୌଳିକ ବିଷୟ ରହିବା କଥା। କର୍ତ୍ତା, କର୍ମ ଏବଂ ସେମାନଙ୍କର ସମ୍ପର୍କ। ସ୍ୱପ୍ନ ଜଗତ ହେଉ ବା ଜାଗ୍ରତ ଅବସ୍ଥା, ଅନୁଭୂତିର ଏହି ନିୟମ ଉଭୟଙ୍କ ପାଇଁ ପ୍ରଯୁଜ୍ୟ ଏବଂ ଏହି କାରଣରୁ ଜାଗ୍ରତ ଅବସ୍ଥା ହେତୁ ସ୍ୱପ୍ନ ହୋଇଥାଏ ବୋଲି ସ୍ଥୂଳବୁଦ୍ଧି ବିଚାରହୀନ ଭାବରେ ମତାମତ ଦେଇଥାଏ। ମୋ ପ୍ରିୟତମାର ବେକରେ ଥିବା ହାରର ପ୍ରତ୍ୟେକ ଭାଗରେ ସୁନା ଥିବାରୁ, ହାରର କାରଣ ବା ହେତୁ ସୁନା ବୋଲି ମୁଁ କହେ। ସେହିପରି କର୍ତ୍ତା-କର୍ମର ସଂପର୍କକୁ ନେଇ ସ୍ୱପ୍ନ ଅବସ୍ଥାର ଅନୁଭୂତି ହେଉଥିବାରୁ ଜାଗ୍ରତ-ଅବସ୍ଥାର ଅନୁଭୂତି ସ୍ୱପ୍ନର ହେତୁ ବୋଲି ମୁଁ କହେଁ।

ଦୁଃଖର କଥା ଯେ ଏହିପରି ମିଥ୍ୟାତର୍କକୁ ସତ୍ୟ ବୋଲି ଜାଗ୍ରତ ପୁରୁଷ ନିଶ୍ଚିତ କରେ। ଗୌଡ଼ପାଦ କହୁଛନ୍ତି, ଯଦି ସେପରି ହୋଇଥାଆନ୍ତା, ତେବେ ଜଣେ ସ୍ୱପ୍ନଦ୍ରଷ୍ଟାର ମୁହଁରେ ହିଁ ଏହି ତର୍କକୁ ଯଥାର୍ଥ କୁହାଯାଇ ପାରିବ। ସ୍ୱପ୍ନଦ୍ରଷ୍ଟା ହିଁ ସ୍ୱପ୍ନର ଅନୁଭୂତି ଲାଭ କରେ ଏବଂ ଅନୁଭବ କରୁଥିବା ସମୟରେ ଜାଗ୍ରତ ଜଗତ ସ୍ୱପ୍ନଜଗତର ହେତୁ ବୋଲି ସେ ମୁହଁ ଖୋଲି କହିପାରେ। କିନ୍ତୁ ତାହା ନ କରି ନିଦ ଭାଙ୍ଗିବା ପରେ ଜାଗ୍ରତ ପୁରୁଷ ସ୍ୱପ୍ନଦ୍ରଷ୍ଟାର ତର୍କକୁ ଦୋହରାଇବାର ମାନେ ହେଲା, ନିଜେ ଅର୍ଥହୀନ ଏକ ସ୍ୱପ୍ନରେ ବାସ କରିବା ।

ଜଣେ ସ୍ୱପ୍ନଦ୍ରଷ୍ଟା ହିଁ କେବଳ କହି ପାରିବ ଯେ ସ୍ୱପ୍ନ ଅପେକ୍ଷା ଜାଗ୍ରତ ଅବସ୍ଥା ବହୁତ ବେଶୀ ବାସ୍ତବ। ନିଜେ ଜାଗ୍ରତ ଅବସ୍ଥା ମଧ୍ୟ ମିଥ୍ୟା, ଗୋଟିଏ ଭ୍ରାନ୍ତି ଏବଂ ଏପରି ହୋଇଥିବାରୁ ସେ ନିଜ ଅପେକ୍ଷା ବାସ୍ତବ କିଛି ସୃଷ୍ଟି କରି ପାରିବ ନାହିଁ। ମରୀଚିକାର ଜଳ ନିଜେ ମିଥ୍ୟା ହୋଇଥିବାରୁ ମରୁଭୂମିର ବାଲିକୁ ଓଦା କରିପାରିବ ନାହିଁ । ଜଣେ ବନ୍ଧ୍ୟାର ପୁଅ ଇନ୍ଦ୍ରଧନୁଟିଏ ବ୍ୟବହାର କରି କୌଣସି ରାଜାକୁ ଭୟଭୀତ କରି ପାରିବ ନାହିଁ, କାରଣ ତା ସାହାଯ୍ୟରେ ସେ ଗୋଟିଏ ହେଲେ ଶର ନିକ୍ଷେପ କରି ପାରିବ ନାହିଁ।

ତେଣୁ ଜାଗ୍ରତ ଅବସ୍ଥାର ଜଗତ ନିଜେ ଏକ ଭୁଲ ଧାରଣା ହୋଇଥିବାରୁ ଆହୁରି ଅଧିକ ମିଥ୍ୟା ଅପେକ୍ଷା ଏହା ଅନ୍ୟ କିଛି ସୃଷ୍ଟି କରି ପାରିବ ନାହିଁ।

ତେଣୁ ଯେଉଁମାନେ ବିଶ୍ୱାସ କରନ୍ତି ଯେ ଜାଗ୍ରତ ଜୀବନ ହେଉଛି ସ୍ୱପ୍ନର ହେତୁ, କେବଳ 'ସ୍ୱପ୍ନ ଜଗତ'ର ଦାର୍ଶନିକମାନେ ସେମାନଙ୍କ ତର୍କକୁ ବିଶ୍ୱାସଯୋଗ୍ୟ ମନେକରିପାରନ୍ତି।

**ଉତ୍ପାଦସ୍ୟାପ୍ରସିଦ୍ଧତ୍ୱାଦଜଂ ସର୍ବମୁଦାହୃତମ୍ ।**

**ନ ଚ ଭୂତାଦଭୂତସ୍ୟ ସମ୍ଭବୋଽସ୍ତି କଥଞ୍ଚନ ॥୩୮॥**

ଉତ୍ପାଦସ୍ୟ = ସୃଷ୍ଟିଠାରୁ, ଅପ୍ରସିଦ୍ଧତ୍ୱାତ୍ = ପ୍ରମାଣ ବା ସାବ୍ୟସ୍ତ କରିହେବ ନାହିଁ, ଅଜମ୍ = ଅଜ, ସର୍ବମ୍ = ସମସ୍ତ, ଏହି ସବୁ ; ଉଦାହୃତମ୍ = ପରିଚିତ, ନ ଅସ୍ତି = ସମ୍ଭବ ନୁହେଁ, ଚ = ପୁନଶ୍ଚ, ଭୂତାତ୍ = ପ୍ରକୃତ (ସତ୍ୟ) ଜିନିଷର, ଅଭୂତସ୍ୟ = ଅପ୍ରକୃତ(ମିଥ୍ୟା) ଜିନିଷର; ସମ୍ଭବଃ = ଜନ୍ମ ହେବାକୁ ଥିବା, କଥଞ୍ଚନ = କେବେ, କଦାଚିତ୍ ।

*ସୃଷ୍ଟି ବା ଅଭିବ୍ୟକ୍ତିକୁ ବାସ୍ତବରେ ପ୍ରମାଣ କରିହେଉ ନଥିବାରୁ ଏହି ସବୁ (ସ୍ୱପ୍ନ ବିଷୟ) ଅଜ ଭାବରେ ପରିଚିତ। ଅସତ୍ୟ ସତ୍ୟଠାରୁ ଜନ୍ମ ନେବା କଦାପି ସମ୍ଭବ ନୁହେଁ ॥୩୮॥*

ଗୌଡ଼ପାଦ କହିଛନ୍ତି ଯେ, ଜାଗ୍ରତ ଜଗତ ଦ୍ରୁତ ବିଲୀୟମାନ ସ୍ୱପ୍ନ ପରି ସତ୍ୟ। ଏହା ବିରୁଦ୍ଧରେ ଯୁକ୍ତି କରୁଥିବା ବିରୋଧୀମାନଙ୍କ ପାଇଁ ଏହି ଶ୍ଳୋକଟି ହେଉଛି ଉତ୍ତର। ବିରୋଧୀମାନେ ଜାଗ୍ରତ ଅବସ୍ଥା ଅଧିକତର ବାସ୍ତବ ବୋଲି କହନ୍ତି, ଜାଗ୍ରତ ଅବସ୍ଥା ସ୍ୱପ୍ନ ଅପେକ୍ଷା ବେଶୀ ବାସ୍ତବ ଏବଂ ଚିରସ୍ଥାୟୀ ବୋଲି ସେମାନେ ଦାବୀ କରନ୍ତି। ତାଙ୍କର ଯୁକ୍ତି ହେଲା, ସ୍ୱପ୍ନ-ଜଗତରୁ ପ୍ରତ୍ୟେକ ଥର ଫେରିବା ପରେ ଅନୁଭବ କରିବା ପାଇଁ ଜାଗ୍ରତ ଜଗତ ଥାଏ।

ଶ୍ରୀ ଶଙ୍କରାଚାର୍ଯ୍ୟ କହିଛନ୍ତି, "ଯେଉଁ ଲୋକଙ୍କର ବିବେକ ନାହିଁ, ତାଙ୍କ ପାଇଁ ଏହା ସତ୍ୟ"। ଜାଗ୍ରତ ପୁରୁଷ କଦବା ସ୍ୱପ୍ନରେ ପ୍ରବେଶ କରୁଥିବା ସଂକ୍ରାନ୍ତରେ ଏହି ଯୁକ୍ତି ଠିକ୍ ହୋଇପାରେ। କିନ୍ତୁ ପ୍ରତ୍ୟହ ସ୍ୱପ୍ନଦ୍ରଷ୍ଟା ସ୍ୱପ୍ନରେ ଜାଗ୍ରତ ହୋଇ ସେହି ସ୍ୱପ୍ନକୁ ହିଁ ଅନୁଭବ କରିବ। ସେହିପରି "ଜାଗ୍ରତ ଅବସ୍ଥାର ସ୍ୱପ୍ନ"ରେ ଜୀବ ପ୍ରତିଦିନ ନିଦ୍ରାଯାଏ ପୁଣି ଜାଗ୍ରତ ହୋଇ 'ଜାଗ୍ରତ ଅବସ୍ଥାର ସ୍ୱପ୍ନ'କୁ ଅନୁଭବ କରିବା ପାଇଁ। ଏଥିରୁ ଜାଗ୍ରତ ଓ ସ୍ୱପ୍ନ ଅବସ୍ଥାର ପାର୍ଥକ୍ୟ ସ୍ପଷ୍ଟ ହୋଇପାରେନାହିଁ। ସ୍ୱପ୍ନାନୁଭୂତି ଏବଂ ଜାଗ୍ରତ ଅବସ୍ଥାର ତୁଳନା ଯୁକ୍ତିଯୁକ୍ତ ହେବା ଦରକାର, ନଚେତ୍ ପୂର୍ବ ଭୁଲ୍ ବୁଝାମଣାର ଉଦ୍ରେକ ହୋଇପାରେ।

ପୂର୍ବ ଶ୍ଳୋକରେ ଦିଆ ଯାଇଥିବା ଉପରୋକ୍ତ କାରଣରୁ ସ୍ପଷ୍ଟ ଜଣାପଡ଼େ ଯେ ଏକ ବିଚାରହୀନ ବୁଦ୍ଧି ଥିବା ମନରେ କାର୍ଯ୍ୟ-କାରଣ ସମ୍ପର୍କ ରହି ପାରିବ ନାହିଁ। ଯୁକ୍ତିଯୁକ୍ତ ଭାବେ ଦେଖିଲେ ଏପରି ଭାବରେ ଏଇ ରକମର କୌଣସି ସମ୍ପର୍କ ରହି ପାରିବ ନାହିଁ। ତେଣୁ ବିଜ୍ଞଜନ ଅଜାତବାଦ ଘୋଷଣା କରିଛନ୍ତି।

ପୁନଶ୍ଚ ପରମ ସତ୍ୟଙ୍କଠାରୁ ଗୋଟିଏ ଅସତ୍ୟ ଜଗତ ସୃଷ୍ଟି ହେବା କଥା ବିଶ୍ୱାସ କରିବା ହେଉଛି ଏକ ବିରୋଧୋକ୍ତି ଏବଂ ଯୁକ୍ତିସଙ୍ଗତ ମିଥ୍ୟା ବୋଲି ସତ୍ୟଠାରୁ ସତ୍ୟ ସୃଷ୍ଟି ହୋଇଛି କହିବାର ଦରକାର ନାହିଁ, କାରଣ ସତ୍ୟ ରହିଛି ହିଁ। ମୁଁ ମୋଠାରୁ ସୃଷ୍ଟ ବୋଲି କହିବା ମାନେ ବଢ଼େଇକରି କହିବା ହେବ। ମୋଠାରୁ ମୋ ବ୍ୟତୀତ ଅନ୍ୟ କିଛି ସୃଷ୍ଟି କରିବା ପ୍ରାୟ ଅସମ୍ଭବ। ମୋଠାରୁ ମଇଁଷି ସୃଷ୍ଟି ହୋଇ ପାରିବ ନାହିଁ।

**ଅସଜ୍ଜାଗରିତେ ଦୃଷ୍ଟ୍ୱା ସ୍ୱପ୍ନେ ପଶ୍ୟତି ତନ୍ମୟଃ ।**

**ଅସତ୍ ସ୍ୱପ୍ନେଽପି ଦୃଷ୍ଟ୍ୱା ଚ ପ୍ରତିବୁଦ୍ଧୋ ନ ପଶ୍ୟତି ।।୩୯।।**

ଅସତ୍ = ଅସତ୍ୟ (ବିଷୟ), ଜାଗରିତେ = ଜାଗ୍ରତ ଅବସ୍ଥାରେ, ଦୃଷ୍ଟ୍ୱା = ଦେଖି, ସ୍ୱପ୍ନେ = ସ୍ୱପ୍ନରେ, ପଶ୍ୟତି = ଜଣେ କେହି ଦେଖେ (ଏକା ପରି); ତନ୍ମୟଃ = (ସେମାନଙ୍କ ଦ୍ୱାରା) ପ୍ରଭାବିତ ହୋଇ; ଅସତ୍ = ଅସତ୍ୟ (ବିଷୟ); ସ୍ୱପ୍ନେ ଅପି = ସ୍ୱପ୍ନରେ ମଧ୍ୟ, ଦୃଷ୍ଟ୍ୱା ଚ = ଏବଂ ଦେଖି, ଅନୁଭବ କରି; ପ୍ରତିବୁଦ୍ଧ = ଜାଗ୍ରତ ହୋଇ, ନ ପଶ୍ୟତି = ଦେଖେ ନାହିଁ।

*ଜାଗ୍ରତ ଅବସ୍ଥାରେ ଅସତ୍ୟ ବିଷୟ ଦେଖି , ଗଭୀର ଭାବରେ ପ୍ରଭାବିତ ହୋଇ କୌଣସି ବ୍ୟକ୍ତି ସ୍ୱପ୍ନରେ ମଧ୍ୟ ଏହି ସବୁ ବିଷୟ ଦେଖେ। ପୁନଶ୍ଚ, ସ୍ୱପ୍ନରେ ଅନୁଭବ କରୁଥିବା ଅସତ୍ୟ ବିଷୟ ଜାଗ୍ରତ ଅବସ୍ଥାରେ ଆଉ ଦେଖାଯାଆନ୍ତି ନାହିଁ ।।୩୯।।*

ବିରୋଧୀମାନେ କହନ୍ତି ଯେ ସ୍ୱପ୍ନ ଯଦି ଜାଗ୍ରତ-ଅବସ୍ଥା ଅନୁଭୂତିର ପରିଣାମ (ଫଳ, କାର୍ଯ୍ୟ) ହୁଏ, ତେବେ କାର୍ଯ୍ୟ-କାରଣ ସମ୍ପର୍କ ର ନିୟମ ମିଥ୍ୟା ବୋଲି ବେଦାନ୍ତୀ କହନ୍ତି କିପରି ? ଉତ୍ତର ହେଲା ଗୋଟିଏ ମିଥ୍ୟା କାର୍ଯ୍ୟ ସୃଷ୍ଟି କରିବା ପାଇଁ କାରଣ ସତ୍ୟ ହେବା ଆବଶ୍ୟକ ନାହିଁ। ଗୋଟିଏ ଅସତ୍ୟ, ମିଥ୍ୟା କାରଣ, ମିଥ୍ୟା କାର୍ଯ୍ୟ ଉତ୍ପନ୍ନ କରିପାରେ। ଗୋଟିଏ ଭୂତକୁ ଥରେ ଦେଖି (ଏହା ନିଜ ମନର ଏକ ଭ୍ରାନ୍ତି) କୌଣସି ବ୍ୟକ୍ତି ମନ ଭିତରେ ଏହାର ଛାପ ରଖିପାରେ ଏବଂ ଭୂତର ସ୍ୱପ୍ନ ଦେଖିପାରେ। ମରୀଚିକା ଜଳ ନିଜେ ଅସତ୍ୟ, ଦୂରରୁ ଦେଖୁଥିବା କୌଣସି କ୍ଳାନ୍ତ ପଥିକ ପାଇଁ ତାହା ତରଙ୍ଗ, ଲହରୀ, ଫେଣ, ଇତ୍ୟାଦିର ଅନୁଭୂତି ଦେଇପାରେ।

ସେହିପରି ସ୍ୱପ୍ନ ଅବସ୍ଥାରେ ମଧ୍ୟ ସ୍ୱପ୍ନଦ୍ରଷ୍ଟା, ଭ୍ରାନ୍ତ ଜାଗ୍ରତ ଅବସ୍ଥା ସମୟରେ ସଂଗ୍ରହ କରିଥିବା ମିଥ୍ୟା ଅନୁଭୂତି ଦେଖିପାରେ।

**ନାସ୍ତ୍ୟସଦ୍ଧେତୁକମସତ୍ ସଦସଦ୍ଧେତୁକଂ ତଥା ।**

**ସଚ୍ଚ ସଦ୍ଧେତୁକଂ ନାସ୍ତି ସଦ୍ଧେତୁକମସତ୍‌କୁତଃ ॥୪୦॥**

ନ ଅସ୍ତି = ହେବ ନାହିଁ, ଅସଦ୍-ହେତୁକମ୍ = ଏହାର କାରଣ ପାଇଁ ଅସତ୍ୟ ପଦାର୍ଥ, ଅସତ୍ = ଅସତ୍ୟ(ପଦାର୍ଥ), ସତ୍ = ସତ୍ୟ, ଅସଦ୍-ହେତୁକମ୍ = ଏକ ଅସତ୍ୟ କାରଣ ହେତୁ(ସହିତ), ତଥା = ସେହିପରି, ସତ୍ = ସତ୍ୟ, (କାର୍ଯ୍ୟ, ଫଳ); ଚ = ପୁନଶ୍ଚ, ସଦ୍-ହେତୁକମ୍ = ସତ୍ୟର କାରଣ, ନ ଅସ୍ତି = ସମ୍ଭବ ନୁହେଁ, ସଦ୍-ହେତୁକମ୍ = ଏକ ସତ୍ୟ କାରଣ ସହିତ, ଅସତ୍ = ଅସତ୍ୟ, କୁତଃ = ପ୍ରକୃତରେ କିପରି ହେବ ?

*ଅସତ୍ୟର କାରଣ ଅସତ୍ୟ (ବସ୍ତୁ) ହୋଇପାରିବ ନାହିଁ। ସତ୍ୟ (ବସ୍ତୁ) ମଧ୍ୟ ଅସତ୍ୟ (ବସ୍ତୁ) ରୁ ସୃଷ୍ଟି ହୋଇ ପାରିବ ନାହିଁ। ସତ୍ୟ (ସ୍ଥିତ ବା ବସ୍ତୁ) ସତ୍ୟର (ଆଉ ଗୋଟିଏ ସ୍ଥିତ ବସ୍ତୁ) କାରଣ ହୋଇ ପାରିବ ନାହିଁ। ତେବେ ଗୋଟିଏ ସତ୍ୟ (ବସ୍ତୁ) (କୌଣସି) ଅସତ୍ୟର କାରଣ ହୋଇ ପାରିବ କିପରି ? ॥୪୦॥*

ପରମ ସତ୍ୟଙ୍କ ଦୃଷ୍ଟିରୁ ବସ୍ତୁ ସବୁ କାର୍ଯ୍ୟ-କାରଣ ସମ୍ପର୍କରେ କୌଣସି ମତେ ପଶି ପାରିବେ ନାହିଁ। ମହାନ ବୌଦ୍ଧ ନାଗାର୍ଜୁନ ମୁଖ୍ୟତଃ ବ୍ୟବହାର କରିଥିବା ଚାରିମୁନିଆଁ ଦ୍ୱନ୍ଦ୍ୱକୁ ଗୌଡ଼ପାଦ ଏଠାରେ ଉଠାଇ ଆଣିଛନ୍ତି।

ବାସ୍ତବରେ ୩୮ଶ ଶ୍ଳୋକରେ ଥିବା ଧାରଣା ଏହି ଶ୍ଳୋକ ପର୍ଯ୍ୟନ୍ତ ଗଡ଼ି ଆସିଛି। ପୂର୍ବ ଶ୍ଳୋକରେ ବହୁବିଧ ବିଷୟ-ଜଗତର ଅସମ୍ଭବତା ପ୍ରତି କେବଳ ଆଭାସ ମାତ୍ର ଦିଆ ଯାଇଛି। ଏଠାରେ ଆମେ ତାହାର ଯୁକ୍ତିଯୁକ୍ତ ଆଲୋଚନା ଦେଖିବାକୁ ପାଉଁ। ଏହି ଶ୍ଳୋକରେ ଚାରିଗୋଟି ଅସମ୍ଭବତାର ଆଲୋଚନା କରାଯାଇଛି ଏବଂ ପରିଶେଷରେ ଯୁକ୍ତିଯୁକ୍ତ ମିଥ୍ୟା ଦ୍ୱାରା ପ୍ରମାଣ କରାଯାଇଛି ଯେ ସେମାନଙ୍କ ଭିତରୁ କେହିହେଲେ ନିଜକୁ ପ୍ରତିଷ୍ଠିତ କରି ପାରିବେ ନାହିଁ, ତେଣୁ-

(କ) "ଅସତ୍ୟ ଅସତ୍ୟର କାରଣ ହୋଇ ପାରିବ ନାହିଁ"। ଠେକୁଆର ଶିଙ୍ଗ ଆକାଶ-କୁସୁମର କାରଣ ହୋଇ ପାରିବ ନାହିଁ।

(ଖ) "ଅସତ୍ୟରୁ ସତ୍ୟ ସୃଷ୍ଟି ହୋଇ ପାରିବ ନାହିଁ"। ବନ୍ଧ୍ୟା ମହିଳାର ପୁଅର ବାହାଘରରେ ଯୋଗ ଦେବାର ସୁଯୋଗ ଆମେ କେବେ ବି ପାଇ ପାରିବା ନାହିଁ।

(ଗ) "ସତ୍ୟ ସତ୍ୟର କାରଣ ହୋଇ ପାରିବ ନାହିଁ"। ଏହା ସ୍ପଷ୍ଟ, କାରଣ ଗୋଟିଏ ଟେବୁଲ ଆଉ ଗୋଟିଏ ଟେବୁଲର କାରଣ ହୋଇ ପାରିବ ନାହିଁ।

(ଘ) "ସତ୍ୟ ଅସତ୍ୟର କାରଣ ହେବା" ହେଉଛି ହାସ୍ୟାସ୍ପଦ ଭାବେ ଅସମ୍ଭବ।

**ବିପର୍ଯ୍ୟାସାଦ୍ୟଥା ଜାଗ୍ରତଚିନ୍ତ୍ୟାନ୍ ଭୂତବତ୍ ସ୍ପୃଶେତ୍ ।**

**ତଥା ସ୍ୱପ୍ନେ ବିପର୍ଯ୍ୟାସାଦ୍ ଧର୍ମାମ୍ସ୍ତତ୍ରୈବ ପଶ୍ୟତି ॥୪୧॥**

ବିପର୍ଯ୍ୟାସାତ୍ = ମିଥ୍ୟା ଜ୍ଞାନ ମାଧ୍ୟମରେ, ଯଥା = ଯେପରି, ଜାଗ୍ରତ = ଜାଗ୍ରତ ଅବସ୍ଥାରେ, ଅଚିନ୍ତ୍ୟାତ୍ = ଯେଉଁ ପଦାର୍ଥର ସ୍ୱରୂପ ବର୍ଣ୍ଣନା କରିହେବ ନାହିଁ(ଅସତ୍ୟ); ଭୂତବତ୍ = ସତ୍ୟ ପରି, ସ୍ପୃଶେତ୍ = କେହି ଜଣେ ଦେଖେ ବା ସଂସ୍ପର୍ଶରେ ଆସେ, ତଥା = ସେହିପରି, ସ୍ୱପ୍ନେ = ସ୍ୱପ୍ନରେ, ବିପର୍ଯ୍ୟାସାତ୍ = ମିଥ୍ୟା ଜ୍ଞାନ ମାଧ୍ୟମରେ, ଧର୍ମାନ୍ = (ଅସତ୍ୟ) ବିଷୟ; ତତ୍ର ଏବ = ସେଠାରେ କେବଳ, କେବଳ ସେହି ଅବସ୍ଥାରେ, ପଶ୍ୟତି = କେହି ଜଣେ ଦେଖେ ।

*ଜାଗ୍ରତ ଅବସ୍ଥାରେ କେହି ଜଣେ, ମିଥ୍ୟା ଜ୍ଞାନ ମାଧ୍ୟମରେ ସ୍ୱରୂପ ବର୍ଣ୍ଣନା କରାଯାଇ ପାରୁ ନଥିବା (ଅସତ୍ୟ) ବିଷୟକୁ ସତ୍ୟ ବୋଲି ବିଚାର କରିବା ପରି ସ୍ୱପ୍ନରେ ମଧ୍ୟ, ମିଥ୍ୟା ଜ୍ଞାନ ମାଧ୍ୟମରେ ଯେକେହି ସେହିପରି (ଅସତ୍ୟ) ବିଷୟ ଦେଖେ ॥୪୧॥*

ସ୍ୱପ୍ନ ଏବଂ ଜାଗ୍ରତ ଅବସ୍ଥା ମଧ୍ୟରେ ସାମାନ୍ୟତମ କାର୍ଯ୍ୟ-କାରଣ ସମ୍ପର୍କର ସମ୍ଭାବନା ଦୂର କରିବା ପାଇଁ ଏହି ଶ୍ଳୋକଟି ଉଦ୍ଦିଷ୍ଟ । ଉଭୟ ଅସତ୍ୟ । ଜାଗ୍ରତ ଅବସ୍ଥାରେ ବିବେକର ଅଭାବ ଯୋଗୁଁ ମିଥ୍ୟା ବୁଦ୍ଧି ନିଜକୁ ପ୍ରକ୍ଷେପିତ କରି ବହୁବିଧ ଜଗତକୁ ସତ୍ୟ ପରି ଦେଖିବା ପରି ସ୍ୱପ୍ନାବସ୍ଥାରେ ମଧ୍ୟ ବୁଦ୍ଧି ଅଚେତନତାରେ ପ୍ରାୟ ବୁଡ଼ିଯାଇ ଏବଂ ମନ ଧୀଶକ୍ତି ଦ୍ୱାରା ପରିଚାଳିତ ନହୋଇ, ସନ୍ଧ୍ୟା ସମୟରେ ଖୋଲାହୋଇ ବୁଲୁଥିବା ପୋଷା କୁକୁର ପରି ବ୍ୟବହାର କରିବାକୁ ଆରମ୍ଭ କରନ୍ତି । ଜାଗ୍ରତ ଅବସ୍ଥା ଦୃଷ୍ଟିରୁ ସ୍ୱପ୍ନାବସ୍ଥାର ଏହି ଅନୁଭୂତି ହେଉଛି ଅଯୌକ୍ତିକ ଏବଂ ତଥାପି, ସ୍ୱପ୍ନରେ ଦେଖିବା ବିଷୟର ଜାଗ୍ରତ ଅବସ୍ଥାର ବିଷୟ ସହିତ ସାଦୃଶ୍ୟ ଥାଏ ଏବଂ ସେଥିପାଇଁ ଜାଗ୍ରତ ଅବସ୍ଥା ଏବଂ ସ୍ୱପ୍ନ ଅବସ୍ଥା ମଧ୍ୟରେ କାର୍ଯ୍ୟ-କାରଣ ସମ୍ପର୍କ ରହିଛି ବୋଲି ଆମେ ବିଚାର କରୁ ।

ଏପରି ସମୟ ସମ୍ପର୍କକୁ ଗୌଡ଼ପାଦ ସଂପୂର୍ଣ୍ଣ ରୂପେ ଅସ୍ୱୀକାର କରିଛନ୍ତି । ଅନୁଭୂତିର ଏହି ଦୁଇଟି ଅବସ୍ଥା ମଧ୍ୟରେ ସାଧାରଣ ଭାବେ ଯାହା ଅଛି, ତାହା ହେଲା - ଉଭୟଙ୍କଠାରେ ବିବେକ ପୂର୍ଣ୍ଣମାତ୍ରାରେ କାମ କରୁ ନାହିଁ । ଦୈନନ୍ଦିନ ଜୀବନର କାର୍ଯ୍ୟକଳାପରେ ମଣିଷ ନିଜ ବିବେକର ଯେତିକି ବ୍ୟବହାର କରେ, ତା ଅପେକ୍ଷା ତା ବିବେକର ସାମର୍ଥ୍ୟ ବହୁତ ବେଶୀ । ଏପରିକି, ଆମର ତଥାକଥିତ ବିଜ୍ଞ ବ୍ୟବସାୟିକ ଏବଂ ରାଜନୈତିକ ଜୀବନରେ ସବୁଠାରୁ ବିଜ୍ଞ ବ୍ୟକ୍ତି ମଧ୍ୟ ତାଠାରେ ଉପଲବ୍ଧ ସମ୍ଭାବ୍ୟ ବିବେକ-ବୁଦ୍ଧିର ପୂରା ଉପଯୋଗ କରେ ନାହିଁ ।

ଆଧୁନିକ ଶିକ୍ଷା ଦ୍ୱାରା ଆମେ ଯେଉଁ ଧୀଶକ୍ତି ଲାଭ କରୁଛୁ, ଆର୍ଯ୍ୟ ମନୀଷୀଙ୍କ ମତରେ ତାଦ୍ୱାରା ଆମେ ଆଦର୍ଶର ପୂର୍ଣ୍ଣାଙ୍ଗତାରେ ପଦାର୍ପଣ କରି ପାରିବା ନାହିଁ। ସମାଜ ଆହୁରି ଅଧିକ ପରିମାଣର ବିବେକ ଏବଂ ଯଥାର୍ଥ ଜ୍ଞାନ ଦ୍ୱାରା ପରିପାଳିତ ହୋଇପାରିବ ବୋଲି ସେମାନେ ବିଶ୍ୱାସ କରନ୍ତି। ଅଧିକରୁ ଅଧିକ ଚମତ୍କାର ସଫଳତା ପାଇଁ ମନର ବିକାଶ କରାଯାଇପାରେ। ଆଧ୍ୟାତ୍ମିକତା ମାଧ୍ୟମରେ ଆମେ ଏହି ଦିବ୍ୟ ସଫଳତା ଲାଭ କରି ପାରିବା ଏବଂ ପ୍ରକୃତିର ଅଭିପ୍ରାୟ ପୂରଣ କରି ପାରିବା।

**ଉପଲମ୍ଭାତ୍‌ସମାଚାରାତ୍ ଅସ୍ତିବସ୍ତୁତ୍ୱବାଦିନାମ୍ ।**
**ଜାତିସ୍ତୁ ଦେଶିତା ବୁଦ୍ଧୈଃ ଅଜାତେସ୍ତ୍ରସତାଂ ସଦା ॥୪୨॥**

ଉପଲମ୍ଭାତ୍ = ଅନୁଭବ କରୁଥିବାର ବାସ୍ତବତା ଯୋଗୁଁ, ସମାଚାରାତ୍ = ସେମାନଙ୍କର ଉପଲବ୍ଧି ଯୋଗୁଁ, ଅସ୍ତି = ପ୍ରକୃତରେ ଅଛି, ବସ୍ତୁତ୍ୱ = ପଦାର୍ଥ ସବୁ, ବାଦିନାମ୍ = ଯେଉଁମାନେ ଲାଗି ରହିଥାନ୍ତି, ଜାତିଃ ତୁ = ଜନ୍ମ ବା ସୃଷ୍ଟି, କେବଳ କାର୍ଯ୍ୟ -କାରଣ ସମ୍ପର୍କ, ଦେଶିତା = ସମର୍ଥନ ରହିଛି, ବୁଦ୍ଧୈଃ = ବୁଦ୍ଧି (ଜ୍ଞାନ) ଦ୍ୱାରା, ଅଜାତେଃ = ଜନ୍ମ ନେଇ ନ ଥିବା ସତ୍ତା ଅର୍ଥାତ୍ ବ୍ରହ୍ମ, ତ୍ରସତାମ୍ = ଭୟଭୀତ ହେବା, ସଦା = ସର୍ବଦା।

*ଯେଉଁମାନେ ନିର୍ବିକଳ୍ପ ଅଜାତ (ବ୍ରହ୍ମଙ୍କୁ) ଭୟ କରନ୍ତି, ସେମାନଙ୍କର ଉପଲବ୍ଧି ଯୋଗୁଁ ଏବଂ କର୍ମକାଣ୍ଡରେ ବିଶ୍ୱାସ ଯୋଗୁଁ ସେମାନେ ଅନୁଭୂତ ପଦାର୍ଥର ବାସ୍ତବତାକୁ ସତ୍ୟ ମାନନ୍ତି। କେବଳ ସେହିମାନଙ୍କ ପାଇଁ ବିଜ୍ଞଜନ କାର୍ଯ୍ୟ-କାରଣ ସମ୍ପର୍କକୁ ସମର୍ଥନ କରନ୍ତି ॥୪୨॥*

କାର୍ଯ୍ୟକାରଣ ସମ୍ପର୍କ ଏହିପରି ଭାବରେ ଯଦି ମନଗଢ଼ା କଥା ହୁଏ, ତେବେ ବ୍ରହ୍ମ ଜଗତର କାରଣ ବୋଲି ଉପନିଷଦ୍‌ମାନେ କହନ୍ତି କାହିଁକି ? ଏଠାରେ କାରିକା ତାର ଯଥାର୍ଥତା ପ୍ରତିପାଦନ କରୁଛି।

ଆତ୍ମାନୁଭୂତିର ଉପାୟ ବ୍ୟାଖ୍ୟା କରିବା ସମୟରେ ଅଦ୍ୱୈତ ଦର୍ଶନର ବ୍ୟାଖ୍ୟାକାରମାନେ କାର୍ଯ୍ୟ-କାରଣ ନିୟମର ସମର୍ଥନ କରିଛନ୍ତି; ଏଥିରେ ସନ୍ଦେହ ନାହିଁ। କାର୍ଯ୍ୟ-କାରଣ ସମ୍ପର୍କୀୟ ଅନ୍ଧ ମାନସିକ ଧାରଣାରେ ସେମାନଙ୍କର ବିଶ୍ୱାସ ଅଛି ବୋଲି ସେମାନେ ଏହା କରି ନାହାନ୍ତି। କାର୍ଯ୍ୟକାରଣ ସମ୍ପର୍କ ନେଇ ବେଦାନ୍ତୀ ଆଚାର୍ଯ୍ୟମାନେ ସାଧାରଣ ଶ୍ରେଣୀର ସାଧକଙ୍କୁ କହୁଛନ୍ତି, ତାହା କେବଳ ମନ୍ଦବୁଦ୍ଧି ସାଧକଙ୍କର ଉପକାର କରିବା ପାଇଁ। ପଚାରିବା ପୂର୍ବରୁ ଅଜାତ-ବାଦ ସମ୍ବନ୍ଧରେ ହଠାତ୍ କହିଲେ ନୂଆ

ସାଧକମାନେ ଘାବୁରେଇ ଯାଇ ପାରନ୍ତି । ନୂତନ ସାଧକମାନେ ଅଜାତବାଦ ତତ୍ତ୍ୱର ହଠାତ୍ ସମ୍ମୁଖୀନ ହେଲେ ବୁଦ୍ଧିବଣା ହେବାର ଅବକାଶ ରହେ ।

ବେଦାନ୍ତର ନୂଆ ଶିଷ୍ୟମାନେ ସେମାନଙ୍କର ସମସ୍ତ ମନ ଏବଂ ବୁଦ୍ଧି ଲଗାଇ ମଧ୍ୟ ଅଜାତବାଦର ଧାରଣା ହଠାତ୍ ଗ୍ରହଣ କରି ପାରିବେ ନାହିଁ । ସେମାନେ ଦେଖୁଥିବା ବହୁବିଧ ଜଗତ ସଂପୂର୍ଣ୍ଣ ମିଥ୍ୟା-ଏହି ଧାରଣା ପ୍ରତି ସେମାନେ ଭୟଭୀତ ହୋଇ ଯାଆନ୍ତି ଯେପରି । ସେମାନଙ୍କର ବ୍ୟକ୍ତିତ୍ୱକୁ ଦୃଢ଼ କରିବା ପାଇଁ ଏବଂ ସେମାନଙ୍କର ମନ ଏବଂ ବୁଦ୍ଧିର ସ୍ତରକୁ ଧୀରେ ଧୀରେ ସ୍ଥିର ଭାବରେ ଜଣେ ପରିପକ୍ୱ ବେଦାନ୍ତ ସାଧକର ସ୍ତରକୁ ଉଠାଇବା ପାଇଁ ବେଦାନ୍ତର ଆଚାର୍ଯ୍ୟମାନେ କାର୍ଯ୍ୟ -କାରଣ ଧାରଣାର ବ୍ୟବହାର କରି ସେମାନଙ୍କୁ ଅଭ୍ୟସ୍ତ କରାନ୍ତି । ଶିଷ୍ୟର ଆଧ୍ୟାତ୍ମିକ ଶିକ୍ଷାରେ ଏହା ଏକ ମଧ୍ୟବର୍ତ୍ତୀକାଳୀନ ଅବସ୍ଥା । ଏହିପରି ଭାବରେ ଜଣେ ସାଧାରଣ ଶିଷ୍ୟ ସ୍ଥିର ମନ ଏବଂ ବୁଦ୍ଧିଯୁକ୍ତ ହୋଇ ସାଧକ ସ୍ତରକୁ ଉନ୍ନୀତ ହେଲେ ଅଜାତବାଦର ପବିତ୍ର ସତ୍ୟ ତାପାଇଁ ଉନ୍ମୋଚନ କରାଯାଏ । ପ୍ରଥମ ଶ୍ରେଣୀର ପାଠ୍ୟ ଉଦ୍ଧାର କରି ସ୍ନାତକୋତ୍ତର ଶିକ୍ଷାର ସମାଲୋଚନା କରିବା ଭୟଙ୍କର ଭାବେ ହାସ୍ୟାସ୍ପଦ ହେବ । ଶିଶୁର ପ୍ରାଥମିକ ଶିକ୍ଷାରେ ପ୍ରକୃତ ଜ୍ଞାନ ଦିଆଯାଏ ନାହିଁ । ଶିଶୁର ବୁଦ୍ଧି ଯାହା ଗ୍ରହଣ କରିପାରିବ ତାଦ୍ୱାରା ହିଁ ତାକୁ ଶିକ୍ଷା ଦିଆଯିବ ।

ସେହିପରି ବେଦାନ୍ତରେ ମଧ୍ୟ ନୂତନ ଶିଷ୍ୟମାନଙ୍କୁ ଧୀରସ୍ଥିର ଭାବରେ ଜ୍ଞାନକ୍ଷେତ୍ରକୁ ପ୍ରବେଶ କରାଇବାକୁ ହେବ । ଏହି ସମଗ୍ର ଧାରାରେ ମହାନ ଆଚାର୍ଯ୍ୟମାନେ କାର୍ଯ୍ୟ-କାରଣ ସମ୍ପର୍କକୁ ଏକ ସତ୍ୟ ଭାବରେ ଗ୍ରହଣ କରିଥିବା ପରି ମନେ ହୁଏ । ବିଧିବିଧାନ (କର୍ମ-କାଣ୍ଡ) ଏବଂ ଉପାସନାର ଦୁନିଆଁରୁ ଯାଇ ସାଧକ ଋଷିଙ୍କର ପାଦତଳେ ପହଞ୍ଚିଥାଏ । ଅଜାତବାଦ ଦ୍ୱାରା ତାକୁ ଭାବବିହ୍ୱଳ କରିଦେବା ତା'କୁ କୌଣସି ମତେ ସହାୟକ ହେବ ନାହିଁ ।

**ଅଜାତେସ୍ତ୍ରସତାଂ ତେଷାମୁପଲମ୍ଭାଦ୍ଵିୟନ୍ତି ଯେ ।**

**ଜାତିଦୋଷା ନ ସେତ୍ସ୍ୟନ୍ତି ଦୋଷୋଽପ୍ୟଲ୍ପୋ ଭବିଷ୍ୟତି ॥୪୩॥**

ଅଜାତେ = ଅଜାତ ସତ୍ତା ଅର୍ଥାତ୍ ଆତ୍ମା, ତ୍ରସତାମ୍ = ଯେଉଁମାନେ ଭୟ କରନ୍ତି, ତେଷାମ୍ = ସେମାନେ, ଉପଲମ୍ଭାତ୍ = ବିଷୟ ଜଗତ ଅନୁଭବ କରିବା ଯୋଗୁଁ, ଯେ ବିୟନ୍ତି = ସେମାନେ ସ୍ୱୀକାର କରନ୍ତି ନାହିଁ, ଜାତି ଦୋଷାଃ = କାର୍ଯ୍ୟ-କାରଣ ସମ୍ପର୍କରେ ସେମାନଙ୍କର ବିଶ୍ୱାସର କୁପରିଣାମ, ନ ସେତ୍ ସ୍ୟନ୍ତି = ବିଶେଷ ପ୍ରଭାବ ପକାଇବ ନାହିଁ, ଦୋଷଃ ଅପି = ଯଦି କିଛିକୁ ପରିଣାମ ଅଛି, ଅଳ୍ପଃ = ଅଳ୍ପ, ଭବିଷ୍ୟତି = ହେବ ।

*ସତ୍ୟ ନିର୍ବିକଳ୍ପ ଅଜାତ ବୋଲି ଭୟ ପାଉଥିବା ଲୋକମାନେ ବହୁବିଧ ବିଷୟ ଜଗତ (ଅର୍ଥାତ୍ ଦ୍ୱୈତ)ର ଅନୁଭବ କରି, ଅଜାତକୁ ସ୍ୱୀକାର କରନ୍ତି ନାହିଁ । କାର୍ଯ୍ୟ-କାରଣ ସମ୍ପର୍କରେ ସେମାନଙ୍କର ଏହି ବିଶ୍ୱାସ ଯୋଗୁଁ ଉତ୍ପନ୍ନ କୁପରିଣାମ ସେମାନଙ୍କ ଉପରେ ବିଶେଷ ପ୍ରଭାବ ପକାଏ ନାହିଁ । ଯଦି ବି କୁପରିଣାମ କିଛି ଥାଏ, ତେବେ ତାହା ନଗଣ୍ୟ ଅଟେ ॥୪୩॥*

ସାଧନାର ପ୍ରାଥମିକ ଅବସ୍ଥାରେ କାର୍ଯ୍ୟ-କାରଣ ସମ୍ପର୍କର ସିଦ୍ଧାନ୍ତକୁ ବିଶ୍ୱାସ କରିବା ଆବଶ୍ୟକ ମନେ କରୁଥିବା ସାଧକଙ୍କୁ ଗୌଡ଼ପାଦ ଏଠାରେ ସମର୍ଥନ କରୁଛନ୍ତି । ପରମସତ୍ୟ କାର୍ଯ୍ୟ-କାରଣର ଅତୀତ ଏବଂ କାର୍ଯ୍ୟ(ଫଳ) ସ୍ୱରୂପ ତାଙ୍କଠାରୁ କିଛି ଉତ୍ପନ୍ନ ହୋଇନାହିଁ । ଏହା ନିଃସନ୍ଦେହ । ସତ୍ୟ କୌଣସି କାର୍ଯ୍ୟର ହେତୁ ନୁହଁନ୍ତି । ଜଗତ ଏକ କଳ୍ପନା ମାତ୍ର । ମନ ଏବଂ ବୁଦ୍ଧି ମଧ୍ୟ ଆତ୍ମା ଉପରେ ପ୍ରକ୍ଷେପଣ । ଜଣେ ଦ୍ରଷ୍ଟା ଥିବା ପର୍ଯ୍ୟନ୍ତ ଦୃଶ୍ୟ ଥାଏ । ଶରୀର-ମନ-ବୁଦ୍ଧି ସାଧନର ସଂପୂର୍ଣ୍ଣ ନାଶ ହେଲେ କିମ୍ବା ଅହଂକାର ସମ୍ପୂର୍ଣ୍ଣରୂପେ ସମର୍ପିତ ହେଲେ ଆତ୍ମାରେ ରମଣ କରୁଥିବା ଆତ୍ମା, ଯାହାର ସତ୍ତା କେବଳ ସତ୍ୟ, ନିଜ ବ୍ୟତୀତ ଅନ୍ୟ କିଛି ଅନୁଭବ କରିପାରେ ନାହିଁ ।

ତଥାପି ଗୁରୁ, ଶିଷ୍ୟ, ଗ୍ରନ୍ଥ ବା ଓଁ ପ୍ରତୀକ ଇତ୍ୟାଦିକୁ ବହୁବିଧ ଜଗତ ରୂପେ ଦେଖିବା କିଛି ଭୁଲ ନୁହେଁ । ଆରପାଖକୁ ଉଡ଼ିଯିବା ପୂର୍ବରୁ ଜଣେ ନୂଆ ସାଧକ ତାର ସାଧନକୁ ସୁଗଠିତ କରିବା ଦରକାର । ତେଣୁ ଶେଷଥର ପାଇଁ ଡିଆଁ ମାରିବାର ପ୍ରସ୍ତୁତି ସ୍ୱରୂପ ଆତ୍ମାନୁଭୂତିର ବେଦାନ୍ତ ମାର୍ଗର ସାଧକକୁ କାର୍ଯ୍ୟ-କାରଣ-ସମ୍ପର୍କ ତତ୍ତ୍ୱକୁ ସାମୟିକ ଭାବେ ବିଶ୍ୱାସ କରିବାକୁ କୁହାଯାଇଥାଏ ।

ପ୍ରାଥମିକ ଅବସ୍ଥାରେ ଜଣେ ସଦ୍‌ଗୁରୁଙ୍କ ଉପରେ ବିଶ୍ୱାସ କରିବା ଅପରିହାର୍ଯ୍ୟ । ସାଧକମାନଙ୍କ ଉପରେ ଏହାର କୌଣସି କୁପରିଣାମ ନାହିଁ ବୋଲ ଗୌଡ଼ପାଦ

ଅନୁମୋଦନ କରଛନ୍ତି । ବାସ୍ତବରେ ନିର୍ବିକଳ୍ପ ଦୃଷ୍ଟିରୁ ଦେଖିଲେ ନିଜେ ଗୁରୁ ହିଁ ହେଉଛନ୍ତି ସ୍ୱପ୍ନ-ସଦୃଶ ଶୂନ୍ୟ । କିନ୍ତୁ ସ୍ୱପ୍ନ ସିଂହ ସ୍ୱପ୍ନଦ୍ରଷ୍ଟାଙ୍କୁ ସ୍ୱପ୍ନର ମିଥ୍ୟା ଭୟରୁ ଜାଗ୍ରତ କରିଦେବା ପରି ସ୍ୱପ୍ନ-ବେଦାନ୍ତ-ସିଂହ ତାର ଶିଷ୍ୟଙ୍କୁ ସେମାନଙ୍କ ସ୍ୱପ୍ନର ବହୁବିଧ ଜଗତରୁ ସତ୍ୟଙ୍କର ସଘନ ଅନୁଭୂତିକୁ ଜାଗ୍ରତ କରିଦେବ ।

**ଉପଲମ୍ଭାତ୍ସମାଚାରାନ୍ମାୟାହସ୍ତୀ ଯଥୋଚ୍ୟତେ ।**
**ଉପଲମ୍ଭାତ୍ସମାଚାରଦସ୍ତି ବସ୍ତୁ ତଥୋଚ୍ୟତେ ॥୪୪॥**

ଉପଲମ୍ଭାତ୍ = ଦେଖାଯାଉଥିବାରୁ, ସମାଚାରାତ୍ = ଏବଂ ସୁଶୃଙ୍ଖଳ ବ୍ୟବହାର, ମାୟା ହସ୍ତୀ = ଗୋଟିଏ ମିଛ ହାତୀ, ଯଥା = ଯେପରି, ଉଚ୍ୟତେ = କୁହାଯାଏ, ଉପଲମ୍ଭାତ୍ = ସେମାନେ ଦେଖାଯାଉ ଥିବାରୁ, ସମାଚାରାତ୍ = ଏବଂ ସୁଶୃଙ୍ଖଳ ବ୍ୟବହାର, ଅସ୍ତି = ଅଛି, ବସ୍ତୁ = ବସ୍ତୁ, ଅର୍ଥାତ୍ ବହୁବିଧ ବା ଦ୍ୱୈତ; ତଥା = ସେହିପରି, ଉଚ୍ୟତେ = କୁହାଯାଏ ।

*କଳ୍ପନାର ଭେଲିକିରେ ସ୍ପଷ୍ଟ ଗୋଟିଏ ହାତୀ ଅଛି ବୋଲି କୁହାଯାଏ, କାରଣ- (କ) ଏହା ଦେଖାଯାଏ । (ଖ) ଏହା ହାତୀ ପରି ବ୍ୟବହାର କରେ । ଠିକ୍ ସେହିପରି ବିଷୟସବୁ (କ) ଦେଖାଯାଉଥିବାରୁ (ଖ) ତାଙ୍କ ସହିତ ଆମର ବ୍ୟବହାରର ଉତ୍ତର ମିଳୁଥିବାରୁ ସେମାନେ ଥିବାର ମନେ ହୁଏ(ବିଚାର କରାଯାଏ) ॥୪୪॥*

ଏହା ହେଉଛି ପ୍ରାଚୀନ ଭାରତର ପ୍ରସିଦ୍ଧ ଐନ୍ଦ୍ରଜାଲିକ(କୁହୁକୀ) କାର୍ଯ୍ୟମାନଙ୍କ ମଧ୍ୟରୁ ଅନ୍ୟତମ । ବୈଦାନ୍ତିକ ଦାର୍ଶନିକମାନେ ଉଦାହରଣ ପାଇଁ ଏହାକୁ ପ୍ରାୟ ବ୍ୟବହାର କରି ଥାଆନ୍ତି । କୁହୁକ ବା ସ୍ଫଟିକ କାଚ ବା ଚେରମୂଳିକା ସାହାଯ୍ୟରେ ଭାରତୀୟ ଯାଦୁକରମାନେ ତାଙ୍କର ଦର୍ଶକମାନଙ୍କ ମନରେ ଭ୍ରମ ସୃଷ୍ଟି କରାନ୍ତି ଯେ ବିରାଟ ହାତୀଟିଏ ତାଙ୍କ ସମ୍ମୁଖରେ ଠିଆ ହୋଇଛି । ପ୍ରତ୍ୟେକଟି ଅଙ୍ଗ ପ୍ରତ୍ୟଙ୍ଗରେ ହାତୀଟି କେବଳ ବାସ୍ତବ ବୋଲି ମନେହୁଏ ନାହିଁ, ବରଂ ଅନ୍ୟାନ୍ୟ ଜୀବନ୍ତ ହାତୀ ପରି ବସିବା ଇତ୍ୟାଦି କାର୍ଯ୍ୟ ପାଇଁ ମଧ୍ୟ ଏହାକୁ ବ୍ୟବହାର କରାଯାଇପାରେ । ତେଣୁ, ଦୁଇଟି କାରଣରୁ ଯାଦୁକରର ହାତୀକୁ ଆମେ ବିଶ୍ୱାସ କରୁ କାରଣ, (କ) ଆମେ ଏହାକୁ ଦେଖିପାରୁ, (ଖ) ସାଧାରଣ ଉଦ୍ଦେଶ୍ୟ ପାଇଁ ଆମେ ଏହାକୁ ବ୍ୟବହାର ମଧ୍ୟ କରିପାରୁ ।

ପ୍ରକୃତରେ ଉପରୋକ୍ତ ଦୁଇଟି କାରଣରୁ ଦ୍ୱୈତବାଦୀମାନଙ୍କୁ ବହୁବିଧ ଜଗତ ସତ୍ୟ ଏବଂ ବାସ୍ତବ ପରି ମନେ ହୁଏ । ଆମକୁ ଏପରି ବିଶ୍ୱାସର ଅନ୍ତଃସାରଶୂନ୍ୟତା ଦେଖାଇ ଦେବା ପାଇଁ ଗୌଡ଼ପାଦ ଏଠାରେ ଚେଷ୍ଟା କରୁଛନ୍ତି । ସେ କହୁଛନ୍ତି ଯେ,

ଭେଲିକି ହାତୀ ମଧ୍ୟ ତାର ମିଥ୍ୟା ଅବସ୍ଥିତି ସମ୍ବନ୍ଧରେ ଉଲ୍ଲିଖିତ ଦୁଇଟି (କ) ଏବଂ (ଖ) ଗୁଣ ଠିକ୍ ଭାବରେ ଯୋଗାଇଥାଏ। ତେବେବି ବାଜିକରର ହାତୀ ବାସ୍ତବ ବୋଲି ଆମେ ଗ୍ରହଣ କରୁ ନାହେଁ। ସେହିପରି ମଧ୍ୟ, ଜାଗ୍ରତ ଅବସ୍ଥାରେ ବିଷୟ-ଜଗତ ସତ୍ୟ ବୋଲି ଆମେ ପ୍ରତିପାଦନ କରି ପାରିବା ନାହିଁ ଯଦିଓ (କ) ଆମେ ତାହାକୁ ଦେଖୁ, (ଖ) ତା'ର ବ୍ୟବହାର ମଧ୍ୟ କରାଯାଇ ପାରିବ। ସଂକ୍ଷେପରେ ଉଲ୍ଲିଖିତ ଦୁଇଟି ଭିତ୍ତି ଉପରେ, ଦ୍ୱୈତ-ଦର୍ଶନରେ ବାହ୍ୟ ବିଷୟର ଅବସ୍ଥିତି ଏକ ଘଟଣା ବୋଲି ପ୍ରମାଣ କରିହେବ ନାହିଁ। ବହୁବିଧ ଜଗତକୁ ଆମେ ଦେଖୁଥିଲେ ବି ପରମସତ୍ୟ ହେଉଛନ୍ତି ଏକମେବ ଅଦ୍ୱିତୀୟ, ବାହ୍ୟ ଜଗତ ତାଙ୍କ ଉପରେ ଅଧ୍ୟସ୍ତ। ତାହାର ସ୍ୱାଧୀନସତ୍ତା ଆଦୌ ରହିବ ନାହିଁ।

**ଜାତ୍ୟାଭାସଂ ଚଲାଭାସଂ ବସ୍ତ୍ୱାଭାସଂ ତଥୈବ ଚ।**

**ଅଜାଚଲମବସ୍ତୁତ୍ୱଂ ବିଜ୍ଞାନଂ ଶାନ୍ତମଦ୍ୱୟମ୍ ॥୪୫॥**

ଜାତି ଆଭାସମ୍ = ଜନ୍ମ ନେଇଥିବା ପରି ମନେହୁଏ, ଚଲ ଆଭାସମ୍ = ଗତି କରିବା ପରି ମନେ ହୁଏ, ବସ୍ତୁ ଆଭାସମ୍ = ବସ୍ତୁର ରୂପ ନେବା ପରି ମନେ ହୁଏ, ତଥା ଏବ ଚ = ସେହିପରି, ଅଜ = ଅଜନ୍ମା, ଅଚଲମ୍ = ଅଚଳ, ଅବସ୍ତୁତ୍ୱମ୍ = ବସ୍ତୁ ଭାବରୁ ମୁକ୍ତ, ବିଜ୍ଞାନମ୍ = ଚୈତନ୍ୟ, ଶାନ୍ତମ୍ = ଶାନ୍ତ, ଅଦ୍ୱୟମ୍ = ଅଦ୍ୱୈତ।

*ଏପରିକି, ଜନ୍ମ ନେଇଥିବା, ଗତି କରୁଥିବା ଏବଂ ବସ୍ତୁର ରୂପ ନେଇଥିବା ପରି ମନେ ହେଉଥିବା ଶୁଦ୍ଧ ଚୈତନ୍ୟ ମଧ୍ୟ ବାସ୍ତବରେ ଅଜନ୍ମା, ଗତି ହୀନ ଏବଂ ବସ୍ତୁଭାବରୁ ମୁକ୍ତ, ଏହା ପୂର୍ଣ୍ଣ ଶାନ୍ତ ଏବଂ ଅଦ୍ୱୈତ ॥୪୫॥*

ପରମସତ୍ୟ ଯଦି ଅପରିଚ୍ଛିନ୍ନ, ସର୍ବବ୍ୟାପୀ, ଇନ୍ଦ୍ରିୟ ଉପଲବ୍ଧ ନୁହେଁ ଏବଂ ମନ ବୁଦ୍ଧି ତାଙ୍କୁ ଦେଖି ପାରନ୍ତି ନାହିଁ ତେବେ ଆମ ସାମନାରେ ଆମେ ଦେଖୁଥିବା ବିଶେଷ ବ୍ୟକ୍ତିର ଗୁଣନେଇ ଚଳପ୍ରଚଳ ହେଉଥିବା ବିଭିନ୍ନ ନାମ-ରୂପମାନେ କଣ ? ବେଦାନ୍ତ ଅଧ୍ୟୟନ ଆରମ୍ଭ କରିଥିବା ପ୍ରାଥମିକ ଶିଷ୍ୟ ମନରେ ଏହି ସନ୍ଦେହ ସ୍ୱାଭାବିକଭାବେ ଦେଖା ଦେଇଥାଏ। ପ୍ରତୀୟମାନ ହେଉଥିବା ଏହି ଜଗତ ସମ୍ବନ୍ଧରେ ଗୌଡ଼ପାଦ ଏଠାରେ ବ୍ୟାଖ୍ୟା କରିଛନ୍ତି। ଏକ ନିର୍ଦ୍ଦିଷ୍ଟ କାଳ ଏବଂ ସ୍ଥାନର ପରିପ୍ରେକ୍ଷୀରେ ଅଜ, ଶୁଦ୍ଧ ଚୈତନ୍ୟ ବହୁ ରୂପରେ ଜନ୍ମ ନେଇ ଜୀବନର କାର୍ଯ୍ୟକ୍ଷେତ୍ରରେ ସକ୍ରିୟ ଭାବରେ ଭାଗ ନେଉଥିବାର ଦେଖା ଯାଇଥାଏ।

ସର୍ବବ୍ୟାପୀ ଉଭୟ ସ୍ଥାନ ଏବଂ କାଳରେ ଗତି କରି ପାରିବେ ନାହିଁ। ଗୋଟିଏ ନିର୍ଦ୍ଦିଷ୍ଟ ବସ୍ତୁର ଗତିର ଅର୍ଥ ହେଉଛି ଗୋଟିଏ ସ୍ଥାନରୁ ଆଉ ଗୋଟିଏ ସ୍ଥାନକୁ ସମୟ ଅନ୍ତରରେ ଯିବା। କୌଣସି ବସ୍ତୁ ଏକାସାଙ୍ଗରେ ଦୁଇଟି ଅଲଗା ସମୟ କିମ୍ବା ସ୍ଥାନରେ ରହିପାରିବେ ନାହିଁ। ଜଣେ ବ୍ୟକ୍ତି ଗୋଟିଏ ଚଉକିରୁ ଯାଇ ଆଉ ଗୋଟିଏ ଚଉକିରେ ବସିପାରେ, କାରଣ ସେହି ଜଣେ ବ୍ୟକ୍ତି ଏକା ସମୟରେ ଦୁଇଟି ଅଲଗା ଚଉକି ଅଧିକାର କରି ପାରିବ ନାହିଁ। କିନ୍ତୁ ପ୍ରତ୍ୟେକ ସ୍ଥାନରେ, ସେହି ଏକାସମୟରେ ସର୍ବଦା ବିରାଜିତ ଥିବା ସତ୍ୟ, ବାସ୍ତବରେ କୌଣସି ଗତି କରି ପାରିବେ ନାହିଁ ଏବଂ ତଥାପି, ନାମ, ରୂପମାନେ ଚଳପ୍ରଚଳ ହେଉଥିବାର ଆମେ ଦେଖିପାରୁ। ନିଜ ମନ ସହିତ ଏବଂ ତା ମାଧ୍ୟମରେ ପରିଚ୍ଛିନ୍ନ ବିଷୟ ଜଗତ ସହିତ ତାଦାତ୍ମ୍ୟ ଯୋଗୁଁ ଗତିର ଏଇ ଧାରଣା ଆସିଥାଏ।

ଉଦାହରଣ ସ୍ୱରୂପ- ଆମେ ଗୋଟିଏ ଡଙ୍ଗାରେ ଯାଉଥିବାବେଳେ କୂଳରେ ଥିବା ଗଛମାନେ ଗତି କରୁଥିବା ପରି ମନେ ହୁଏ। କୂଳରେ ଥିବା ଗଛମାନଙ୍କର ବାସ୍ତବରେ ଗତି ନଥାଏ, ତଥାପି ନିଜ ଗତି ପରିପ୍ରେକ୍ଷୀରେ ଗଛମାନେ ବାସ୍ତବରେ ଗତି କରୁଥିବା ପରି ମନେ ହୁଏ। ଗତିମାନ ରେଳ ଗାଡ଼ିରେ ବସିଥିବା ପିଲାଙ୍କ ପାଇଁ ଟେଲିଗ୍ରାଫ ଖୁଣ୍ଟମାନେ ଉଡ଼ି ଯାଉଥିବା ପରି ମନେ ହୁଏ। ଗତିମାନ କୌଣସି ପଦାର୍ଥ ସମ୍ପର୍କରେ ଆସି 'ସ୍ଥିର ଓ ନିଶ୍ଚଳ' ମଧ୍ୟ ଗତି କରୁଥିବା ପରି ମନେ ହୁଏ ବୋଲି ଏହି ଉଦାହରଣରୁ ଜଣା ପଡ଼େ ।

ସେହିପରି ନିଜର ଅଚଳ ଥିବା ଆମର ମନ, ବୁଦ୍ଧି ମାଧ୍ୟମରେ ଜଗତକୁ ଦେଖିଲେ ଅଚଳ ଶାଶ୍ୱତସତ୍ୟ ଗତି ଏବଂ କାର୍ଯ୍ୟ ମାଧ୍ୟମରେ ନିଜକୁ ପ୍ରକାଶ କରିବା ପରି ଜଣାପଡ଼େ। ଏହା ଏକ ମିଥ୍ୟା ପ୍ରତୀତି ମାତ୍ର। ବିଷୟର ଖୋଳର ସମ୍ପର୍କରେ ଆସି ବହୁବିଧତାର ଚିତ୍ତ ବିଭ୍ରମ ହୁଏ, ତେଣୁ ଗୌଡ଼ପାଦ ଏଠାରେ କହୁଛନ୍ତି ଯେ, ପଦାର୍ଥମାନେ ଜନ୍ମ ନେବା ପରି (ଜାତ-ଆଭାସ),ଗତି କରୁଥିବା ପରି (ଚଳ-ଆଭାସ) ମନେ ହୁଏ। ପ୍ରକୃତରେ ସେମାନଙ୍କର ଗତି ନାହିଁ, ଜନ୍ମ ନାହିଁ ବା ବିକାର (ପରିବର୍ତ୍ତନ) ନାହିଁ। ନିର୍ବିକଳ୍ପ ସତ୍ୟ ବାସ୍ତବରେ ଅଚଳ ଏବଂ ବିଷୟର ସମସ୍ତ ଗୁଣରୁ ମୁକ୍ତ। ଏହା ସଦାସର୍ବଦା ଶାନ୍ତ ଏବଂ ଅଦ୍ୱୈତ। ପୂର୍ବ ଶ୍ଳୋକମାନଙ୍କରେ ଏହି ପଦମାନଙ୍କର ବିଶଦ ବ୍ୟାଖ୍ୟା କରାଯାଇଛି।

**ଏବଂ ନ ଜାୟତେ ଚିତ୍ତମେବଂ ଧର୍ମା ଅଜାଃ ସ୍ମୃତାଃ ।**
**ଏବମେବ ବିଜାନନ୍ତୋ ନ ପତନ୍ତି ବିପର୍ଯ୍ୟୟେ ॥୪୬॥**

ଏବଂ = ଏହିପରି, ନ ଜାୟତେ = ଜନ୍ମ ନିଏ ନାହିଁ, ଚିତ୍ତମ୍ = ମନ, ଚେତନା; ଏବଂ = ଏବଂ ଏହିପରି, ଧର୍ମାଃ = ସମସ୍ତ ଜୀବ, ଅଜାଃ = ଜନ୍ମରୁ ମୁକ୍ତ, ସ୍ମୃତାଃ = ବିଚାର କରାଯାଏ, ଏବଂ = ଏହିପରି, ଏବ ବିଜାନନ୍ତଃ = ସତ୍ୟାନୁଭବୀମାନେ, ନ ପତନ୍ତି = କେବେବିନୁହଁନ୍ତି (ଆକ୍ଷରିକ ପଡ଼ନ୍ତି ନାହିଁ ); ବିପର୍ଯ୍ୟୟେ = ମିଥ୍ୟା ଜ୍ଞାନ ।

*ଏହିପରି ଭାବରେ ମନ କେବେ ବି ଜନ୍ମ ବା ବିକାରର ଅଧୀନ ନୁହେଁ, ପ୍ରକୃତରେ ସମସ୍ତ ପ୍ରାଣୀ ଜନ୍ମରୁ ମୁକ୍ତ । ଏହି ସତ୍ୟ ଅନୁଭବ କରିଥିବା ବ୍ୟକ୍ତିମାନେ କେବେ ବି ମିଥ୍ୟା ଜ୍ଞାନର- କିମ୍ବା ସତ୍ୟ ସମ୍ବନ୍ଧୀୟ କୌଣସି ଭୂଲ୍ ଧାରଣାର ବଶବର୍ତ୍ତୀ ହୁଅନ୍ତି ନାହିଁ ॥୪୬॥*

ଆତ୍ମାଙ୍କ ସହିତ ନିଜର ଅଭିନ୍ନତା ଜାଣିଲେ ବା ଅନୁଭବ କଲେ ଜୀବନ-ମରଣ-ଚକ୍ରରୁ ଚିରଦିନ ପାଇଁ ମୁକ୍ତି ମିଳିବ । ଆତ୍ମାନୁଭବୀ ଶାଶ୍ୱତ ପୁରୁଷଙ୍କ ପାଇଁ ସସୀମତା ବା ଅନ୍ତିମ ଅବସ୍ଥା ଆଉ ରହିବ ନାହିଁ । ମନ ଏବଂ ବୁଦ୍ଧି ଦ୍ୱାରା ଅନୁଭୂତ ଜଗତ ହେଉଛି ନଶ୍ୱର,ଏବଂ କେବଳ ମନ ଏହାକୁ ଦେଖିପାରେ । ଶରୀର, ମନ ଏବଂ ବୁଦ୍ଧିର ଅତୀତହୋଇ ନିଜେ ସର୍ବବ୍ୟାପୀ ଶୁଦ୍ଧ-ଚୈତନ୍ୟ ବା ଶୁଦ୍ଧ ଆତ୍ମା ବ୍ୟତୀତ ଅନ୍ୟ କିଛି ନୁହେଁ ବୋଲି ଜାଣି ହୁଏ ଏବଂ ଏପରି ହେଲେ ଅବିନଶ୍ୱରତା ତାର ପ୍ରାପ୍ୟ ବୋଲି ସେ ଜାଣିପାରେ ।

କେବଳ ଅହଂହି ପୁଣି ଜନ୍ମ ନେଇପାରେ । ଅନୁଭୂତିର ଫଳ ଭୋଗ କରିବା ପାଇଁ ମନ ତାର ପୂରଣ ହୋଇ ନଥିବା ବାସନା ସାହାଯ୍ୟରେ ଅଧିକରୁ ଅଧିକ ଜନ୍ମ ସୃଷ୍ଟି କରେ । ଥରେ ମନର ଅତୀତ ହୋଇଗଲେ ତାଠାରେ ଆଉ ଅହଂକାର ରହେ ନାହିଁ । ଏପରି ହେବାରୁ କେହି ଆଉ ଅଧିକ ଅନୁଭୂତି ଦାବୀ କରେ ନାହିଁ । ଅଦ୍ୱୈତ ସତ୍ୟ ଅନୁଭୂତି ହେବା ପାଇଁ ଏହି ଅନୁଭୂତି ସବୁ ଅନୁଭବୀ ଠାରେ ମିଶିଯାଏ । ସେଠାରେ ନିଜ ବ୍ୟତୀତ ଅନ୍ୟ କିଛି ଅନୁଭୂତି ନ ଥାଏ ।

ତାପରଠାରୁ ସେ ଆଉ କେବେବି ନିଜକୁ ଶରୀର, ମନ, ବୁଦ୍ଧି ବୋଲି ମିଥ୍ୟା ଜ୍ଞାନ ଲାଭ କରେ ନାହିଁ । ତାର ଆଉ ନଶ୍ୱରତାର ଭୟ, ବୌଦ୍ଧିକ ସ୍ପନ୍ଦନ, ଆଧ୍ୟାତ୍ମିକ ଅସ୍ଥିରତା ରହେ ନାହିଁ ।

ଜୀବମାନଙ୍କୁ ପ୍ରକାଶ କରିବା ପାଇଁ ଏହି ଶ୍ଳୋକରେ ବହୁବଚନର ବ୍ୟବହାର କରାଯାଇଛି । ଅଦ୍ୱୈତ-ସତ୍ୟଙ୍କଠାରୁ ବହୁବିଧ ଜୀବ-ଜଗତ ସଂପୂର୍ଣ୍ଣ ଭିନ୍ନ ବୋଲି ଦର୍ଶାଇବାକୁ ଏପରି କରାଯାଇଛି ।

**ଋଜୁବକ୍ରାଦିକାଭାସମଲା ତ ସ୍ପନ୍ଦିତଂ ଯଥା ।**
**ଗ୍ରହଣଗ୍ରାହକାଭାସଂ ବିଜ୍ଞାନସ୍ପନ୍ଦିତଂ ତଥା ॥୪୭॥**

ଋଜୁ = ସିଧା, ବକ୍ର = ବଙ୍କା, ଆଦିକ = ଇତ୍ୟାଦି, ଆଭାସମ୍ = ଆଭାସ, ଅଲାତ = ଜ୍ୱଳନ୍ତ ମଶାଲ୍, ନିଆଁ ହୁଳା; ସ୍ପନ୍ଦିତଂ = ସ୍ପନ୍ଦନ ଗତି, ଯଥା = ଯେପରି, ଗ୍ରହଣ = ଦ୍ରଷ୍ଟା, ଗ୍ରାହକ = ଦୃଶ୍ୟ, ଆଭାସମ୍ = ଆଭାସ, ଯାହା ଦେଖାଯାଏ; ବିଜ୍ଞାନ = ଚୈତନ୍ୟ, ସ୍ପନ୍ଦିତମ୍ = ସ୍ପନ୍ଦନ, ଗତି; ତଥା = ସେହିପରି ।

*ଗୋଟିଏ ନିଆଁ ହୁଳାକୁ (ଜ୍ୱଳନ୍ତ ମଶାଲ)କୁ ଘୁରାଇଲେ, ସରଳ, ବକ୍ର ଆଦି ରୂପର ଆଭାସ ବ୍ୟକ୍ତି ହେବା ପରି ଚୈତନ୍ୟ ମଧ୍ୟ ସ୍ପନ୍ଦିତ ହେବାବେଳେ ଦ୍ରଷ୍ଟା ଏବଂ ଦୃଶ୍ୟ ଭାବର ଆଭାସ ହୁଏ ॥୪୭॥*

ପୂର୍ବରୁ କୁହାଯାଇଥିବା ପରମସତ୍ୟଙ୍କର ସତ୍ୟତାର ବ୍ୟାଖ୍ୟା କରିବା ପାଇଁ ଏଠାରେ ଜଳନ୍ତା ମଶାଲ୍ (ନିଆଁହୁଳା)ର ଅନୁରୂପତା ଦିଆ ଯାଇଛି । ଏହି ଉଦାହରଣର ବ୍ୟବହାର ଯୋଗୁଁ ଗୋଟିଏ ଶ୍ରେଣୀର ସମାଲୋଚକ କହନ୍ତି ଯେ ଗୌଡ଼ପାଦ ଏହାକୁ ବୌଦ୍ଧ ସାହିତ୍ୟରୁ ଉଠାଇ ଆଣିଛନ୍ତି । ଏହି ଅଧ୍ୟାୟର ଉପକ୍ରମଣିକାରେ ବ୍ୟାଖ୍ୟା କରାଯାଇ ସାରିଛି ଯେ ଏହା ନିଶ୍ଚିତ ଭାବରେ ଏକ ଅଯଥା ସମାଲୋଚନା । ମୈତ୍ରାୟଣି ଉପନିଷଦ୍ (୪-୨୪)ରେ ଋଷିଙ୍କର ବ୍ରହ୍ମଙ୍କର ବ୍ୟାଖ୍ୟାରେ ଏଠାରେ ଏକ ସ୍ପଷ୍ଟ ଚିତ୍ର ରହିଛି । ଉଭୟ ଗୌଡ଼ପାଦ ଏବଂ ବୌଦ୍ଧ ଦାର୍ଶନିକ ସେଇ ଗୋଟିଏ ଉତ୍ସରୁ ପରାମର୍ଶ ପାଇଥିବାର ଯଥେଷ୍ଟ ସମ୍ଭାବନା ରହିଛି ।

ଗୌଡ଼ପାଦ ଇଚ୍ଛାକରି ବୌଦ୍ଧଙ୍କ ପାଖରୁ ଏହା ନେଇଛନ୍ତି ବୋଲି କହିଲେ ମଧ୍ୟ ତାଙ୍କର ନିନ୍ଦା କରିବା କଥା ନୁହେଁ, କାରଣ ନିଜର ଧାରଣା ପ୍ରକାଶ କରିବା ପାଇଁ ଏହି ଅନୁରୂପତାରେ ସେ ଏକ ସୁବିଧାଜନକ ସାଧନ ଆବିଷ୍କାର କରି ପାରିଛନ୍ତି । ସବୁ ମହାନ ଆଚାର୍ଯ୍ୟଙ୍କ ଦ୍ୱାରା ସାଧାରଣତଃ ଏହା କରାଯାଇଥାଏ । ନିଜର ପିଢ଼ି ପାଇଁ ନିଜକୁ ଉପଯୋଗୀ କରିବା ପାଇଁ ସେମାନେ ଯେତେଚା ଚାହାନ୍ତି, ମୌଳିକ ହୋଇ ନାମ-ଯଶ ପାଇବା ପାଇଁ ସେତେ ଚାହାନ୍ତି ନାହିଁ । ଏପରି ସବୁ କ୍ଷେତ୍ରରେ ଆଚାର୍ଯ୍ୟମାନେ ତାଙ୍କ

ପିଢ଼ିର ଶିଷ୍ୟ ଏବଂ ସାଧକମାନଙ୍କର ମନରେ ରହିଥିବା ପ୍ରସିଦ୍ଧ ପଦ ଏବଂ ଛବିର ବ୍ୟବହାର କରନ୍ତି । ତେଣୁ ଗୌଡ଼ପାଦ ନିଆଁହୁଳାର ରୂପକ ବ୍ୟବହାର କରି ନକଲକାରୀ ବୋଲାଇବା ପରି କୌଣସି ଦୋଷ କରି ନାହାନ୍ତି ।

ଏଠାରେ ଦିଆଯାଇଥିବା ନିଆଁହୁଳାର ରୂପ ହେଲା- ସଳଖ, ବର୍ଗାକାର ବା ଅଣ୍ଡାକାର ଆକୃତିର ଆଭାସ ସୃଷ୍ଟି କରିବା ପାଇଁ ନିଆଁହୁଳାର ଜ୍ୱଳନ୍ତ ଅଗ୍ରଭାଗକୁ ବିଭିନ୍ନ ଦିଗରେ ବୁଲା ଯାଇଥାଏ । ଏହି ଆକୃତି ଭିନ୍ନଭିନ୍ନ ହୋଇଥାଏ ଏବଂ ସେମାନଙ୍କ ମଧ୍ୟରୁ ପ୍ରତ୍ୟେକଟି ନିଜର ସ୍ପଷ୍ଟ ସ୍ୱତନ୍ତ୍ର ଆକାରରେ ସାମଗ୍ରିକ ଭାବରେ ଏକ ମନମତାଣିଆ ଆକୃତି ସୃଷ୍ଟି କରିଥାଆନ୍ତି ।ଏହା କିପରି କେବେ ଏବଂ କେଉଁଠାରୁ ବାହାରିଲା ବୋଲି ଅବୋଧ ଶିଶୁମାନେହିଁ କେବଳ ପଚାରି ପାରନ୍ତି । କିନ୍ତୁ ଶିକ୍ଷିତ ଏବଂ ବିଜ୍ଞଜନଙ୍କ ମନରେ ଏ ବିଷୟରେ ସନ୍ଦେହ ନଥାଏ, କାରଣ ସେମାନେ ଜାଣିଥାନ୍ତି ଯେ, ନିଆଁ ହୁଳାରୁ ଜନ୍ମ ନେଇଥିବା ପରି ମନେ ହେଉଥିଲେ ମଧ୍ୟ ଏହି ରୂପ ସ୍ୱତନ୍ତ୍ର ଭାବରେ ଜନ୍ମ ନେଇ ନାହିଁ । ଆମେ ସମସ୍ତେ ଜାଣୁ ଯେ, ନିଆଁହୁଳା ନଥିଲେ ଏସବୁ ଆକୃତି ସୃଷ୍ଟି ହୋଇ ନଥାନ୍ତା । ଏହି ବିଭିନ୍ନ ପ୍ରକାର ଆକୃତିର ପ୍ରତ୍ୟେକଟି ଅଂଶ ପାଇଁ ନିଆଁ ହୁଳାର ଜ୍ୱଳନ୍ତ ଅଗ୍ରଭାଗ ହିଁ କାରଣ ।

**ଅସ୍ପନ୍ଦମାନମଲାତମନାଭାସମଜଂ ଯଥା ।**

**ଅସ୍ପନ୍ଦମାନଂ ବିଜ୍ଞାନମନାଭାସମଜଂ ତଥାଂ ॥୪୮॥**

**ଅସ୍ପନ୍ଦମାନମ୍** = ଗତିହୀନ, **ଅଲାତମ୍** = ନିଆଁହୁଳା, ଅନାଭାସମ୍ = ସବୁ ଆଭାସରୁ ମୁକ୍ତ, **ଅଜମ୍ = ଅପରିବର୍ତ୍ତନୀୟ ହୋଇ ରହିଥାଏ,** (ଆକ୍ଷରିକ ଅର୍ଥ; - ଅଜନ୍ମା); ଯଥା = ଯେପରି, **ଅସ୍ପନ୍ଦମାନମ୍ = ସ୍ପନ୍ଦନହୀନ, ବିଜ୍ଞାନମ୍** = ଚୈତନ୍ୟ, ଅନାଭାସମ୍ = ସବୁ ଆଭାସରୁ ମୁକ୍ତ, **ଅଜମ୍ = ଅପରିବର୍ତ୍ତନୀୟ ହୋଇରହିଥାଏ;** ତଥା = ସେହିପରି ।

*ଗତିହୀନ ହୋଇଥିବାବେଳେ ନିଆଁ ହୁଳାରେ କୌଣସି ଆଭାସ ନଥାଏ ଏବଂ ଏହା ଅପରିବର୍ତ୍ତନୀୟ ହୋଇ ରହେ । ସେହିପରି କଳ୍ପନା ନକରି ସ୍ପନ୍ଦନହୀନ ହୋଇଥିବା ଚୈତନ୍ୟ ସମସ୍ତ ପ୍ରକାର ଆଭାସରୁ ମୁକ୍ତ ହୋଇ ଅପରିବର୍ତ୍ତନୀୟ ହୋଇ ରହେ ॥୪୮॥*

ଶୁଦ୍ଧଚୈତନ୍ୟ ଅବିକାରୀ ହେଲେ ମଧ୍ୟ ବିକାରୀ ଏବଂ ଗତିଶୀଳ ପରି କିପରି ଜଣାପଡ଼େ, ସେକଥା ପୂର୍ବ ଶ୍ଳୋକରେ ଆମେ ଦେଖିଛେ । ପ୍ରକୃତିର ବାହ୍ୟ ଗତିଶୀଳ କାର୍ଯ୍ୟକଳାପରେ ପ୍ରକାଶିତ ହେଉଥିବା ଚୈତନ୍ୟ ବହୁତ ଅସ୍ଥିର ଏବଂ ଦ୍ରୁତ ବିଲୀୟମାନ

ପରି ମନେ ହୁଏ । ଅସ୍ଥିର ଏବଂ କ୍ଷଣଭଙ୍ଗୁର ବହୁବିଧ ବିଷୟ-ଜଗତରେ ଏହା ଇତସ୍ତତଃ ଘୂରିବୁଲେ ଏବଂ ସେହି ଅବିରତ ପରିବର୍ତ୍ତନର ଅବସ୍ଥାକୁ ଦେଖି ସାଧାରଣତଃ ଆମେ ବୁଝିଥାଉ ଯେ, ସତ୍ୟ ଏକ ଶାଶ୍ୱତ ପରିବର୍ତ୍ତନ ବ୍ୟତୀତ ଅନ୍ୟ କିଛି ନୁହେଁ। ଅବିକାରୀଙ୍କଠାରେ ମନେ ହେଉଥିବା ଏହି ବିକାରକୁ ବ୍ୟାଖ୍ୟା କରିବା ପାଇଁ ନିଆଁହୁଳା (ମଶାଲ)ର ଗତିର ଅନୁରୂପତା ଆମକୁ ଦିଆଯାଇଛି । ନିଆଁହୁଳାର ସ୍ପନ୍ଦନ ବା ଗତି ବନ୍ଦ ହେଲେ ଅଙ୍କ ଚିହ୍ନି ପାରୁଥିବା ସବୁ ବିଭିନ୍ନ ପ୍ରକାରର ଆକୃତି ଓ ରୂପ ନିଆଁହୁଳାର ଜ୍ୱଳନ୍ତ ଅଗ୍ରଭାଗରେ ଲୀନ ହୋଇଯିବ।

ସେହିପରି, ମାନସିକ ସ୍ତରରେ ଛଟପଟ ହେଉଥିବା ଚୈତନ୍ୟ, ବସ୍ତୁଜଗତରେ ଥିବା ନାନା ପ୍ରକାରର ନାମ-ରୂପ ଭିତରେ ଚୂର୍ଣ୍ଣବିଚୂର୍ଣ୍ଣ ହୋଇଯିବା ପରି ମନେହୁଏ ବୋଲି ଆମେ ବୁଝିବାକୁ ଗୌଡ଼ପାଦ ଚାହୁଁଛନ୍ତି । କିନ୍ତୁ ମନ ସ୍ଥିର ହୋଇ ନିଜର ଅତୀତ ହୋଇ ଯାଇଥିଲେ, ଆତ୍ମା ଆତ୍ମାରେ ଆତ୍ମାକୁ ଅନୁଭବ କଲେ ଆତ୍ମା ହିଁ କେବଳ ରହେ। ତେଣୁ, ଏପରି ହେବାରୁ ବହୁବିଧ ଜଗତ ଆଉ ରହେ ନାହିଁ। ନିଆଁହୁଳା ସ୍ଥିର ଥିବା ବେଳେ ସମସ୍ତ ଆକୃତି ଜ୍ୱଳନ୍ତ ଅଗ୍ରଭାଗରେ ମିଶିଯାଏ। ପରବର୍ତ୍ତୀ ଶ୍ଳୋକମାନଙ୍କରେ ଏହା ଆହୁରି ସୁନ୍ଦର ଭାବରେ ବର୍ଣ୍ଣନା କରାଯାଇଛି।

**ଅଲାତେ ସ୍ପନ୍ଦମାନେ ବୈ ନାଽଭାସା ଅନ୍ୟତୋଭୁବଃ ।**

**ନ ତତୋଽନ୍ୟତ୍ର ନିସ୍ପନ୍ଦାନ୍ନାଲାତଂ ପ୍ରବିଶନ୍ତି ତେ ॥୪୯॥**

ଅଲାତେ = ନିଆଁ ହୁଳା, ସ୍ପନ୍ଦମାନେ = ଗତିଶୀଳ ଥିବା, ନ ବୈ = କରେ ନାହିଁ(ହୁଏ ନାହିଁ); ଆଭାସାଃ = ଦେଖା ଯାଉଥିବା ରୂପ, ଅନ୍ୟତଃ ଭୁବଃ = ଅନ୍ୟ କେଉଁଠାରୁ ପହଞ୍ଚିଥାଏ, ନ = ସେମାନେ ମଧ୍ୟ ନଥାନ୍ତି, ତତଃ = ତାହା (ନିଆଁ ହୁଳା), ଅନ୍ୟତ୍ର = ତା ଛଡ଼ା, ନିସ୍ପନ୍ଦାତ୍ = ଗତିରୁ; ଆଲାତମ୍ = ନିଆଁହୁଳା, ତେ ନ ପ୍ରବିଶ୍ୟନ୍ତି = ଜ୍ୱଳନ୍ତ ଅଗ୍ରଭାଗକୁ ସେମାନେ ପ୍ରବେଶ କରନ୍ତି ନାହିଁ।

*ନିଆଁହୁଳା ଗତି କରୁଥିବା ବେଳେ ତାଠାରେ ଦେଖାଯାଉଥିବା ରୂପ ଅନ୍ୟ କେଉଁଠାରୁ ତାପାଖକୁ ଆସି ନଥାନ୍ତି। ନିଆଁହୁଳା ଯେତେବେଳେ ଗତିହୀନ ହୋଇଯାଏ (ସ୍ଥିର ହୁଏ) ସ୍ଥିର, ଜ୍ୱଳନ୍ତ ଅଗ୍ରଭାଗରୁ ରୂପମାନେ ଅନ୍ୟ କେଉଁଠିକୁ ଯାଆନ୍ତି ନାହିଁ। ନିଆଁହୁଳା ଗତିହୀନ ଥିବାବେଳେ ତାଦ୍ୱାରା ସୃଷ୍ଟି ହୋଇଥିବା ରୂପ ଜ୍ୱଳନ୍ତ ଅଗ୍ରଭାଗକୁ ପଶିଯିବା କଥା ମଧ୍ୟ ଆମେ କହି ପାରିବା ନାହିଁ ॥୪୯॥*

ଏଠାରେ କହିବାର କଥା ହେଲା ଯେ, ନିଆଁହୁଳା ଗତିଶୀଳ ଥିବାବେଳେ ଆମେ ତାଠାରେ ଦେଖୁଥିବା ବିଭିନ୍ନ ଜ୍ୟାମିତିକ ଆକୃତି ହେଉଛି ସେହି ଗତିର ହିଁ ମିଥ୍ୟା ପରିପ୍ରକାଶ ଏବଂ ଏପରି ହୋଇଥିବାରୁ ସେମାନେ କେଉଁଠାରୁ ହେଲେ ଆସି ନଥାନ୍ତି ଏବଂ କେଉଁଠାକୁ ଯାଆନ୍ତି ମଧ୍ୟ ନାହିଁ। ଏପରିକି ସେମାନେ ସେହି ଜ୍ୱଳନ୍ତ ଅଗ୍ରଭାଗକୁ ଯିବାର ସମ୍ଭାବନା ମଧ୍ୟ ମିଥ୍ୟା, କାରଣ ସେମାନେ ସେହିଠାରୁ ଅର୍ଥାତ୍ ନିଆଁହୁଳାରୁ ବାହାରି ନଥାନ୍ତି ।

୫୧ତମ ଶ୍ଳୋକରେ ଆତ୍ମା ପ୍ରତି ପ୍ରଜୁଜ୍ୟ ଏହି ସାରୂପ୍ୟର ସମାନ୍ତରାଳ ଧାରଣା ବର୍ଣ୍ଣନା କରାଯିବ।

**ନ ନିର୍ଗତା ଅଲାତାତ୍ତେ ଦ୍ରବ୍ୟତ୍ୱାଭାବଯୋଗତଃ।**

**ବିଜ୍ଞାନେଽପି ତଥୈବ ସ୍ୟୁରାଭାସସ୍ୟାବିଶେଷତଃ ॥୫୦॥**

ନ ନିର୍ଗତାଃ = ବାହାରେ ନାହିଁ, ଅଲାତାତ୍ = ନିଆଁ ହୁଳାରୁ, ତେ = ସେମାନେ (ଆକୃତିମାନେ); ଦ୍ରବ୍ୟତ୍ୱ = ଦ୍ରବ୍ୟ, ଅଭାବ = ନଥିବା, ଯୋଗତଃ = ପ୍ରଜୁଜ୍ୟ, ବିଜ୍ଞାନେ ଅପି = ଚୈତନ୍ୟ କଥା ମଧ୍ୟ, ତଥା-ଇବ ସ୍ୟୁଃ = ସେହିପରି ହେବ, ଆଭାସସ୍ୟ = ଆଭାସର, ଅବିଶେଷତଃ = ସାଦୃଶ୍ୟ ଥିବାରୁ।

*ବିଭିନ୍ନ ଆକାରର ଆକୃତି ନିଆଁହୁଳାରୁ ବାହାରି ନଥାଏ, କାରଣ ସେମାନେ 'ଦ୍ରବ୍ୟ' ନୁହଁନ୍ତି। ଚୈତନ୍ୟ ପ୍ରତି ମଧ୍ୟ ଏହା ପ୍ରଜୁଜ୍ୟ କାରଣ ଦୁଇଟି ଯାକର ଆଭାସ ଅନୁରୂପ ଅଟେ ॥୫୦॥*

ଶ୍ରୀଶଙ୍କର ତାଙ୍କର ଟୀକାରେ ଏକଥା ପରିଷ୍କାର କରି ଦେଇଛନ୍ତି । ସେ କହିଛନ୍ତି ଯେ, 'ଆହୁରି ମଧ୍ୟ ଗୋଟିଏ ଘର ଭିତରୁ କିଛି ବାହାରିବା ପରି ସେହି ଆକୃତି ନିଆଁହୁଳାରୁ ବାହାରନ୍ତି ନାହିଁ। କୌଣସି ଜିନିଷରୁ କିଛି ବାହାରି ଆସିଲେ, ବାହାରିଥିବା ଜିନିଷ, ସେ ଯେଉଁଠାରୁ ବାହାରେ, ତାହା ଅପେକ୍ଷା ସ୍ପଷ୍ଟତଃ ଭିନ୍ନ ହେବା କଥା। ଉଦାହରଣ ସ୍ୱରୂପ - ଜଣେ 'ମା' ନିଜକୁ ଜନ୍ମ ଦେଇ ପାରିବ ନାହିଁ। ସେ ଗୋଟିଏ ଶିଶୁକୁ ଜନ୍ମ ଦେଇପାରେ, ଯାହାର ମା'ଠାରୁ ସ୍ୱତନ୍ତ୍ର ଏକ ନିଜସ୍ୱ ବ୍ୟକ୍ତିତ୍ୱ ଥିବ। ଆକୃତି ଅସତ୍ୟ ହୋଇଥିବାରୁ ନିଆଁହୁଳାର ଜ୍ୱଳନ୍ତ ଅଗ୍ରଭାଗରୁ ସେମାନେ ବାହାରି ପାରିବେ ନାହିଁ।

ସେହିପରି ମଧ୍ୟ ସେମାନେ ନିଆଁହୁଳାରେ ପଶି ଯାଇଛନ୍ତି ବୋଲି ଆମେ କହି ପାରିବା ନାହିଁ। ଗୋଟିଏ ସତ୍ୟ ଦ୍ରବ୍ୟ କେବଳ କାହା ଭିତରେ ପଶି ପାରିବ । ଗୋଟିଏ ଅସତ୍ୟ ଦ୍ରବ୍ୟ ପଶି ପାରିବ ନାହିଁ ବା ବାହାରି ପାରିବ ନାହିଁ। କୌଣସି ବୋତଲରେ ତୁମେ ମରୀଚିକା ପାଣି ପୁରେଇ ପାରିବ ନାହିଁ କିମ୍ବା ବୋତଲରୁ ଟୋପାଏ ମଧ୍ୟ ବାହାର କରି ପାରିବ ନାହିଁ। ସେହିପରି, ଏହି ଆକୃତି ଅସତ୍ୟ ହୋଇଥିବାରୁ ନିଆଁହୁଳାରୁ ବାହାରି ପାରିବ ନାହିଁ କିମ୍ବା ତା ଭିତରେ ପଶି ପାରିବ ନାହିଁ।

ଏହି ଆକୃତି ବାହାରି ନଥିବାରୁ ଅନ୍ୟ କେଉଁଠି ଅଦୃଶ୍ୟ ହେବାର ପ୍ରଶ୍ନ ମଧ୍ୟ ଉଠୁନାହିଁ। ଇନ୍ଦ୍ରଧନୁ ଆକାଶରୁ ଆସି ନଥାଏ। ଏହା ଅନ୍ୟ କୌଣସି ରାଜ୍ୟକୁ ମଧ୍ୟ ଯାଇପାରେ ନାହିଁ, କାରଣ ବାତାବରଣରେ ଏହା ହେଉଛି ଏକ ମିଥ୍ୟା ଆଭାସ।

ସେହିପରି ବିକ୍ଷିପ୍ତ ମନ ସହିତ ସଂଯୁକ୍ତ ହୋଇ ଶୁଦ୍ଧ ଚୈତନ୍ୟ ଗତି କରୁଥିବା ପରି ମନେ ହେଲେ ତାଙ୍କର ସ୍ପନ୍ଦନରେ ସେ ବିଭିନ୍ନ ମିଥ୍ୟା ନାମ ଏବଂ ରୂପ ସୃଷ୍ଟି କରନ୍ତି। ଏହି ବହୁବିଧ ଆଭାସ ଗୋଟିଏ ଜଗତ ସୃଷ୍ଟି କରି ପାରିବ ନାହିଁ କିମ୍ବା ଜଗତ ମଧ୍ୟ ଶୁଦ୍ଧ ଚୈତନ୍ୟଙ୍କଠାରେ ମିଶିଯାଇ ପାରିବ ନାହିଁ। ପରବର୍ତ୍ତୀ ଶ୍ଳୋକରେ ବିଷୟବସ୍ତୁ ପ୍ରତି ଏହି ଅନୁରୂପତାର ପ୍ରୟୋଗ ବିଶଦ ଭାବରେ ଆଲୋଚନା କରାଯାଇଛି।

**ବିଜ୍ଞାନେ ସ୍ପନ୍ଦମାନେ ବୈ ନାଽଭାସା ଅନ୍ୟତୋଭୁବଃ।**

**ନ ତତୋଽନ୍ୟତ୍ର ନିସ୍ପନ୍ଦାନ୍ନ ବିଜ୍ଞାନଂ ବିଶନ୍ତି ତେ ॥୫୧॥**

ବିଜ୍ଞାନେ = ଚୈତନ୍ୟ, ସ୍ପନ୍ଦମାନେ = କାର୍ଯ୍ୟ କରିବାର କଳ୍ପନା ସହିତ ସଂଯୁକ୍ତ ହୋଇଥାଏ, ବୈ = ମଧ୍ୟ, ନ = ହୁଏ ନାହିଁ, ଆଭାସାଃ = ଆଭାସ, ଅନ୍ୟତଃ ଭୂବଃ = ଅନ୍ୟ କେଉଁଠାରୁ ଆସେ ନାହିଁ, ନ = କିମ୍ବା, ତତଃ = ତାହା, ଅନ୍ୟତ୍ର = ଅନ୍ୟଠାରେ, ନିସ୍ପନ୍ଦାତ୍ = ନିଷ୍କ୍ରିୟ ଅଟେ, ନ = କିମ୍ବା, ବିଜ୍ଞାନମ୍ = ଚୈତନ୍ୟ, ବିଶନ୍ତି = ଅନ୍ୟ କେଉଁଠାକୁ ଯାଆନ୍ତି; ତେ = ସେମାନେ।

**ନ ନିର୍ଗତାସ୍ତେ ବିଜ୍ଞାନାଦ୍ ଦ୍ରବ୍ୟତ୍ୱାଭାବ୍‌ଯୋଗତଃ ।**
**କାର୍ଯ୍ୟକାରଣତାଭାବାତ୍ ଯତୋଽଚିନ୍ତ୍ୟାଃ ସଦୈବ ତେ ।।୫୨।।**

ନ ନିର୍ଗତାଃ = ପ୍ରବେଶ କରେ ନାହିଁ, ତେ = ସେମାନେ(ଆଭାସମାନେ), ବିଜ୍ଞାନାତ୍ = ଚୈତନ୍ୟରୁ, ଦ୍ରବ୍ୟତ୍ୱ = ପ୍ରକୃତ ପରିଚୟ, ଅଭାବ = ନଥାଏ, ଯୋଗତଃ = ଉପଲବ୍ଧି, କାର୍ଯ୍ୟ କାରଣତା = କାର୍ଯ୍ୟ-କାରଣ ସମ୍ପର୍କ, ଅଭାବାତ୍ = (ଏବଂ) ସେମାନେ ନ ଥିବାରୁ, ଯତଃ = କାରଣରୁ, ଅଚିନ୍ତ୍ୟାଃ = ଚିନ୍ତାର ବହିର୍ଭୂତ, ସଦା ଏବ = ସର୍ବଦା, ତେ = ସେମାନେ ।

*ଚୈତନ୍ୟକୁ କାର୍ଯ୍ୟ-କାରଣର ଧାରଣା ସହିତ ସଂଯୁକ୍ତ କଲେ ତାଠାରେ ଦେଖା ଯାଉଥିବା ଆଭାସ ଅନ୍ୟ କେଉଁଠାରୁ ଆସେ ନାହିଁ। ଚୈତନ୍ୟ ନିଷ୍କ୍ରିୟ ଥିବାବେଳେ, ସେହି ନିଷ୍କ୍ରିୟ ଚୈତନ୍ୟ ପାଖରୁ ଆଭାସ ଅନ୍ୟ କେଉଁଠାକୁ ଯାଏ ନାହିଁ। ଆଭାସ ଚୈତନ୍ୟଠାରେ ମଧ୍ୟ ପ୍ରବେଶ କରେ ନାହିଁ। ଆଭାସ ବାସ୍ତବସତ୍ତା ହୋଇ ନଥିବାରୁ ଚୈତନ୍ୟଠାରୁ ବାହାରନ୍ତି ନାହିଁ। ଏସବୁ ଆମ ବୋଧଶକ୍ତିର ଅତୀତ , କାରଣ ସେମାନେ କାର୍ଯ୍ୟ-କାରଣ ସମ୍ପର୍କର ଅଧୀନ ନୁହଁନ୍ତି ।।୫୧-୫୨।।*

ଆଧ୍ୟାତ୍ମିକ ପ୍ରସଙ୍ଗରେ ଚୈତନ୍ୟ ଯେଉଁ ସ୍ଥାନ ଅଧିକାର କରେ, ନିଆଁହୁଳାର ସାରୂପ୍ୟ ସେହି ସ୍ଥାନ ଅଧିକାର କରେ ବୋଲି ପ୍ରମାଣ କରିବାକୁ ଏହି ଦୁଇଟି ଶ୍ଳୋକର ସମାନ୍ତରାଳ ଭାବେ ବ୍ୟବହାର କରାଯାଇଛି । ଅନୁବାଦରୁ ଯାହା ସ୍ପଷ୍ଟ ହେଉଛି ସାଦୃଶ୍ୟର ସମସ୍ତ ସ୍ୱତନ୍ତ୍ର ପ୍ରକାର ନିଜେ ନିଜର ବ୍ୟାଖ୍ୟା କରନ୍ତି । ଚୈତନ୍ୟରୁ ସେମାନେ କିପରି ଏବଂ କାହିଁକି ବାହାରିଲେ- ଏହି ମିଥ୍ୟା ଆଭାସ କାହିଁକି ଏବଂ କିପରି ବୋଲି ଏକ ସଂପୂର୍ଣ୍ଣ ବୌଦ୍ଧିକ ବ୍ୟାଖ୍ୟା ଦେବା ପାଇଁ ଆମର ଅସାମର୍ଥ୍ୟ ହେଉଛି ଏକମାତ୍ର ଅସୁବିଧା ।

ଜଗତ ଅସତ୍ୟ ହୋଇଥିବାରୁ ଆମେ ବାସ୍ତବରେ କହି ପାରିବା ନାହିଁ ଯେ, ଏହା ପରମସତ୍ୟଙ୍କ ଠାରୁ ବାହାରିଛି । କିନ୍ତୁ ଅସତ୍ୟ ହେଲେ ବି, ପରମସତ୍ୟଙ୍କ ସହିତ ଏହାର ଏତେ ସାଦୃଶ୍ୟ ଅଛି ଯେ ବନ୍ଧନ ଦ୍ୱାରା ଏହା ଆମକୁ ଅଣନିଃଶ୍ୱାସୀ କରି ପାରିବ ଏବଂ ସୁଖଦୁଃଖର ସାଦୃଶ୍ୟ ଦେଇ ପାରିବ। ଏହା କିପରି ? ସତ୍ୟରୁ ଅସତ୍ୟ କିପରି ଆସିଛି ବୋଲି ବ୍ୟାଖ୍ୟା କରିବା ପ୍ରତ୍ୟେକ ଦାର୍ଶନିକ ପାଇଁ ନିଶ୍ଚିତ ଭାବରେ ଅସମ୍ଭବ ହୋଇପଡ଼େ, କାରଣ ଅସତ୍ୟ ସତ୍ୟରୁ ବାହାରି ପାରିବ ନାହିଁ। ତଥାପି ଆମେ ଭ୍ରାନ୍ତ ଅବସ୍ଥାରେ ଥିବା ପର୍ଯ୍ୟନ୍ତ ଅସତ୍ୟ ଆମକୁ ପ୍ରଭାବିତ କରି ପାରିବା ପରି ଏବଂ ଆମକୁ ଅନୁଭୂତି ଯୋଗାଇବା ପରି ମନେ ହୁଏ। ଏହାର ଏକମାତ୍ର ନିଦାନ ହେଲା - ଭ୍ରାନ୍ତିରୁ ବାହାରି ଆସିବା, ଏହି

ଆତ୍ମ-ସମ୍ମୋହନ ରୁ ବାହାରି ଆସିବା, ଏହି ଆତ୍ମ-ସମ୍ମୋହନ ବିନାଶ କରିବାର ଧାରା ପୂର୍ଣ୍ଣ ହେଲେ ଆଧ୍ୟାତ୍ମିକତାର ଲକ୍ଷ୍ୟ ପୂର୍ଣ୍ଣ ହୁଏ ଏବଂ ଏହା ପରିପୂର୍ଣ୍ଣ ହୁଏ।

ଅପରିଛିନ୍ନତାରୁ ପରିଛିନ୍ନତା କିପରି ଆସିଛି, ତାହା ବ୍ୟାଖ୍ୟା କରି ହେବ ନାହିଁ ବୋଲି ଏହି ଶ୍ଳୋକ ସରଳ ଭାବରେ କହି ଦେଇଛି। ଗୌଡ଼ପାଦଙ୍କ ପରି ମହାନ୍ ଚିନ୍ତକ ନିଜେ ସ୍ୱୀକାର କରିଛନ୍ତି, "ମହାନ ଗୁରୁଙ୍କର ବୌଦ୍ଧିକ ଅଳସୁଆମି ଯୋଗୁଁ ଏହା ନୁହେଁ, ବରଂ ତର୍କବିଜ୍ଞାନର ଅସାମର୍ଥ୍ୟ ଯୋଗୁଁ"। ସେ କହୁଛନ୍ତି ଯେ, କାର୍ଯ୍ୟ-କାରଣ ନିୟମ କଳ୍ପନା ହୋଇ ନଥିବାରୁ ଏହି ନିର୍ଦ୍ଦିଷ୍ଟ ଦୃଷ୍ଟାନ୍ତରେ କାମ କରିପାରେ ନାହିଁ ଏବଂ ତେଣୁ, ଶାଶ୍ୱତ ଅସୀମ ସସୀମ ପରି ମନେ ହେଉଥିବାର କାରଣ ଖୋଜି ନ ଜାଣିଲେ କୌଣସି ବିଜ୍ଞାନ-ସମ୍ମତ ବ୍ୟାଖ୍ୟା ସମ୍ଭବ ହେବ ନାହିଁ।

କେବଳ କାର୍ଯ୍ୟ-କାରଣ କ୍ଷେତ୍ରରେ ହିଁ ବିଜ୍ଞାନ କାର୍ଯ୍ୟ କରିପାରିବ। ମନ ଏବଂ ବୁଦ୍ଧି ନିଜକୁ ତୀକ୍ଷଣ ଯୁକ୍ତିଯୁକ୍ତତାର ଶୁଭ୍ର-ଜ୍ୟୋତିରେ ପରିବର୍ତ୍ତିତ କଲେ, ସଚେତ ଭାବରେ ଏହା କାର୍ଯ୍ୟ-କାରଣ-ସମ୍ପର୍କର ନିମ୍ନ ସ୍ତରର ଅତୀତ ହୋଇଯାଏ ଏବଂ ଥରେ ଭ୍ରାନ୍ତିର ସୀମା ପାରିହେଲେ ଏହା ସତ୍ୟ ରାଜ୍ୟକୁ ଉତ୍‌ଥିତ ହୁଏ। ସେଠାରେ, ଶୁଦ୍ଧ-ଚୈତନ୍ୟଙ୍କ ଠାରେ କାହାର ହେତୁ ନଥିବା ଯୋଗୁଁ କାର୍ଯ୍ୟ-କାରଣର ସମ୍ପର୍କ ନଥାଏ। ସତ୍ୟ ଯେଉଁଠାରେ ଏକମେବ ଅଦ୍ୱିତୀୟ, ସେଠାରେ କିଛିହେଲେ ସୃଷ୍ଟି କରାଯାଇ ପାରିବ ନାହିଁ।

ସାବଧାନତାର ସହିତ ଆମେ ଲକ୍ଷ୍ୟ କରିବା କଥା ଯେ, ସକ୍ରିୟ ଚୈତନ୍ୟ ହିଁ ଆମର ଜାଗ୍ରତ ଏବଂ ସ୍ୱପ୍ନାବସ୍ଥାର ଚୈତନ୍ୟ ବୋଲି ଗୌଡ଼ପାଦ ସୂଚାଇ ଦେଇଛନ୍ତି। ଆଚାର୍ଯ୍ୟ ନିଷ୍କ୍ରିୟ ଚୈତନ୍ୟ କହିବାର ଅର୍ଥ ହେଲା ସୁଷୁପ୍ତି ଅବସ୍ଥାର ଚୈତନ୍ୟ । ଉଭୟ ଜାଗ୍ରତ ଏବଂ ସ୍ୱପ୍ନାବସ୍ଥାରେ ଅନୁଭୂତ ସମଗ୍ର ବହୁବିଧ ଜଗତ ସେଠାରେ ନଥାଏ। ଏହାର ଅର୍ଥ ନୁହେଁ ଯେ, ଜାଗ୍ରତ ଏବଂ ସ୍ୱପ୍ନାବସ୍ଥା ଅନ୍ୟ କେଉଁଠିକୁ ଯାଇଛନ୍ତି। ସୁଷୁପ୍ତି ଭିତରେ ସେମାନେ ପଶି ଯାଇଛନ୍ତି ବୋଲି ମଧ୍ୟ ଆମେ କହି ପାରିବା ନାହିଁ। ଚେତନାର ତିନୋଟି ସ୍ତର, ବୁଦ୍ଧି ଶିଶୁ ସୁଲଭ ମନକୁ କହୁଥିବା ପରୀ କାହାଣୀ ବ୍ୟତୀତ ଅନ୍ୟ କିଛି ହୋଇ ନଥିବାରୁ ଏହା ପ୍ରକ୍ଷେପିତ ହୁଏ ନାହିଁ କିମ୍ବା କେଉଁଠାରେ ମିଶିଯାଇ ନଥାଏ।

**ଦ୍ରବ୍ୟଂ ଦ୍ରବ୍ୟସ୍ୟ ହେତୁଃ ସ୍ୟାଦନ୍ୟଦନ୍ୟସ୍ୟ ଚୈବ ହି ।**
**ଦ୍ରବ୍ୟତ୍ୱମନ୍ୟଭାବୋ ବା ଧର୍ମାଣାଂ ନୋପପଦ୍ୟତେ ॥୫୩॥**

ଦ୍ରବ୍ୟମ୍ = ଦ୍ରବ୍ୟ, ଦ୍ରବ୍ୟସ୍ୟ = ଦ୍ରବ୍ୟର, ହେତୁଃ = ହେତୁ, ସ୍ୟାତ୍ = ହୋଇପାରେ, ଅନ୍ୟତ୍ = ଅନ୍ୟ ଗୋଟିଏ, ଅନ୍ୟସ୍ୟ = ଅନ୍ୟ କାହାର, ଚ ଏବ ହି = ଏବଂ ପ୍ରକୃତରେ କେବଳ, ଦ୍ରବ୍ୟତ୍ୱଂ = ଦ୍ରବ୍ୟତ୍ୱ, ବା ଅନ୍ୟଭାବଃ = କିମ୍ବା (ଦ୍ରବ୍ୟ ବ୍ୟତୀତ) ଅନ୍ୟ କିଛି; ଧର୍ମାଣାମ୍ = ଜୀବଙ୍କର, ନ ଉପପଦ୍ୟତେ = ସମ୍ଭବ ନୁହେଁ ।

*ଗୋଟିଏ ଭୌତିକ ଦ୍ରବ୍ୟ ଅନ୍ୟଗୋଟିଏ ଦ୍ରବ୍ୟର ଉତ୍ପାଦ ହୋଇପାରେ, ଯାହା ଦ୍ରବ୍ୟ ନୁହେଁ, ଅନ୍ୟ ଗୋଟିଏ ଅଦ୍ରବ୍ୟର ତାହା ହେତୁ ହୋଇପାରେ । କିନ୍ତୁ ଜୀବାତ୍ମା ଦ୍ରବ୍ୟ ହୋଇ ପାରିବ ନାହିଁ, କିମ୍ବା ଦ୍ରବ୍ୟ ବ୍ୟତୀତ 'ଅନ୍ୟ' କିଛି ହୋଇ ପାରିବ ନାହିଁ ॥୫୩॥*

ଗୌଡ଼ପାଦ ଶିଷ୍ୟର ଭ୍ରାନ୍ତ ମନର ପିଛା ତଥାପି ଛାଡିନାହାନ୍ତି । କାର୍ଯ୍ୟ-କାରଣର ନିୟମ ଉପରେ ତାର ଅଗାଧ ବିଶ୍ୱାସରୁ ଶିଷ୍ୟକୁ ମୁକ୍ତ କରିବା ପାଇଁ ସେ ଅଧିକରୁ ଅଧିକ ତର୍କର ପାହାଚ ପକାଉଛନ୍ତି । ଭୌତିକ ଏବଂ ରାସାୟନିକ ଜଗତର ପରିବର୍ତ୍ତନରେ ଏବଂ ଧାରାରେ ଆମେ ଦେଖିବାକୁ ପାଉ ଯେ ଗୋଟିଏ ଦ୍ରବ୍ୟ ଆଉଗୋଟିଏ ଦ୍ରବ୍ୟ ସୃଷ୍ଟି କରିପାରେ । ମନୋବିଜ୍ଞାନ ଏବଂ ମାନବିକ ସମ୍ପର୍କର ଜଗତରେ 'ଅଦ୍ରବ୍ୟ' ଆଉ ଗୋଟିଏ 'ଅଦ୍ରବ୍ୟ' ସୃଷ୍ଟି କରିବାର ଆମେ ଦେଖିପାରୁ ।

ଏହି ଶ୍ଳୋକରେ ଗୁଣ ଅର୍ଥରେ ଅଦ୍ରବ୍ୟର ବ୍ୟବହାର କରାଯାଇଛି । ତେଣୁ ମୋର ପ୍ରେମ କାହାପାଇଁ ଯଦି ନିଷ୍ପାପର ଏବଂ ସାମଗ୍ରିକ ହୁଏ, ତେବେ ତାହା ତାଠାରେ ଅଧିକତର ପ୍ରେମ ସୃଷ୍ଟି କରିବ । ଶିକ୍ଷା, ବିଶେଷ ଗୁଣଯୁକ୍ତ ହେଲେ ପଶୁକୁ ମଧ୍ୟ ପୋଷା ମନେଇ ପାରିବ । ତେଣୁ ପ୍ରେମ, ଦୟା ଇତ୍ୟାଦି (ଅଦ୍ରବ୍ୟ) ସୃଷ୍ଟି କରି ପାରିବ, ଘୃଣା ଘୃଣା ସୃଷ୍ଟି କରିପାରିବ, ପ୍ରେମ ପ୍ରେମ ସୃଷ୍ଟି କରିପାରିବ, ଇତ୍ୟାଦି ।

କିନ୍ତୁ ଗୋଟିଏ ଜୀବାତ୍ମା ଏକ ସାମାନ୍ୟ ଦ୍ରବ୍ୟ କିମ୍ବା ଅଦ୍ରବ୍ୟ ହୋଇ ନଥିବାରୁ ଏହାକୁ କେହି ସୃଷ୍ଟି କରି ପାରିବ ନାହିଁ, ଏବଂ ଏହା ମଧ୍ୟ କିଛି ସୃଷ୍ଟି କରି ପାରିବ ନାହିଁ ।

**ଏବଂ ନ ଚିତ୍ତଜା ଧର୍ମାଶ୍ଚିତ୍ତଂ ବାଽପି ନ ଧର୍ମଜମ୍ ।**
**ଏବଂ ହେତୁଫଲାଜାତିଂ ପ୍ରବିଶନ୍ତି ମନୀଷିଣଃ ॥୫୪॥**

ଏବଂ = ଏହିପରି, ନ ଚିତ୍ତଜା = ମନ ବା ଚୈତନ୍ୟ ଦ୍ୱାରା ସୃଷ୍ଟି ହୋଇ ନଥିବା; ଧର୍ମାଃ = ବାହ୍ୟ ଇନ୍ଦ୍ରିୟ ବିଷୟର ଆଭାସ, ନ ବା-ଅପି ଚିତ୍ତମ୍ = ଏପରିକି ମନ ମଧ୍ୟ ନୁହେଁ, ଧର୍ମଜମ୍ = ସେମାନଙ୍କ ଦ୍ୱାରା (ବାହ୍ୟ ପଦାର୍ଥ) ସୃଷ୍ଟି; ଏବମ୍ = ଏହିପରି, ହେତୁ ଫଳ = ଉଭୟ କାରଣ ଏବଂ କାର୍ଯ୍ୟ(ହେତୁ); ଅଜାତିମ୍ = ଜନ୍ମ ହୋଇ ନଥିବାର, ପ୍ରବିଶନ୍ତି = ଧରାଯାଏ, ଦୃଢ଼ କରାଯାଏ; ମନୀଷିଣଃ = ବିଜ୍ଞଜନମାନେ ।

*ସେହିପରି ବାହ୍ୟ ବିଷୟ-ଜଗତ ମନ ଦ୍ୱାରା ସୃଷ୍ଟି ହୋଇ ନଥାଏ । ମନ ମଧ୍ୟ ସେମାନଙ୍କ ଦ୍ୱାରା ସୃଷ୍ଟି ହୋଇଛି ବୋଲି ଆମେ କହି ପାରିବା ନାହିଁ । ତେଣୁ ବିଜ୍ଞଜନମାନେ ଅଜାତ ବା ଅସୃଷ୍ଟବାଦକୁ (ଅସୃଷ୍ଟବାଦରେ କାର୍ଯ୍ୟ-କାରଣ ସମ୍ପର୍କର ପୂର୍ଣ୍ଣ ନିଷେଧ କରା ଯାଇଛି) ପରମସତ୍ୟ ବୋଲି କହନ୍ତି ॥୫୪॥*

ବିଷୟଜଗତର ବ୍ୟାଖ୍ୟା କରୁଥିବା ସାଧାରଣ ସିଦ୍ଧାନ୍ତ ହେଲା, ମନ ପ୍ରକ୍ଷେପଣ କରେ ଏବଂ ମନୋବିଜ୍ଞାନୀ ମାନଙ୍କର ଆଉ ଗୋଟିଏ ସିଦ୍ଧାନ୍ତ ଅଛି । ଏହି ମନୋବିଜ୍ଞାନୀମାନେ ପ୍ରମାଣ କରିବାକୁ ଚାହାଁନ୍ତି ଯେ ଇନ୍ଦ୍ରିୟମାନେ ନିରନ୍ତର ଯେଉଁ ପ୍ରେରଣା ପାଆନ୍ତି, ତାହାକୁ ଦୃଶ୍ୟଜଗତ ଭାବରେ ସାବ୍ୟସ୍ତ କରନ୍ତି । ତାହା ହିଁ ସାମଗ୍ରିକ ଭାବରେ ମନର ଧାରଣା ସୃଷ୍ଟି କରେ । ଏତେ ପର୍ଯ୍ୟନ୍ତ ଆମେ ଯାହା ଦେଖିଛେ, ସେଥିରୁ ସ୍ପଷ୍ଟ ହୁଏ ଯେ, ଯାହା ଦେଖାଯାଏ, ମନ ଭାବରେ ତାର ବ୍ୟାଖ୍ୟା କରିହେବ ନାହିଁ, ଦୃଶ୍ୟ ଦ୍ୱାରା ମଧ୍ୟ ମନର ବ୍ୟାଖ୍ୟା କରିହେବ ନାହିଁ ।

ମନ ଦେଖି ପାରୁଥିବା ବିଷୟଜଗତ ବାସ୍ତବରେ କଦାପି ନାହିଁ-ତେଣୁ ଏହା ହିଁ ଶେଷ କଥା । ଗୌଡ଼ପାଦ ଏହି ଶ୍ଳୋକ ଶେଷ କରି ଜଣାଇଛନ୍ତି କାହିଁକି, "ଅଜାତ ବା ଅସୃଷ୍ଟିବାଦ ହେଉଛି ଏକମାତ୍ର ସିଦ୍ଧାନ୍ତ, ଯାହା କି ପୂର୍ଣ୍ଣ ପରିପକ୍ୱ ବୁଦ୍ଧିର ସମୀକ୍ଷାର ଆଧାର ହୋଇ ପାରିବ" ବୋଲି ବିଜ୍ଞଜନମାନେ କହିଛନ୍ତି । କାର୍ଯ୍ୟ-କାରଣ ନିୟମ ସମ୍ପର୍କରେ ଆମେ ସାଧାରଣତଃ ଆମର ଅତୀବ ଶ୍ରଦ୍ଧାରେ ସ୍ପଷ୍ଟ ଅନ୍ଧବିଶ୍ୱାସ ପୋଷଣ କରିଥାଉ, ପରୋକ୍ଷ ଭାବରେ ସେ ତାହାକୁ ଇଙ୍ଗିତ କରିଛନ୍ତି ।

ଏହି ଶ୍ଳୋକଟିକୁ ଜୀବନରେ ପ୍ରୟୋଗ କରି ପାରିଲେ ପରିବର୍ତ୍ତନଶୀଳ ଏବଂ ବୌଦ୍ଧିକ କଳ୍ପନା ଉପସ୍ଥାପିତ କରୁଥିବା, ଅବାସ୍ତବ ସ୍ୱପ୍ନଦ୍ରଷ୍ଟାଙ୍କର ସ୍ୱପ୍ନ-ଅଭିରୁଚିକୁ ହିଁ ସନ୍ତୁଷ୍ଟ କରୁଥିବା ସାମାନ୍ୟ ସିଦ୍ଧାନ୍ତ ମାତ୍ର ହେବ ନାହିଁ ।

ବାସ୍ତବରେ ଏହା ହେଉଛି ଲାଭଦାୟକଭାବେ ଜୀବନରେ ପ୍ରୟୋଗ କରି ପାରିବାର ଏକ ନିୟମ। ଉପରୋକ୍ତ ବୌଦ୍ଧିକ ପ୍ରମାଣରୁ ଆମେ ଯଦି ଏହି ସିଦ୍ଧାନ୍ତରେ ଉପନୀତ ହେବା ଯେ ବିଷୟଜଗତ ଅବାସ୍ତବ ହୋଇ ଥିବାରୁ ଆମପାଇଁ ଏକ ମନ ସୃଷ୍ଟି କରି ପାରିବ ନାହିଁ, ତେବେ ମଣିଷ ବାହ୍ୟ ପରିବେଶର ଆଉ ଶିକାର ହେବ ନାହିଁ, ଏହା ସ୍ପଷ୍ଟ। ଆମେ ଜଗତ ଦ୍ୱାରା ସୃଷ୍ଟି ହୋଇ ନାହୁଁ କିମ୍ବା ଆମେ ମଧ୍ୟ ଜଗତ-ସ୍ୱପ୍ନ ସୃଷ୍ଟି କରୁ ନାହୁଁ। ପରିସ୍ଥିତି ଆମକୁ ଗଢ଼େ ନାହିଁ ବା ଭାଙ୍ଗେ ନାହିଁ। ଆମେ ପରିସ୍ଥିତିର ଦାସ ନୋହୁଁ ଓ ସର୍ବଦା ପରିସ୍ଥିତିର ସ୍ୱାମୀ ହୋଇଥିବାରୁ ଆମ ପାଇଁ ଆମର ଦୈନନ୍ଦିନ ଭାଗ୍ୟ ସୃଷ୍ଟି କରୁ।

ତେଣୁ, ସାଧକମାନଙ୍କ ହାତରେ ବେଦାନ୍ତ କେବଳ ଉଦ୍ୟମ କରିବାର ପଥ ବା ଲାଭ କରିବାର ଗନ୍ତବ୍ୟ ଦିଏ ନାହିଁ, ଏହା ତାକୁ ଗୋଟିଏ ବାସ୍ତବ ଦର୍ଶନ ମଧ୍ୟ ଦିଏ। ଏହି ଦର୍ଶନ, ପରିସ୍ଥିତି କବଳରୁ ତାର ମୁକ୍ତି ଘୋଷଣା କରେ ଏବଂ ସୁସ୍ଥ ଆଶା ଓ ଦୃଢ଼ ବିଶ୍ୱାସର ସହିତ ଜୀବନର ମୁହାଁମୁହିଁ ହେବାକୁ ତାକୁ ସାହାଯ୍ୟ କରେ। ମଣିଷ ପ୍ରକୃତିର ଦାସ ନୁହେଁ। ପ୍ରକୃତି ହେଉଛି ମଣିଷ ହାତରେ ଏକ ଖେଳନା କଣ୍ଢେଇ। ନିଜର ସୁବିଧା ଏବଂ ଆମୋଦ ପାଇଁ ମଣିଷ ହିଁ ଜୀବନର କଣ୍ଢେଇ ଖେଳ ପାଇଁ ଆଦେଶ ଦେଇ ପାରିବ। ନିଜର ଆତ୍ମ ଅବନ୍ନତିର ଭ୍ରାନ୍ତିର ଚାପରେ ସାଧାରଣ ମଣିଷ ଏହି ସତ୍ୟଟି ଭୁଲିଯାଏ । ତେଣୁ ବିଜ୍ଞଜନମାନଙ୍କର ଶେଷ ସିଦ୍ଧାନ୍ତ ନିଶ୍ଚିତ ଭାବରେ ଅପରିବର୍ତ୍ତନୀୟ, କାରଣ ଯୁକ୍ତି ଏବଂ ତର୍କ ମାଧ୍ୟମରେ ସେସବୁ ନିଃସନ୍ଦେହ ପ୍ରକାଶିତ ହୋଇଛି।

**ଯାବତ୍‌ହେତୁଫଲାବେଶସ୍ତାବତ୍‌ହେତୁ ଫଲୋଦ୍ଭବଃ।**

**କ୍ଷୀଣେ ହେତୁଫଲାବେଶେ ନାସ୍ତି ହେତୁଫଲୋଦ୍ଭବଃ ॥ ୫୫॥**

ଯାବତ୍ = ଯେପର୍ଯ୍ୟନ୍ତ, ହେତୁ-ଫଳ = କାର୍ଯ୍ୟ-କାରଣର ନିୟମ, ଆବେଶ = ଯେକେହି ବିଶ୍ୱାସ କରେ, ତାବତ୍ = ସେତେ ପର୍ଯ୍ୟନ୍ତ, ହେତୁ = କାରଣ, ଫଳ = କାର୍ଯ୍ୟ, ଉଦ୍ଭବ = ଦେଖା ଦେବ, କ୍ଷୀଣେ = ଅଦୃଶ୍ୟ ହୁଏ, ହେତୁ = କାରଣ, ଫଳ = କାର୍ଯ୍ୟ, ଆବେଶେ = ଯେତେବେଳେ ପୂର୍ବାଧିକାର, ଅସ୍ତି = ଅଛି, ହେତୁ = କାରଣ, ଫଳ = କାର୍ଯ୍ୟ, ନ ଉଦ୍ଭବ = ଦେଖା ଦେବ ନାହିଁ, ଲୁଚିଯିବ।

*କାରଣ-କାର୍ଯ୍ୟର ସମ୍ପର୍କକୁ ବିଶ୍ୱାସ କରୁଥିବା ପର୍ଯ୍ୟନ୍ତ ଏହି ନିୟମ କାମ କରୁଥିବାର ଯେକେହି ଦେଖି ପାରିବ, କିନ୍ତୁ କାରଣ-କାର୍ଯ୍ୟ ନିୟମ ସହିତ ଏହି ଅଧିକାର ବୋଧ ତିରୋହିତ ହେଲେ ସାଧକର ହୃଦୟରୁ ଉଭୟ କାରଣ ଏବଂ କାର୍ଯ୍ୟ ତିରୋହିତ ହୁଏ ॥୫୫॥*

ଏହା ଯଦି ବିଜ୍ଞଜନମାନଙ୍କର ଧାରଣା ଏବଂ ଯୁକ୍ତିଯୁକ୍ତ ତାର୍କିକ ସିଦ୍ଧାନ୍ତ ହୁଏ, ତେବେ କାରଣ-କାର୍ଯ୍ୟ ଧାରଣାକୁ ଜାବୁଡ଼ି ଧରିଥିବା ଲୋକଙ୍କର କଣ ହୁଏ? ଏହି ଶ୍ଳୋକରେ ତାର ଉତ୍ତର ଦିଆଯାଇଛି। କୌଣସି ବ୍ୟକ୍ତି କାରଣ-କାର୍ଯ୍ୟ ଧାରଣା ସମ୍ପର୍କରେ ଦୃଢ଼ ବିଶ୍ୱାସ ପୋଷଣ କରୁଥିବା ଏବଂ ଏହା ପାଇଁ ଚେଷ୍ଟା କରୁଥିବା ପର୍ଯ୍ୟନ୍ତ, ତାପାଇଁ ଏହା ସୁସଙ୍ଗତ ଭାବେ କାମ କରେ।

ମଣିଷ ଯେତେ ପର୍ଯ୍ୟନ୍ତ ଭାବେ ଯେ ମୁଁ ହେଉଛି ପ୍ରତିନିଧି, ଏହି ସବୁ ଭଲ ଏବଂ ମନ୍ଦ କାର୍ଯ୍ୟ ମୋର, ଯଥା ସମୟରେ କେହି ଜଣେ ଭାବରେ ଜନ୍ମନେଇ ମୁଁ ଏହାର ଫଳ ଭୋଗ କରିବି- ଇତ୍ୟାଦି, ସେ ଏହି କର୍ମର ଫଳ ଭୋଗ କରିବ ଏବଂ ତା କାର୍ଯ୍ୟର ଗୁଣ ଏବଂ ସ୍ୱରୂପ ନେଇ ସୁଖ ବା ଦୁଃଖ ଭୋଗିବ। ମଣିଷ ଯେପରି ଚିନ୍ତା କରେ, ସେପରି ହୁଏ।

ବିବେକର ସହିତ ଏହା ବୁଝି ପାରିଲେ କାରଣ-କାର୍ଯ୍ୟର ଏହି ଭ୍ରାନ୍ତଧାରଣାର ଇତିହେବ। ସେ କାରଣ-କାର୍ଯ୍ୟ ନିୟମରୁ ମୁକ୍ତ ହେବ।

ଏହି ପ୍ରସଙ୍ଗରେ, ଅନ୍ୟ ଦେଶରେ ନ ହେଲେ ମଧ୍ୟ ଭାରତରେ ଆମମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କର ଏହି ଅନୁଭୂତି ଥିବ ଯେ ଯେଉଁମାନେ ଶକୁନରେ ବିଶ୍ୱାସ କରନ୍ତି, ସେମାନେ ତାର ଭଲ ବା ମନ୍ଦର ଫଳ ଭୋଗ କରନ୍ତି, ଅଥଚ ସେଇ ଭଲ ବା ମନ୍ଦ ଶକୁନରେ ଜୀବନର ମୁହାଁ ମୁହିଁ ହେଉଥିବା ଅନ୍ୟମାନେ ଏହାର ପ୍ରଭାବାଧୀନ ହେବା ପରି ମନେ ହୁଏ ନାହିଁ।

**ଯାବତ୍‌ହେତୁ ଫଳାବେଶଃ ସଂସାରସ୍ତାବଦାୟତଃ।**

**କ୍ଷୀଣେ ହେତୁ ଫଳାବେଶେ ସଂସାରଂ ନ ପ୍ରପଦ୍ୟତେ ॥୫୬॥**

ଯାବତ୍ = ଯେତେ ପର୍ଯ୍ୟନ୍ତ, ହେତୁ = ହେତୁ, କାରଣ; ଫଳ = ଫଳ, କାର୍ଯ୍ୟ; ଆବେଶଃ = ବିଶ୍ୱାସ ଅଛି, ସଂସାରଃ = ସଂସାର, ତାବତ୍ = ସେତେ ପର୍ଯ୍ୟନ୍ତ, ଆୟତଃ = ରହେ, କ୍ଷୀଣେ = ନଷ୍ଟ ହୋଇଯାଏ, ହେତୁ ଫଳ ଆବେଶେ = କାରଣ-କାର୍ଯ୍ୟର ଧାରଣା, ସଂସାରମ୍ = ସଂସାର, ନ ପ୍ରପଦ୍ୟତେ = ରହେ ନାହିଁ।

*କାର୍ଯ୍ୟ-କାରଣର ସମ୍ପର୍କରେ ବିଶ୍ୱାସ ଥିବା ପର୍ଯ୍ୟନ୍ତ ଜନ୍ମ-ମୃତ୍ୟୁର ଅନନ୍ତ ଶୃଙ୍ଖଳା ଚାଲିଥିବ। ଜ୍ଞାନ ଦ୍ୱାରା ତାହା (ସେହି ବିଶ୍ୱାସ) ନଷ୍ଟ ହେଲେ ଜନ୍ମ ଏବଂ ମୃତ୍ୟୁ ରହିବ ନାହିଁ ॥୫୬॥*

ଆମ ବୁଝିବାରେ କାରଣ-କାର୍ଯ୍ୟ ନିୟମ କାମ କଲେ କ୍ଷତି କଣ ? ଗୌଡ଼ପାଦ କହୁଛନ୍ତି, ଏହା ଥିବା ପର୍ଯ୍ୟନ୍ତ ଆମେ ପରିବର୍ତ୍ତନ, ବିକ୍ଷେପ, ପରିଚ୍ଛିନ୍ନତା ଏବଂ ମୃତ୍ୟୁର ସୀମାରେ ଥାଉ। ଭୌତିକ ଜଗତରେ ଓ ମାନସିକ ଏବଂ ବୌଦ୍ଧିକ ସଂରଚନାରେ ବହୁତ କିଛି ହାସଲ କରି ମଧ୍ୟ ଅଧ୍ୟାତ୍ମବାଦୀମାନେ ଏହାର ଉତ୍ତର ତଥା ଯନ୍ତ୍ରଣା ଦାୟକ ଆଧ୍ୟାତ୍ମିକ ଅସ୍ଥିରତାରୁ ମୁକ୍ତି ପାଇଁ ସଂଘର୍ଷ କରନ୍ତି। ଏହି ନାମହୀନ ଆନ୍ତରିକ ସଂଘର୍ଷର ଗଭୀର ଯନ୍ତ୍ରଣା କୁ ଆଧ୍ୟାତ୍ମିକ ଅସ୍ଥିରତା କୁହାଯାଏ ଏବଂ ବିବର୍ତ୍ତନ ଦେଇ କୌଣସି ବ୍ୟକ୍ତି ଶୁଦ୍ଧତା ଏବଂ ଅଭିବୃଦ୍ଧିର ଏକ ନିର୍ଦ୍ଦିଷ୍ଟ ଅବସ୍ଥାକୁ ଉନ୍ନୀତ ହେଲେ ଏହି ସଂକ୍ରାମକ ପ୍ରଭାବ ପ୍ରକାଶ ପାଏ।

ଏପରି ଲୋକମାନଙ୍କୁ ସାହାଯ୍ୟ କରିବା ପାଇଁ ଏହି ଉଚ୍ଚତମ ଦାର୍ଶନିକ ମତ ଏବଂ ଅନୁଶାସନ ରହିଛି। କ୍ରମବିକାଶ ପାଇଁ ସଂଘର୍ଷରତ ବ୍ୟକ୍ତିକୁ ତାର ପୂର୍ଣ୍ଣତା, ଶାନ୍ତି ଏବଂ ନୀରବତାର ସ୍ଥିତିକୁ ତୀର୍ଥଯାତ୍ରା କରିବାକୁ ସାହାଯ୍ୟ କରିବା ପାଇଁ ଏହି ଅନୁଶାସନ ଏବଂ ଦାର୍ଶନିକ ମତ ଆଧ୍ୟାତ୍ମିକ ଚିକିତ୍ସାର କାମ କରେ। ଏହି ଆଧ୍ୟାତ୍ମିକ ଯନ୍ତ୍ରଣାର ଦୁଃଖରେ ହୃଦୟଟିଏ ଧକ୍‌ଧକ୍ କରୁଥିବା ପର୍ଯ୍ୟନ୍ତ କାରଣ-କାର୍ଯ୍ୟ ସମ୍ପର୍କର ବିଶ୍ୱାସରେ ବାନ୍ଧି ହୋଇଥିବା ପର୍ଯ୍ୟନ୍ତ ସେହି ହୃଦୟଟି ନିଜର ଅସ୍ତିତ୍ୱ ନିମନ୍ତେ ଦୁଃଖ କରୁଥିବ।

ପୂର୍ବରୁ ଆମେ ଜାଣିଛେ ଯେ ମନ କେବଳ କାଳ, ଦେଶ ଏବଂ କାରଣ- କାର୍ଯ୍ୟ ସମ୍ପର୍କ କ୍ଷେତ୍ରରେ କାମ କରି ପାରିବ। ଏହି ତିନିଗୋଟି ଦୃଢ଼ ବିଶ୍ୱାସର ଦୃଢ ମୂଳଦୁଆ ଉପରେ ମନର କାଗଜ-ଦୁର୍ଗ ତିଆରି ହୋଇଥିବା ପରି ମନେ ହୁଏ। ବିଜ୍ଞାନ ଏବଂ ପ୍ରମାଣରେ ଶିକ୍ଷାପ୍ରାପ୍ତ ଗୋଟିଏ ଜାଗ୍ରତ ବୁଦ୍ଧି ପାଇଁ କାରଣ-କାର୍ଯ୍ୟ-ସମ୍ପର୍କ ସିଦ୍ଧାନ୍ତରେ ଥିବା ଅସ୍ପଷ୍ଟ ମିଥ୍ୟାକୁ ପ୍ରମାଣ କରିବା ପାଇଁ ଆଚାର୍ଯ୍ୟ ଏଠାରେ ଅନେକ ଉଦ୍ଧୃତି ଦେଇଛନ୍ତି। କାରଣ-କାର୍ଯ୍ୟ-ସମ୍ପର୍କ କେବଳ ଏକ କଳ୍ପନା ବୋଲି ସ୍ୱାଧ୍ୟାୟ, ମନନ ଏବଂ ନିଦିଧ୍ୟାସନ ମାଧ୍ୟମରେ କୌଣସି ବ୍ୟକ୍ତିର ଦୃଢ଼ ବିଶ୍ୱାସ ହୋଇଗଲେ ସେ ସମ୍ଭ୍ରମର ସହିତ ମନୋରାଜ୍ୟକୁ ଅତିକ୍ରମି ଯିବ।

ମନର ଅତୀତ ହେବାର ଏଇ ମୁହୂର୍ତ୍ତଟି ହେଉଛି ଆତ୍ମାକୁ ଚିହ୍ନିପାରିବା ମୁହୂର୍ତ୍ତ। ମନ ନଷ୍ଟ ହୋଇଗଲେ ଅହଙ୍କାର ନଷ୍ଟ ହୋଇଯାଏ, ଜୀବ ଅଦୃଶ୍ୟ ହେଲେ ପରମ ଦୃଶ୍ୟ ହୁଅନ୍ତି। ପରିଚ୍ଛିନ୍ନ ଏବଂ ନଶ୍ୱର ଜୀବ ହେଉଛି ଏକ ପ୍ରତିଫଳନ ମାତ୍ର, ନିର୍ବିକଳ୍ପ ସତ୍ୟ ନୁହେଁ। ଯେଉଁ ମୂଳଦୁଆ ଉପରେ କଳ୍ପନା ସୃଷ୍ଟି ହୋଇଛି, ତାହା ନଷ୍ଟ ହୋଇଗଲେ ମନ ଅତୀତ ହୋଇଯିବ। ପୁନଶ୍ଚ କାଳ ଏବଂ ଦେଶ ଦ୍ୱାରା ସୃଷ୍ଟି ହୋଇଥିବା ଏକ କ୍ଷେତ୍ର

ବ୍ୟତୀତ କାରଣ-କାର୍ଯ୍ୟ ସମ୍ପର୍କର ଧାରଣା ରହି ପାରିବ ନାହିଁ। କାଳ ଏବଂ ଦେଶକୁ ନେଇ ପ୍ରଶ୍ନ ଉଠିଲେ କାରଣ-କାର୍ଯ୍ୟ ସମ୍ପର୍କକୁ ନେଇ ପ୍ରଶ୍ନ ଉଠିବ। ଏକ ନିର୍ଦ୍ଦିଷ୍ଟ କାଳ ଏବଂ ନିର୍ଦ୍ଦିଷ୍ଟ ଦେଶ ସମ୍ପର୍କରେ ହିଁ ଗୋଟିଏ ନିର୍ଦ୍ଦିଷ୍ଟ କାରଣ କୌଣସି ବସ୍ତୁର ହେତୁ ହୋଇଥିବାର ବିଶ୍ୱାସ ଠିଆହୋଇ ପାରିବ। କାଳ ଏବଂ ଦେଶ ପରିବର୍ତ୍ତନଶୀଳ, ଅସ୍ଥାୟୀ, ଆଭାସ ଏବଂ ଆପାତ ବୋଲି ଆମେ ଯେତେ ପରିମାଣରେ ବୁଝି ପାରିବା, ସେହି ପରିମାଣରେ ମତ ଦେବା ଯେ କାରଣ-କାର୍ଯ୍ୟ ସମ୍ପର୍କ ନିୟମ, ଗତିର ନିୟମ, ସମ୍ବନ୍ଧରେ ଆମର ଧାରଣା ଭ୍ରମ ବ୍ୟତୀତ ଅନ୍ୟ କିଛି ନୁହେଁ।

ତେଣୁ ଗୌଡ଼ପାଦ ଶେଷରେ ଏହି କଥା କହିଛନ୍ତି ଯେ, ଯିଏ ଏହି ଧାରଣାକୁ ନଷ୍ଟ କରି ଦେଇଛି, ପର ଜନ୍ମ ପାଇଁ ସେ ଆଉ ସ୍ୱପ୍ନ ଦେଖିବ ନାହିଁ, କିମ୍ବା ତାର ସ୍ୱପ୍ନ-ମୃତ୍ୟୁର ତିକ୍ତ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଏହି ସ୍ୱପ୍ନ ପାଇଁ ଅପେକ୍ଷା କରି ବସିବ ନାହିଁ। ଗୋଟିଏ ନରଭକ୍ଷୀର ଭୟଙ୍କର ସ୍ୱପ୍ନରୁ ନିଦ ଭାଙ୍ଗିବା ପରେ ଜାଗ୍ରତ ବ୍ୟକ୍ତିର ଆଉ ଜାଣିବାକୁ ଇଚ୍ଛା ହେବ ନାହିଁ ଯେ, ସ୍ୱପ୍ନରେ ନରଭକ୍ଷୀ ତାକୁ ଆଉ ପାଞ୍ଚ ମିନିଟ୍ ପର୍ଯ୍ୟନ୍ତ ଗୋଡ଼ାଇଥିଲେ ତାର ଅବସ୍ଥା କଣ ହୋଇଥାନ୍ତା, କିମ୍ବା ଦୀର୍ଘ ସମୟ ପର୍ଯ୍ୟନ୍ତ ସ୍ୱପ୍ନଟି ଦେଖି ପାରିନଥିବାରୁ ତା ମନରେ ଅନୁଶୋଚନା ହେବ ନାହିଁ। ସେହିପରି କାରଣ କାର୍ଯ୍ୟ ସମ୍ପର୍କରେ ଯାହାର ଅନ୍ଧବିଶ୍ୱାସ ନଷ୍ଟ ହୋଇ ଯାଇଥିବ, ପରିଚ୍ଛିନ୍ନ ସତ୍ତାରେ ଥିବା ତିକ୍ତତାରୁ ଲାଭ କରିଥିବା ଜୀବନର ଦୁଃଖ ପାଇଁ ସେ ଆଉ ଧନ୍ଦି ହେବ ନାହିଁ।

**ସଂବୃତ୍ୟା ଜାୟତେ ସର୍ବଂ ଶାଶ୍ୱତଂ ନାସ୍ତି ତେନ ବୈ।**

**ସଦ୍‌ଭାବେନ ହ୍ୟଜଂ ସର୍ବମୁଚ୍ଛେଦସ୍ତେନ ନାସ୍ତି ବୈ ॥୫୭॥**

ସଂବୃତ୍ୟା = ଏକ ଭ୍ରମ ଅନୁଭୂତି କେବଳ, ସର୍ବମ୍-ଜାୟତେ = ଜନ୍ମର ଧାରଣା, ଶାଶ୍ୱତମ୍ = ଶାଶ୍ୱତ, ନାସ୍ତି ବୈ = ପ୍ରକୃତରେ କିଛି ନୁହେଁ; ତେନ = ତେଣୁ, ସଦ୍‌ଭାବେନ = ବ୍ରହ୍ମଙ୍କ ସହିତ ଥିବା ବ୍ୟକ୍ତି, ହି = ପ୍ରକୃତରେ, ଅଜମ୍ = ଅଜ, କିଛିହେଲେ କେବେ ବି ଜନ୍ମ ନିଏ ନାହିଁ; ସର୍ବମ୍ = ସବୁକିଛି ଅଛି, ଉଚ୍ଛେଦଃ = ନଷ୍ଟ, ତେନ = ତେଣୁ, ନ ଅସ୍ତି ବୈ = କିଛି ହେଲେ ନାହିଁ।

*ଜନ୍ମର ଧାରଣା ହେଉଛି ଏକ ମିଥ୍ୟା ଅନୁଭୂତି (ଅଜ୍ଞତା ରୁ ସୃଷ୍ଟି) ଏବଂ ତେଣୁ ବାସ୍ତବରେ ଚିରସ୍ଥାୟୀ ବୋଲି କିଛିହେଲେ ନାହିଁ। ସବୁକିଛି ପରମସତ୍ୟଙ୍କ ସହିତ ଏକ ହୋଇଥିବାରୁ କିଛିହେଲେ କେବେ ଜନ୍ମ ନିଏ ନାହିଁ। ତେଣୁ ବିନାଶ ବୋଲି କିଛି ନାହିଁ ॥୫୭॥*

ପୂର୍ବବର୍ତ୍ତୀ କାରିକାରେ ଜନ୍ମ-ମୃତ୍ୟୁ-ଚକ୍ର ଉଲ୍ଲେଖ କରାଯାଇଛି। ଶ୍ରୀଶଙ୍କରଙ୍କ ମତରେ ବିରୋଧୀ ଏଠାରେ ତା ବିରୁଦ୍ଧରେ ଯୁକ୍ତି କରୁଛନ୍ତି। ବିରୋଧୀ ପଚାରୁଛନ୍ତି, "ଅଜ ଆତ୍ମାଙ୍କ ବ୍ୟତୀତ ଅନ୍ୟ କିଛି ଯଦି ନିଶ୍ଚିତ ଭାବରେ ନାହିଁ, ତେବେ କାରଣ ଓ କାର୍ଯ୍ୟ ଧାରଣାର ସୃଷ୍ଟି ଏବଂ ବିନାଶ ଓ ତତ୍‌ସହିତ ଜୀବନ ମୃତ୍ୟୁ ଚକ୍ରର ଶୃଙ୍ଖଳ ବିଷୟରେ ତୁମେ କହୁଛ କିପରି ? ବେଦାନ୍ତୀ ଦେଇଥିବା ଉତ୍ତର ହେଉଛି ଏହି ଶ୍ଳୋକର ବିଷୟ।

ଗ୍ରନ୍ଥରେ 'ସଂବୃତ୍ୟା' ଶବ୍ଦଟିର ତାତ୍ପର୍ଯ୍ୟ ହେଲା ପରୀକ୍ଷାମୂଳକ ଜଗତର ମିଥ୍ୟା ଅନୁଭୂତି । ଆମର ଅଜ୍ଞତା ହେଉଛି ଏହାର ହେତୁ। ଅଜ୍ଞ ଜଗତର ଯେକୌଣସି ମିଥ୍ୟା ଆଭାସର କିଛି ବାସ୍ତବତା ନାହିଁ। ପରମସତ୍ୟ ହେଉଛନ୍ତି ଏକମେବ ଅଦ୍ୱିତୀୟ-ଏକଥା ବୁଝିପାରି ଦେଖିଲେ ବହୁବିଧ ଜଗତ ରହିବ ନାହିଁ, ଏବଂ ଯାହା କିଛି ରହିଛି, ତାହା ଅଜ ଆତ୍ମାଙ୍କ ବ୍ୟତୀତ ଅନ୍ୟ କିଛି ନୁହେଁ। ତେଣୁ ଜନ୍ମ ନହୋଇଥିଲେ ବିନାଶ ହୋଇ ପାରିବ ନାହିଁ, ବିନାଶ ଅର୍ଥାତ୍ କାରଣ-କାର୍ଯ୍ୟ ଧାରଣାର ବିନାଶ। ଜନ୍ମ-ମୃତ୍ୟୁ ଚକ୍ର ମଧ୍ୟ ରହିବ ନାହିଁ। କିଛି ଜନ୍ମ ହେଉ ନାହିଁ ବା କିଛି ମୃତ୍ୟୁ ମୁଖରେ ପଡୁ ନାହିଁ, ପ୍ରତ୍ୟେକ ଜିନିଷ ବାସ୍ତବରେ ପରମ ଶୁଦ୍ଧ ଚୈତନ୍ୟ ଭାବରେ ଚିର ବିଦ୍ୟମାନ।

ବାସ୍ତବବାଦୀ ଯୁକ୍ତି କରନ୍ତି ଯେ, ନାମ-ରୂପ ଜଗତ ହେଉଛି ବାସ୍ତବ ଏବଂ ଏହା ହିଁ ଏକମାତ୍ର ବାସ୍ତବତା ତିଆରି କରେ। ଆଦର୍ଶବାଦୀ ସତ୍ୟଙ୍କଠାରେ  ବିଷୟ ଜଗତକୁ ଅସ୍ୱୀକାର କରନ୍ତି ଏବଂ ବିଷୟସବୁ ମଣିଷର ମାନସିକ କଳ୍ପନା ବ୍ୟତୀତ ଅନ୍ୟ କିଛି ନୁହେଁ ବୋଲି ଜୋର ଦେଇ କହନ୍ତି । ବେଦାନ୍ତୀ ସତ୍ୟ ଘୋଷଣା କରନ୍ତି ଯେ ବିଷୟ ବା କଳ୍ପନା କିଛିହେଲେ ଚିରସ୍ଥାୟୀ ସତ୍ୟ  ନୁହେଁ। ଦେଖିବା  ପାଇଁ, ବାହ୍ୟ ବିଷୟଜଗତକୁ ବା ଆନ୍ତରିକ କଳ୍ପନାଜଗତକୁ ଜାଣିବା ପାଇଁ ଯେଉଁ ଚୈତନ୍ୟ  ସମ୍ଭବପର କରାଏ, ତାହା ପରମ ସତ୍ୟ। ତାହା ଅଜ, ସର୍ବବ୍ୟାପୀ ଏବଂ ସର୍ବଦା ଏକାପରି ରହୁଥିବା ସତ୍ୟ। ଅଜ୍ଞର ଦୃଷ୍ଟିରୁ ଜନ୍ମ-ମୃତ୍ୟୁର ଚକ୍ର ଅଛି। ଏହିଠାରେ କାରଣ-କାର୍ଯ୍ୟ ସମ୍ପର୍କର ନିୟମ ବଡ଼ ବିଶ୍ୱସ୍ତତାର ସହିତ କାମ କରୁଥିବା ପରି ମନେ ହୁଏ, କିନ୍ତୁ ପରମସତ୍ୟଙ୍କ ଦୃଷ୍ଟିରୁ ଆତ୍ମାନୁଭବୀ ବ୍ୟକ୍ତି ବହୁବିଧତାର ସମସ୍ତ ଧାରଣାକୁ  ଅସ୍ୱୀକାର କରନ୍ତି ଏବଂ ତାଙ୍କ ନିଜର ଆତ୍ମାନୁଭୂତି ଉପରେ ଜୋର ଦିଅନ୍ତି। ସଂକ୍ଷେପରେ ଆପେକ୍ଷିକ ଦୃଷ୍ଟିରୁ ଜନ୍ମ ମୃତ୍ୟୁର ଧାରଣା ସମ୍ଭବପର। ଜ୍ଞାନୀ ବ୍ୟକ୍ତି ସବୁକିଛିକୁ ଅଦ୍ୱୈତ୍ୟ ଆତ୍ମା ଭାବରେ ଅନୁଭବ କରନ୍ତି। ତେଣୁ, ତାଙ୍କୁ କୌଣସି ଜିନିଷର- ଏପରିକି  କାରଣ ଓ କାର୍ଯ୍ୟ, ଜୀବନ ଓ ମୃତ୍ୟୁ ଇତ୍ୟାଦି ପରି ମିଥ୍ୟା ମାନସିକ ଧାରଣାର ଅବଗତି ହୁଏ ନାହିଁ।

**ଧର୍ମା ୟ ଇତି ଜାୟନ୍ତେ ଜାୟନ୍ତେ ତେ ନ ତତ୍ତ୍ୱତଃ।**

**ଜନ୍ମ ମାୟୋପମଂ ତେଷାଂ ସା ଚ ମାୟା ନ ବିଦ୍ୟତେ ॥୫୮॥**

ଧର୍ମାଃ = ସତ୍ତାମାନେ, ୟେ = ସେହିସବୁ, ଇତି = ଏହିପରି ଭାବରେ, ଜାୟନ୍ତେ = ଜନ୍ମ ନିଅନ୍ତି ବୋଲି କୁହାଯାଏ, ନ ଜାୟନ୍ତେ = ଜନ୍ମ ସମ୍ଭବ ନୁହେଁ, ତେ = ସେହିସବୁ, ତତ୍ତ୍ୱତଃ = ବାସ୍ତବରେ, ଜନ୍ମ = ଜନ୍ମ, ମାୟା = ମାୟା, ଉପମମ୍ = ତାହା ପରି, ତେଷାମ୍ = ସେମାନଙ୍କର, ଚ ସା ମାୟା = ଏବଂ ସେହି ମାୟା, ନ ବିଦ୍ୟତେ = ରହେ ନାହିଁ।

*ସ୍ୱତନ୍ତ୍ର ଜୀବ ଭାବ ପୋଷଣ କରୁଥିବା ସତ୍ତାମାନେ ଜନ୍ମ ନିଅନ୍ତି ବୋଲି କୁହାଯାଏ, କିନ୍ତୁ ପରମ-ସତ୍ୟଙ୍କ ଦୃଷ୍ଟିରୁ ସେହି ଜନ୍ମ ସମ୍ଭବ ନୁହେଁ। ତେଣୁ ଜନ୍ମ ଏକ ଭ୍ରମାତ୍ମକ ବିଷୟ ପରି। ପୁନଶ୍ଚ ସେହି ଭ୍ରମର ସ୍ଥିତି ନାହିଁ ॥୫୮॥*

ପୂର୍ବଶ୍ଳୋକରେ ବହୁବିଧ ଜଗତର ସତ୍ତା ନାହିଁ ବୋଲି ଗୌଡ଼ପାଦ ପ୍ରମାଣ କରିବାକୁ ଚେଷ୍ଟା କରୁଥିବା ବେଳେ ଦୟା ପରବଶ ହୋଇ ସେହି ବହୁବିଧତାର ଧାରଣାର ଗୋଟିଏ କାରଣ ଆମକୁ ଦେଖାଇଛନ୍ତି। ଅଜ୍ଞତାରୁ ବହୁବିଧ ଜଗତର ସୃଷ୍ଟି ବୋଲି ସେ ଦର୍ଶାଇଛନ୍ତି। ବର୍ତ୍ତମାନ, ଏହିଶ୍ଳୋକରେ ସେ ପୁଣି କହିଛନ୍ତି, ବିଷୟ ଜନ୍ମ ନ ନେଲେ ମଧ୍ୟ, ବାସ୍ତବରେ ସେମାନେ ଜନ୍ମ ନେଇଥିବା ପରି ମନେ ହୁଏ। ଶିଷ୍ୟଙ୍କ ମନରେ ସନ୍ଦେହ ଦେଖାଦେବା ସ୍ୱାଭାବିକ ଏବଂ ଜ୍ଞାନଠାରୁ ସ୍ୱତନ୍ତ୍ର ଅଜ୍ଞାନ ବୋଲି ସ୍ପଷ୍ଟତଃ ଗୋଟିଏ ଜିନିଷ ନିଶ୍ଚୟ ଅଛି ବୋଲି ସେମାନେ ବିଶ୍ୱାସ କରିବାକୁ ଆରମ୍ଭ କରି ପାରନ୍ତି। ଏହାକୁ ଅସ୍ୱୀକାର କରିବା ପାଇଁ ଗୌଡ଼ପାଦ କହୁଛନ୍ତି ଯେ ମାୟାର ନିଜର ସ୍ଥିତି ନାହିଁ। ତେଣୁ ବିଷୟଜଗତ ବାସ୍ତବରେ ହେଉଛି "ଭ୍ରମ ଦ୍ୱାରା ସୃଷ୍ଟ ଭ୍ରମ, ଅସତ୍ତା ଦ୍ୱାରା ସୃଷ୍ଟ ଅସତ୍ତା"।

ତେଣୁ ବନ୍ଧ୍ୟା ସ୍ତ୍ରୀର ବଡ଼ ଝିଅର ପୁଅ ପରି ବିଷୟଜଗତର ସତ୍ୟତା ଅଛି। ସେହି ଝିଅର ବିବାହ ଉତ୍ସବ ନିଶ୍ଚିତ ଭାବରେ ସମ୍ଭବ ନୁହେଁ, କାରଣ ତାର ବାପା ହେଉଛନ୍ତି ଏକ ଅଜାତ, ସତ୍ତାହୀନ-ସତ୍ତା।

**ଯଥା ମାୟାମୟାଦ୍ ବୀଜାଜ୍ଜାୟତେ ତନ୍ମୟୋଽଙ୍କୁରଃ ।**

**ନାସୌ ନିତ୍ୟୋ ନ ଚୋଚ୍ଛେଦୀ ତଦ୍‌ବଦ୍ଧର୍ମେଷୁ ଯୋଜନା ।।୫୯।।**

ଯଥା = ଯେପରି, ମାୟାମୟାତ୍ ବୀଜାତ୍ = ଗୋଟିଏ ମିଛ ବୀଜରୁ, ଜାୟତେ = ଜନ୍ମ ନିଏ, ତନ୍ମୟଃ ଅଙ୍କୁରଃ = ସେହିପରି ଏକ ମିଛ ଗଛ, ଅସୌ = ଏହା, ନ ନିତ୍ୟଃ = ନିତ୍ୟ ନୁହେଁ; ନ ଚ ଉଚ୍ଛେଦୀ = ଅନିତ୍ୟ ନୁହେଁ, ତଦ୍‌ବତ୍ = ସେହି ଏକା, ଧର୍ମେଷୁ = ଜୀବମାନଙ୍କୁ; ଯୋଜନା = ବିଚାର ଶକ୍ତି (ପ୍ରଯୁଜ୍ୟ) ।

*ମିଛ ମଞ୍ଜିରୁ ମିଛ ଗଛ ବାହାରେ । ଏହି ମିଛ ଗଛ ନିତ୍ୟ ନୁହେଁ ବା ଅନିତ୍ୟ ନୁହେଁ । ଜୀବମାନଙ୍କ ପାଇଁ ମଧ୍ୟ ସେହି ଏକା ବିଚାର ପ୍ରଯୁଜ୍ୟ ।।୫୯।।*

ପ୍ରଥମ ମିଛଟି ନଥିବାବେଳେ କ୍ରମାନ୍ୱୟ ଭାବରେ ଗୋଟିଏ ମିଛ ଆଉ ଗୋଟିଏ ମିଛ ସୃଷ୍ଟି କରିବା କିପରି ସମ୍ଭବ ବୋଲି ଶିଷ୍ୟ ହୁଏତ ସନ୍ଦେହ କରିପାରେ । ଏହି ଉଦ୍ଦେଶ୍ୟରେ ଗୋଟିଏ ଉଦାହରଣ ଦିଆଯାଇଛି । ଭାରତର ଜନଗହଳି ସ୍ଥାନମାନଙ୍କରେ କୁହୁକ ଦେଖାଇବା ବଡ଼ ଜଣାଶୁଣା । ଏହି କୁହୁକ ଯାଦୁକର ଗୋଟିଏ ମିଛ 'ମଞ୍ଜି' ଦେଖାଏ । ବହୁ ପରିଶ୍ରମ କରି ଗଛ ହେବା ପାଇଁ ସେ ତାକୁ ମାଟିରେ ପୋତେ, ଜାଗାଟିକୁ ଢ଼ାଙ୍କିଦିଏ, ବାଲ୍‌ଟିରେ ପାଣି ଦିଏ । କିଛି ସମୟ ପରେ ସେ ଘୋଡ଼ଣି କାଢ଼ିଦିଏ ଏବଂ ଆଶ୍ଚର୍ଯ୍ୟଚକିତ ଦର୍ଶକ ମଣ୍ଡଳୀକୁ ଘୋଡ଼ଣୀ ତଳେ ବାହାରିଥିବା ଗଛଟିକୁ ଦେଖାଏ ।

ସେ ଗଛରେ ପୁଣି ପାଣି ଦିଏ ଏବଂ ଘୋଡ଼ାଇ ଦିଏ । କିଛି ସମୟ ପରେ ସେ ଘୋଡ଼ଣି କାଢ଼ି ଦିଏ ଏବଂ ଭୟ ଚକିତ ଦର୍ଶକ ମଣ୍ଡଳୀ ତାର ଶାଖାରେ ସେତେବେଳକୁ ଫଳଟିଏ ଫଳେଇଥିବାର ଗଛକୁ ଚାହିଁ ରହେ ।

ତୃତୀୟ ଥର ପାଇଁ ତାକୁ ଘୋଡ଼ାଇ ଦେଇ ପୁଣି ଘୋଡ଼ଣି ବାହାର କରି ନେଲେ, ଗଛ ମୂଳରେ ପାଚିଲା ଫଳଟିଏ ପଡ଼ିଥିବାର ଆଶ୍ଚର୍ଯ୍ୟ ଚକିତ ଦର୍ଶକ ମଣ୍ଡଳୀ ଦେଖିପାରେ । ଯାଦୁକର ତାକୁ ନେଇ ଖଣ୍ଡଖଣ୍ଡ କରି କାଟେ । ଚାଖିବା ପାଇଁ ଯେଉଁମାନେ ଖଣ୍ଡେ ପାଆନ୍ତି, ତାହା ଠିକ୍ ଆମ୍ବ ପରି ଲାଗୁଥିବାର ଦେଖି କାବା ହୋଇ ଯାଆନ୍ତି ।

ମିଥ୍ୟାରେ (ଭ୍ରାନ୍ତିରେ) ସବୁ ସମ୍ଭବ ବୋଲି ଶିଷ୍ୟମାନଙ୍କୁ ଶିକ୍ଷା ଦେବାପାଇଁ ବେଦାନ୍ତୀ ମାନେ ଉଦାହରଣ ଦିଅନ୍ତି । ସ୍ୱପ୍ନର ମିଛ ବିବାହ ମିଛ ସନ୍ତାନ ଜନ୍ମ ଦେଇପାରେ । ସେହିପରି ଗୋଟିଏ ମିଛ ଆଉ ଗୋଟିଏ ମିଛ ସୃଷ୍ଟି କରିପାରେ । ମାୟା ବା ଅଜ୍ଞାନ ମିଛ ବ୍ୟତୀତ ଅନ୍ୟ କିଛି ନୁହେଁ ଏବଂ ତା ପାଳି ପଡ଼ିଲେ ଏହା ବହୁବିଧ ଜଗତର ଆଭାସ

ସୃଷ୍ଟି କରେ। ପରବର୍ତ୍ତୀ ୬୧ ଏବଂ ୬୨ ଦୁଇଟି ଶ୍ଳୋକରେ ସ୍ୱପ୍ନ ଉଦାହରଣର ଧାରଣା ବିଶଦ ଭାବରେ ଆଲୋଚନା କରାଯାଇଛି।

**ନାଜେଷ୍ୱୁ ସର୍ବଧର୍ମେଷ୍ୱୁ ଶାଶ୍ୱତାଶାଶ୍ୱତାଭିଧା।**
**ଯତ୍ର ବର୍ଣ୍ଣା ନ ବର୍ତନ୍ତେ ବିବେକସ୍ତତ୍ର ନୋଚ୍ୟତେ ॥୬୦॥**

ନ = ହୋଇ ପାରିବ ନାହିଁ, ଅଜେଷ୍ୱୁ = ଅଜାତ ଜୀବାତ୍ମା, ସର୍ବ ଧର୍ମେଷ୍ୱୁ = ଯେ କୌଣସି ଜୀବ କ୍ଷେତ୍ରରେ, ଶାଶ୍ୱତ = ଶାଶ୍ୱତ, ଅଶାଶ୍ୱତ = ଅଶାଶ୍ୱତ, କ୍ଷଣସ୍ଥାୟୀ; ଅଭିଧା = ଅବର୍ଣ୍ଣନୀୟ, ଯତ୍ର = ଯେଉଁଠାରେ, ବର୍ଣ୍ଣାଃ = ଶବ୍ଦ, ବର୍ଣ୍ଣ; ନ ବର୍ତନ୍ତେ = କାମ କରନ୍ତି ନାହିଁ, ବିବେକଃ = ବିବେକ, ତତ୍ର = ସେଠାରେ (ଜଣେ ଜୀବ ସମ୍ବନ୍ଧରେ); ନ ଉଚ୍ୟତେ = କୁହାଯାଇ ପାରିବ ନାହିଁ।

*ଅଜନ୍ମା ଜୀବାତ୍ମା ପାଇଁ ଶାଶ୍ୱତ ବା ଅଶାଶ୍ୱତ ବିଶେଷଣ ବ୍ୟବହାର କରାଯାଇ ପାରିବ ନାହିଁ। ଶବ୍ଦ ଦ୍ୱାରା ଯାହା ବର୍ଣ୍ଣନା କରାଯାଇ ପାରିବ ନାହିଁ, ତାକୁ ସତ ବା ମିଛ ଭାବରେ (ବିବେକ) କରିହେବ ନାହିଁ ॥୬୦॥*

ମନ ଦ୍ୱାରା ଦେଖା ଯାଉଥିବା ଏବଂ ଇନ୍ଦ୍ରିୟମାନଙ୍କ ଦ୍ୱାରା ଅନୁଭବ କରି ହେଉଥିବା ବହୁବିଧ ଜଗତ ମିଥ୍ୟା ବୋଲି ଥରେ ଗ୍ରହଣ କରିନେଲେ, ତାପରଠାରୁ ଶାଶ୍ୱତ ବା ଅଶାଶ୍ୱତର ଧାରଣା ଉଠେ ନାହିଁ। ଆମର ସ୍ୱପ୍ନ-ସନ୍ତାନର ଜାତକ ବିଷୟରେ ପଚାରିବା ବା ଜାତକ ଲେଖାଇବା ଆବଶ୍ୟକ ହୁଏ ନାହିଁ। ସେମାନେ ମିଥ୍ୟାରୁ ଜାତ ହୋଇଥାନ୍ତି ଏବଂ ସେଥିପାଇଁ ତାଙ୍କର ଭବିଷ୍ୟତର ଭାଗ୍ୟ ବିଷୟରେ ପଚାରିବାର ପ୍ରଶ୍ନ ଉଠେନାହିଁ. ପରିଛିନ୍ନ ବହୁବିଧ ଜଗତର ସାମଗ୍ରିକ ଭ୍ରାନ୍ତି ବୁଝି ପାରିଲେ, ସତ୍ୟାସତ୍ୟର ବିବେକ ବିଶ୍ଳେଷଣ କରୁଥିବା ପ୍ରକୃତ ବେଦାନ୍ତୀ ସାଧକ ଶାଶ୍ୱତ ଏବଂ ଅଶାଶ୍ୱତ ନେଇ ପ୍ରଶ୍ନ ଉଠାଏ ନାହିଁ।

ବହୁବିଧ ଜଗତ ମିଥ୍ୟା-ଏହି ସତ୍ୟର ହୃଦୟଙ୍ଗମ ହେଲେ ବିବେକର ଇତି ହୁଏ। ଦୃଶ୍ୟ-ଜଗତ ସତ୍ୟ ବୋଲି ଭ୍ରାନ୍ତ ଜୀବର ଦୃଢ଼ ବିଶ୍ୱାସ ଥିବା ପର୍ଯ୍ୟନ୍ତ ବାସ୍ତବଠାରୁ ଅବାସ୍ତବ, ମିଥ୍ୟା ମଧ୍ୟରେ ସତ୍ୟ ଖୋଜିବାରେ ତାକୁ ବିବେକର ପ୍ରଭାବ କାର୍ଯ୍ୟରେ ଲଗାଇବାକୁ ହୋଇଥାଏ। ଥରେ ଆତ୍ମାନୁଭୂତି ହେବା ପରଠାରୁ ଏହି ବୌଦ୍ଧିକ ବିବେକର ଆବଶ୍ୟକତା ରହେ ନାହିଁ, କାରଣ ଖମ୍ବ ବିଷୟରେ ଥରେ ଜାଣିଗଲେ ଖମ୍ବର ମିଥ୍ୟା ଆଭାସ ଏବଂ ତାର ସତ୍ୟତା ମଧ୍ୟରେ ବିବେକ କରିବା ପାଇଁ କାହାର କିଛି ଦରକାର

ହୁଏ ନାହିଁ। ବାସ୍ତବରେ ଖମ୍ବକୁ ଦେଖୁଥିବା ଲୋକ ପାଇଁ ଦାନ୍ତ ନିକୁଟି ତାକୁ ଦୁଃଖ ଦେଉଥିବାର କୌଣସି ଭୂତ ରହେ ନାହିଁ।

**ଯଥା ସ୍ୱପ୍ନେ ଦ୍ୱୟାଭାସଂ ଚିତ୍ତଂ ଚଲତି ମାୟୟା।**

**ତଥା ଜାଗ୍ରଦ୍ ଦ୍ୱୟାଭାସଂ ଚିତ୍ତଂ ଚଲତି ମାୟୟା ॥୬୧॥**

ଯଥା = ଯେପରି, ସ୍ୱପ୍ନେ = ସ୍ୱପ୍ନରେ, ଦ୍ୱୟ-ଆଭାସମ୍ = ଦ୍ୱୈତର ଆଭାସ, ଚିତ୍ତମ୍ = ମନ, ଚଲତି = ପ୍ରକ୍ଷେପିତ କରେ, ମାୟୟା = ମାୟା ଦ୍ୱାରା, ତଥା = ସେହିପରି, ଜାଗ୍ରତ = ଜାଗ୍ରତ ଅବସ୍ଥାରେ, ଦ୍ୱୟ ଆଭାସମ୍ = ବହୁବିଧ ଆଭାସ, ଚିତ୍ତଂ ଚଲତି = ମନ ପ୍ରକ୍ଷେପ କରିବା ପରି ମନେ ହୁଏ, ମାୟୟା = ମାୟା ଦ୍ୱାରା।

*ସ୍ୱପ୍ନରେ ମାୟା ମାଧ୍ୟମରେ କାମ କରି ନିଜଠାରେ ଦ୍ୱୈତ ଆଭାସ ସୃଷ୍ଟି କରିବାର ଦେଖାଯିବା ପରି ଜାଗ୍ରତ ଅବସ୍ଥାରେ ମଧ୍ୟ ମନ ମାୟା ମାଧ୍ୟମରେ କାମ କରି ବହୁବିଧ ଆଭାସ ପ୍ରକ୍ଷେପ କରିବାର ଦେଖାଯାଏ ॥୬୧॥*

**ଅଦ୍ୱୟଂ ଚ ଦ୍ୱୟାଭାସଂ ଚିତ୍ତଂ ସ୍ୱପ୍ନେ ନ ସଂଶୟଃ।**

**ଅଦ୍ୱୟଂ ଚ ଦ୍ୱୟାଭାସଂ ତଥା ଜାଗ୍ରନ୍ନ ସଂଶୟଃ ॥୬୨॥**

ଅଦ୍ୱୟଂ ଚ = ଅଦ୍ୱୈତ, ଦ୍ୱୟ-ଆଭାସମ୍ = ଅନେକ ଭାଗରେ ବିଭକ୍ତ ହେବା ପରି ମନେ ହୁଏ; ଚିତ୍ତମ୍ = ମନ, ସ୍ୱପ୍ନେ = ସ୍ୱପ୍ନରେ, ନ ସଂଶୟଃ = ସନ୍ଦେହ ନାହିଁ, ଅଦ୍ୱୟଂ ଚ = ଏବଂ ଅଦ୍ୱୈତ (ମନ); ଦ୍ୱୟ ଆଭାସମ୍ = ଦ୍ୱୈତ ପରି ଆଭାସ ହୁଏ, ତଥା = ସେହିପରି; ଜାଗ୍ରତ୍ = ଜାଗ୍ରତ ଅବସ୍ଥାରେ, ନ ସଂଶୟଃ = ସନ୍ଦେହ ନାହିଁ।

*ମନ ପ୍ରକୃତରେ ହେଉଛି ଅଦ୍ୱୈତ। ସ୍ୱପ୍ନରେ ଏହା ବହୁ ଭାଗରେ ବିଭକ୍ତ ହୁଏ, ଏଥିରେ ସନ୍ଦେହ ନାହିଁ। ସେହିପରି ଜାଗ୍ରତ ଅବସ୍ଥାରେ ମଧ୍ୟ ନିଃସନ୍ଦେହରେ ଅଦ୍ୱୈତ ମନ ଦ୍ୱୈତ ପରି ମନେ ହୁଏ ॥୬୨॥*

ଏହି ଦୁଇଟି ଶ୍ଳୋକ ପୂର୍ବରୁ (୩ୟ ଅଧ୍ୟାୟ: ଶ୍ଳୋକ୨୯,୩୦) ଆଲୋଚିତ ହୋଇଛି। ଏଠାରେ ପୁଣି ଥରେ ତାହା ଉପଯୁକ୍ତ ସନ୍ଦର୍ଭରେ ଉଲ୍ଲେଖ କରା ଯାଉଛି, ସେମାନଙ୍କର ତାତ୍ପର୍ଯ୍ୟ ସମ୍ପର୍କରେ ସାଧକମାନଙ୍କର ବୋଧଗମ୍ୟତା ଦୃଢ଼ କରିବା ପାଇଁ। ବିଶଦ ବିବରଣୀ ପାଇଁ ତୃତୀୟ ଅଧ୍ୟାୟ ଦେଖନ୍ତୁ।

**ସ୍ୱପ୍ନଦୃକ୍ ପ୍ରଚରନ୍ ସ୍ୱପ୍ନେ ଦିକ୍ଷୁ ବୈ ଦଶସୁ ସ୍ଥିତାନ୍ ।**

**ଅଣ୍ଡଜାନ୍ ସ୍ୱେଦଜାନ୍ ବାଽପି ଜୀବାନ୍‌ପଶ୍ୟତି ୟାନ୍‌ସଦା ॥୬୩॥**

ସ୍ୱପ୍ନଦୃକ୍ = ସ୍ୱପ୍ନଦ୍ରଷ୍ଟା, ପ୍ରଚରନ୍ = ଚଳପ୍ରଚଳ କରି, ସ୍ୱପ୍ନେ = ସ୍ୱପ୍ନରେ, ଦିକ୍ଷୁ = ଦିଗ, ବୈ ଦଶସୁ = ସବୁ ଦିଗରେ, ସ୍ଥିତାନ୍ = ରହି, ଅଣ୍ଡଜାନ୍ = ଅଣ୍ଡଜ (ପକ୍ଷୀ)ଙ୍କ ପରି ; ସ୍ୱେଦଜାନ୍ ବା ଅପି = ଏବଂ ଆର୍ଦ୍ରତାରୁ ଜାତ (କୀଟପତଙ୍ଗ ଇତ୍ୟାଦି) ମଧ୍ୟ, ଜୀବାନ୍ = ଜୀବ, ପଶ୍ୟତି = ଦେଖେ, ୟାନ୍ = ନାନା ପ୍ରକାର, ସଦା = ସର୍ବଦା ।

*ଅଣ୍ଡାରୁ ଜାତ ଏବଂ ଆର୍ଦ୍ରତାରୁ ଜାତ ଆଦି ସମସ୍ତ ପ୍ରକାର ଜୀବଙ୍କୁ ସ୍ୱପ୍ନଦ୍ରଷ୍ଟା ସ୍ୱପ୍ନାବସ୍ଥାରେ ସର୍ବଦା ଦେଖିବା ଏବଂ ସ୍ୱପ୍ନରେ ଦଶ ଦିଗରେ ଚଳପ୍ରଚଳ କରିବା-ଏହାର ଅସ୍ତିତ୍ୱ ସ୍ୱପ୍ନଦ୍ରଷ୍ଟାର ମନ ବ୍ୟତୀତ ଅନ୍ୟ କେଉଁଠି ନଥାଏ ॥୬୩॥*

ମନଦ୍ୱାରା ପ୍ରକ୍ଷେପିତ ହୋଇ ସ୍ୱପ୍ନରେ ଦେଖା ଯାଉଥିବା ନିଜର ସ୍ତ୍ରୀ, ସନ୍ତାନ, ସାଙ୍ଗସାଥୀ ଏବଂ ବନ୍ଧୁବାନ୍ଧବ ବା ଅନ୍ୟ ଅପରିଚିତମାନେ କେବଳ ନୁହନ୍ତି, ବରଂ ଦଶଦିଗରେ ସ୍ୱପ୍ନଦ୍ରଷ୍ଟା ଜାଣୁଥିବା (ଅନୁଭବ କରୁଥିବା) ପ୍ରତ୍ୟେକ ଜୀବ ତା'ର ମନ ବ୍ୟତୀତ ଅନ୍ୟ କିଛି ନୁହେଁ । ତେଣୁ ସ୍ୱପ୍ନ ଦେଖୁଥିବା ବେଳେ ସ୍ୱପ୍ନଦ୍ରଷ୍ଟା ଯାହାବି ଦେଖେ -ଅଣ୍ଡାରୁ ଜାତ ଜୀବ ହୋଇଥାଉ ବା ବୀଜରୁ ଜାତ, ସବୁ ତାର ମନରୁ ହିଁ କେବଳ ଜନ୍ମ ନେଇଥାଏ । ଜାଗ୍ରତ ଅବସ୍ଥାର ଅନୁଭୂତି ମଧ୍ୟ ଠିକ୍ ସେହିପରି ।

**ସ୍ୱପ୍ନଦୃକ୍‌ଚିତ୍ତଦୃଶ୍ୟାସ୍ତେ ନ ବିଦ୍ୟନ୍ତେ ତତଃ ପୃଥକ୍ ।**

**ତଥା ତଦ୍ ଦୃଶ୍ୟମେବେଦଂ ସ୍ୱପ୍ନଦୃକ୍‌ଚିତ୍ତମିଷ୍ୟତେ ॥ ୬୪॥**

ସ୍ୱପ୍ନ = ସ୍ୱପ୍ନଦ୍ରଷ୍ଟାର, ଦୃକ୍ ଚିତ୍ତ = ଭାଗ କରୁଥିବା କେନ୍ଦ୍ର (ମନର ବିଷୟ), ଦୃଶ୍ୟାଃ = ବିଷୟ, ତେ = ସେହିସବୁ ଜୀବ, ନ ବିଦ୍ୟନ୍ତେ = ତାଙ୍କର ସ୍ୱାଧୀନ ସ୍ଥିତି ନାହିଁ, ତତଃ = ସେହିଠାରୁ, ପୃଥକ୍ = ପୃଥକ୍, ତଥା = ସେହିପରି, ତଦ୍ = ତାହା, ଦୃଶ୍ୟମ୍ = ସ୍ୱପ୍ନଦ୍ରଷ୍ଟାର ଦୃଶ୍ୟ ବିଷୟ, ଏବ = କେବଳ, ଇଦମ୍ = ଏହି (ମନର), ସ୍ୱପ୍ନ = ସ୍ୱପ୍ନଦ୍ରଷ୍ଟା, ଦୃକଚିତ୍ତମ୍ = ମନର ବିଷୟ, ଇଷ୍ୟତେ = ସ୍ୱୀକାର କରାଯାଏ ।

*ସ୍ୱପ୍ନଦ୍ରଷ୍ଟାର ମନ ବ୍ୟତୀତ ତାର ମନର (ପୃଥକ୍ ଲାଗୁଥିବା)ବିଷୟମାନଙ୍କର ସ୍ୱତନ୍ତ୍ର ସ୍ଥିତି ନାହିଁ । ସେହିପରି ସ୍ୱପ୍ନଦ୍ରଷ୍ଟାର ଏହି ମନ ତାର ସ୍ୱପ୍ନର ଦୃଶ୍ୟ ବୋଲି ସ୍ୱୀକାର କରାଯାଏ । ତେଣୁ ସ୍ୱପ୍ନଦ୍ରଷ୍ଟା ଠାରୁ ତାର ମନ ଅଲଗା ନୁହେଁ ॥୬୪॥*

ମନର ଅଜ୍ଞାନ ଅବସ୍ଥାରେ (ଭ୍ରାନ୍ତି ଅବସ୍ଥାରେ) ବହୁବିଧ ଜଗତ ସୃଷ୍ଟି ହୋଇ ଥାଏ ବୋଲି ଆମେ ଜାଣି ସାରିଛୁ। ଜାଗ୍ରତ ଅବସ୍ଥା ଏବଂ ସ୍ୱପ୍ନାବସ୍ଥାର ତୁଳନାର ତାତ୍ପର୍ଯ୍ୟରେ ପହଞ୍ଚିବା ପାଇଁ ଏହି ଶ୍ଳୋକରେ ଭଲ ଭାବରେ ଜୋର ଦିଆଯାଇଛି।

ସ୍ୱପ୍ନରେ ସ୍ୱପ୍ନର ବିଷୟ ସ୍ୱପ୍ନଦ୍ରଷ୍ଟାର ମନ ବ୍ୟତୀତ ଅନ୍ୟକିଛି ନୁହେଁ। ସ୍ୱପ୍ନଦ୍ରଷ୍ଟାର ମନହିଁ ହେଉଛି ସ୍ୱପ୍ନଦ୍ରଷ୍ଟାର ଯେତେସବୁ ଚିନ୍ତା। ମୁଁ ଟିକିଏ ସ୍ପଷ୍ଟ କରି କହୁଛି; ମୁଁ ସ୍ୱପ୍ନ ଦେଖୁଛି। ସ୍ୱପ୍ନରେ ମୁଁ ଯେତେସବୁ ଦୃଶ୍ୟ ଦେଖୁଛି, ସେସବୁ ମୋର ମନ ବ୍ୟତୀତ ଅନ୍ୟ କିଛି ନୁହେଁ। ସ୍ୱପ୍ନରେ ଦେଖୁଥିବା ମନ ମୋ ଠାରେ ସୃଷ୍ଟି କରିଥିବା ଜଗତରେ ମୁଁ ନିଜକୁ ଚଳପ୍ରଚଳ ହେଉଥିବାର ଦେଖେ। ସ୍ୱପ୍ନରେ ଚଳପ୍ରଚଳ ହେଉଥିବା ସେହି 'ମୁଁ' ଟି ମଧ୍ୟ ମୋ ମନ ବ୍ୟତୀତ ଅନ୍ୟ କିଛି ନୁହେଁ। ବର୍ତ୍ତମାନ ଏହି 'ମୁଁ' ସ୍ୱପ୍ନ ଜଗତରେ ଆହରଣ କରୁଥିବା ଅନୁଭୂତିକୁ ଅନୁଭବ କରିବା ପାଇଁ ତାର ନିଜର ଗୋଟିଏ ମନ ପାଇଛି। ମୋ ଠାରେ ଥିବା ସେହି ମନ ସ୍ୱପ୍ନ ଦେଖୁଥିବା ମନ ବ୍ୟତୀତ ଅନ୍ୟ କିଛି ନୁହେଁ ଯାହାକି ପ୍ରକ୍ଷେପିତ ଓ ତେଣୁ ଭ୍ରାନ୍ତିର ସୃଷ୍ଟି।

ତେଣୁ, ମୋ ଠାରେ ଥିବା ସ୍ୱପ୍ନଦ୍ରଷ୍ଟାର ମନହିଁ ମୋର ଅଜ୍ଞାନର ପ୍ରକ୍ଷେପଣ, ଏହା ତାର ନିଜର ବିଷୟ ସୃଷ୍ଟି କରେ। ତେଣୁ ସମଗ୍ର ସ୍ୱପ୍ନ ମନର ଏକ ଖେଳ ମାତ୍ର ବୋଲି ଆମେ କହି ପାରିବା। ସ୍ୱପ୍ନ ଯଦି ଏପରି ହୁଏ, ଜାଗ୍ରତ ଅବସ୍ଥା ମଧ୍ୟ ସ୍ୱପ୍ନାବସ୍ଥାଠାରୁ କିଛି ଅଲଗା ହେବ ନାହିଁ। ତେଣୁ ସ୍ୱପ୍ନଦ୍ରଷ୍ଟାର ମନ ନିଜେ ସ୍ୱପ୍ନଦ୍ରଷ୍ଟାଠାରୁ ଭିନ୍ନ କିଛି ନୁହେଁ।

**ଚରନ୍ ଜାଗରିତେ ଜାଗ୍ରଦ୍ଦିକ୍ଷୁ ବୈ ଦଶସୁ ସ୍ଥିତାନ୍ ।**

**ଅଣ୍ଡଜାନ୍ ସ୍ୱେଦଜାନ୍ ବାଽପି ଜୀବାନ୍ପଶ୍ୟତି ୟାନ୍ସଦା ॥୬୫॥**

ଚରନ୍ = ବିଚରଣ କରିବାରେ, ଜାଗରିତେ = ଜାଗ୍ରତ ଅବସ୍ଥାରେ, ଜାଗ୍ରତ୍ = ଜାଗ୍ରତ ପରୁଷ, ଦିକ୍ଷୁ = ଦିଗ, ବୈ ଦଶସୁ = ସବୁଦିଗରେ, ସ୍ଥିତାନ୍ = ମନର ବିଷୟ କେବଳ, ଅଣ୍ଡଜାନ୍ = ପକ୍ଷୀମାନଙ୍କ ପରି ଅଣ୍ଡାରୁ ଜାତ, ସ୍ୱେଦଜାନ ବା ଅପି = ଏବଂ ଆର୍ଦ୍ରତାରୁ ଜାତ ପୋକ ଜୋକ ଇତ୍ୟାଦି ମଧ୍ୟ, ଜୀବାନ୍ = ଜୀବ, ପଶ୍ୟତି = ଦେଖେ, ୟାନ୍ = ବିଭିନ୍ନ ପ୍ରକାରର, ସଦା = ସର୍ବଦା।

**ଜାଗ୍ରଚ୍ଚିତ୍ତେକ୍ଷଣୀୟାସ୍ତେ ନ ବିଦ୍ୟନ୍ତେ ତତଃ ପୃଥକ୍।**

**ତଥା ତଦ୍‌ଦୃଶ୍ୟମେବେଦଂ ଜାଗ୍ରତଶ୍ଚିତ୍ତମିଷ୍ୟତେ ।।୬୬।।**

ଜାଗ୍ରତ୍ ଚିତ୍ତ = ଜାଗ୍ରତ ପୁରୁଷର ମନ, ଈକ୍ଷଣୀୟାଃ = ଯାହାସବୁ ବିଷୟ, ତେ = ସେମାନେ (ଜୀବମାନେ), ନ ବିଦ୍ୟନ୍ତେ = ନ ଥାନ୍ତି, ପୃଥକତତଃ = (ଦ୍ରଷ୍ଟାଠାରୁ) ସ୍ୱତନ୍ତ୍ର; ତଥା = ସେହିପରି, ତଦ୍ ଦୃଶ୍ୟମ୍ ଏବ = କେବଳ ଦୃଶ୍ୟ ହେବା ପାଇଁ, ଇଦମ୍ = ଏହା, ଜାଗ୍ରତ୍ = ଜାଗ୍ରତ ପୁରୁଷର, ଚିତ୍ତମ୍ = ମନ, ଇଷ୍ୟତେ = ଗ୍ରହଣ କରାଯାଏ।

*ଅଣ୍ଡାରୁ, ଆର୍ଦ୍ରତାରୁ ଏବଂ ଅନ୍ୟଠାରୁ ଯେତେସବୁ ଜୀବାତ୍ମା ଜନ୍ମ ନେଇଥାଆନ୍ତି, ଜାଗ୍ରତ ଅବସ୍ଥାରେ ଦଶଦିଗରେ ବିଚରଣ କରୁଥିବା ଜାଗ୍ରତ ପୁରୁଷ ସେସବୁକୁ ଦେଖିପାରେ। ସେସବୁ ଜାଗ୍ରତ ପୁରୁଷର ମନର ବିଷୟ କେବଳ। ସେହିପରି ଜାଗ୍ରତ ପୁରୁଷର ମନ, ଜାଗ୍ରତ ପୁରୁଷର କେବଳ ଦୃଶ୍ୟ ବିଷୟ ବୋଲି ସ୍ୱୀକାର କରାଯାଏ। ତେଣୁ ମନ ଦ୍ରଷ୍ଟାଠାରୁ ପୃଥକ ନୁହେଁ ।।୬୫-୬୬।।*

ସ୍ୱପ୍ନ ଦ୍ରଷ୍ଟାର ଅନୁଭୂତି ଜାଗ୍ରତ ପୁରୁଷର ଅନୁଭୂତି ଅପେକ୍ଷା ଭିନ୍ନ ନୁହେଁ ବୋଲି ପ୍ରମାଣ କରିବାକୁ ବିଶେଷ ଭାବରେ ଆଲୋଚିତ ଶେଷ ଦୁଇଟି ଶ୍ଳୋକକୁ ଏଠାରେ ପୁଣି ଜାଗ୍ରତ ପୁରୁଷ ପ୍ରତି ପ୍ରୟୋଗ କରାଯାଉଛି। କାରିକାରେ, ବିଶେଷକରି ଦ୍ୱିତୀୟ ଅଧ୍ୟାୟ ବୈତଥ୍ୟ ପ୍ରକରଣରେ ଏପର୍ଯ୍ୟନ୍ତ ଯାହାସବୁ ଆଲୋଚନା କରାଯାଇଛି, ସେହି ଦୃଷ୍ଟିରୁ ଏହି ଅନୁରୂପତା ଯଥାର୍ଥ।

**ଉଭେ ହ୍ୟନ୍ୟୋନ୍ୟଦୃଶ୍ୟେ ତେ କିଂ ତଦସ୍ତୀତି ନୋଚ୍ୟତେ।**

**ଲକ୍ଷଣାଶୂନ୍ୟମୁଭୟଂ ତନ୍ମତେନୈବ ଗୃହ୍ୟତେ ।।୬୭।।**

ଉଭେ ତେ = ଏହି ଉଭୟ (ମନ ଏବଂ ଜୀବାତ୍ମା); ହି ଅନ୍ୟୋନ୍ୟ ଦୃଶ୍ୟେ = ପ୍ରକୃତରେ ପରସ୍ପରର ଦୃଶ୍ୟ, କିମ୍ = କଣ, କେଉଁଠି ; ତତ୍ ଅସ୍ତି ଇତି = ତାହା ହେଲେ ଅଛି ବୋଲି କହିହେବ, ତାହା ହିଁ ଏହା ; ନ = ନାହିଁ, ଉଚ୍ୟତେ = କୁହାଯାଏ, ଲକ୍ଷଣା ଶୂନ୍ୟମ୍ = ଲକ୍ଷଣ ରହିତ (ଦୃଢ଼ ପ୍ରମାଣ); ଉଭୟମ୍ = ଉଭୟ, ତତ୍ ମତେନ = (ଅନ୍ୟ) ମତରେ; ଏବ = କେବଳ, ଗୃହ୍ୟତେ = (ପ୍ରତ୍ୟେକ) ଦେଖାଯାଏ; ଅନୁଭବ କରି ହୁଏ।

*ଉଭୟ ମନ ଏବଂ ଜୀବାତ୍ମା ପରସ୍ପରର ଦୃଶ୍ୟ ପଦାର୍ଥ, ତାହାହେଲେ କିଏ ଅନ୍ୟଠାରୁ ସ୍ୱତନ୍ତ୍ର ଭାବରେ ଅଛି ବୋଲି କୁହାଯାଇ ପାରିବ ? ସେମାନଙ୍କୁ ଅଲଗା ଭାବରେ ଜାଣିବା ପାଇଁ ଉଭୟଙ୍କଠାରେ କିଛି ଲକ୍ଷଣ ନାହିଁ, କାରଣ ଜଣକୁ ଅନ୍ୟ ଦ୍ୱାରାହିଁ କେବଳ ଅନୁଭବ କରିହେବ ।।୬୭।।*

ଅନୁଭୂତି କ୍ଷେତ୍ରରେ ହିଁ କେବଳ ଆମମାନଙ୍କ ଭିତରୁ ପ୍ରତ୍ୟେକେ ଏକ ସତ୍ତା (ଜୀବାତ୍ମା) ଭାବରେ ରହିଥାଉ । କର୍ତ୍ତା, କର୍ମ ସହିତ ଏକ ନିର୍ଦ୍ଦିଷ୍ଟ ସମ୍ବନ୍ଧର ସମ୍ପର୍କରେ ଆସିଲେ ଅନୁଭୂତି ହୋଇଥାଏ । ଜ୍ଞାତା, ଜ୍ଞାତ ଏବଂ ଜାଣିବା -ଏହି ତିନୋଟି ସମୟ ଏବଂ କାଳର ସେହି ଏକା ଗୋଟିଏ କ୍ଷେତ୍ରରେ କାମ କରୁନଥିଲେ ମଣିଷର ମନ କିଛି କାମ କରି ପାରିବା ସମ୍ଭବ ନୁହେଁ ।

ଶବ୍ଦ, ସ୍ୱାଦ, ସ୍ପର୍ଶ, ଗନ୍ଧ ଏବଂ ରୂପ -ଏହି ଇନ୍ଦ୍ରିୟବିଷୟରୁ ମନ ସର୍ବଦା ପ୍ରେରଣା ପାଇଥାଏ । ଦ୍ରଷ୍ଟା  ମନ ତାର ବିଷୟସବୁକୁ ଦେଖେ । ବିଷୟସବୁ ଆମ ଦ୍ୱାରା ଦେଖା ଯାଆନ୍ତି ଏବଂ ସେପରି ହୋଇଥିବାରୁ ବିଷୟ ସତ୍ୟ ବୋଲି ବିଶ୍ୱାସକରୁ । ଦେଖା ଯାଉଥିବା ଯୋଗୁଁ ଦ୍ରଷ୍ଟା ସମ୍ଭବ ହୋଇଥାଏ । ଦୃଶ୍ୟ ଯୋଗୁଁ ବିଷୟ ସତ୍ୟ ହୋଇଥାଏ । ତେଣୁ ମନ ଏବଂ ଏହାର ବିଷୟ ପରସ୍ପର ଉପରେ ନିର୍ଭରଶୀଳ ବୋଲି ଆମେ ଦେଖିପାରୁ । ମନ ଯଦି ନାହିଁ, ତେବେ ବିଷୟ ବି ନାହିଁ । ବିଷୟ ନଥିଲେ ମନ କାମ କରି ପାରିବ ନାହିଁ । ତେଣୁ ଦ୍ରଷ୍ଟା ଏବଂ ଦେଖା ଯାଉଥିବା ପଦାର୍ଥ ସେମାନଙ୍କର ପ୍ରତିପାଦନ ପାଇଁ ପରସ୍ପର ଉପରେ ନିର୍ଭରଶୀଳ ହୋଇଥିବାବେଳେ ସେମାନଙ୍କ ଭିତରୁ କାହାକୁ ଆମେ ବାସ୍ତବ ଏବଂ ସ୍ୱାଧୀନ ବୋଲି କହି ପାରିବା ? ତେଣୁ, ବାସ୍ତବରେ ପ୍ରତ୍ୟେକ ଜ୍ଞାନୀଜନ କହନ୍ତି ଯେ ସେମାନଙ୍କ ଭିତରୁ କେହି ସତ୍ୟ ନୁହେଁ ।

ସ୍ୱାଧୀନ ଭାବରେ, ଦ୍ରଷ୍ଟା, ଦୃଶ୍ୟ ବା ଦେଖାଯିବା ବସ୍ତୁ- ଏମାନଙ୍କ ଭିତରୁ କାହାରି ଉପରେ ହେଲେ ସତ୍ୟର ସ୍ୱାକ୍ଷର ନାହିଁ । ସେମାନଙ୍କର  ନିଜର କୌଣସି ମୌଳିକ ଉପାଦାନ ଯୋଗୁଁ ସେମାନେ କେହିହେଲେ ଅଛନ୍ତି ବୋଲି ପ୍ରମାଣିତ କରିହେବ ନାହିଁ । ଦେଖାଯାଉଥିବା ପଦାର୍ଥ ଠାରୁ  ଦ୍ରଷ୍ଟାକୁ ସ୍ୱତନ୍ତ୍ର ଭାବରେ ଜାଣିବା ପାଇଁ ବିଶେଷ ଗୁଣ ବା ଲକ୍ଷଣ ନାହିଁ । ଦେଖିବାପାଇଁ  ଗୋଟିଏ ମନ ନଥିଲେ  ବିଷୟମାନେ ନିଜକୁ  ପ୍ରତିପାଦିତ କରିପାରିବେ ନାହିଁ, ଏ କଥା ବୁଝିପାରିଲେ ମନ ବିଷୟ ଦ୍ୱାରା ସୃଷ୍ଟ ବୋଲି କହିହେବ ନାହିଁ ।

ବାସ୍ତବରେ ଏ ବିଷୟରେ ଆମେ ଯେତେ ଅଧିକ ଚିନ୍ତା କରିବା ଇନ୍ଦ୍ରିୟ ବିଷୟ ମନ ବ୍ୟତୀତ ଅନ୍ୟ କିଛି ନୁହେଁ ବୋଲି ଆମର ସେତେ ଅଧିକ ହୃଦ୍‌ବୋଧ ହେବ । ଶବ୍ଦ ଇତ୍ୟାଦି ପରି ଯେଉଁସବୁ ଇନ୍ଦ୍ରିୟ ବିଷୟଙ୍କୁ ଆମେ ଜାଣୁଁ, ତାହା କାନ ବା ଆଖି ବ୍ୟତୀତ ଅନ୍ୟ କିଛି ହୋଇ ପାରିବ ନାହିଁ । ମନ ହେଉଛି ପାଞ୍ଚଗୋଟି ଇନ୍ଦ୍ରିୟର କେନ୍ଦ୍ର ବିନ୍ଦୁ । ଏପରି ହୋଇଥିବାରୁ ଜ୍ଞାନୀଜନ ସବୁ ଶାସ୍ତ୍ରରେ କହିଛନ୍ତି ଯେ ଇନ୍ଦ୍ରିୟମାନେ ହେଉଛନ୍ତି

ମନର ପ୍ରକ୍ଷେପଣ ଏବଂ ଇନ୍ଦ୍ରିୟବିଷୟ ବାହ୍ୟ ବିଷୟଜଗତରେ ଇନ୍ଦ୍ରିୟମାନଙ୍କର ପରିପ୍ରକାଶ ବ୍ୟତୀତ ଅନ୍ୟ କିଛି ନୁହେଁ। ହେଇ ସେଇଠି ମୁଁ ଗୋଟିଏ ଫୁଲ ଦେଖୁଛି। ଫୁଲଟିର ଆକାର-ପ୍ରକାର ମୋଠାରେ ଥିବା ଦୃଷ୍ଟି ବ୍ୟତୀତ ଅନ୍ୟ କିଛି ନୁହେଁ ଏବଂ ଦୃଷ୍ଟି ବା କଳ୍ପନା ମନଠାରୁ ବିଶେଷ କିଛି ଅଲଗା ନୁହେଁ। ମନ ମାଧ୍ୟମରେ ହିଁ କେବଳ ବିଷୟ ଦେଖାଯାଇ ପାରିବ। ଇନ୍ଦ୍ରିୟବିଷୟ ଆମ ଉପରେ ପ୍ରଭାବ ପକାଇଲେ ହିଁ ମନର ସ୍ଥିତି ରହେ।

**ଯଥା ସ୍ୱପ୍ନମୟୋ ଜୀବୋ ଜାୟତେ ମ୍ରିୟତେଽପି ଚ।**

**ତଥା ଜୀବା ଅମୀ ସର୍ବେ ଭବନ୍ତି ନ ଭବନ୍ତି ଚ ॥୬୮॥**

ଯଥା = ଯେପରି, ସ୍ୱପ୍ନମୟଃ ଜୀବଃ = ସ୍ୱପ୍ନମୟ ଜୀବ, ଜାୟତେ = ଜନ୍ମ ନିଅନ୍ତି, ଦୃଶ୍ୟ ହୁଅନ୍ତି; ଚ ଅପି ମ୍ରିୟତେ = ଏବଂ ମୃତ୍ୟୁ ଲାଭ କରନ୍ତି, ଅଦୃଶ୍ୟ ହୁଅନ୍ତି; ତଥା = ସେହିପରି, ଜୀବାଃ = ଜୀବମାନେ, ଅମୀ = ଜାଗ୍ରତ ଅବସ୍ଥାରେ ଯାହାସବୁ ଦେଖାଯାଏ, ସର୍ବେ = ସମସ୍ତେ, ଭବନ୍ତି = ଦେଖାଯାଆନ୍ତି, ଚ ନ ଭବନ୍ତି = ଏବଂ ଅଦୃଶ୍ୟ ହୁଅନ୍ତି।

*କୁହୁକ ଜନିଷ ଦେଖାଦେଇ ଲୁଚିଯିବା ପରି ଆମର ଜାଗ୍ରତ ଅବସ୍ଥାରେ ଦେଖା ଦେଉଥିବା ଜୀବମାନେ ଦେଖା ଦିଅନ୍ତି ଏବଂ ଅଦୃଶ୍ୟ ହୋଇ ଯାଆନ୍ତି ॥୬୮॥*

**ଯଥା ମାୟାମୟୋ ଜୀବୋ ଜାୟତେ ମ୍ରିୟତେଽପି ଚ।**

**ତଥା ଜୀବା ଅମୀ ସର୍ବେ ଭବନ୍ତି ନ ଭବନ୍ତି ଚ ॥୬୯॥**

ଯଥା = ଯେପରି, ମାୟାମୟଃ ଜୀବଃ = ମାୟାମୟ ଜୀବ, ଜାୟତେ = ଜନ୍ମ ନିଅନ୍ତି, ଦୃଶ୍ୟ ହୁଅନ୍ତି; ଚ ଅପି ମ୍ରିୟତେ = ଏବଂ ମୃତ୍ୟୁ ମୁଖରେ ପଡ଼ନ୍ତି, ଅଦୃଶ୍ୟ ହୁଅନ୍ତି; ତଥା = ସେହିପରି, ଜୀବାଃ = ଜୀବମାନେ, ଅମୀ = ଜାଗ୍ରତ ଅବସ୍ଥାରେ ଏହି ଯାହାସବୁ ଦେଖାଯାଏ, ସର୍ବେ = ସମସ୍ତେ, ଭବନ୍ତି = ଦେଖା ଯାଆନ୍ତି, ଚ ନ ଭବନ୍ତି = ଏବଂ ଅଦୃଶ୍ୟ ହୁଅନ୍ତି।

*କୁହୁକ ବସ୍ତୁ ଦେଖାଦେଇ ଚାଲିଯିବା ପରି ଜାଗ୍ରତ ସମୟରେ ଦେଖା ଯାଉଥିବା ଜୀବମାନେ ଦୃଶ୍ୟ ହୁଅନ୍ତି ଏବଂ ଅଦୃଶ୍ୟ ହୋଇ ଯାଆନ୍ତି ॥୬୯॥*

**ଯଥା ନିର୍ମିତକୋ ଜୀବୋ ଜାୟତେ ମ୍ରିୟତେଽପି ବା ।**
**ତଥା ଜୀବା ଅମୀ ସର୍ବେ ଭବନ୍ତି ନ ଭବନ୍ତି ଚ ॥୭୦॥**

ଯଥା = ଯେପରି, ନିର୍ମିତକଃ ଜୀବଃ = କୃତିମ(ତିଆରି ହୋଇଥିବା)ଜୀବ ; ଜାୟତେ = ଜନ୍ମ ନିଅନ୍ତି, ବା ଅପି ମ୍ରିୟତେ = ଏବଂ ଚାଲି ମଧ୍ୟ ଯାଆନ୍ତି, ତଥା = ସେହିପରି, ଜୀବାଃ = ଜୀବମାନେ, ଅମୀ = ଜାଗ୍ରତ ଅବସ୍ଥାରେ ଏଇ ଯେଉଁମାନେ ଦେଖା ଦିଅନ୍ତି; ସର୍ବେ = ସମସ୍ତେ, ଭବନ୍ତି = ଦେଖା ଦିଅନ୍ତି, ନ ଚ ଭବନ୍ତି = ଏବଂ ଅଦୃଶ୍ୟ ହୁଅନ୍ତି ।

*କୃତ୍ରିମ ଜୀବାତ୍ମାସବୁ ଦେଖାଦେଇ ଅଦୃଶ୍ୟ ହୋଇଯିବା ପରି ଜାଗ୍ରତ ସମୟରେ ଦେଖା ଦେଉଥିବା ଜୀବମାନେ ମଧ୍ୟ ଦେଖା ଦେଇ ଅଦୃଶ୍ୟ ହୋଇ ଯାଆନ୍ତି ॥୭୦॥*

ଏହି ତିନିଗୋଟି ଶ୍ଳୋକରେ (୬୮-୭୦) ଗୌଡ଼ପାଦ ଜୋର ଦେବାପାଇଁ ଚେଷ୍ଟା କରୁଛନ୍ତି, 'ପରିବର୍ତ୍ତନର ଲୟ' ବା ଜନ୍ମ ଏବଂ ମୃତ୍ୟୁର ଅଭିନୟ କରୁଥିବା 'ଭ୍ରାନ୍ତିର ନାଟକ' ପ୍ରକୃତରେ କିପରି ତାର ଯୋଜନାର ରୂପାୟନ କରେ, ସ୍ୱପ୍ନ ଏବଂ କୁହୁକ ପରି ଜାଗ୍ରତ ଅବସ୍ଥାରେ ମଧ୍ୟ ଦେଖା ଦେବା ଏବଂ ଲୁଚି ଯିବା ସେହିଏକା କଥା । ଯେଉଁ ସବୁ ବିଭିନ୍ନ ଦୃଷ୍ଟିରୁ ମିଥ୍ୟାକୁ ସାଧାରଣତଃ ଗ୍ରହଣ କରାଯାଇଥାଏ, ସେହି ଦୃଷ୍ଟିରୁ ଜାଗ୍ରତ ଅବସ୍ଥାର ଅନୁଭୂତି ମଧ୍ୟ ବାସ୍ତବ ନୁହେଁ -ଏହି ତିନିଗୋଟି ଶ୍ଳୋକରେ ତା ଉପରେ ଜୋର ଦିଆଯାଇଛି ।

ଆନନ୍ଦ ବା ଦୁଃଖକୁ ସ୍ୱପ୍ନରେ କଦାପି ଗ୍ରହଣ କରାଯାଏ ନାହିଁ, କିମ୍ବା ସତ୍ୟବୋଲି ସାଧାରଣ ଲୋକଙ୍କ ଦ୍ୱାରା ମଧ୍ୟ ବିଚାରକୁ ନିଆଯାଏ ନାହିଁ । ଯାଦୁକର ଦ୍ୱାରା କୁହୁକରେ ସୃଷ୍ଟି କରାଯାଉଥିବା ହାତୀକୁ ମଧ୍ୟ ବାସ୍ତବ ବା ସତ୍ୟ ଭାବରେ ଧରାଯାଏ ନାହିଁ ଏବଂ ଲୁଚିଗଲେ ଆମର ଦୁଃଖ ହୁଏ ନାହିଁ ।

ପରିଶେଷରେ, ଜିନିଷସବୁ ଦୃଷ୍ଟି ଗୋଚର ହୁଏ ଏବଂ ପ୍ରେତ ଶୂନ୍ୟରେ ମିଳେଇ ଯିବା ପରି ଉଭେଇ ଯାଏ, କାରଣ ଏହା ହେଉଛି ମନ୍ତ୍ରର ଉଚ୍ଚାରଣ ବା କୁହୁକ କାଚର ବ୍ୟବହାର, କିମ୍ବା ଚେରମୂଳିକାରୁ କୃତ୍ରିମ ଭାବରେ ସୃଷ୍ଟି ହୋଇଥିବା ପରି । ଜୀବନରେ ଦୃଶ୍ୟ ବା ଅଦୃଶ୍ୟ ସ୍ୱପ୍ନ-ଅନୁଭୂତି, ବା ଯାଦୁକର ସୃଷ୍ଟି କରିଥିବା କୁହୁକ ବା ମନ୍ତ୍ର ଉଚ୍ଚାରଣ, କୁହୁକ କାଚ ବା ଚେରମୂଳିକା ଦ୍ୱାରା ଦେଖା ଯାଉଥିବା ଦୃଶ୍ୟ ଅପେକ୍ଷା ବାସ୍ତବ ନୁହେଁ - ସାଧକମାନଙ୍କ ପାଇଁ ଏହା ପ୍ରମାଣ କରିବାକୁ ଏହି ତିନିଗୋଟି ସାରୂପ୍ୟ ଦିଆଯାଇଛି ।

ସଂକ୍ଷେପରେ ଜନ୍ମ, ବୃଦ୍ଧି, ରୋଗ (କ୍ଷୟ), ଜରା ଏବଂ ମୃତ୍ୟୁ ଇତ୍ୟାଦିର ବିଭିନ୍ନ ଅବସ୍ଥାର ଅଭିବ୍ୟକ୍ତି ଥିବା ଜାଗ୍ରତ ଅବସ୍ଥାରେ ଜ୍ଞାତ ସମସ୍ତ ନାମ ଏବଂ ରୂପ ହେଉଛି ମନର ବାହ୍ୟ ପରିପ୍ରକାଶ। ନିଜ ସମ୍ବନ୍ଧରେ ସେମାନଙ୍କର ପୂର୍ଣ୍ଣ ବାସ୍ତବତା ନାହିଁ।

**ନ କଶ୍ଚିଜ୍ଜାୟତେ ଜୀବଃ ସମ୍ଭବୋଽସ୍ୟ ନ ବିଦ୍ୟତେ।**

**ଏତଦ୍‌ତଦୁତ୍ତମଂ ସତ୍ୟଂ ଯତ୍ର କିଞ୍ଚିତ୍ ନଜାୟତେ ।।୭୧।।**

ନ କଶ୍ଚିତ୍ = କଦାପି ନୁହେଁ, ଜାୟତେ = ଜନ୍ମ ନିଏ, ଜୀବଃ = ଜୀବ, ନ ସମ୍ଭବଃ = ସମ୍ଭବ ନୁହେଁ, ଅସ୍ୟ = ଏହା ପାଇଁ, ବିଦ୍ୟତେ = ସୃଷ୍ଟି, ଏତତ୍ = ଏହା, ତତ୍ = ତାହା (ବ୍ରହ୍ମ); ଉତ୍ତମମ୍ ସତ୍ୟମ୍ = ଚରମ ସତ୍ୟ, ଯତ୍ର = ଯେଉଁଠାରେ, ନ କିଞ୍ଚିତ୍ ଜାୟତେ = କିଛିହେଲେ ଜନ୍ମ ନିଏ ନାହିଁ ।

*କୌଣସି ଜୀବ ଜନ୍ମ ହୁଏ ନାହିଁ, ଏପରି ସୃଷ୍ଟି (ଜନ୍ମ ନେବା)ର କୌଣସି କାରଣ ମଧ୍ୟ ନାହିଁ। ତାହା (ବ୍ରହ୍ମ) ହେଉଛି ଚରମ ସତ୍ୟ। ତାଙ୍କଠାରେ କେବେହେଲେ କିଛି ଜନ୍ମ ନିଏ ନାହିଁ ।।୭୧।।*

ଏହି ଶ୍ଳୋକ ତୃତୀୟ ପ୍ରକରଣର ୪୮ତମ ଶ୍ଳୋକର ପୁନରୁକ୍ତି। ଏଥିରେ ଗୌଡ଼ପାଦଙ୍କ ସିଦ୍ଧାନ୍ତର ସାରତତ୍ତ୍ୱ ନିହିତ। ଶାସ୍ତ୍ରର (ଉପଦେଶ ଗ୍ରନ୍ଥର) ପୁନରାବୃତ୍ତି ଦୋଷାବହ ନୁହେଁ। ଶିଷ୍ୟ ମାନଙ୍କର ପୂର୍ଣ୍ଣ ବୋଧଗମ୍ୟତା ପାଇଁ ଏଠାରେ ଅପ୍ରଚଳିତ (ଅନଭ୍ୟସ୍ତ) ସତ୍ୟ ଉପରେ ଅତି ବେଶୀ ଜୋର ଦିଆଯାଇଥାଏ। ଏହି ଶ୍ଳୋକର ପୂର୍ଣ୍ଣ ଏବଂ ବିଶଦ ବ୍ୟାଖ୍ୟା ପାଇଁ ତୃତୀୟ ପ୍ରକରଣର ଅନ୍ତିମ ଶ୍ଳୋକ ଦେଖନ୍ତୁ।

**ଚିତ୍ତସ୍ପନ୍ଦିତମେବେଦଂ ଗ୍ରାହ୍ୟଗ୍ରାହକବଦ୍‌ଦ୍ୱୟମ୍।**

**ଚିତ୍ତଂ ନିର୍ବିଷୟଂ ନିତ୍ୟମସଙ୍ଗମ୍ ତେନ କୀର୍ତ୍ତିତମ୍ ।।୭୨।।**

ଚିତ୍ତ = ମନ, ସ୍ପନ୍ଦିତମ୍ = ସ୍ପନ୍ଦିତ, ଏବ = ପରି, ଇଦମ୍ = ଏହା, ଗ୍ରାହ୍ୟ = ବିଷୟ, ଗ୍ରାହକ = କର୍ତ୍ତା, ବତ୍ = ପରି, ଦ୍ୱୟମ୍ = ଦ୍ୱୈତ ଜଗତ, ଚିତ୍ତମ୍ = ମନ, ନିର୍ବିଷୟମ୍ = କେବେ ବି କୌଣସି ବିଷୟର ସଂସ୍ପର୍ଶରେ ଆସେ ନାହିଁ; ନିତ୍ୟମ୍ = ନିତ୍ୟ, ଶାଶ୍ୱତ(ସର୍ବଦା); ଅସଙ୍ଗମ୍ = ଅନାସକ୍ତ, ଅସ୍ପୃଷ୍ଟ ; ତେନ = ତେଣୁ, କୀର୍ତ୍ତିତମ୍ = କୁହାଯାଇଛି।

*ଗ୍ରାହ୍ୟ-ଗ୍ରାହକ(ଦୃଶ୍ୟ-ଦ୍ରଷ୍ଟା) ସମ୍ପର୍କ ଦ୍ୱାରା ପରିଚିତ ଏବଂ ଦ୍ରଷ୍ଟା ଦ୍ୱାରା ଦେଖା ଯାଉଥିବା ଏହି ଜଗତ ବାସ୍ତବରେ ହେଉଛି ମନର ଏକ କାର୍ଯ୍ୟ। ପୁନଶ୍ଚ, ମନ କଦାପି କୌଣସି ବିଷୟର ସଂସ୍ପର୍ଶରେ ଆସେ ନାହିଁ। ତେଣୁ ଏହାକୁ ନିତ୍ୟ ଏବଂ ଅନାସକ୍ତ ବୋଲି କୁହାଯାଇଛି ।।୭୨।।*

ଏତେ ପର୍ଯ୍ୟନ୍ତ ଆମେ ଯାହା ଆଲୋଚନା କରି ଆସିଛୁ, ସେଥିରୁ ନିଃସନ୍ଦେହରେ ଏହା ସ୍ପଷ୍ଟ ହେବ ଯେ ଦୃଶ୍ୟ-ଦ୍ରଷ୍ଟା(ଗ୍ରାହ୍ୟ-ଗ୍ରାହକ) ସମ୍ପର୍କର ପରିଣାମ ସ୍ୱରୂପ ଦେଖାଯାଉଥିବା ଏହି ଜଗତ ହେଉଛି ମନର ଏକ କାର୍ଯ୍ୟ କେବଳ। ପରମସତ୍ୟଙ୍କ ଦୃଷ୍ଟିରୁ ମନ ଏକ ପ୍ରକ୍ଷେପଣ ମାତ୍ର, ଏବଂ ଏପରି ହୋଇଥିବାରୁ ଏହାର କୌଣସି ନିଜସ୍ୱ ଅସ୍ତିତ୍ୱ ନାହିଁ, ଏହା ଆତ୍ମା ଉପରେ ଅଧ୍ୟସ୍ତ। ଏପରି ହୋଇଥିବାରୁ , ଆତ୍ମା ବ୍ୟତୀତ ଏହା ଅନ୍ୟ କିଛି ହୋଇ ନଥିବାରୁ, ବାହ୍ୟ ବିଷୟ ସହିତ ବାସ୍ତବରେ ଏହାର କୌଣସି ସଂସ୍ପର୍ଶ ନ ରହିବା ସ୍ୱାଭାବିକ। ତେଣୁ ମନ ଆତ୍ମା ବ୍ୟତୀତ ଅନ୍ୟ କିଛି ବୋଲି ବିଚାର କରାଯାଏ। ସେଥିପାଇଁ ମନ ଶାଶ୍ୱତ ଏବଂ ଅସ୍ପର୍ଶ ବୋଲି ବେଦାନ୍ତୀମାନେ ବିଚାର କରନ୍ତି। ରଜ୍ଜୁ ଦୃଷ୍ଟିରୁ ସାପର ବିଷ ନାହିଁ କିମ୍ବା ପଥିକଙ୍କୁ ଭୟ ଦେଖାଇବାର କୌଣସି କ୍ଷମତା ନାହିଁ।

**ଯୋଽସ୍ତି କଳ୍ପିତସଂବୃତ୍ୟା ପରମାର୍ଥେନ ନାସ୍ତ୍ୟସୌ।**

**ପରତନ୍ତ୍ରାଭିସଂବୃତ୍ୟା ସ୍ୟାନ୍ନାସ୍ତି ପରମାର୍ଥତଃ ॥୭୩॥**

ଯଃ ଅସ୍ତି = ଯାହା ଅଛି, କଳ୍ପିତ = କଳ୍ପନାରୁ, ସଂବୃତ୍ୟା = ବଳରେ, ପରମାର୍ଥେନ = ପରମାର୍ଥ ଦୃଷ୍ଟିରୁ, ନ ଅସ୍ତି = ନାହିଁ, ଅସୌ = ଏହି (ଦ୍ୱୈତ); ପରତନ୍ତ୍ର = ଅନ୍ୟ ବିଚାର ଧାରା, ଅଭିସଂବୃତ୍ୟା = ଅଭିମତ ବଳରେ, ସ୍ୟାତ୍ = (ପୁନଶ୍ଚ) ଏହା ଅଛି, ନ ଅସ୍ତି = ନାହିଁ, ପରମାର୍ଥତଃ = ବାସ୍ତବରେ।

*ଯାହା ମାୟା ବଳରେ ଥାଏ, ବାସ୍ତବରେ ତାହା ନଥାଏ। ଅନ୍ୟ ବିଚାରଧାରା ସମର୍ଥିତ ଦୃଷ୍ଟିକୋଣରୁ ଯାହା ପୁଣି ଅଛି ବୋଲି କୁହାଯାଏ, ଯଥାର୍ଥରେ ତାହା କେବେବି ନଥାଏ ॥୭୩॥*

ଶ୍ରୀ ଶଙ୍କର ତାଙ୍କର ଟୀକାରେ କହିଛନ୍ତି ଯେ, ଗୌଡ଼ପାଦ ତାଙ୍କର ଜଣେ ସମ୍ଭାବ୍ୟ ପ୍ରତିବାଦୀଙ୍କୁ ଏଠାରେ ଉତ୍ତର ଦେଇଛନ୍ତି। ପ୍ରତିବାଦୀ ହୁଏତ କହିଥିବେ ଯେ ମନ ଯଦି କୌଣସି ବିଷୟର ସଂସ୍ପର୍ଶରେ ଆସିବ ନାହିଁ ଏବଂ ତେଣୁ ବେଦାନ୍ତୀ ଯଦି ସମଗ୍ର ବହୁବିଧ ଜଗତକୁ ନିଷେଧ କରିବେ; ତେବେ ଶାସ୍ତ୍ର, ଗୁରୁ ଏବଂ ଶିଷ୍ୟ ସମସ୍ତେ ମିଥ୍ୟା ହେବେ। ଆଲୋଚିତ ଶ୍ଳୋକରେ ଏହି ସନ୍ଦେହର ବିଶଦ ଉତ୍ତର ଦିଆ ଯାଇଛି।

ପରମସତ୍ୟଙ୍କର ଅନୁଭୂତିର ମୁହୂର୍ତ୍ତରେ ନିର୍ବିକଳ୍ପ ସତ୍ୟଙ୍କ ଦୃଷ୍ଟିରୁ ଗୁରୁ, ଶାସ୍ତ୍ର କିମ୍ବା ଶିଷ୍ୟ ମଧ୍ୟ ମନର ଏକ ପରିପୂର୍ଣ୍ଣ ଭ୍ରମ ମାତ୍ର। କିନ୍ତୁ ଜୀବନରେ ସେମାନଙ୍କୁ ଏତେ ସମ୍ମାନ ଦିଆଯାଏ ଏବଂ ଶାସ୍ତ୍ରରେ ସେମାନଙ୍କର ମହିମା ଗାନ କରାଯାଏ, କାରଣ ମନର

ଲକ୍ଷ ଲକ୍ଷ ତୁଚ୍ଛ କଳ୍ପନା ମଧ୍ୟରେ ସେମାନେ ହେଉଛନ୍ତି ପବିତ୍ର। ଏହା ଏକ ଆତ୍ମରକ୍ଷାକାରୀ ମନଗଢ଼ା ଗଳ୍ପ। ସ୍ୱପ୍ନରେ ମଧ୍ୟ ସ୍ୱପ୍ନଦ୍ରଷ୍ଟାଙ୍କୁ ଚେତନାର ଉଚ୍ଚତର ସ୍ତରକୁ ଜାଗ୍ରତ କରାଇବା ପାଇଁ ଭ୍ରମରେ କିଛି କ୍ଷମତା ଅଛି। ସେହିପରି ମନର ସମସ୍ତ କାର୍ଯ୍ୟକଳାପ ମଧ୍ୟରୁ ଶାସ୍ତ୍ରାଧ୍ୟୟନର ସ୍ୱାଭାବିକ ମୂଲ୍ୟ ରହିଛି। ଏପରିକି, ପରିଶେଷରେ, ଧ୍ୟାନର ଉଦ୍ୟମ କରୁଥିବାବେଳେ ଏହା ଅଜ୍ଞାନର ଅନ୍ଧକାର ଜଗତରୁ ଖସିପଡ଼ି ଜ୍ଞାନର ଆଲୋକ କ୍ଷେତ୍ରରେ ପହଞ୍ଚିଯାଏ।

ନିର୍ବିକଳ୍ପ ସତ୍ୟଙ୍କ ବିରୁଦ୍ଧରେ ଲକ୍ଷଲକ୍ଷ ଦାର୍ଶନିକ ମତ ଘୋଷିତ ହେଲେ ବି, ମିଥ୍ୟା କଦାପି ସତ୍ୟ ହୋଇ ପାରିବ ନାହିଁ। ସତ୍ୟର ସ୍ଥିତି ସମର୍ଥନକାରୀଙ୍କ ଯୋଗୁଁ ନୁହେଁ, କିମ୍ବା ଅଧିକାଂଶ ମତ ଏହାର ବିରୁଦ୍ଧରେ ଥିଲେ ବି ଆମେ ଏହାର କ୍ଷତି କରି ପାରିବା ନାହିଁ। ନିର୍ବିକଳ୍ପଙ୍କର ଏହି ରାଜ୍ୟରେ ଗଣତନ୍ତ୍ର କାମ କରିପାରେ ନାହିଁ। ସପକ୍ଷରେ ବା ବିପକ୍ଷରେ ମତ ଦେଲେ ବି ସତ୍ୟର ଶାସନ ସର୍ବୋପରି।

**ଅଜଃ କଳ୍ପିତସଂବୃତ୍ୟା ପରମାର୍ଥେନ ନାପ୍ୟଜଃ।**

**ପରତନ୍ତ୍ରାଭିନିଷ୍ପତ୍ତ୍ୟା ସଂବୃତ୍ୟା ଜାୟତେ ତୁ ସଃ ॥୭୪॥**

ଅଜଃ = ଅଜ, କଳ୍ପିତଃ = କଳ୍ପନା କରା ଯାଇଥିବା, ମିଥ୍ୟା ; ସଂବୃତ୍ୟା = ଦୈନନ୍ଦିନ ଅନୁଭୂତି, ପରମାର୍ଥେନ = ସତରେ କହିଲେ, ନ ଅପି = କଦାପି ନୁହେଁ, ଅଜଃ = ଅଜ, ପରତନ୍ତ୍ର = ଅନ୍ୟ ମତବାଦ, ଅଭିନିଷ୍ପତ୍ତ୍ୟା = ମନେ ହୁଏ, ଦେଖାଯାଏ; ସଂବୃତ୍ୟା = ବିଶ୍ୱାସର ଦୃଷ୍ଟି କୋଣ, ଜାୟତେ = ଜନ୍ମ ହୁଏ, ତୁ = ବାସ୍ତବରେ, ସଃ = ତାହା (ଆତ୍ମା)।

*ଦୈନନ୍ଦିନ ମିଥ୍ୟା ଅନୁଭୂତି ଦୃଷ୍ଟିରୁ ଆତ୍ମା ଅଜ ବୋଲି କୁହାଯାଏ। ପ୍ରକୃତରେ କହିଲେ ଏହା ଅଜ ମଧ୍ୟ ନୁହେଁ। ଅନ୍ୟ ମତବାଦ ଦୃଷ୍ଟିରୁ ଅଜ ଆତ୍ମା ଜନ୍ମ ନେଇଥିବାର ଆଭାସ ହୁଏ ॥୭୪॥*

ମୁଖ୍ୟତଃ ବୈଶେଷିକ ମତବାଦ ତରଫରୁ ବିରୋଧ କରାଯାଇଥାଏ। ଗତ ଶ୍ଲୋକରେ ସେମାନେ ତାଙ୍କର ବିରୋଧ ଉଠାଇଥିଲେ। ବର୍ତ୍ତମାନ ସେମାନେ ଅଧିକରୁ ଅଧିକ ଜୋର ଦେଇ, ଗତ ଶ୍ଲୋକରେ ବେଦାନ୍ତୀମାନଙ୍କର ଉତ୍ତର ଦୃଷ୍ଟିରୁ ଅନ୍ୟ ସମସ୍ୟା ଉଠାଇବା ପାଇଁ ଚାହୁଁଛନ୍ତି। ଶାସ୍ତ୍ରର ଶିକ୍ଷା ଯଦି କଳ୍ପନାପ୍ରସୂତ, ତେବେ ଶାସ୍ତ୍ର ଯାହା ଘୋଷଣା କରିଛି ଯେ ଆତ୍ମା ଅଜ, ତାହା ମଧ୍ୟ ବେଦାନ୍ତୀ ସାଧୁଙ୍କର ଭ୍ରାନ୍ତ କଳ୍ପନା ଯୋଗୁଁ ହୋଇଥିବ। ଶ୍ରୀଶଙ୍କର ଏହି ପ୍ରଶ୍ନରୁ ତାଙ୍କର ଟୀକା ଆରମ୍ଭ କରିଛନ୍ତି ଏବଂ ଏହା

ଦ୍ୱୈତବାଦୀଙ୍କର ପ୍ରଶ୍ନ ବୋଲି କହିଛନ୍ତି । ବୁଦ୍ଧିମତ୍ତାର ସହ ପ୍ରଥମ ଶ୍ଳୋକ ଗୁଡ଼ିକ ଅଧ୍ୟୟନ କରିଥିଲେ ତୁମ ମନରେ ମଧ୍ୟ ଏହିପରି ପ୍ରଶ୍ନ ଉଠିଥିବ । ଗୌଡ଼ପାଦ ଏହି ଯୁକ୍ତିକୁ ଅସ୍ୱୀକାର କରି ନାହାନ୍ତି । ଅନ୍ୟ ପକ୍ଷରେ ସେ କହିଛନ୍ତି ଯେ ବାସ୍ତବରେ ଏହା ସତ୍ୟ । ଆତ୍ମା ଅଜ ବୋଲି ଶାସ୍ତ୍ରରେ କୁହା ଯାଇଛି ଏବଂ ଏହି ଅଜଗୁଣ ହେଉଛି ଆତ୍ମା ଉପରେ ଏକ ମିଥ୍ୟା ଅଧ୍ୟାସ, କାରଣ ଅଜ ଗୁଣର ବିପରୀତ ଜନ୍ମର ଉଲ୍ଲେଖରେ ହିଁ କେବଳ ଏହାର ସ୍ଥିତି ରହି ପାରିବ ।

ଅଜ ହେଉଛି ପରମସତ୍ୟଙ୍କୁ ଦୂରରେ ନିର୍ଦ୍ଦେଶ କରୁଥିବା ଏକ ପଦ । ବର୍ତ୍ତମାନ ଆମେ ଗଭୀର ମିଥ୍ୟାରେ ବାସ କରି ଜନ୍ମ-ମୃତ୍ୟୁ କ୍ଷେତ୍ରରେ କାରବାର କରୁଛୁ । ତେଣୁ ଆମରି ଭାଷାରେ - ଅଜ୍ଞତାର ସ୍ଥୂଳ ଭାଷାରେ କୁହାଯିବା କଥା । ତେଣୁ, କହିବାକୁ ଗଲେ, ଶାସ୍ତ୍ର ଆମ ସ୍ତରର ବୋଧଗମ୍ୟତା ଏବଂ ବିଶ୍ୱାସକୁ ଓହ୍ଲେଇ ଆସି ନିର୍ବିକଳ୍ପ ସତ୍ୟଙ୍କ ବିଷୟରେ କହୁଛନ୍ତି- ଅକ୍ଷରମାନେ ନୀରବ ହୋଇ ଯାଉଥିବା ସ୍ଥାନରେ ହିଁ ତାହାଙ୍କୁ (ନିର୍ବିକଳ୍ପ ସତ୍ୟଙ୍କୁ) କେବଳ ଜ୍ଞାନର ଭାଷାରେ ପ୍ରକାଶ କରାଯାଇ ପାରିବ ।

ପରମସତ୍ୟଙ୍କର ସମସ୍ତ ସଂଜ୍ଞା କ୍ଷେତ୍ରରେ ଏହା ସତ୍ୟ । 'ସର୍ବମିଦଂ ବ୍ରହ୍ମ' କିମ୍ବା 'ଅୟମାତ୍ମା ବ୍ରହ୍ମ' କିମ୍ବା 'ସଚ୍ଚିଦାନନ୍ଦ' ଇତ୍ୟାଦି ବିଖ୍ୟାତ ସଂଜ୍ଞା ହେଉଛି ଲକ୍ଷଣ ସଂଜ୍ଞା । ଏହା ପୂର୍ଣ୍ଣ ସତ୍ୟ ନୁହେଁ । ପରିଚ୍ଛିନ୍ନ (ସସୀମ) ଭାଷାରେ ନିର୍ବିକଳ୍ପଙ୍କର ପୂର୍ଣ୍ଣ ସଂଜ୍ଞା ନିରୂପଣ କରିହେବ ନାହିଁ । ମିଥ୍ୟା-ବହୁବିଧ ଜଗତର ଆପେକ୍ଷିକ ଅନୁଭୂତି ପ୍ରକାଶ କରିବା ପାଇଁ ଏହି ସସୀମ ଭାଷାର ଧାରଣା କରାଯାଇ ଆବିଷ୍କାର କରା ଯାଇଛି । ତେଣୁ ଏହି ଅଜାତ ବାଦ ମଧ୍ୟ ଆମରି ମିଥ୍ୟା ଭାଷାରେ ଆମକୁ ସତ୍ୟ ଜଗତ ବିଷୟରେ କହୁଛି । ଏହି ସତ୍ୟ-ଜଗତ ସମସ୍ତ ପରିପ୍ରକାଶ ଏବଂ ମାନସିକ, ବୌଦ୍ଧିକ ଅବଧାରଣାର ଅତୀତ ।

ସାଂଖ୍ୟବାଦ କାରଣ-କାର୍ଯ୍ୟ-ସମ୍ପର୍କରେ ବିଶ୍ୱାସ କରେ । ସାଂଖ୍ୟବାଦୀ ମାନେ ଆତ୍ମାଙ୍କର ଜନ୍ମକୁ ସମର୍ଥନ କରନ୍ତି । ଏହି ସିଦ୍ଧାନ୍ତ ବିରୁଦ୍ଧରେ ବେଦାନ୍ତୀମାନେ କହନ୍ତି ଯେ, ଆତ୍ମା ଅଜ । ଅଜ୍ଞାନର ଧାରଣାକୁ ଆମେ ଯେତେ ଖଣ୍ଡନ କରିବାକୁ ଚେଷ୍ଟା କରୁଛୁ, ଏହି ସମର୍ଥନ ହେଉଛି ଅଜ୍ଞାନର ଏକ ଅନୁଲିପି ମାତ୍ର । ଏହା ଗୋଟିଏ ମିଥ୍ୟାତ୍ୱକୁ ଖଣ୍ଡନ କରୁଥିବାରୁ ଆକ୍ଷରିକ ଅର୍ଥରେ ଏହା ହେଉଛି ସେହି ମିଥ୍ୟାତ୍ୱର ଏକ ପ୍ରତିଲିପି ମାତ୍ର । ବିବରଣୀର ଲାକ୍ଷଣିକ ଅର୍ଥରେ ବେଦାନ୍ତ ପୂର୍ଣ୍ଣତ୍ୱର ଯେଉଁ ଶାନ୍ତ ମଣ୍ଡଳ ସୂଚାଇ ଦିଏ, ତାହା ଶାଶ୍ୱତ, ଅଜ ଏବଂ ନିର୍ବିକଳ୍ପ, ଏହା ହିଁ ବେଦାନ୍ତର ଗୌରବ । ଭାଷା କିମ୍ବା ଜ୍ଞାନର ଅନ୍ୟାନ୍ୟ ସାଧନ ଏକ ଆପେକ୍ଷିକ ସ୍ତର ପ୍ରତି ପ୍ରଯୁଜ୍ୟ ଏବଂ ଏପରି ହୋଇଥିବାରୁ

ନିର୍ବିକଳ୍ପଙ୍କ ଆଲୋଚନାରେ ଆମେ ତାହା ବ୍ୟବହାର କଲେ ଆମ୍ଭାଙ୍କର ପ୍ରକୃତ ସ୍ୱରୂପ ନଷ୍ଟ ହୋଇଯିବ।

**ଅଭୂତାଭିନିବେଶୋଽସ୍ତି ଦ୍ୱୟଂ ତତ୍ର ନ ବିଦ୍ୟତେ।**
**ଦ୍ୱୟାଭାବଂ ସ ବୁଦ୍ଧ୍ୱୈବ ନିର୍ନିମିତ୍ତୋ ନ ଜାୟତେ ।।୭୫।।**

ଅଭୂତ = ଯାହା ଜନ୍ମ ହୋଇ ନାହିଁ, ଅଭିନିବେଶଃ = ଦୃଢ଼ ବିଶ୍ୱାସ, ଅସ୍ତି = (କେବଳ)ଅଛି, ଦ୍ୱୟମ୍ = ଦ୍ୱୈତଭାବ, ତତ୍ର = ସେଠାରେ, ନ ବିଦ୍ୟତେ = ନଥାଏ, ଦେଖାଯାଏ ନାହିଁ; ଦ୍ୱୟ ଅଭାବମ୍ = ଦ୍ୱୈତବାଦର ଅନୁପସ୍ଥିତି, ସଃ = ସେ, ବୁଦ୍ଧ୍ୱା ଏବ = ଅନୁଭବ କରିପାରି, ଜାଣିପାରି; ନିର୍-ନିମିତ୍ତଃ = କାହାର ହେତୁ ନୁହେଁ, ନ ଜାୟତେ = ଆଉ କଦାପି ଜନ୍ମ ନିଏ ନାହିଁ।

*ଅବାସ୍ତବର ବାସ୍ତବତାରେ ମଣିଷର ଦୃଢ଼ ବିଶ୍ୱାସ ରହିଛି। ଦ୍ୱୈତ ବୋଲି କିଛି ନାହିଁ। ଦ୍ୱୈତର ଅନୁପସ୍ଥିତି ବିଷୟରେ ବୁଝିପାରିଥିବା ବ୍ୟକ୍ତି ଆଉ କେବେ ବି ଜନ୍ମ ନିଏ ନାହିଁ, କାରଣ ଏପରି ଜନ୍ମ ପାଇଁ ଆଉ କୌଣସି କାରଣ ନଥାଏ ।।୭୫।।*

ଗୌଡ଼ପାଦ ଏପର୍ଯ୍ୟନ୍ତ ଯାହା କହୁଥିଲେ ତାର ସାରାଂଶ ଦେବା ପରି ଏହି ଶ୍ଳୋକରେ ତାର ଉପସଂହାର କରି ପ୍ରମାଣ କରିବାକୁ ଚାହୁଁଛନ୍ତି ଯେ ବହୁବିଧ ଜଗତ ଅବାସ୍ତବ ହେଲେ ହେଁ ଆମ ଦୃଷ୍ଟିରେ ତଥାପି କାହିଁକି ରହିଥାଏ। ଏହା ଏକ ଦୃଢ଼ବିଶ୍ୱାସ (ଅଭିନିବେଶ) ଯୋଗୁଁ ବୋଲି ସେ କହୁଛନ୍ତି। ଦୁର୍ଭାଗ୍ୟବଶତଃ, ଏହି ଶ୍ଳୋକଟିର ପ୍ରକୃତ ସୌନ୍ଦର୍ଯ୍ୟ ବା ସାମର୍ଥ୍ୟ ଇଂରାଜୀ ଭାଷା ମାଧ୍ୟମରେ ଅନୁବାଦ କରିହେବ ନାହିଁ ବା ଜଣାଇ ହେବ ନାହିଁ। ଅଭିନିବେଶ କେବଳ ଦୃଢ଼ବିଶ୍ୱାସ ନୁହେଁ ବରଂ ଆମେ କହି ପାରିବା ଯେ, ହାସ୍ୟାସ୍ପଦ ଅଜ୍ଞାନ ଦ୍ୱାରା ପ୍ରତିପାଳିତ ହେଉଥିବା ଏକ ମିଥ୍ୟା ଜ୍ଞାନର ଅନୁରାଗୀ ବିଶ୍ୱାସ ସହ ଗଭୀର ମାନସିକ ଯୋଗାଯୋଗ। 'ଅଭିନିବେଶ' ଶବ୍ଦ ସମସ୍ତ ଲକ୍ଷଣ ମୁଁ ଜଣାଇ ଦେଇ ପାରିଛି ବୋଲି ବର୍ତ୍ତମାନ ମଧ୍ୟ ମୁଁ ନିଶ୍ଚିତ ନୁହେଁ। କାରଣ ଏପରି ବିଶ୍ୱାସ କରୁଥିବା ଲୋକର ଏହା କ୍ଷତି କରେ।

ଇନ୍ଦ୍ରିୟ ବିଷୟର ବହୁବିଧ ଜଗତ ପ୍ରକୃତରେ ଅବସ୍ତବ। ଏହାର ବାସ୍ତବତା ସମ୍ବନ୍ଧରେ ଭ୍ରାନ୍ତ ବ୍ୟକ୍ତିର ଦୃଢ଼ ବିଶ୍ୱାସ ଥାଏ। ଏହି ଅନ୍ଧବିଶ୍ୱାସ ଅନୁସାରେ ମନ ବ୍ୟତୀୟ ଇନ୍ଦ୍ରିୟ ବିଷୟର ଅନ୍ୟ କୌଣସି ବାହ୍ୟ ଜଗତ ନାହିଁ। ମନ ମାଧ୍ୟମରେ ହିଁ ଚୈତନ୍ୟ ପ୍ରକ୍ଷେପିତ ହୋଇ ମନେ ହେଉଥିବା ବିଭିନ୍ନ ପ୍ରକ୍ଷେପଣରେ ଖେଳେଇ ହୋଇଯାଏ। ଉପାସନା ମାଧ୍ୟମରେ ମନକୁ ସଂଗଠିତ କରି, ସେହି ପ୍ରସ୍ତୁତି ମନ ଦ୍ୱାରା ଶାସ୍ତ୍ରାଧ୍ୟୟନ

କରୁଥିବା ବ୍ୟକ୍ତି ଭାବତୀତ ଧାରଣାର ଧ୍ୟାନ କରନ୍ତି। ସେହି ମନ ଅତୀତ ହୋଇଯାଏ ଏବଂ ଆତ୍ମାନୁଭୂତି ହୁଏ। ତାପରେ ସେ ସଂପୂର୍ଣ୍ଣଭାବେ ଦ୍ୱୈତର ଅନୁପସ୍ଥିତି ଅନୁଭବ କରନ୍ତି। ଉପନିଷଦ ମତରେ ଏପରି ବ୍ୟକ୍ତି ଆଉ କଦାପି ଜନ୍ମ ନିଅନ୍ତି ନାହିଁ, କାରଣ ଜନ୍ମ ନେବାର କୌଣସି ହେତୁ ତାଙ୍କଠାରେ ଆଉ ନଥାଏ।

ନିଜର ଅଜ୍ଞାନତାବଶତଃ ମନ ତାର ଅତୀତରେ କାର୍ଯ୍ୟ, ଚିନ୍ତା ଏବଂ ଉଦ୍ଦେଶ୍ୟରେ ନିଜ ପାଇଁ ଚାହିଁଥିବା ଅନୁଭୂତି ଆହରଣ ପାଇଁ ଜନ୍ମ ହେଉଛି ଏକ ଅବସର ବା ଘଟଣା। ଆତ୍ମାନୁଭୂତି ଲାଭ କଲେ ଏହା ଆଉ ଯୋଜନା କରିବ ନାହିଁ ବା କାମ କରିବ ନାହିଁ, ଅଭିଜ୍ଞତା ଲାଭ କରିବା ପାଇଁ ଅନ୍ୟ କୌଣସି ପରିସ୍ଥିତି ର କାମନା କରିବା ନାହିଁ। ଏପରି ହେଲେ, ନିଜ ଆତ୍ମା ବ୍ୟତୀତ ଅନ୍ୟ କିଛି ନୁହେଁ ପୁନରାବିଷ୍କାର କରି ପାରିବା ବ୍ୟକ୍ତି ଏହି ଅଜ୍ଞାନ ଜଗତକୁ ପୁଣି ଆସିବା ପାଇଁ କୌଣସି ଆବଶ୍ୟକତା ଅନୁଭବ କରିବା ନାହିଁ।

ମନର ଅତୀତ ହେଲେ ଅହଙ୍କାର ବିନାଶ ହୁଏ। ଜୀବ ପାଇଁ ହିଁ କେବଳ ଜନ୍ମ - ମୃତ୍ୟୁ, ସୁଖ-ଦୁଃଖ, ସଫଳତା-ବିଫଳତା ଇତ୍ୟାଦିର ଅଜ୍ଞାନ ଜଗତ ଅନୁଭୂତ ହୁଏ। ଥରେ ଅହଙ୍କାର ଇତି ହେଲେ ଜୀବର ଆଉ ପୁର୍ନଜନ୍ମ ହେବ ନାହିଁ। ଏହି ଅନନ୍ତ ତୀର୍ଥଯାତ୍ରାର ମୁଖ୍ୟ ଉଦ୍ଦେଶ୍ୟ ହେଲା -ବାରମ୍ବାର ଜନ୍ମ ନେଇ ଆମ ନିଜର ପୁନରାବିଷ୍କାର କରିବା। ଲୁଚି ରହିଥିବା ଆତ୍ମାକୁ ଥରେ ଆବିଷ୍କାର କଲେ ଏହି ଲୁଚକାଳି ଖେଳ ଆଉ ହେବ ନାହିଁ। ମୁଁ ଆତ୍ମା ବ୍ୟତୀତ ଅନ୍ୟ କିଛି ନୁହେଁ ବୋଲି ଆବିଷ୍କାର କଲେ ମୁଁ, ଆତ୍ମା ପୁଣି ଜନ୍ମ ମୃତ୍ୟୁ ମୁଖରେ ପଡ଼ିବ ନାହିଁ।

**ଯଦା ନ ଲଭତେ ହେତୂନ୍‌ଉତ୍ତମାଧମମଧ୍ୟମାନ୍।**

**ତଦା ନ ଜାୟତେ ଚିତ୍ତଂ ହେତ୍ୱଭାବେ ଫଳଂ କୁତଃ ॥୭୬॥**

ଯଦା = ଯେତେବେଳେ, ନ ଲଭତେ = ଜଣେ ପାଏ ନାହିଁ, ହେତୂ = କୌଣସି କାରଣ, ହେତୁ; ଉତ୍ତମ = ଉତ୍ତମ, ଅଧମ = ଅଧମ, ମଧ୍ୟମାନ = ମଝିମଝିକା, ତଦା = ସେତେବେଳେ, ନ ଜାୟତେ = ଜନ୍ମ ନିଏ ନାହିଁ, ଜନ୍ମରୁ ମୁକ୍ତ ହୋଇଯାଏ; ଚିତ୍ତମ୍ = ମନ, ହେତୁ = ହେତୁ, କାରଣ; ଅଭାବେ = ଅଭାବରେ, ଫଳମ୍ = ଫଳ; କୁତଃ = କିପରି ହେବ ?

*ମନ ଯେତେବେଳେ ଉତ୍ତମ, ଅଧମ ବା ମଧ୍ୟବର୍ତ୍ତୀ କୌଣସି କାରଣ ପାଏ ନାହିଁ, ତାହା ଜନ୍ମରୁ ମୁକ୍ତ ହୋଇଯାଏ। କୋଣସି କାରଣ ନଥିଲେ ଫଳ ହେବ କିପରି ?॥୭୬॥*

ମୀମାଂସକଙ୍କ ମତରେ, ଅହଂ-କୈନ୍ଦ୍ରିକ କାର୍ଯ୍ୟକଳାପର ଫଳ ସ୍ୱରୂପ କୌଣସି ବ୍ୟକ୍ତି ଜନ୍ମ ନେଇଥାଏ। କୌଣସି କ୍ରିୟାର ପ୍ରତିକ୍ରିୟା ପ୍ରକାଶ ନ ପାଇଲେ ସେହି କାର୍ଯ୍ୟ ପୂର୍ଣ୍ଣ ହୁଏ ନାହିଁ। ତେଣୁ କର୍ମର ଫଳ ହେଉଛି କୌଣସି ଏକ ସମୟରେ କରିଥିବା କର୍ମ ହିଁ ।

କାର୍ଯ୍ୟର ଉଦ୍ଦେଶ୍ୟ ଅନୁସାରେ, କାର୍ଯ୍ୟ କଲାବେଳେ ମନରେ ଯେଉଁ ଛାପ ଜମି ଯାଏ, ତାହା ହିଁ ମଣିଷର ମନ ଗଠନ କରେ। ତେଣୁ କୌଣସି ଗୋଟିଏ ସମୟରେ ମଣିଷର ମନ ହେଉଛି ଅତୀତ ଜୀବନର ଦୈନନ୍ଦିନ କାର୍ଯ୍ୟକଳାପର ସାମଗ୍ରିକ ଅନୁଭୂତି। ତେଣୁ କୌଣସି ଏକ ନିର୍ଦ୍ଧିଷ୍ଟ ସମୟର ବ୍ୟକ୍ତି ହେଉଛି ତାର ସମଗ୍ର ଅତୀତର ସାର-ସଂଗ୍ରହ।

ତେଣୁ, ମଣିଷର ମନ ହେଲା, ଅତୀତର ଅନୁଭୂତିର ଜମା-ଖର୍ଚ୍ଚ ଖାତା। ଭବିଷ୍ୟତରେ ଉପଭୋଗ କରିବାକୁ ଥିବା ଉଧାର-ଖର୍ଚ୍ଚ ଫଳ ହିସାବ ଏହା ଦେଖାଇଥାଏ। ପ୍ରତି ମୁହୂର୍ତ୍ତରେ ଏହା ନିଜକୁ ଭବିଷ୍ୟତର କାର୍ଯ୍ୟକଳାପର ନୂତନ କ୍ଷେତ୍ର ପାଇଁ ପ୍ରସ୍ତୁତ କରୁଥାଏ। ତିନିଗୋଟି ବିଭିନ୍ନ କାର୍ଯ୍ୟକଳାପର କେନ୍ଦ୍ରରୁ ଲାଭ କରାଯାଇଥିବା ମନର ଏଇ ଛାପ ଭବିଷ୍ୟତର ଛାପ ଏବଂ କାର୍ଯ୍ୟକଳାପର କ୍ଷେତ୍ର ନିର୍ଦ୍ଧାରଣ କରେ। ଏହି ଉଦ୍ଦେଶ୍ୟରେ, ସମସ୍ତ ସମ୍ଭାବ୍ୟ ମାନବୀୟ କାର୍ଯ୍ୟକଳାପକୁ ଶାସ୍ତ୍ର ତିନୋଟି ମୁଖ୍ୟ ଭାଗରେ ବିଭକ୍ତ କରିଛନ୍ତି- ଉତ୍ତମ, ଅଧମ ଏବଂ ମଧ୍ୟମ । ଉତ୍ତମ କାର୍ଯ୍ୟ ହେଲା-ଆତ୍ମ ନିବେଦନର ଭାବରେ ଇଷ୍ଟଦେବତାଙ୍କୁ କରାଯାଉଥିବା ପ୍ରେମ ଏବଂ ଭକ୍ତିର କାର୍ଯ୍ୟ। ତାହା ଯେଉଁ ଫଳ ଉତ୍ପନ୍ନ କରେ ଆସ୍ତିକମାନେ ତାକୁ ମହାନ ଭାଗ୍ୟ ବୋଲି କହନ୍ତି। ନୀଚମାନର ଅଧମ କାର୍ଯ୍ୟ ଆମ ଭିତରେ ଥିବା ପଶୁତ୍ୱକୁ ଖାଦ୍ୟ ଯୋଗାଏ, ମନରେ ତାହା ଏପରି ଛାପ ଛାଡ଼ିଯାଏ ଯେ ତାକୁ ନିଷ୍କାସନ କରିବା ପାଇଁ ମଣିଷ ଏପରି ଏକ ଅନୁଭୂତିର କ୍ଷେତ୍ର ପାଇଁ ପ୍ରସ୍ତୁତ ହୁଏ ଯେଉଁ ଠାରେ ତାକୁ ନିମ୍ନ ଶ୍ରେଣୀର ଜନ୍ମର ରୂପ ନେବାକୁ ହୁଏ।

ମଧ୍ୟମ କାର୍ଯ୍ୟକଳାପ ହେଲା, ବ୍ୟକ୍ତି କର୍ମକାଣ୍ଡ ସମ୍ପନ୍ନ କରୁଥିବା ଆଧ୍ୟାତ୍ମିକ କର୍ମ। ଏହା ଉଦ୍ଦେଶ୍ୟ ଏବଂ ଅହଙ୍କାରର ପ୍ରଣୋଦିତ ହୋଇ କରାଯାଇଥାଏ। ଏପରି କାର୍ଯ୍ୟକଳାପର ଫଳ ଉପଭୋଗ କରିବା ପାଇଁ ବ୍ୟକ୍ତି ମାନବ ରୂପ ଗ୍ରହଣ କରିଥାଏ।

ଉଭୟ ହିନ୍ଦୁ ଏବଂ ପୃଥିବୀର ଅନ୍ୟ ଧର୍ମାବଲମ୍ବୀମାନେ ନୂତନ ଶରୀରରେ ଆତ୍ମାର ଏହି ପୁନର୍ଜନ୍ମର ଧାରଣାକୁ ବିରୋଧ କରିଛନ୍ତି। ଅନ୍ୟ ଧର୍ମାବଲମ୍ବୀଙ୍କ ପାଇଁ ପୁନର୍ଜନ୍ମର

କଳ୍ପନା ସଂପୂର୍ଣ୍ଣ ଅବାସ୍ତବ। ହିନ୍ଦୁ ମାନଙ୍କ ପାଇଁ ଏହା ହେଲା – ଶାସ୍ତ୍ରକୁ ହାଲୁକା ଭାବରେ ଗ୍ରହଣ କରିବା ଏବଂ ସେମାନଙ୍କୁ ଅକର୍ମଣ୍ୟ ଏବଂ ଅପାରଗ ଭାବରେ ଦେଖିବା। ବାସ୍ତବରେ, କର୍ମଫଳର ନିୟମ ହେଉଛି ଏକ ମହାନ ଆଧ୍ୟାତ୍ମିକ ସତ୍ୟ। ଏହାକୁ ଭଲ ଭାବରେ ବୁଝି ପାରିଲେ ଆମର ଭଲ ପାଇବାର ଧାରଣା ସୁଦୃଢ଼ ହେବ ଏବଂ ଜୀବନରେ ବିପର୍ଯ୍ୟୟର ମୁହାଁମୁହିଁ ହେବା ପାଇଁ ଅଶେଷ ଶକ୍ତି ଏବଂ ସାହସ ଆଣି ଦେବ।

କିନ୍ତୁ କର୍ମର ବିଧାନକୁ ଭାଗ୍ୟର ବିଧାନ ଭାବରେ ଭୁଲ ବୁଝାଯାଏ। ଏହା ଯଦି କେବଳ ଭାଗ୍ୟର ବିଧାନ ହୋଇ ଥାଆନ୍ତା, ତେବେ ଆମର ଧର୍ମ ଏବଂ ଦର୍ଶନ ବହୁତ ପୂର୍ବରୁ ଭୁଲି ହୋଇ ମରି ଯାଇ ଥାଆନ୍ତା। ଯେଉଁ ସବୁ ସାମାଜିକ ଏବଂ ଐତିହାସିକ ବିପର୍ଯ୍ୟୟ ମାଧ୍ୟମରେ ଗତି କରି ଏହା ତଥାପି ରହିଛି, ତାହା ହିନ୍ଦୁ ଦର୍ଶନର ଜୀବନୀ ଶକ୍ତି ଏବଂ ବଳର ସ୍ପଷ୍ଟ ସୂଚନା ଦିଏ। କର୍ମ ବିଧାନକୁ ଆମେ ଭଲ ଭାବରେ ବୁଝି ପାରିଲେ ଏହା ଭାଗ୍ୟ-ବିଧାନ ର ଏକ ବିସ୍ତାର ମାତ୍ର ନୁହେଁ, ବରଂ ଏଥିରେ ବିଚାରର ପରିପୂର୍ଣ୍ଣତା ଥିବାର ଜାଣି ହେବ। ଭଲ ଭାବେ ନବୁଝିଲେ, ମଣିଷ ତାର ଭାଗ୍ୟର ଅଧୀନ- ଭାଗ୍ୟର ଦର୍ଶନ ଏହି ଧାରଣାରେ ପଦାର୍ପଣ କରେ। ଯାହା ହେଲେ ବି ଏହି ଆଲୋଚନା ପ୍ରସଙ୍ଗରେ ଆମେ ଏହାର ବିଶଦ ଆଲୋଚନାକୁ ଯିବା ନାହିଁ।

ମଣିଷ ତା ଜୀବନର ଚଲାପଥରେ ସଂଗ୍ରହ କରିଥିବା ଅନୁଭୂତି (ଛାପ) ବ୍ୟତୀତ ତାର ମନ ଅନ୍ୟ କିଛି ନୁହେଁ। ଗୌଡ଼ପାଦ ଏଠାରେ ଏହି ପରାମର୍ଶର ସଙ୍କେତ ଦେଇଛନ୍ତି ଯେ, ମଣିଷର ଏହି ମନ ତାର ଉତ୍ତମ, ଅଧମ ଏବଂ ମଧ୍ୟମ ପ୍ରକାରର କାର୍ଯ୍ୟ ଦ୍ୱାରା ନିୟନ୍ତ୍ରିତ ହୋଇଥାଏ। ସନ୍ଥ ବୈରାଗ୍ୟର ସହିତ ତାଙ୍କର ମନ, ବୁଦ୍ଧି, ଶରୀରର ଆସକ୍ତିରୁ ମୁକ୍ତ ହୋଇ ଆତ୍ମା ସହିତ ନିଜର ତାଦାତ୍ମ୍ୟ ଅନୁଭବ କଲେ ମନ ଦ୍ୱାରା ସୃଷ୍ଟ ଏହି 'ବାସ୍ତବତା' ଆଉ ରହେ ନାହିଁ। ଏପରି ଜଣେ ବ୍ୟକ୍ତି ମନର ଏହି ପ୍ରତିକ୍ରିୟାର ଅଧୀନରେ ଆଉ ରହିବ ନାହିଁ। ମନରୁ ବିଚ୍ଛିନ୍ନ ମାନବ (ମନମୁକ୍ତ ମାନବ) ମାନସିକ ବାସନା ଯୋଗୁ ହେଉଥିବା ସମସ୍ତ ପ୍ରକାର ଦାୟିତ୍ୱରୁ ମୁକ୍ତ ହୁଏ।

ଅତୀତର କାର୍ଯ୍ୟକଳାପରୁ ମନୁଷ୍ୟ ଯେଉଁ ଅନୁଭୂତି (ଛାପ) ସଂଗ୍ରହ କରିଥାଏ, ତାହା ଭଲ, ମନ୍ଦ ବା ସାଧାରଣ ସ୍ୱରରେ ଝଂକୃତ ହୁଏ। ଏହା ସାଇତି ହୋଇ ରହିଥାଏ, ସମୟ ଏବଂ କାଳର ଗୋଟିଏ ବିନ୍ଦୁରେ ଦୁଃଖ, ସୁଖ ବା ସଂଘର୍ଷ ଭାବରେ ପ୍ରକାଶିତ ହେବା ପାଇଁ। ମଣିଷ ଶରୀରରେ ଏହି ବିନ୍ଦୁ ହେଉଛି 'ଅହଂ'।

ମଣିଷ ତାର ମନ ଏବଂ ଶରୀର ସହିତ ତାଦାତ୍ମ୍ୟ ସ୍ଥାପନ କରିଥିବା ପର୍ଯ୍ୟନ୍ତ

ତାର ଅହଂ, ମନ ପାଇଁ ନିଶ୍ଚିତ ଭାବରେ ଅନୁଭୂତି ସୃଷ୍ଟି କରିବ। ମନକୁ ବିଲୀନ କରି ଅହଂର ବିନାଶ କରି ଆତ୍ମାନୁଭୂତି ଲାଭ କରିଥିବା ବ୍ୟକ୍ତି ତାର ଅତୀତ କାର୍ଯ୍ୟର ପ୍ରତିକ୍ରିୟା ଆଉ ସୃଷ୍ଟି କରିବ ନାହିଁ। ତେଣୁ ମନର ସଂପୂର୍ଣ୍ଣ ବିନାଶ ମୁହୂର୍ତ୍ତରେ ସମଗ୍ର ଅତୀତର ଏହି ସମସ୍ତ ଅନୁଭୂତି ବିଲୀନ ହୋଇଯାଏ। ତେଣୁ, ଜୀବ ଜନ୍ମରୁ ମୁକ୍ତ ହୋଇଯାଏ।

**ଅନିମିତ୍ତସ୍ୟ ଚିତ୍ତସ୍ୟ ଯାଽନୁତ୍ପତ୍ତିଃ ସମାଦ୍ୱୟା।**

**ଅଜାତସ୍ୟୈବ ସର୍ବସ୍ୟ ଚିତ୍ତଦୃଶ୍ୟଂ ହି ତଦ୍ୟତଃ ॥୭୭॥**

ଅନିମିତ୍ତସ୍ୟ = ହେତୁ, ନିମିତ୍ତ (ଜନ୍ମ)ରୁ ମୁକ୍ତ; ଚିତ୍ତସ୍ୟ = ମନର, ଯା ଅନୁତ୍ପତ୍ତିଃ = ଅଜ, ବିକାଶ ହୋଇ ନଥିବା; ସମା = ସମାନ(ସ୍ଥିର) ଭାବରେ ଥିବା; ଅଦ୍ୱୟାଃ = ନିର୍ବିକଳ୍ପ, ଅଦ୍ୱୈତ; ଅଜାତସ୍ୟ = ଯାହା ସମାନ ଭାବରେ ଅଜ, ଏବ = କେବଳ, ସର୍ବସ୍ୟ = ସମସ୍ତ, ଚିତ୍ତ ଦୃଶ୍ୟମ୍ = ମନର ଦୃଶ୍ୟ ମାତ୍ର, ତତ୍ ହି = ପ୍ରକୃତରେ ତାହା, ଯତଃ = ଯେହେତୁ।

*ସର୍ବଦା ଅଜ, ଅବିକଶିତ ଏବଂ ସମ୍ପର୍କବିହୀନ ମନର ବା ଜ୍ଞାନର ଅବସ୍ଥା ହେଉଛି ନିର୍ବିକଳ୍ପ ଏବଂ ସ୍ଥିର। ତେଣୁ, ଅନ୍ୟ ସବୁକିଛି ମଧ୍ୟ ସମାନ ଭାବରେ ଅଜ, କାରଣ ବହୁବିଧତା ହେଉଛି କେବଳ ମନର ଦୃଶ୍ୟ ॥୭୭॥*

ପୂର୍ବ ଶ୍ଳୋକରେ ଆମେ ଦେଖିଛୁ ଯେ ବିବେକପୂର୍ଣ୍ଣ ନିରାସକ୍ତିରେ ମନାତୀତ ହୋଇଥିବା ବ୍ୟକ୍ତି ପାଇଁ ମନର ଅନୁଭୂତି କୌଣସି ପ୍ରତିକ୍ରିୟା ସୃଷ୍ଟି କରିବ ନାହିଁ। ମନ ମାଧ୍ୟମରେ ଜଗତକୁ ଦେଖୁଥିବା ପର୍ଯ୍ୟନ୍ତ ଏହାର ମୂଲ୍ୟ ଥାଏ। ଏହାର ଅତୀତ ହୋଇଥିବା ବ୍ୟକ୍ତି ପାଇଁ ଡରାଇବା ପାଇଁ ବା ମୋହିତ କରିବା ପାଇଁ କୌଣସି ଜଗତ ନଥାଏ। ଗୌଡ଼ପାଦଙ୍କର ସନ୍ଦେହ ରହିତ ଯୁକ୍ତି ମାଧ୍ୟମରେ ଆମେ ପୂର୍ବରୁ ଦେଖିଛୁ ଯେ ବହୁବିଧ ଜଗତ ହେଉଛି ମନର ଏକ କଳ୍ପନା ମାତ୍ର।

ତେଣୁ ଆତ୍ମାନୁଭବୀ ବ୍ୟକ୍ତିଠାରେ ତାର କାଳ୍ପନିକ ମନ ତାର ଅଧିଷ୍ଠାନ -ଶାଶ୍ୱତ ସତ୍ୟଙ୍କଠାରୁ ଅପସରି ଯାଇଥାଏ। ରଜ୍ଜୁ ବିଷୟରେ ଜ୍ଞାନ ଉଦୟ ହେବାକ୍ଷଣି ମିଥ୍ୟା ସର୍ପ ଚିରଦିନ ପାଇଁ ନଷ୍ଟ ହୋଇଯିବା ପରି ଆତ୍ମ-ଚେତନାର ଆବିଷ୍କାର ସହିତ ମିଥ୍ୟା ମନ ଦ୍ୱାରା ଆନୀତ ନାମ-ରୂପର ଜଗତ ଅପସରି ଯାଏ। ସ୍ପଷ୍ଟତଃ କାରିକାର ମହାନ ଗୁରୁ କହୁଛନ୍ତି ଯେ, ଜ୍ଞାନର ଉଦୟ ହେବାକ୍ଷଣି, ଯେଉଁ ମନ ବିରୁଦ୍ଧରେ ସାଧକ ଏପର୍ଯ୍ୟନ୍ତ ସଂଘର୍ଷ କରୁଥାଏ। ତାହା ଆଉ ନଥିବାର ଜାଣିପାରେ ଏବଂ ତା ନିଜର ଆତ୍ମାଠାରୁ ତାକୁ ଅବରୁଦ୍ଧ କରି ଦେଇଥିବା ମନ ସ୍ଥାନରେ ସେ ଶାଶ୍ୱତ, ଆନନ୍ଦମୟ ଆତ୍ମାଙ୍କର ଆବିଷ୍କାର କରେ।

**ବୁଦ୍‌ଧ୍ୱାଽନିମିତ୍ତତାଂ ସତ୍ୟାଂ ହେତୁଂ ପୃଥଗନାପ୍ନୁବନ୍ ।**
**ବୀତଶୋକଂ ତଥା କାମମଭୟଂ ପଦମଶ୍ନୁତେ ॥୭୮॥**

ବୁଦ୍‌ଧ୍ୱା = ଅନୁଭବ କରି, ଅନିମିତ୍ତତାମ୍ = କାର୍ଯ୍ୟ-କାରଣ ସମ୍ପର୍କର ଅନୁପସ୍ଥିତି, ସତ୍ୟାମ୍ = ସତ୍ୟ ପରି, ହେତୁମ୍ = କୌଣସି କାରଣ, ପୃଥକ୍ = ପୃଥକ, ଅନାପ୍ନୁବନ୍ = ନପାଇ, ବୀତଶୋକମ୍ = ଶୋକମୁକ୍ତ, ତଥା = ଏବଂ, ଅକାମମ୍ = କାମନା ହୀନ, ଅଭୟମ୍ = ଭୟହୀନ, ପଦମ୍ = ଅବସ୍ଥା, ଲକ୍ଷ୍ୟ(ଆତ୍ମ ମୁକ୍ତି); ଅଶ୍ନୁତେ = ଲାଭକରେ ।

*ଅନନ୍ତ-ସତ୍ୟ ଭାବରେ ଆତ୍ମା କାର୍ଯ୍ୟ-କାରଣ ସମ୍ପର୍କର ଅନୁପସ୍ଥିତିକୁ ଉପଲବ୍ଧି କଲେ, ପୁନର୍ଜନ୍ମ ପାଇଁ ଅନ୍ୟ କୌଣସି କାରଣ ନଥିବାର ଦେଖିଲେ, ଆତ୍ମମୁକ୍ତିର ଯେଉଁ ଅବସ୍ଥା ଲାଭ ହୁଏ, ତାହା ହେଉଛି ଶୋକ, କାମନା ଏବଂ ଭୟମୁକ୍ତ ॥୭୮॥*

ଏତେ ପର୍ଯ୍ୟନ୍ତ, ଚତୁର୍ଥ ଅଧ୍ୟାୟରେ କାର୍ଯ୍ୟ-କାରଣ ନିୟମରେ ଆମର ଅନ୍ଧ ବିଶ୍ୱାସର ମିଥ୍ୟାତ୍ୱ ପ୍ରଦର୍ଶନ କରିବା ପଇଁ ତର୍କ ଦ୍ୱାରା ଚେଷ୍ଟା କରାଯାଉଥିଲା । କାର୍ଯ୍ୟ-କାରଣ ସମ୍ପର୍କର ନିୟମ ମନର ଏକ ଖେଳ ବୋଲି ସାଧକ ଥରେ ଅନୁଭବ କଲେ, ଆଧ୍ୟାତ୍ମିକ ସଫଳତା ଲାଭ କରି ହୁଏ । ସ୍ଥାନ ଏବଂ କାଳର ଧାରଣା ପୂରାପୂରି ମନର ସୃଷ୍ଟି ବୋଲି ଆମେ ଜାଣିଛୁ । ମନର ଅନ୍ୟାନ୍ୟ କାର୍ଯ୍ୟକଳାପର କ୍ଷେତ୍ର ହେଲା କାର୍ଯ୍ୟ-କାରଣର ସମ୍ପର୍କ ଏବଂ କାଳ ଓ ସ୍ଥାନର କ୍ଷେତ୍ର ନଥିଲେ କାର୍ଯ୍ୟ-କାରଣ ସମ୍ପର୍କର ନିୟମ କାମ କରି ପାରିବ ନାହିଁ ବା ରହି ପାରିବ ନାହିଁ ।

ତେଣୁ କାର୍ଯ୍ୟ-କାରଣ ନିୟମର ଅନ୍ତଃସାରଶୂନ୍ୟତା ବୁଝିବାକୁ ହେଲେ ମନକୁ ଅକାମୀ କରିବାକୁ ହେବ । କରିବା ପାଇଁ କିଛି ନଥିଲେ, କାର୍ଯ୍ୟ କରିବାର କ୍ଷେତ୍ର ନଥିଲେ ମନ, ମନ ହୋଇ ରହିବ ନାହିଁ ଏବଂ ମନାତୀତ ହେଉଛି ଶୁଦ୍ଧ ଆତ୍ମାଙ୍କର ମହାନ ରାଜ୍ୟକୁ ପ୍ରବେଶ । ଏହି ଚେତନାର ସଚେତନ ଅବସ୍ଥା ହେଉଛି ଆତ୍ମାତ୍ୱ ବା ଦୁଃଖଦ, ଅର୍ଥହୀନ, ପରିଚ୍ଛିନ୍ନ ଏବଂ କଷ୍ଟଦାୟକ ମିଥ୍ୟା ଜନ୍ମ-ମୃତ୍ୟୁ ଘଟଣା ଭିତରେ ତୀର୍ଥଯାତ୍ରା । ଜୀବନର ଏହି ମହାନ୍ ଲକ୍ଷପାଇଁ କାହିଁକି ସଂଘର୍ଷ କରାଯିବ ବୋଲି ଆଶ୍ଚର୍ଯ୍ୟ ଲାଗିପାରେ । ମୋଟ ଉପରେ ଜନ୍ମ-ମୃତ୍ୟୁର ଆବର୍ତ୍ତନରେ ପଡ଼ି ରହିଲେ କ୍ଷତି କଣ ? ଆମର ସ୍ୱସ୍ୱରୂପର ବିବେକ କରି ଆତ୍ମାତ୍ୱ ଲାଭ କଲେ କି ମୁକ୍ତି ମିଳିବ ? ଶ୍ଳୋକର ଦ୍ୱିତୀୟ ପଂକ୍ତିରେ ଗୌଡ଼ପାଦ ଏପରି ନାସ୍ତିକମାନଙ୍କୁ ସମ୍ବୋଧନ କରିଛନ୍ତି ।

ସେ ଦର୍ଶାଇଛନ୍ତି ଯେ ସଚେତନଭାବେ ମନ ଏବଂ ବୁଦ୍ଧିର ଅତୀତ ହେଲେ ଆଧ୍ୟାତ୍ମିକ ମୁକ୍ତିର ଶିଖରରେ ପହଞ୍ଚି ହେବ। ତାପରଠାରୁ ସେଠାରେ ଦୁଃଖ,କାମନା ଏବଂ ଭୟର ଅନୁଭୂତି ଆଉ ରହିବ ନାହିଁ। ଆମର ପରିଚ୍ଛିନ୍ନ, ନଶ୍ୱର ଜୀବନସାରା ଆମେ ମନର ଏହି ତ୍ରିଭୂଜରେ ବନ୍ଦୀ ହୋଇ ଶୋକ କରିଥାଉ। ଜୀବନର ଏହି ତିନୋଟି ମୁଖ୍ୟ ସନ୍ତାପରୁ ପଳାୟନର ନିଷ୍ଫଳ ଚେଷ୍ଟା ପାଇଁ ମଣିଷ ପ୍ରତ୍ୟେକଟି କାର୍ଯ୍ୟ କରିଥାଏ। ସୃଜନାତ୍ମକ ବା ଧ୍ୱଂସାତ୍ମକ ଯାହା ହେଉ, ମନର ପ୍ରତ୍ୟେକଟି କାର୍ଯ୍ୟ ହେଉଛି ଏହି ଦୁଃଖଠାରୁ ପଳାୟନର ବା କାମନା ଲାଭର ବା ଦୁଃଖରୁ ରକ୍ଷା ପାଇବାର ପ୍ରଚେଷ୍ଟା।

ମୁକ୍ତିର ଅବସ୍ଥାକୁ ଶୋକ, କାମନା ଏବଂ ଭୟର ପ୍ରବେଶ-ନିଷେଧର ଅବସ୍ଥା ଭାବରେ ବର୍ଣ୍ଣନା କରି ଗୌଡ଼ପାଦ ସ୍ପଷ୍ଟ ଭାବରେ ସୂଚାଇ ଦେଇଛନ୍ତି ଯେ ଏହା ହେଉଛି ଶରୀର, ମନ ଏବଂ ବୁଦ୍ଧିର ମିଥ୍ୟା ତାଦାତ୍ମ୍ୟରୁ ପୂର୍ଣ୍ଣ ବିଚ୍ଛିନ୍ନ ଅନୁଭୂତିର ଅବସ୍ଥା। ଶରୀର ସହିତ ତାଦାତ୍ମ୍ୟ କରିଥିବା ପର୍ଯ୍ୟନ୍ତ ଭୟ ରହିବ, ମାନସିକ ସ୍ତରରେ ରହିଥିବା ପର୍ଯ୍ୟନ୍ତ ଆମେ କାମନାର ଦାସ ହୋଇଥିବା, ଏବଂ ବୁଦ୍ଧି ସହିତ ତାଦାତ୍ମ୍ୟର ବନ୍ଧନରେ ବାନ୍ଧି ହୋଇ ରହିଲେ ଦୁଃଖର ଯନ୍ତ୍ରଣାରୁ ଆମେ ରକ୍ଷା ପାଇ ପାରିବା ନାହିଁ। ଏହି ତିନିଗୋଟି ମିଥ୍ୟା ପ୍ରେତ ଏବଂ ସେମାନଙ୍କର ମିଥ୍ୟା ଭୟ-ପ୍ରଦର୍ଶନର ଅତୀତ ହେଲେ ଜ୍ଞାନୋଦୟ ହେବ।

**ଅଭୂତାଭିନିବେଶାଦ୍ଧି ସଦୃଶେ ତତ୍‌ପ୍ରବର୍ତ୍ତତେ।**
**ବସ୍ତ୍ୱଭାବଂ ସ ବୁଦ୍‌ଧ୍ୱୈବ ନିଃସଙ୍ଗମ୍ ବିନିବର୍ତ୍ତତେ ॥୭୯॥**

ଅଭୂତ = ଅବାସ୍ତବ ପଦାର୍ଥ, ଅଭିନିବେଶାତ୍ = ଆସକ୍ତି ଯୋଗୁଁ, ଅର୍ଥାତ୍ ସ୍ଥିତିର ସ୍ୱରୂପ; ହି = ବାସ୍ତବରେ, ସଦୃଶେ = ଏହି ଇନ୍ଦ୍ରିୟ ବିଷୟ, ତତ୍ = ତାହା, ପ୍ରବର୍ତ୍ତତେ = ପଛରେ ଦୌଡ଼େ, ବସ୍ତୁ = ପଦାର୍ଥ, ଅଭାବମ୍ = ଅବାସ୍ତବତା,(ଧାରଣା କରାଯାଏ); ସଃ = ସେ, ବୁଦ୍‌ଧ୍ୱା = ହୃଦୟଙ୍ଗମ କରି, ଅବଗତ ହୋଇ, ଏବ = କେବଳ, ନିଃସଙ୍ଗମ୍ = ଅନାସକ୍ତ (ଅସଙ୍ଗ) ହୁଏ; ବିନିବର୍ତ୍ତତେ = ମୁହଁ ବୁଲେଇ ନିଏ, ବିଚ୍ଛିନ୍ନ ହୁଏ।

*ଅବାସ୍ତବ (ଅସତ୍ୟ) ପଦାର୍ଥ ପ୍ରତି ବ୍ୟକ୍ତିର ଆସକ୍ତି ଯୋଗୁଁ ମନ ଏପରି ଇନ୍ଦ୍ରିୟ ବିଷୟ ପଛରେ ଦୌଡ଼େ, କିନ୍ତୁ ସେ ଅସଙ୍ଗ ହେଲେ, ଅନାସକ୍ତ ହେଲେ, ଆତ୍ମାନୁଭୂତି ଲାଭ କଲେ, ସେହି ସବୁ ବିଷୟର ଅବାସ୍ତବତା ସମ୍ବନ୍ଧରେ ହୃଦୟଙ୍ଗମ କରି ତାର ଶୁଦ୍ଧ ସ୍ୱରୂପକୁ ଫେରି ଆସେ ॥୭୯॥*

ଉପଦେଶ ଗ୍ରନ୍ଥ ହୋଇଥିବାରୁ କାରିକା ଆମକୁ ପ୍ରତି ଅଧ୍ୟାୟରେ ଅନେକ ପ୍ରତ୍ୟକ୍ଷ ପଥ-ପ୍ରଦର୍ଶନ କରୁଅଛି। ଅବିନଶ୍ୱରତାକୁ ଯାଇଥିବା ରାସ୍ତାରେ ଚାଲିବା ପାଇଁ ସାଧକମାନଙ୍କୁ ସାହାଯ୍ୟ କରୁଛି। ଧ୍ୟାନାସନରେ ଥିବା ସାଧକମାନଙ୍କୁ ଏଠାରେ ଆଉ ଗୋଟିଏ ସାମାନ୍ୟ କିନ୍ତୁ ଉପଯୋଗୀ ଇଙ୍ଗିତ ଦିଆଯାଇଛି। ସାଧକକୁ ଏହା ଗୁପ୍ତ ଅଧ୍ୟୟନ ଯୋଗାଇଛି, ଯାହା ଦ୍ୱାରା ସେ ଯୋଗ୍ୟତା ହାସଲ କରି, ମନ ପ୍ରତି ବାହ୍ୟ ବିଷୟ ଜଗତର ଆକ୍ରମଣକୁ ସଫଳତାର ସହିତ ମୁହାଁମୁହିଁ କରିପାରିବ।

ଅସତ୍ୟକୁ ସତ୍ୟ ବୋଲି ବିଶ୍ୱାସ କରିବା ଯୋଗୁଁ ହିଁ ମାନସିକ ଅସ୍ଥିରତା ହୋଇଥାଏ ଏବଂ ମିଥ୍ୟା ଭୟ ଜାତ ହୋଇଥାଏ। ମନ ଇନ୍ଦ୍ରିୟବିଷୟ-ଜଗତକୁ ନିଜକୁ ପ୍ରକ୍ଷେପିତ କରି ନିଜର ପ୍ରକ୍ଷେପଣ ଭୁଲିଯାଏ ଏବଂ ପ୍ରକ୍ଷେପିତ ଜଗତରେ ଛନ୍ଦିହୋଇଯାଏ। ଶାନ୍ତ ମନରେ ବିବେକ କରି ସାଧୁଙ୍କ ମନ ନିଜର ମୂଲ୍ୟବୋଧର ଅସଙ୍ଗତ ତର୍କ ବିଷୟରେ ଜାଣି ପାରିଲେ, ପରିସ୍ଥିତି ଦ୍ୱାରା ସୃଷ୍ଟ ବା ନିଜର ନିରର୍ଥ କଳ୍ପନାରୁ ଉତ୍ପନ୍ନ ଜଗତ ପ୍ରତି ହସିବାକୁ ଶିଖେ।

ଧ୍ୟାନାସନରେ ସାଧକ ମନକୁ ତାର ଅନନ୍ତ କଳ୍ପନାରୁ ମୁକ୍ତ କରି ଆତ୍ମବୋଧର ଅନ୍ୱେଷଣରେ ନିୟୋଗ କରେ। ମନର ଏହି ମହାନ୍ ପ୍ରଚେଷ୍ଟା ତାର ନିଜର ଅତୀତ ଅନୁଭୂତି ଦ୍ୱାରା ଦୂଷିତ ହୁଏ। ତାର କଳ୍ପନା-ପ୍ରସୂତ ବିଷୟର ବାସ୍ତବତା ପ୍ରତି ସେ ବିଶ୍ୱାସ ସୃଷ୍ଟି କରେ। ଏହି ମିଥ୍ୟା ବିଶ୍ୱାସ ଯେତେ ଦୃଢ଼ ହୁଏ, ମନକୁ ଆକ୍ରମଣ କରିବା ପାଇଁ ବିଷୟମାନେ ସେତେ ବଳଶାଳୀ ହୁଅନ୍ତି। ତେଣୁ, ଗୌଡ଼ପାଦ ଏଠାରେ କହୁଛନ୍ତି ଯେ ମନର ନିଜ ସ୍ୱପ୍ନର 'ବାସ୍ତବତା'ରେ ଅସଙ୍ଗତ ଏବଂ ହାସ୍ୟାସ୍ପଦ ବିଶ୍ୱାସ ଯୋଗୁଁ ସେ ବିଷୟ ପଛରେ ଦୌଡ଼ିଥାଏ।

ଏପରି ହେଲେ ଇନ୍ଦ୍ରିୟବିଷୟ ସୃଷ୍ଟ କ୍ଷେତ୍ରରୁ ସମଗ୍ର ମନକୁ ଫେରାଇ ଆଣି ପାରିବାର ରହସ୍ୟ କଣ ? ମାନସିକ ବଳୟରେ ନ ରହି ତାର ଉର୍ଦ୍ଧ୍ୱକୁ ଉଠିଲେ ହିଁ ମନର ସମସ୍ୟାର ସମାଧାନ କରି ହେବ। ଇନ୍ଦ୍ରିୟ ବିଷୟର ଅବାସ୍ତବତା ଏବଂ ସେମାନଙ୍କର ଅନ୍ତଃସାର ଶୂନ୍ୟତାକୁ ବିବେକର ସହିତ ବୁଝି ପାରିଲେ ମନ ଆପେ ଆପେ ତାର ଚରାବୁଲାରୁ ଫେରିଆସିବ। ଇନ୍ଦ୍ରିୟ ବିଷୟରେ ଥିବା ଆନନ୍ଦ ଏବଂ ତାର ବାସ୍ତବତାରେ ବିଶ୍ୱାସ ଯୋଗୁଁ ମନ ଏପରି ଚରିବୁଲୁଛି। ବିଷୟ ସବୁ ମିଥ୍ୟା ଏବଂ ଯନ୍ତ୍ରଣା ଜର୍ଜରିତ ବୋଲି ଥରେ ବୁଝି ପାରିଲେ ଜ୍ଞାନ ଯୋଗର ଅଧ୍ୟୟନ କରିବ। ବିବେକ ହେଉଛି ମାନସିକ ରୋଗର ନିଦାନ ବୋଲି ଗୌଡ଼ପାଦ ଉପଦେଶ ଦେଇଛନ୍ତି।

**ନିବୃତ୍ତସ୍ୟାପ୍ରବୃତ୍ତସ୍ୟ ନିଶ୍ଚଲା ହି ତଦା ସ୍ଥିତିଃ ।**
**ବିଷୟଃ ସ ହି ବୁଦ୍ଧାନାଂ ତତ୍ସାମ୍ୟମଜମଦ୍ୱୟମ୍ ॥୮୦॥**

ନିବୃତ୍ତସ୍ୟ = ଆସକ୍ତିରୁ ମୁକ୍ତ ହୋଇଥିବା ବ୍ୟକ୍ତି, ଅପ୍ରବୃତ୍ତସ୍ୟ = ଚିତ୍ତଚାଞ୍ଚଲ୍ୟରୁ ଦୂରରେ ରହି ପାରିବା, ହି ନିଶ୍ଚଲା = ପ୍ରକୃତରେ ଅପରିବର୍ତ୍ତନୀୟ (ଅବିକାରୀ) ଶୁଦ୍ଧତା, ତଦା = ସେତେବେଳେ, ସ୍ଥିତି = ସ୍ଥିତି, ବିଷୟଃ = ଚିତ୍ତ ଚାଞ୍ଚଲ୍ୟର ବିଷୟ, ସଃ ହି =ତାହା ହି ପ୍ରକୃତରେ, ବୁଦ୍ଧାନାମ୍ = ଜ୍ଞାନୀଜନଙ୍କ ପାଇଁ, ତତ୍ = ତାହା, ସାମ୍ୟମ୍ = ସାମ୍ୟ, ସମତା, ଅଜମ୍ = ଅଜ, ଅଦ୍ୱୟମ୍ = ଅଦ୍ୱୈତ ।

*ଆସକ୍ତି ମୁକ୍ତ ଏବଂ ଚିତ୍ତ-ଚାଞ୍ଚଲ୍ୟରୁ ଦୂରରେ ରହି ପାରୁଥିବା ମନ ଅବିକାରୀ ଶୁଦ୍ଧତାର ଅବସ୍ଥା ଲାଭ କରେ । ଜ୍ଞାନୀଜନ ଏହାକୁ ଶାଶ୍ୱତ, ଅଜ ଏବଂ ଅଦ୍ୱୈତ ଭାବରେ ହୃଦୟଙ୍ଗମ କରିଛନ୍ତି ॥୮୦॥*

ସ୍ଥିର ସାମ୍ୟ ଭାବରେ ମନକୁ କିପରି ନିୟନ୍ତ୍ରଣରେ ରଖିହେବ, ପୂର୍ବ ଶ୍ଳୋକରେ ସେକଥା ଆମକୁ କୁହାଯାଇଛି । ମନ ତାର ପରିଚିତ ବିଷୟଜଗତକୁ ପାଗଳ ଭାବରେ ନ ଦଉଡ଼ିଲେ ତାକୁ ସ୍ଥିର ମନ କୁହାଯାଏ । କିନ୍ତୁ ମନ ଧ୍ୟାନକାରୀର ଜୀବନରେ ଥିବା ବାହ୍ୟବିଷୟକୁ ନ ଦଉଡ଼ିଲେ, ଇନ୍ଦ୍ରିୟ-ବିଷୟର ଅତୀତ ଅନଧିକୃତ କ୍ଷେତ୍ରକୁ ଯିବ କିମ୍ବା ଭବିଷ୍ୟତର ଇପ୍‌ସିତ କ୍ଷେତ୍ରକୁ ଯିବ ।

ମନ କେବଳ ଦେଶ (ସ୍ଥାନ) କ୍ଷେତ୍ରରେ ଗତି କରେ ନାହିଁ, ବରଂ କାଳର କ୍ଷେତ୍ରରେ ମଧ୍ୟ ଗତି କରିପାରେ । ତେଣୁ, କେବଳ ଏକ ନିର୍ଦ୍ଦିଷ୍ଟ କାଳରେ ଥିବା ବିଷୟ ପ୍ରତି ମନର ଚିତ୍ତଚାଞ୍ଚଲ୍ୟ ହେବ ନାହିଁ, ବରଂ ଅତୀତରେ ଅନୁଭବ କରିଥିବା ଇନ୍ଦ୍ରିୟ ଉପଭୋଗର କ୍ଷେତ୍ର ପାଇଁ ମଧ୍ୟ ଏହାର ଚିତ୍ତ-ଚାଞ୍ଚଲ୍ୟ ହୋଇପାରେ । ଶ୍ରୀ ଗୌଡ଼ପାଦ ଏଠାରେ ସିଧାସଳଖ ଏବଂ ତୀକ୍ଷ୍ଣ ଭାବରେ ଇଙ୍ଗିତ ଦେଇଛନ୍ତି । କେବଳ ବର୍ତ୍ତମାନର ବିଷୟ ଜଗତରେ ମନର ଚରାବୁଲାକୁ ନିୟନ୍ତ୍ରଣ କରିବାକୁ ହେବ ନାହିଁ ବରଂ ଭବିଷ୍ୟତ ଏବଂ ଅତୀତକୁ ଯିବା ମଧ୍ୟ ବନ୍ଦ କରିବାକୁ ହେବ ।

ଅତୀତ, ବର୍ତ୍ତମାନ ଏବଂ ଭବିଷ୍ୟତରୁ ମନର ରମଣକୁ ଏହିପରି ଭାବରେ ଅପସାରିତ କରି ସ୍ଥିର କଲେ ଏହା ବାସ୍ତବରେ ଏକାଗ୍ର ହୁଏ ଏବଂ ଏକାଗ୍ରତାର ସେହି ଚରମ ମୁହୂର୍ତ୍ତରେ ଧ୍ୟାନକାରୀର ମନରେ ଚିରାଚରିତ ଭାବନା ରହେ ନାହିଁ । ଭାବନା ରହିତ ମନ ହେଉଛି ଭାବାତୀତ ମନ ଏବଂ ନିଜେ ଭାବାତୀତର ମନ ହେଉଛି ଆତ୍ମଭାବର ଅନୁଭୂତି କ୍ଷେତ୍ର ।

ମନର ଅତୀତ ହେବାର ଏହି ଧାରଣା ଜଣେ ନିଷ୍କର୍ମା କବି-ଦାର୍ଶନିକଙ୍କର କଳ୍ପନାର ସିଦ୍ଧାନ୍ତ ନୁହେଁ। ଶହ ଶହ ସାଧୁସନ୍ଥଙ୍କର ଅନୁଭୂତି ଦ୍ୱାରା ଏହାର ଅନୁମୋଦନ କରାଯାଇଛି। ସେମାନେ ଜୀବନର ଏହି ଲକ୍ଷ୍ୟରେ ପଦାର୍ପଣ କରି ପାରିଛନ୍ତି ଏବଂ ସେମାନଙ୍କର କହିବା କଥା ହିଁ ପୃଥିବୀର ମହାନ ଶାସ୍ତ୍ରମାନଙ୍କରେ ସଂକଳିତ କରା ଯାଇଛି। ଭାଷା ଅଲଗା ହୋଇପାରେ, ପ୍ରକାଶଭଙ୍ଗୀ ବିଭିନ୍ନ ପ୍ରକାରର ହୋଇପାରେ, କିନ୍ତୁ ଧାରଣା ଏକ ଏବଂ ଏକାପରି। ତେଣୁ ଜ୍ଞାନୀଜନମାନେ କହିଛନ୍ତି ଯେ, ମନ ଏବଂ ବୁଦ୍ଧିର ଅତୀତର ଅନୁଭୂତି ହେଉଛି ନିର୍ବିକଳ୍ପ, ଅଜ, ଅଦ୍ୱୈତ, ସାମ୍ୟ ପରମସତ୍ୟଙ୍କର ଅନୁଭୂତି।

**ଅଜମନିଦ୍ରମସ୍ୱପ୍ନମ୍ ପ୍ରଭାତଂ ଭବତି ସ୍ୱୟମ୍ ।**
**ସକୃଦ୍ୱିଭାତୋ ହ୍ୟେବୈଷ ଧର୍ମୋ ଧାତୁସ୍ୱଭାବତଃ ॥୮୧॥**

ଅଜମ୍ = ଅଜ, ଅନିଦ୍ରମ୍ = ନିଦ୍ରାହୀନ, ଅନିଦ୍ରା; ଅସ୍ୱପ୍ନମ୍ = ସ୍ୱପ୍ନହୀନ, ପ୍ରଭାତମ୍ = ସ୍ୱ ଆଭାରେ ଆଭାସିତ, ଭବତି = ହୁଏ, ସ୍ୱୟମ୍ = ନିଜେନିଜେ, ସକୃତ ବିଭାତଃ =ଚିର ଜାଜ୍ୱଲ୍ୟ ମାନ, ହି ଏବ = ବାସ୍ତବରେ କେବଳ, ଏଷଃ = ଏହା, ଧର୍ମଃ = ଆତ୍ମା (ନିଜେ); ଧାତୁ = ଜିନିଷ (ଅର୍ଥାତ୍ ନିଜେ); ସ୍ୱଭାବତଃ = ସ୍ୱଭାବରେ।

*ଅଜ, ଅନିଦ୍ର, ସ୍ୱପ୍ନହୀନ ଆତ୍ମା ନିଜ ଦ୍ୱାରା ନିଜେ ପ୍ରତିଭାତ ହୁଏ, କାରଣ ଏହି ଆତ୍ମା ସ୍ୱସ୍ୱରୂପରେ ଚିର-ଜାଜୁଲ୍ୟମାନ ॥୮୧॥*

ଆତ୍ମା ଅଜ - ଅର୍ଥାତ୍ ଅବିକାରୀ: ଗୌଡ଼ପାଦ ଏଠାରେ ତାହାଙ୍କୁ ଅନିଦ୍ର ଏବଂ ସ୍ୱପ୍ନହୀନ ଭାବରେ ବ୍ୟାଖ୍ୟା କରିଛନ୍ତି। ଅଭିଧାନିକ ଅର୍ଥ ସାହାଯ୍ୟରେ ଶାସ୍ତ୍ରର ବ୍ୟାଖ୍ୟା କରି ଅଧଃପତିତ ହିନ୍ଦୁ ପୁରୋହିତ-ଶ୍ରେଣୀ ପବିତ୍ର ଚିନ୍ତାକୁ ଏକ ଭୁଲ୍ ମୋଡ଼ ଦେଇଛନ୍ତି। ଏହା ତାହାର ଏକ ଜ୍ୱଳନ୍ତ ଉଦାହରଣ। ଅନେକ ଲୋକ ବିଶ୍ୱାସ କରନ୍ତି ଯେ, ଆତ୍ମାନୁଭବୀ ସାଧୁ ବା ସନ୍ଥ ସ୍ୱପ୍ନ ଦେଖିବେ ନାହିଁ କିମ୍ବା ସେ କେବେ ବି ଶୋଇବେ ନାହିଁ।

ନିଦ୍ରାହୀନତା ଯଦି ପୂର୍ଣ୍ଣାଙ୍ଗତାର ପରିଚାୟକ ହୁଏ, ଆମ ସମୟର ଅନେକ ପୁରୁଷ ଏବଂ ମହିଳା ସେମାନଙ୍କର ଅସ୍ଥିର ବୃଦ୍ଧାବସ୍ଥାରେ ପୂର୍ଣ୍ଣାଙ୍ଗତା ଅନୁଭବ କରୁଥିବେ। ଏହା ଏକ ନିରର୍ଥକ ଧାରଣା। ଶରୀରର ସ୍ଥିତି ପାଇଁ ନିଦ୍ରା ଆବଶ୍ୟକ ଏବଂ ସନ୍ଥ ଶରୀରର ଆବରଣରେ ଥିବା ପର୍ଯ୍ୟନ୍ତ ଶରୀର ତାର ଧର୍ମ ପାଳନ କରିବ।

ଏବଂ ତେବେବି, ସଙ୍ଗେସଙ୍ଗେ ଗୌଡ଼ପାଦ ତାଙ୍କର ଏହି ଦାମ୍ଭିକ ଦୃଢ଼ ଉକ୍ତି ପ୍ରକାଶ କରିଛନ୍ତି। ଏହି ଗ୍ରନ୍ଥର ପରିପ୍ରେକ୍ଷୀରେ ଓଁ ର ଏକ ବିଶେଷ ଅର୍ଥ ରହିବା ସ୍ୱାଭାବିକ।

ଏହି ଗ୍ରନ୍ଥର ଦ୍ୱିତୀୟ ଏବଂ ତୃତୀୟ ଅଧ୍ୟାୟରେ 'ନିଦ୍ରା' ଏବଂ 'ସ୍ୱପ୍ନ' ର ଯଥାର୍ଥ ତାତ୍ପର୍ଯ୍ୟ ଆଲୋଚିତ ହୋଇଛି। ନିଦ୍ରା ଏବଂ ସ୍ୱପ୍ନକୁ ଚେତନାର ଏକ ଅବସ୍ଥା ଭାବରେ ବ୍ୟାଖ୍ୟା କରାଯାଇଛି। ଆତ୍ମା ସହିତ ତାଦାତ୍ମ୍ୟ କଲେ ସେହି ଅବସ୍ଥାରେ ଜୀବ ଆନନ୍ଦ ଅନୁଭବ କରିଥାଏ।

ଆତ୍ମାନୁଭବୀ ବ୍ୟକ୍ତି ମନ, ବୁଦ୍ଧିର ଅତୀତ ହୋଇଥାଏ ଏବଂ ସ୍ୱସ୍ୱରୂପ ସମ୍ବନ୍ଧରେ ତାର ତିଳେ ହେଲେ ଅଜ୍ଞାନତା ନ ଥାଏ। ଏପରି ହେବାରୁ ସେ ତାର ସୂକ୍ଷ୍ମ ଏବଂ କାରଣ ଶରୀରର ଅତୀତ ହୋଇଯାଏ । ଜ୍ଞାନର ଉଦୟରେ ଆମ ସ୍ୱସ୍ୱରୂପର ଅଜ୍ଞାନତା ଆଉ ରହିବ ନାହିଁ। ଆଲୋକର ଉଦୟରେ ଅନ୍ଧକାର ରହି ପାରିବ ନାହିଁ। ପରମସତ୍ୟଙ୍କର ଅଜ୍ଞାନ ହେଉଛି ଅଜ୍ଞାନତା। ଏହା ଜାଗ୍ରତ ଅବସ୍ଥା ଏବଂ ସ୍ୱପ୍ନାବସ୍ଥାର ମିଥ୍ୟା ଜ୍ଞାନ କରାଏ। ଏଠାରେ ଗୌଡ଼ପାଦ ଜାଗ୍ରତ ଅବସ୍ଥା ସମ୍ବନ୍ଧରେ ବିଶେଷଭାବରେ ଉଲ୍ଲେଖ କରି ନାହାନ୍ତି, କାରଣ ଜାଗ୍ରତ ଅବସ୍ଥାରେ ମଧ୍ୟ ମନ ଏବଂ ବୁଦ୍ଧି ଅନୁଭୂତିର ସାଧନ ଅଟନ୍ତି ।

ନିଜର ବ୍ୟକ୍ତିଗତ ଅଭ୍ୟାସ ଦ୍ୱାରା କେହି ଯଦି ଏପର୍ଯ୍ୟନ୍ତ ମହାନ୍ ଗୁରୁଙ୍କର ପରମସତ୍ୟଙ୍କ ପ୍ରତି ନିର୍ଦ୍ଦୟ ଆହ୍ୱାନକୁ ବୁଝିବାର ଚେଷ୍ଟା କରିଥିବ, ତେବେ ଏହି ସଂକ୍ରାନ୍ତରେ ଗୌଡ଼ପାଦ କହିବାକୁ ଚାହୁଁଥିବା କଥା ତାପାଇଁ ଦିବାଲୋକ ପରି ସ୍ପଷ୍ଟ ହୋଇଯିବ। ଅଧ୍ୟୟନ ସହିତ ଅଭ୍ୟାସ କରୁଥିବା ସାଧକଙ୍କର ଏହି ସନ୍ଦେହ କଦାପି ହେବ ନାହିଁ।

"ନିଜେ ନିଜ ଦ୍ୱାରା ପ୍ରତିଭାତ ହୁଅନ୍ତି" (ପ୍ରଭାତମ୍ ଭବତି ସ୍ୱୟଂ): ଶରୀର, ମନ ଏବଂ ବୁଦ୍ଧିର ଅତୀତ ହେଲେ ଧ୍ୟାନକାରୀ କିପରି ପରମସତ୍ୟଙ୍କର ଅନୁଭୂତି ଲାଭ କରିବେ ବୋଲି ଅପରିପକ୍ୱ ଶିଷ୍ୟ ପଚାରି ପାରନ୍ତି। କାରଣ, ଶାସ୍ତ୍ର ମତରେ ସେପରି ଅବସ୍ଥାରେ ତାଙ୍କର ଜ୍ଞାନର କୌଣସି ସାଧନ ନ ଥାଏ, ମନର ଅନୁପସ୍ଥିତିରେ ସେ ସତ୍ୟଙ୍କର ଅନୁଭବ କରି ପାରିବେ ନାହିଁ କିମ୍ବା ବୁଦ୍ଧିର ଅତୀତ ହେଲେ ପରମସତ୍ୟଙ୍କୁ ଜାଣି ପାରିବେ ନାହିଁ।

ଏହି ସନ୍ଦେହର ଉତ୍ତର ପାଇଁ ଶ୍ରୀ ଗୌଡ଼ପାଦ ଏହି ଶ୍ଳୋକଟି ଉତ୍ସର୍ଗ କରିଛନ୍ତି। ସେ କହିଛନ୍ତି ଯେ ନିଜକୁ ପ୍ରତିଭାତ କରିବାର ଜ୍ଞାନ ଅନ୍ୟ କୌଣସି ଜ୍ଞାନ ଦରକାର କରେ ନାହିଁ। ଜ୍ଞାନ ନିଜେ ହିଁ ଚୈତନ୍ୟ। ସୂର୍ଯ୍ୟଙ୍କୁ ଦେଖିବା ପାଇଁ ଆମେ ଅନ୍ୟ କୌଣସି ଆଲୋକ ଦରକାର କରୁନାହିଁ। ସୂର୍ଯ୍ୟଙ୍କ ସମକ୍ଷରେ ଥିବା ଆବରଣକୁ କେବଳ ହଟାଇ ଦେବାକୁ ହେବ ଏବଂ ବାଦଲ ଅପସରି ଗଲେ, ନିଜେ ଆଲୋକ ବ୍ୟତୀତ ଅନ୍ୟ କିଛି

ହୋଇ ନଥିବାରୁ ସୂର୍ଯ୍ୟ ଅନାବରିତ ହେବ। ସେହିପରି ଆତ୍ମା ହେଉଛନ୍ତି ନିର୍ବିକଳ୍ପ ଚୈତନ୍ୟ। ତେଣୁ ଚେତି ହେବା ପାଇଁ ଚୈତନ୍ୟଙ୍କୁ ଅନ୍ୟ କୌଣସି ଚେତନାର ଦରକାର ହୁଏ ନାହିଁ। ଆତ୍ମାଙ୍କର ସ୍ୱରୂପର ଅନୁଭୂତିରେ ବାଧା ସୃଷ୍ଟି କରୁଥିବା ସମସ୍ତ ଆବରଣ ଦୂର କରିବା ପାଇଁ ବେଦାନ୍ତର ସମସ୍ତ ସାଧନା ଉଦ୍ଦିଷ୍ଟ।

ତେଣୁ, ଆତ୍ମାନୁଭବ ହେଉଛି ହୃଦୟସ୍ଥିତ ଆତ୍ମାଙ୍କର ଅନାବରଣ ଉତ୍ସବ। ଆତ୍ମତ୍ୱର ଅନୁଭୂତି ପାଇଁ ଆତ୍ମା ବ୍ୟତୀତ ଅନ୍ୟ କୌଣସି ସାଧନାର ଆବଶ୍ୟକତା ନାହିଁ।

**ସୁଖମାବ୍ରିୟତେ ନିତ୍ୟଂ ଦୁଃଖଂ ବିବ୍ରିୟତେ ସଦା।**

**ଯସ୍ୟ କସ୍ୟ ଚ ଧର୍ମସ୍ୟ ଗ୍ରହେଣ ଭଗବାନସୌ ॥୮୨॥**

ସୁଖଂ = ସୁଖ, ଆବ୍ରିୟତେ = ଆବୃତ ହୋଇ ରହେ, ନିତ୍ୟମ୍ = ନିରନ୍ତର, ଦୁଃଖମ୍ = ଦୁଃଖ, ବିବ୍ରିୟତେ = ଉପଲବ୍ଧି କରି, ସଦା = ସର୍ବଦା, ଯସ୍ୟ = ଯାହାର, କସ୍ୟ = କାହାର, ଚ = ଏବଂ, ଧର୍ମସ୍ୟ = ବିଷୟର, ଗ୍ରହେଣ = ମନ ଯୋଗୁଁ, ଭଗବାନ = ଆତ୍ମା, ଅସୌ = ଏହା।

*ନିରନ୍ତର ବ୍ୟକ୍ତିଗତ ବିଷୟର ଆଶଙ୍କା କରୁଥିବା ମନ ଯୋଗୁଁ ଆତ୍ମାଙ୍କର ବିଶୁଦ୍ଧ ସ୍ୱରୂପ ଆନନ୍ଦ ସବୁବେଳେ ଲୁଚି ରହିଥାଏ ଏବଂ ଦୁଃଖ ଦେଖା ଦେଇଥାଏ। ତେଣୁ ଚିର ଜାଜ୍ୱଲ୍ୟମାନ ଈଶ୍ୱର ସହଜରେ ଅନୁଭୂତ ହୁଅନ୍ତି ନାହିଁ ॥୮୨॥*

ପ୍ରଶ୍ନ ରୂପରେ ଉପଯୁକ୍ତ ଉପକ୍ରମଣିକା ସହିତ ଶ୍ରୀଶଙ୍କର ଏହି ଶ୍ଳୋକର ବ୍ୟାଖ୍ୟା ଆରମ୍ଭ କରିଛନ୍ତି ଏବଂ ଏକଥା କହି ଶେଷ କରିଛନ୍ତି ଯେ ଏହି ଶ୍ଳୋକ ହେଉଛି ଗୌଡ଼ପାଦଙ୍କର ସେହି ପ୍ରଶ୍ନ ପାଇଁ ଉତ୍ତର। ଯାହାକି- "ଆତ୍ମା ପରମସତ୍ୟ ବୋଲି ବାରମ୍ବାର ବ୍ୟାଖ୍ୟା କରାଯାଇଥିଲେ ମଧ୍ୟ ଲୋକମାନେ ଶେଷରେ ଆତ୍ମାନୁଭବ କରନ୍ତି ନାହିଁ କିପରି ?" କାରିକାକାର ମତ ଦେଇଛନ୍ତି ଯେ, ମନ ନାନା ପ୍ରକାର ଦୃଶ୍ୟରେ ବ୍ୟସ୍ତ ରହୁଥିବାରୁ ଏପରି ହୋଇଥାଏ।

ମନର ଉପଲବ୍ଧି ହେଉଛି ମାନସିକ ସ୍ତରରେ ଏକ ବିକ୍ଷେପ। ଜାଗ୍ରତ ଅବସ୍ଥାରେ ଏପରି ଗୋଟିଏ ମୁହୂର୍ତ୍ତ ନାହିଁ, ଯେତେବେଳେ କି ମନ ଇନ୍ଦ୍ରିୟବିଷୟର ଜଗତ ତିଆରି କରୁଥିବା ବିଭିନ୍ନ ଜିନିଷର ଉପଲବ୍ଧି କରୁନାହିଁ। ସୁଷୁପ୍ତ ଅବସ୍ଥାରେ ମଧ୍ୟ ଉପଲବ୍ଧି କାର୍ଯ୍ୟ କରେ, ହୁଏତ ବାହ୍ୟ ଜଗତ ବିଷୟର କିମ୍ବା ଆନ୍ତରିକ ବିଷୟର ନୁହେଁ, କିନ୍ତୁ 'ଅଜ୍ଞତା' ଜଣାଇ ଦେଉଥିବା ଏକ ନିରନ୍ତର ବୃତ୍ତିର। ସୁଷୁପ୍ତ ଅବସ୍ଥାରେ, ତୁଳନାତ୍ମକ ଭାବରେ

ବହୁତ କମ ବିକ୍ଷେପ, ଅଶାନ୍ତି ଥାଏ, ତେଣୁ ସୁଷୁପ୍ତି ସମୟରେ ଅଶାନ୍ତି ଦ୍ୱାରା ବିକ୍ଷିପ୍ତ ହେବା କଥା କୌଣସି ଜୀବ କହେ ନାହିଁ। ଆମ ସମସ୍ତଙ୍କ ପାଇଁ ସୁଷୁପ୍ତି ହେଉଛି ଏକ ସମାନ ଧରଣର ଆନନ୍ଦାନୁଭୂତି; କାରଣ, ସୁଷୁପ୍ତିରେ ମାନସିକ ଶାନ୍ତିର ଉପଦ୍ରବ କରୁଥିବା କାରଣ(ହେତୁ) ନଥାଏ। କୌଣସି ଉପଲବ୍ଧି ନଥିଲେ ଶାନ୍ତି ବିରାଜମାନ କରେ। କିନ୍ତୁ ଦୁର୍ଭାଗ୍ୟବଶତଃ ସୁଷୁପ୍ତି ଅବସ୍ଥାରେ ବିଷୟର ଉପଲବ୍ଧି ନଥିଲେ ହେଁ ମନ ତଥାପି ଅତି କମରେ ହେଲେ ମଧ୍ୟ, ବାରମ୍ବାର 'ଅଜ୍ଞାନତା' ଘୋଷଣା କରୁଥିବା ଏହାର ବୃତ୍ତି ଦ୍ୱାରା ବିକ୍ଷିପ୍ତ ହୁଏ।

ଗୌଡ଼ପାଦ ଏଠାରେ କହୁଛନ୍ତି ଯେ, ଜଣେ ବ୍ୟକ୍ତି ତାର ସ୍ୱସ୍ୱରୂପର ଅନୁଭୂତି ଲାଭ କରିବାକୁ ଅସମର୍ଥ ହେବାର କାରଣ ହେଲା, ତା'ର ଏହି ନିରନ୍ତର ମାନସିକ ବିକ୍ଷେପ। ଏହି ମାନସିକ ବିକ୍ଷେପ ହେଉଛି ଜୀବନର ଦୁଃଖର କାରଣ, ଏବଂ ଏହି ବିକ୍ଷେପ ଯୋଗୁଁ ଆମର ଶୁଦ୍ଧ ସ୍ୱରୂପ ଶାନ୍ତି ଏବଂ ପ୍ରଶାନ୍ତି, ଆନନ୍ଦ ଏବଂ ପରିପୂର୍ଣ୍ଣତା ଡୁବିଯାଇ ଦୁଃଖର ଉପଲବ୍ଧି କରାଇଥାଏ। ତେଣୁ ଶିଷ୍ୟମାନେ ଶିକ୍ଷା ଲାଭ କରି ସାବଧାନତାର ସହିତ ଅଧ୍ୟୟନ କଲେ ମଧ୍ୟ, ଦଶ ବର୍ଷର ଧ୍ୟାନ ଏବଂ ତପଶ୍ଚର୍ଯ୍ୟା ପରେ ବି କେତେକ ସାଧକ ସହଜରେ ଆତ୍ମାନୁଭବ କରିପାରନ୍ତି ନାହିଁ; କାରଣ ମନକୁ ପୁରାପୁରି ଶାନ୍ତ କରିବାରେ ସେମାନେ ଏପର୍ଯ୍ୟନ୍ତ ସଫଳ ହୋଇ ନଥାନ୍ତି। ଏପରି କହି ଧ୍ୟାନରେ ତାଙ୍କର ଉପଦେଶର ଅନୁସରଣ କରିବାର ଆବଶ୍ୟକତା ଉପରେ ଗୌଡ଼ପାଦ ଜୋର ଦେଇଛନ୍ତି। ଏବଂ ସାଧକ ଏହିପରି ଭାବରେ ଚେତନାର ସ୍ୱପ୍ନ ବା ସୁଷୁପ୍ତି ଅବସ୍ଥାର ଅତୀତ ହୋଇ ପରିପୂର୍ଣ୍ଣତାର ରାଜ୍ୟକୁ ଉଡ଼ି ଯାଇ ପାରିବା ପାଇଁ ନିଜକୁ ଉପଯୁକ୍ତ କରି ପାରିବ।

**ଅସ୍ତି ନାସ୍ତ୍ୟସ୍ତି ନାସ୍ତୀତି ନାସ୍ତି ନାସ୍ତୀତି ବା ପୁନଃ ।**

**ଚଲସ୍ଥିରୋଭୟାଭାବୈଃ ଆବୃଣୋତ୍ୟେବ ବାଲିଶଃ ॥୮୩॥**

ଅସ୍ତି = ଅଛି, ନାସ୍ତି = ନାହିଁ, ଅସ୍ତି ନାସ୍ତି = ଅଛି ଏବଂ ନାହିଁ, ଇତି = ଏହିପରି, ନାସ୍ତି ନାସ୍ତି = ପୂରା ପୂରି ନାହିଁ, ଇତି = ଏହିପରି, (ଏପରି ଧାରଣାରୁ ଉଦ୍ଭୂତ); ବା ପୁନଃ = କିମ୍ବା ପୁନଶ୍ଚ, ଚଲଃ = ଅନିତ୍ୟ, ଚଳମାନ ଦ୍ୱାରା; ସ୍ଥିରଃ = ନିତ୍ୟ, ଅଚଳ; ଉଭୟ = ଉଭୟ (ଚଳ ଏବଂ ଅଚଳ); ଅଭାବୈଃ = ଯାହା ନାହିଁ, ଏବ ଆବୃଣୋତି = ପ୍ରକୃତରେ ଆବରିତ କରିଥାଏ; ବାଲିଶଃ = ପିଲାଳିଆମି (ବୋକା କିମ୍ବା ଅବିବେକୀ ବ୍ୟକ୍ତି) ।

*ଏହା ଅଛି, ଏହା ନାହିଁ - ବାଳସୁଲଭ ବ୍ୟକ୍ତିମାନେ ପରମସତ୍ୟଙ୍କ ଉପରେ ଏହି ଗୁଣ ଆରୋପ କରି ତାଙ୍କୁ ଆବରିତ କରି ଦିଅନ୍ତି । ଉଭୟ ଅନିତ୍ୟ (ଚଳ) ଏବଂ ନିତ୍ୟ (ଅଚଳ)କୁ ଯୋଗ କରି ଏବଂ ଉଭୟଙ୍କୁ ପୂରାପୂରି ନିଷେଧ କରି ସେମାନେ ଏହି ଧାରଣା ସୃଷ୍ଟି କରିଛନ୍ତି ॥୮୩॥*

ବୌଦ୍ଧ ନାଗାର୍ଜୁନଙ୍କଠାରୁ ଏହି ଦ୍ୱନ୍ଦମୂଳକ ଚତୁଷ୍କୋଟି ଉଧାର କରାଯାଇଛି । ଏଥିପାଇଁ ଶ୍ରୀ ଗୌଡ଼ପାଦଙ୍କର ଅନେକ ସମାଲୋଚକ ତାଙ୍କୁ ବୌଦ୍ଧ ଭାବରେ ନିନ୍ଦା କରନ୍ତି । ନିଶ୍ଚିତ ଭାବରେ ଏହା ଅନ୍ୟାୟ, କାରଣ ଅବ୍ୟୟ, ବିଶେଷ୍ୟ, କ୍ରିୟା ଉପରେ ଅଧିକାର ଅଛି ବୋଲି କୌଣସି ସାହିତ୍ୟିକ ଦାବୀ କରି ନ ପାରିବା ପରି ନ୍ୟାୟ ତାର ନିଜର ବୋଲି କୌଣସି ଦାର୍ଶନିକ ଦାବୀ କରି ପାରିବ ନାହିଁ ।

ହାତରେ ଥିବା ସମସ୍ୟାର ବୌଦ୍ଧିକ ବିଶ୍ଳେଷଣ କରି ଆଲୋଚିତ ବିଷୟକୁ ବୁଝିବାର ଚେଷ୍ଟା କରିବାର ସମ୍ଭାବ୍ୟ ଉପାୟ ହେଉଛି ଏହି ଦ୍ୱନ୍ଦମୂଳକ ଚତୁଷ୍କୋଟି । ଭାରତର ବିଭିନ୍ନ ଦାର୍ଶନିକ ମତର ମୁଖ୍ୟ ବିଷୟକୁ ଗୋଟିଏ ଶ୍ଲୋକରେ ରଖିବା ପାଇଁ ଏଠାରେ ଶ୍ରୀ ଗୌଡ଼ପାଦ ଚେଷ୍ଟା କରିଛନ୍ତି । ଏହି ମତବାଦମାନଙ୍କ ମଧ୍ୟରୁ ପ୍ରତ୍ୟେକେ ତାଙ୍କ ଭାବରେ ଆତ୍ମା ଉପରେ କେତେକ ଗୁଣର ଅଧ୍ୟାସ କରନ୍ତି । ସେହିପରି ବୈଶେଷିକମାନେ କହନ୍ତି ଯେ, ଆତ୍ମା ଅଛି, ତାହା ଶରୀର ଇନ୍ଦ୍ରିୟ ପ୍ରାଣ ଇତ୍ୟାଦି ଠାରୁ ସ୍ୱତନ୍ତ୍ର । ଆତ୍ମା ହିଁ ସୁଖ ଦୁଃଖର ଭୋକ୍ତା ଏବଂ ଜ୍ଞାତା । ସେମାନେ ଆତ୍ମାକୁ 'ଅସ୍ତି' ଭାବରେ ବିଚାର କରନ୍ତି ।

ବୌଦ୍ଧମାନଙ୍କ ମଧ୍ୟରେ କ୍ଷଣିକ ବିଜ୍ଞାନବାଦୀମାନେ କହନ୍ତି ଯେ, ଆତ୍ମା ଶରୀରଠାରୁ ସ୍ୱତନ୍ତ୍ର ହେଲେ ମଧ୍ୟ ବୁଦ୍ଧିଠାରୁ ଅଭିନ୍ନ । ସେମାନଙ୍କ ମତରେ ଆମ ମନରେ ଦେଖା ଦେଉଥିବା ପ୍ରତ୍ୟେକଟି ଭାବନା ଆତ୍ମା ଦ୍ୱାରା ପ୍ରକାଶିତ ହୁଏ ଏବଂ ଦୁଇଟି ଭାବନାର

ମଧ୍ୟବର୍ତ୍ତୀ ସମୟରେ ବୋଧ କରିବାକୁ ଆତ୍ମା ପାଇଁ କିଛି ନଥାଏ ଏବଂ ସେଥିପାଇଁ ଚୈତନ୍ୟ ମୋଟେ ନଥାଏ। ଏହିପରି ଭାବରେ ସେମାନଙ୍କର ଆତ୍ମା ପ୍ରତ୍ୟେକ ଭାବନା ସହିତ ଜନ୍ମ ନେଇ ପ୍ରତ୍ୟେକ ଭାବନା ସହିତ ବିଲୟ ଲାଭ କରନ୍ତି। ସେମାନେ ଏକ ଶାଶ୍ୱତ ଏବଂ ଚିରନ୍ତନ - ସଦାସ୍ଥିତ ସତ୍ୟରେ ବିଶ୍ୱାସ କରନ୍ତି ନାହିଁ। ସେମାନଙ୍କ ପାଇଁ ଚେତନଶୀଳତା (ଚୈତନ୍ୟ) ହେଉଛି କ୍ଷଣିକ ଏବଂ ଏହା ଏପରି ନିରବଚ୍ଛିନ୍ନ ଦ୍ରୁତଗତିରେ ଦେଖା ଦେଇ ଅଦୃଶ୍ୟ ହୋଇଯାଉଥିବାରୁ ସାଧାରଣ ଦର୍ଶକଙ୍କୁ ଏହା ନିରବିଚ୍ଛିନ୍ନ ଏବଂ ସଦାସ୍ଥିତ ଭାବରେ ମନେ ହୋଇଥାଏ। ବୌଦ୍ଧମାନଙ୍କର ଏହି କ୍ଷଣିକ-ବିଜ୍ଞାନବାଦୀଙ୍କ ପାଇଁ ଏକ ଶାଶ୍ୱତ, ନିତ୍ୟ ଏବଂ ଚିରନ୍ତନ ଆତ୍ମା ନାହିଁ।

ଦର୍ଶନର ଜୈନ ମତ ଅନୁସାରେ ଆତ୍ମା ଅଛି ଏବଂ ନାହିଁ। ଜୈନ ମତ ବିଶ୍ୱାସ କରେ ଯେ, ଆତ୍ମା ଶରୀରଠାରୁ ଭିନ୍ନ ହେଲେ ମଧ୍ୟ ତାର ଆକାର ଶରୀରର ଆକାର ସହିତ ସମାନ, ଶରୀର ଥିବା ପର୍ଯ୍ୟନ୍ତ ତାହା ଥାଏ ଏବଂ ଶରୀରର ବିନାଶରେ ତାର ବିନାଶ ହୁଏ। ତେଣୁ ସେମାନଙ୍କ ପାଇଁ ଆତ୍ମା 'ଅସ୍ତି' ଏବଂ 'ନାସ୍ତି'।

ପରିଶେଷରେ, ନିହିଲିଷ୍ଟ ନାମକ ଏକ ବୌଦ୍ଧ ମତବାଦୀ ଅଛନ୍ତି। ସେମାନଙ୍କ ମତରେ ଆତ୍ମା ନାମକ କୌଣସି ବାସ୍ତବତା ନାହିଁ। ସମସ୍ତ ପ୍ରାଣୀ ଏବଂ ପଦାର୍ଥ ବିନାଶ ହେଲେ ଶେଷ ହୋଇ ଯାଆନ୍ତି। ତେଣୁ 'ନାସ୍ତି -ନାସ୍ତି' ହେଉଛି ପରମସତ୍ୟ।

'ଅସ୍ତି', 'ନାସ୍ତି', 'ଅସ୍ତି-ନାସ୍ତି', 'ନାସ୍ତି-ନାସ୍ତି' ପରି ଉପରୋକ୍ତ ଧାରଣା ସବୁ ବା ଆତ୍ମାଙ୍କ ଉପରେ ବିଶେଷ ଗୁଣର ଆରୋପ ହେଉଛି ପ୍ରକାଶ୍ୟ ନିତ୍ୟତାର ଅନିତ୍ୟତା, ଉଭୟ ବା ଉଭୟଙ୍କ ମଧ୍ୟରୁ କୌଣସିଟି ନୁହେଁ- ଦୃଷ୍ଟିକୋଣରୁ ପର୍ଯ୍ୟବେକ୍ଷଣ କରି ଦାର୍ଶନିକମାନେ ଆତ୍ମାଙ୍କୁ ବ୍ୟାଖ୍ୟା କରିଥିବାର ଦୃଢ଼ ଉକ୍ତି । ଏଥିପାଇଁ ଗୌଡ଼ପାଦ ଏହି ସବୁ ମତକୁ ଅପରିପକ୍ୱ ମନ ଦ୍ୱାରା ଉପସ୍ଥାପିତ ଦର୍ଶନ ବୋଲି ବର୍ଣ୍ଣନା କରିଛନ୍ତି।

**କୋଟ୍ୟଶ୍ଚତସ୍ର ଏତାସ୍ତୁ ଗ୍ରହୈର୍ୟାସାଂ ସଦାବୃତଃ ।**

**ଭଗବାନାଭିରସ୍ପୃଷ୍ଟୋ ଯେନ ଦୃଷ୍ଟଃ ସ ସର୍ବଦୃକ୍ ॥ ୮୪॥**

ଚତସ୍ର କୋଟ୍ୟଃ = ଚାରିଗୋଟି ଅନୁକ୍ରମିକ ମତ, ଏତାଃ ତୁ = ଏହିସବୁ ବାସ୍ତବରେ, ଗ୍ରହୈ = ଧାରଣ କରି, ଯାସାମ୍ = ଯାହା, ସଦା = ସର୍ବଦା, ଆବୃତଃ = ଆବୃତ ହୋଇ ରହେ, ଭଗବାନ = ଆତ୍ମା, ଆଭିଃ = ଏମାନଙ୍କ ମଧ୍ୟରୁ ଯେକୌଣସି, ଅସ୍ପୃଷ୍ଟଃ = ଅସ୍ପୃଷ୍ଟ, ଯେନ = ଯାହା ଦ୍ୱାରା, ଦୃଷ୍ଟଃ = ଦେଖାଯାଏ, ସଃ = ତାହା, ସର୍ବଦୃକ୍ = ସର୍ବଦ୍ରଷ୍ଟା (ଅର୍ଥାତ୍ ପ୍ରକୃତ ଜ୍ଞାନୀ ବ୍ୟକ୍ତି)।

*ଆତ୍ମାଙ୍କ ସ୍ୱରୂପ ସମ୍ବନ୍ଧରେ ଏହା ହେଉଛି ଚାରିଗୋଟି ଅନୁକ୍ରମିକ ମତ । ଏମାନଙ୍କ ମଧ୍ୟରୁ ଯେକୌଣସି ଗୋଟିଏ ପ୍ରତି ଆସକ୍ତ ହେବା ଯୋଗୁଁ ବ୍ୟକ୍ତିର ଦୃଷ୍ଟିରୁ ଏହା ଆବୃତ ହୋଇ ରହେ । ଏମାନଙ୍କ ମଧ୍ୟରୁ କୌଣସି ଗୋଟିକ ଦ୍ୱାରା ମଧ ଆତ୍ମା ଅସ୍ପୃଷ୍ଟ ବୋଲି ଜାଣିଥିବା ବ୍ୟକ୍ତି ହେଉଛି ସର୍ବଦ୍ରଷ୍ଟା ॥୮୪॥*

ଆତ୍ମାଙ୍କର ଏହି ସବୁ ପ୍ରାରମ୍ଭିକ ବ୍ୟାଖ୍ୟାରୁ ଉପରକୁ ଉଠିବା ପାଇଁ ଏବଂ ଅଭ୍ୟାସ ଓ ଆତ୍ମ ଆବିଷ୍କାର ଦ୍ୱାରା ଏସବୁରୁ ଉର୍ଦ୍ଧ୍ୱକୁ ଉଠି, ଆତ୍ମା ହେଉଛନ୍ତି ଇନ୍ଦ୍ରିୟ, ମନ ଏବଂ ବୁଦ୍ଧିର ସମସ୍ତ ଦୃଶ୍ୟର ଅଧିଷ୍ଠାନ ଭାବରେ ନିର୍ବିକଳ୍ପ ଆତ୍ମାଙ୍କର ସ୍ୱ-ଶୁଦ୍ଧତା ହୃଦୟଙ୍ଗମ କରିବା ପାଇଁ ଗୌଡ଼ପାଦ ସାଧକମାନଙ୍କୁ ଉପଦେଶ ଦେଉଛନ୍ତି । ଅନ୍ତରର ଗଭୀର ନୀରବତାରେ ମନର ନୀରବତାକୁ ଲକ୍ଷ୍ୟ କରି ନୀରବ ଆତ୍ମା ତାଙ୍କର ନିଜର ସର୍ବଦ୍ରଷ୍ଟା ଗୁଣରେ ପର୍ଯ୍ୟବେସିତ ନିର୍ବିକଳ୍ପ ମହିମାରେ ଦଣ୍ଡାୟମାନ । ଆତ୍ମାକୁ ଜାଣ ଏବଂ ନିଜକୁ ଜାଣ !

**ପ୍ରାପ୍ୟ ସର୍ବଜ୍ଞତାଂ କୃତ୍ସ୍ନାଂ ବ୍ରାହ୍ମଣ୍ୟଂ ପଦମଦ୍ୱୟମ୍ ।**

**ଅନାପନ୍ନାଦି ମଧ୍ୟାନ୍ତଂ କିମତଃ ପରମୀହତେ ॥୮୫॥**

ପ୍ରାପ୍ୟ = ପ୍ରାପ୍ତ କରି, ସର୍ବଜ୍ଞତାମ୍ = ସର୍ବଜ୍ଞତ୍ୱ, କୃତ୍ସ୍ନାମ୍ = ପୂର୍ଣ୍ଣ, ବ୍ରହ୍ମଣ୍ୟମ୍ = ବ୍ରହ୍ମଙ୍କର, ପଦମ୍ = ପଦ, ଅବସ୍ଥା; ଅଦ୍ୱୟମ୍ = ଅଦ୍ୱୈତ, ଅନାପନ୍ନ = ବ୍ୟତୀତ, ଆଦି = ଆରମ୍ଭ, ମଧ୍ୟ = ମଝି, ଅନ୍ତମ୍ = ଶେଷ, କିମ୍ = କଣ, ଅତଃ = ବର୍ତ୍ତମାନ, ପରମ୍ = ତାପରେ, ଇହତେ = କାମନା ବା ଚେଷ୍ଟା କରିବା ପାଇଁ ରହେ ।

*ଆଦି, ମଧ୍ୟ ଏବଂ ଅନ୍ତ ବିହୀନ ପରିପୂର୍ଣ୍ଣ ଅଦ୍ୱୈତ ଅବସ୍ଥାର ବ୍ରହ୍ମାବସ୍ଥା ଲାଭ କଲା ପରେ କାମନା କରିବା ପାଇଁ ଆଉ କଣ ବାକି ରହେ ?॥୮୫॥*

ଜୀବନର ପରମ ଲକ୍ଷ୍ୟ, ନିଜ ପ୍ରଭାରେ ସମୁଜ୍ଜ୍ୱଳ, ନିଜ ସ୍ୱରୂପରେ ଆନନ୍ଦମଗ୍ନ, ସର୍ବଜ୍ଞତାରେ ସନ୍ତୁଷ୍ଟ, ସର୍ବବ୍ୟାପୀ ଅହଂ ଶୂନ୍ୟ ଆତ୍ମାଙ୍କଠାରେ ପଦାପର୍ଣ କରି, ଆତ୍ମାଙ୍କ ସହିତ ଏକ ହୋଇ ଗଲେ, ଲାଭ କରିବା ପାଇଁ ବା କାମନା କରିବା ପାଇଁ ଆଉ କିଛି ଅବଶେଷ ରହେ ନାହିଁ। ଶ୍ରୀ ଗୌଡ଼ପାଦ କହିଛନ୍ତି, ଏପରି ଆତ୍ମାନୁଭବୀ ଜ୍ଞାନୀ ବ୍ୟକ୍ତିଙ୍କୁ ବ୍ରାହ୍ମଣ କୁହାଯାଏ।

ପଇତାଧାରୀ ଏବଂ ପଇତା ଧାରଣ କରି ନଥିବା ହିନ୍ଦୁ ଭାଇମାନଙ୍କ ଭିତରେ ଆତ୍ମଘାତୀ ରଢ଼ିବାଦୀ ପାର୍ଥକ୍ୟ ଦେଖିବାବେଳେ, ବର୍ତ୍ତମାନ ସମୟରେ ଆମେ ଏହି ଧାରଣାରୁ କେତେ ଦୂରେଇ ଯାଇଛୁ ବୋଲି ଜଣାପଡ଼େ। ବର୍ତ୍ତମାନ ଏହା ବଂଶଗତ ସଂଘଟତା। କେବଳ ଜଣେ ବ୍ରାହ୍ମଣର ପୁଅ ବୋଲି ଜଣେ ବ୍ରାହ୍ମଣ ହୁଏ। ସବୁ ଡାକ୍ତରଙ୍କ ପୁଅ କଣ ଡାକ୍ତର ହୋଇ ପାରିବେ ? ବଂଶଗତ ଗୁଣ ଯୋଗୁଁ ଏକ ଅନୁକୂଳ ପ୍ରବୃତ୍ତି ବା ସାହାଯ୍ୟକାରୀ ମାନସିକ ପ୍ରବଣତା ରହିପାରେ। କିନ୍ତୁ ବ୍ୟକ୍ତିର ଶିକ୍ଷା ଏବଂ ଆତ୍ମ-ଉଦ୍‌ଯୋଗ ଉପରେ ପ୍ରକୃତ ବିକାଶ ନିର୍ଭର କରେ ଏବଂ ଜଣେ ଇଞ୍ଜିନିୟରର ପୁଅ ଡାକ୍ତର ହେବା ସମ୍ଭବପର।

ଆତ୍ମ-ପ୍ରଚେଷ୍ଟା ଏବଂ ଆତ୍ମ-ଉଦ୍‌ଯୋଗ ଦ୍ୱାରା ଜଣେ ଶୂଦ୍ରର ପୁଅ ବ୍ରାହ୍ମଣ ହୋଇପାରେ। ଜାତିପ୍ରଥା ଏପରି କଠୋର ହୋଇ ପରିବେଶକୁ ବିଷାକ୍ତ କରି ମୃତ୍ୟୁ ଓ ବିଧ୍ୱଂସ, ବିଭାଜନ ଓ ଦୁର୍ଗନ୍ଧ ସୃଷ୍ଟି କରିବା ଶୃତି କେବେ ବି ଚାହିଁନାହାଁନ୍ତି।

ଆତ୍ମାନୁଭବପରେ ଜଣେ ବ୍ରାହ୍ମଣ ପାଇଁ ଆଉ କ'ଣ କାମ ଅଛି ବୋଲି ଗୌଡ଼ପାଦ ପଚାରିଛନ୍ତି। ଏହାର ଉତ୍ତର ସ୍ପଷ୍ଟ। ଏହାର ଅର୍ଥ ହେଲା- ତାପାଇଁ ଅନ୍ୟ କୌଣସି କାମନା ଆଉ ଅବଶେଷ ରହେ ନାହିଁ। ନିଜ ସହିତ ନିଜେ ଶାନ୍ତିରେ ରହି ଦୁନିଆଁରେ ସେ ଆନ୍ତରିକ ଆନନ୍ଦ ଲାଭ କରେ। ଜୀବନରେ ସେ ସମସ୍ତଙ୍କୁ ଆଲିଙ୍ଗନ କରେ- କିଛି ଚାହେଁ ନାହିଁ, କିଛି ଆଶା କରେ ନାହିଁ, କିଛି ପାଇଁ ଅନୁତାପ କରେ ନାହିଁ! ଆତ୍ମ-ସଂଯମ, ତ୍ୟାଗ ଏବଂ ଧ୍ୟାନର ସାଧନା କରୁଥିବା ସମୟରେ ପାଳନ କରୁଥିବା ଦୃଢ଼ ନିୟମ ତାପାଇଁ ଆଉ ପ୍ରଯୁଜ୍ୟ ହୁଏ ନାହିଁ। ତା ପରଠାରୁ ଶରୀରକୁ ପୂରାପୂରି ଉପେକ୍ଷା କରିବା ତାପାଇଁ ସ୍ୱାଭାବିକ। ତା ପରଠାରୁ ତାର ମନ ଜୀବର ଆବେଗ ପ୍ରକାଶ ନକରି ଅସୀମ ରାଜ୍ୟରୁ ଅସୀମ ଦ୍ୱାରା ଅସୀମ ଅନୁଭୂତିର ପ୍ରଚାର କରେ।

**ବିପ୍ରାଣାଂ ବିନୟୋ ହ୍ୟେଷ ଶମଃ ପ୍ରାକୃତ ଉଚ୍ୟତେ ।**

**ଦମଃ ପ୍ରକୃତିଦାନ୍ତତ୍ୱାଦେବଂ ବିଦ୍ୱାନ୍‌ଶମମ୍ ବ୍ରଜେତ୍ ॥୮୬॥**

ବିପ୍ରାଣାମ୍ = ଜ୍ଞାନୀଜନଙ୍କର ଅର୍ଥାତ୍ ବ୍ରାହ୍ମଣଙ୍କର, ବିନୟଃ = ବିନୟ, ହି = ପ୍ରକୃତରେ, ଏଷଃ = ଏହା, ଶମଃ = ଶମ, ମାନସିକ ସମତା; ପ୍ରାକୃତଃ = ସ୍ୱାଭାବିକ, ସ୍ୱତଃସ୍ଫୁର୍ତ୍ତ; ଉଚ୍ୟତେ = କୁହାଯାଏ, ଦମଃ = ଇନ୍ଦ୍ରିୟ ନିୟନ୍ତ୍ରଣ, ପ୍ରକୃତି = ସ୍ୱାଭାବିକ ଭାବେ, ଦାନ୍ତତ୍ୱାତ୍ = ଦମନ କରାଯାଇ, ଏବମ୍ = ଏହିପରି, ବିଦ୍ୱାନ୍ = ବିଦ୍ୱାନ୍, ଜ୍ଞାନୀଜନ; ଶମମ୍ = ପରିପୂର୍ଣ୍ଣ ଶାନ୍ତି, ବ୍ରଜେତ୍ = ଲାଭ କରେ, ପାଏ ।

*ବ୍ରହ୍ମାନୁଭୂତି ନିଜେ ହିଁ ହେଉଛି ବ୍ରାହ୍ମଣଙ୍କ ପାଇଁ ସ୍ୱଭାବଗତ ବିନମ୍ରତା । ସେମାନଙ୍କର ଶମ ବା ମାନସିକ ସମତା ମଧ୍ୟ ସ୍ୱଭାବତ ବୋଲି କୁହାଯାଏ । ସେମାନେ ପୂର୍ଣ୍ଣ ଇନ୍ଦ୍ରିୟ ସଂଯମ ଲାଭ କରିଥାନ୍ତି ବୋଲି କୁହାଯାଏ- ଏହା ସେମାନଙ୍କ ପାଇଁ ସ୍ୱାଭାବିକ । ପ୍ରଶାନ୍ତିମୟ ବ୍ରହ୍ମଙ୍କର ଅନୁଭୂତି ଲାଭ କରିଥିବା ବିଜ୍ଞ ବ୍ୟକ୍ତି ନିଜେ ଶାନ୍ତ ଏବଂ ଶମ ହୋଇ ଯାଆନ୍ତି ॥୮୬॥*

ଆତ୍ମାନୁଭୂତି ଲାଭ କରିଥିବା ବ୍ୟକ୍ତି ଯେଉଁ ପରିପୂର୍ଣ୍ଣତାର ଭାବ ଅନୁଭବ କରନ୍ତି, ଗତ ଶ୍ଳୋକରେ ଗୌଡ଼ପାଦ ତାର ଇଙ୍ଗିତ ଦେଇଛନ୍ତି । ପରିପୂର୍ଣ୍ଣ ଶୁଦ୍ଧ ଚୈତନ୍ୟ ଭାବରେ ନିଜକୁ ଆବିଷ୍କାର କରିବା ପରେ ତାଙ୍କ ପାଇଁ ଆଉ କିଛି କରିବାକୁ ବା ହାସଲ କରିବାକୁ ନଥାଏ । ତାପରଠାରୁ ସେ କୌଣସି କଥା ପାଇଁ କାମନା କରନ୍ତି ନାହିଁ, କିଛି ହେଲେ ପାଇବାକୁ ଚେଷ୍ଟା କରନ୍ତି ନାହିଁ । ଏହି ଉକ୍ତି ସାଧକ ମନରେ ଏକ ସନ୍ଦେହ ଉଠାଇ ପାରେ- ଜଣେ ପରିପୂର୍ଣ୍ଣ ସନ୍ଥ ତେବେ କଣ ପୂର୍ଣ୍ଣତାର ଚିହ୍ନ ବିନମ୍ରତା, ପ୍ରେମ, ସହିଷ୍ଣୁତା, କରୁଣା ଇତ୍ୟାଦିର ନିୟମିତ ଏବଂ ନିରବିଚ୍ଛିନ୍ନ ଭାବରେ ଅଭ୍ୟାସ କରିବେ ନାହିଁ ? କୌଣସି ଇଚ୍ଛାକୃତ କୃତ୍ରିମତା ବା ଆଡ଼ମ୍ବରପୂର୍ଣ୍ଣ ବିଧିବିଧାନ ଦ୍ୱାରା ଜଣେ ଆତ୍ମାନୁଭବୀ ପୁରୁଷ ଏସବୁର କାହିଁକି ଅଭ୍ୟାସ କରିବେ ନାହିଁ ବୋଲି ଶ୍ରୀ ଗୌଡ଼ପାଦ ଏହି ଶ୍ଳୋକରେ ଦେଖାଇଛନ୍ତି । ଏହିସବୁ ଗୁଣ ତାଙ୍କ ପାଇଁ ତାଙ୍କର ଦ୍ୱିତୀୟ ଅନୁଭୂତି ହୋଇଯାଇଥାଏ । ବାସ୍ତବରେ ଜୀବନର ବିଭିନ୍ନ ପରିସ୍ଥିତିରେ ଜଣେ ପୂର୍ଣ୍ଣାଙ୍ଗ ସାଧୁଙ୍କର କାର୍ଯ୍ୟକଳାପର ପର୍ଯ୍ୟବେକ୍ଷଣ କରି ହିଁ ଧର୍ମଶାସ୍ତ୍ରମାନେ ଧର୍ମର ସଂଜ୍ଞା ନିରୂପଣ କରିଛନ୍ତି ଏବଂ ନୈତିକ ଆଚରଣର ନିୟମକୁ ସଂହିତାକାରରେ ବନ୍ଧ କରିଛନ୍ତି ।

ବ୍ରହ୍ମାନୁଭୂତି ପରେ, ଜୀବ ଏବଂ ବ୍ରହ୍ମଙ୍କର ସଂପୂର୍ଣ୍ଣ ତାଦାତ୍ମ୍ୟର ପୂର୍ଣ୍ଣଜ୍ଞାନରେ ସନ୍ଥ ବିନମ୍ର ଭାବରେ ହିଁ ବ୍ୟବହାର କରିବେ । ଆନୁଗତ୍ୟ ଭାବରେ ଅନ୍ୟମାନଙ୍କ ସହିତ

ଆମେ ପୂର୍ଣ୍ଣ ତାଦାତ୍ମ୍ୟ ସ୍ଥାପନ କଲେ, ଅନ୍ୟମାନଙ୍କ ପ୍ରତି ବ୍ୟବହାରରେ ବିନମ୍ରତା ଏକ ମାନସିକ ବୌଦ୍ଧିକ ଏବଂ ଶାରୀରିକ ମନୋବୃତ୍ତି ହୋଇଯାଏ। ଏହା ଆତ୍ମସମ୍ମାନ-ରହିତ ସମର୍ପଣ ନୁହେଁ, ଏହା ହେଉଛି ସମଗ୍ରର ପାଦତଳେ ବ୍ୟକ୍ତି ଲୀନ ହୋଇଯିବା। ଆତ୍ମ-କେନ୍ଦ୍ରିତ ବ୍ୟକ୍ତିଙ୍କର ମନୋବୃତ୍ତି ଏହାହିଁ ହେବା କଥା, କାରଣ ଆତ୍ମିକ ଶୁଦ୍ଧତା ଏବଂ ସର୍ବଶକ୍ତିମାନ ଦୃଷ୍ଟିରୁ ମନ ବୁଦ୍ଧି ଏବଂ ଶରୀର ହେଉଛି ସତ୍ୟଙ୍କ ଉପରେ ବଳପୂର୍ବକ କରାଯାଇଥିବା ଅଧ୍ୟାସ।

ବ୍ୟକ୍ତିତ୍ୱ ଭାବରେ ଏହି କୃତ୍ରିମ ସତ୍ତାକୁ ନେଇ ଦମ୍ଭ କରିବା ଏବଂ ମିଥ୍ୟା ରୂପ ଭାବରେ ଏହାର ସ୍ୱୀକୃତି ପାଇଁ ସଂଘର୍ଷ କରିବା ହେଉଛି ବିନମ୍ରତା-ବିରୋଧୀ। ସ୍ୱାର୍ଥପର ଜୀବମାନେ ନିଜ ଭିତରେ ଲଢ଼େଇ କରିବାରୁ ଗର୍ବ, ଶତ୍ରୁତା, ଝଗଡ଼ାର ଭାବ ଏବଂ ଆତ୍ମ-ସମର୍ଥନ ଦେଖା ଦେଇଥାଏ। ସାଧୁଙ୍କ କପାଳରେ ଏହା ନଥାଏ। ସେ ବରାବର ସବୁ ପ୍ରକାରର କନ୍ଦଳରୁ ଦୂରରେ, ଜୀବନର ମହାନ ସଙ୍ଗୀତର ମଧୁର ଲୟରେ ଚିରସ୍ଥାୟୀ ଭାବରେ ବାସ କରନ୍ତି। ଏହିପରି ଭାବରେ ସର୍ବବ୍ୟାପୀ ସତ୍ୟ ସହିତ ସମସ୍ୱର ହୋଇ ବାସ କରୁଥିବାରୁ ତାଙ୍କର କୌଣସି ମାନସିକ ବିକ୍ଷେପ ହେବ ନାହିଁ, ମାନସିକ ସ୍ଥିରତା ତାଙ୍କ ପାଇଁ ସ୍ୱତଃସ୍ଫୂର୍ତ୍ତ ଏବଂ ସ୍ୱାଭାବିକ। ଭାରତରେ କୁହାଯାଏ ଯେ ପର୍ବତ ପଛେ ଟଳିଯିବ, କିନ୍ତୁ ମହାତ୍ମାଙ୍କ ମନରେ କିଛିହେଲେ ତରଙ୍ଗଟିଏ ସୃଷ୍ଟି କରିପାରିବ ନାହିଁ।

ଆତ୍ମରେ ନିମଗ୍ନ ହୋଇ ମହାତ୍ମା ଶୁଦ୍ଧ ଚେତନାରୁ ଉଦ୍ଭୁତ ଭାବାତୀତ ଆନନ୍ଦର ସମ୍ରାଟ ହୋଇ ଶାଶ୍ୱତ ଆନନ୍ଦରେ ବାସ କରନ୍ତି। ତାହା ହେଲେ ତାପରେ ସେ କେବେ ହେଲେବି ଇନ୍ଦ୍ରିୟ ବିଷୟ ଦ୍ୱାରା ଆକର୍ଷିତ ହେବେ ନାହିଁ। ଇଚ୍ଛା ପୂରଣ ପାଇଁ ତାଙ୍କର ଇନ୍ଦ୍ରିୟମାନେ ଆଉ କେବେବି ଇନ୍ଦ୍ରିୟ-ବିଷୟ ଖୋଜିବେ ନାହିଁ। ପେଟ ପୂରିଥିବା ମଣିଷ ବଳି ପଡ଼ି ଥିବା ଖାଦ୍ୟପାଇଁ ସାଙ୍ଗେ ସାଙ୍ଗେ କଦାପି ଚିନ୍ତା କରିବ ନାହିଁ। ଆନନ୍ଦର ସହିତ ପରିପୂର୍ଣ୍ଣ  ଭାବରେ ସନ୍ତୁଷ୍ଟ ହୋଇ ଆତ୍ମାନୁଭବୀ ବ୍ୟକ୍ତି ଆଉ କିଛି ହେଲେ ଚାହେଁ ନାହିଁ ଏବଂ ତାର ଇନ୍ଦ୍ରିୟମାନେ ପୂରା ନିୟନ୍ତ୍ରଣରେ ଥାଆନ୍ତି।

ବିଷୟସବୁ ଉପଭୋଗ କରିବା କଥା- ଏହି ମିଥ୍ୟା ବିଶ୍ୱାସ ଯୋଗୁଁ ଜଣେ ଅଜ୍ଞ ପାଇଁ ଇନ୍ଦ୍ରିୟମାନେ ସେମାନଙ୍କ ବିଷୟ-କ୍ଷେତ୍ରକୁ ବରାବର ଦଉଡ଼ି ଯାଆନ୍ତି। ଇନ୍ଦ୍ରିୟ ବିଷୟ ଇନ୍ଦ୍ରିୟ ବ୍ୟତୀତ  ଅନ୍ୟ କିଛି ନୁହେଁ; ଏବଂ ଇନ୍ଦ୍ରିୟ ମାନେ ମନର ଅଙ୍ଗ ପ୍ରତ୍ୟଙ୍ଗ ବ୍ୟତୀତ ଅନ୍ୟ କିଛି ନୁହେଁ ବୋଲି ଭ୍ରାନ୍ତ ଜୀବର ଜ୍ଞାନୋଦୟ ହେଲେ ଏବଂ ପରିଶେଷରେ ଏସବୁ  ଆତ୍ମା ଉପରେ ଏକ ଅଧ୍ୟାସ ବୋଲି  ଜାଣି ପାରିଲେ, ସଂକ୍ଷେପରେ ନିଜକୁ ସେ

ଆତ୍ମିକ-ଆନନ୍ଦ ଭାବରେ ଆବିଷ୍କାର କଲେ, ଇନ୍ଦ୍ରିୟ ଆନନ୍ଦର ଗଳିକନ୍ଦିରେ ଆଉ ଘୂରି ବୁଲିବ ନାହିଁ।

ଜ୍ଞାନଯୋଗ ସହିତ ହଠଯୋଗର ବୈଷମ୍ୟ ଦେଖାଇବା ପାଇଁ କେବଳ ଆତ୍ମାନୁଭବୀ ବ୍ୟକ୍ତି ପାଇଁ ଦମ ସ୍ୱାଭାବିକ ବୋଲି କୁହାଯାଇଛି। ଜ୍ଞାନଯୋଗରେ ବିବେକ ଏବଂ ଅନୁଭୂତି ଦ୍ୱାରା ପୂର୍ଣ୍ଣତା ପ୍ରାପ୍ତି ହେଉଥିବାବେଳେ ହଠଯୋଗରେ ପ୍ରାଣାୟମ ଦ୍ୱାରା ଇନ୍ଦ୍ରିୟ ମାନଙ୍କୁ ନିୟନ୍ତ୍ରଣ କରାଯାଏ। ଆତ୍ମାନୁଭୂତି ଦ୍ୱାରା ଲାଭ କରା ଯାଇଥିବା ଇନ୍ଦ୍ରିୟ ନିୟନ୍ତ୍ରଣ ତୁଳନାରେ ପ୍ରାଣାୟମ ଦ୍ୱାରା ଲାଭ କରାଯାଉଥିବା ଇନ୍ଦ୍ରିୟ ନିୟନ୍ତ୍ରଣ କଷ୍ଟସାଧ୍ୟ, ଅପୂର୍ଣ୍ଣ, କ୍ଷଣିକ ଏବଂ ପୁରାପୂରି କୃତ୍ରିମ।

**ସବସ୍ତୁ ସୋପଲମ୍ଭଂ ଚ ଦ୍ୱୟଂ ଲୌକିକମିଷ୍ୟତେ।**

**ଅବସ୍ତୁ ସୋପଲମ୍ଭଂ ଚ ଶୁଦ୍ଧଂ ଲୌକିକମିଷ୍ୟତେ ॥୮୭॥**

ଚ ସବସ୍ତୁ = ଏବଂ ବାହ୍ୟ ବା ଲୌକିକ ବିଷୟ, ସୋପଲମ୍ଭଂ = ସଂସ୍ପର୍ଶରୁ ଜାତ, ଦ୍ୱୟମ୍ = ଦ୍ୱୈତ, ଲୌକିକମ୍ = ଜାଗ୍ରତ ଅବସ୍ଥା ହେବା, ଇଷ୍ୟତେ = ପରିଚିତ, ଅବସ୍ତୁ = ଅସାର, କଳ୍ପିତ ଦ୍ରବ୍ୟ; ବାସ୍ତବରେ ନ ଥିବା ବାହ୍ୟ ଦ୍ରବ୍ୟ; ସୋପଲମ୍ଭମ୍ = ସଂସ୍ପର୍ଶରେ ଆସୁଥିବା ଧାରଣା, ଚ = ଏବଂ, ଶୁଦ୍ଧମ୍ = ଶୁଦ୍ଧ, ଲୌକିକମ୍ = ସୂକ୍ଷ୍ମ(ସ୍ୱପ୍ନ) ଅବସ୍ଥା; ଇଷ୍ୟତେ = ଜାଣିପାରେ, ଅନୁଭବ କରିପାରେ।

*ସାଧାରଣ (ଜାଗ୍ରତ) ଅବସ୍ଥାର ଅନୁଭୂତିକୁ ବେଦାନ୍ତ ଦ୍ୱୈତ ଅବସ୍ଥା କହେ। ଏହି ଅବସ୍ଥାରେ (ପ୍ରକ୍ଷେପିତ) ଧାରଣା ପ୍ରକୃତ ବିଷୟ (ବସ୍ତୁ) ସହ ଏକ ହୋଇ ରହେ। ଏହା ପୁଣି ଅନ୍ୟ ଏକ ସୂକ୍ଷ୍ମ (ସ୍ୱପ୍ନ) ଅନୁଭୂତିକୁ ଜାଣିପାରେ; ଏହି ଅନୁଭୂତିରେ କଳ୍ପନା, ପ୍ରକୃତରେ ନଥିବା ବିଷୟ (ବା ବସ୍ତୁ)ର ସଂସ୍ପର୍ଶରେ ଆସେ ॥୮୭॥*

ଏହି ଶ୍ଳୋକ ଏବଂ ପରବର୍ତ୍ତୀ ଶ୍ଳୋକରେ ଗୌଡ଼ପାଦ ବୌଦ୍ଧମାନଙ୍କର ଯୋଗାଚାର ମତର ପରିଚିତ ଭାଷା ବ୍ୟବହାର କରିଛନ୍ତି। ସେମାନଙ୍କର ଶାସ୍ତ୍ରରେ ଜାଗ୍ରତ ଅବସ୍ଥାକୁ ଲୌକିକ ଏବଂ ସ୍ୱପ୍ନ ଅବସ୍ଥାକୁ ଶୁଦ୍ଧ-ଲୌକିକ କୁହାଯାଏ। ମାଣ୍ଡୁକ୍ୟ ଉପନିଷଦରେ ଚେତନାର ଏହି ଦୁଇଟି ସ୍ତରର ଆଲୋଚନା ହୋଇ ଯାଇଛି ଏବଂ ଜାଗ୍ରତ ଓ ସ୍ୱପ୍ନ ଅବସ୍ଥା ଭାବରେ ଆମ ପାଇଁ ଏହି ଦୁଇଟି ପଦ ବ୍ୟାଖ୍ୟା କରାଯାଇଛି।

ଗୌଡ଼ପାଦଙ୍କର ସମାଲୋଚକମାନେ ବୌଦ୍ଧ ଦର୍ଶନର ଏହି ଦୁଇଟ ମୁଖ୍ୟ ଉକ୍ତିର ଉଦ୍ଧାର କରି କାରିକାର ରଚୟିତା ବୌଦ୍ଧ ବୋଲି ଏକ କୌତୁକିଆ ସିଦ୍ଧାନ୍ତ ସାବ୍ୟସ୍ତ

କରିବାର ଚେଷ୍ଟା କରିଛନ୍ତି। ଶ୍ରୀ ଶଙ୍କରଙ୍କ ଟୀକା ସହିତ କାରିକା ଅଧ୍ୟୟନ କରୁଥିବା ବୁଦ୍ଧିମାନ ଶିଷ୍ୟ ପାଇଁ ଏହା ଗ୍ରହଣୀୟ ନୁହେଁ। କୌଣସି ନିର୍ଦ୍ଦିଷ୍ଟ ଚିନ୍ତକ ବ୍ୟବହାର କରିଥିବା ପଦକୁ ଅନ୍ୟ ଚିନ୍ତକମାନେ ମୂଳ ଅର୍ଥରୁ ସାମାନ୍ୟ ସ୍ୱତନ୍ତ୍ର ଗୁଣ ନିର୍ଦ୍ଦେଶ କରି ବ୍ୟବହାର କରି ପାରନ୍ତି। ବୌଦ୍ଧ ଦାର୍ଶନିକମାନେ ମଧ୍ୟ ଏହି ନିୟମର ଅନୁସରଣ କରିଛନ୍ତି। ପୂର୍ବରୁ ଥିବା ଅନେକ ପ୍ରାଚୀନ ସାହିତ୍ୟରୁ ସେମାନଙ୍କର ଅନେକ ପଦ ନିଆ ଯାଇଛି। ଅବଶ୍ୟ ସାମାନ୍ୟ ପରିବର୍ତ୍ତିତ ଗୁଣ ନିର୍ଦ୍ଦେଶ କରିବା ପାଇଁ ସେମାନେ ତାହା ବ୍ୟବହାର କରିଛନ୍ତି।

ଚେତନାର ଉଭୟ ଲୌକିକ ଏବଂ ଶୁଦ୍ଧ ଲୌକିକ ଅବସ୍ଥାରେ ଦ୍ରଷ୍ଟାର ଦୃଶ୍ୟ ସହିତ ସମ୍ପର୍କ ଥାଏ, କିନ୍ତୁ ଏକମାତ୍ର ପ୍ରଭେଦ ହେଲା ଜାଗ୍ରତ ଅବସ୍ଥାରେ ଜାଗ୍ରତ ପୁରୁଷ ଦେଖୁଥିବା ସ୍ଥୁଳ ବିଷୟ ସତ୍ୟ ପରି ମନେ ହୁଏ, କିନ୍ତୁ ସ୍ୱପ୍ନ-ଦ୍ରଷ୍ଟା ଦେଖୁଥିବା ବିଷୟ ସ୍ୱପ୍ନ-ମନର କଳ୍ପନା ମାତ୍ର।

**ଅବସ୍ତ୍ୱନୁପଲମ୍ଭଂ ଚ ଲୋକୋତ୍ତରମିତି ସ୍ମୃତମ୍ ।**

**ଜ୍ଞାନଂ ଜ୍ଞେୟଂ ଚ ବିଜ୍ଞେୟଂ ସଦା ବୁଦ୍ଧୈଃ ପ୍ରକୀର୍ତ୍ତିତମ୍ ॥୮୮॥**

ଚ ଅବସ୍ତୁ = ବାହ୍ୟ ସଂସ୍ପର୍ଶରୁ ମୁକ୍ତ ଅର୍ଥାତ୍ ଅବାସ୍ତବ ପଦାର୍ଥ; ଅନୁପଲମ୍ଭମ୍ = ଅନୁଭୂତି ବିହୀନ, ଆନ୍ତରିକ ଚିନ୍ତାରୁ ମୁକ୍ତ; ଲୋକୋତ୍ତରମ୍ = ସାଧାରଣର ଅତୀତ ଅର୍ଥାତ୍ ସୁଷୁପ୍ତି ଅବସ୍ଥା; ସ୍ମୃତମ୍ ଇତି = ବିଚାର କରାଯାଏ, ଜ୍ଞାନମ୍ = ଜ୍ଞାନ, ଜ୍ଞେୟମ୍ = ଜ୍ଞେୟ, ଜାଣିବା ବିଷୟ; ଚ ବିଜ୍ଞେୟଂ = ଏବଂ ଅନୁଭୂତିର ବିଷୟ ଅର୍ଥାତ୍ ପରମ ଚୈତନ୍ୟ ବା ଚେତନା ବା ଆତ୍ମା, ସଦା = ସର୍ବଦା, ବୁଦ୍ଧୈଃ = ବୁଦ୍ଧିମାନ୍ ବ୍ୟକ୍ତି, ଜ୍ଞାନୀଜନ; ପ୍ରକୀର୍ତ୍ତିତମ୍ = କୁହନ୍ତି।

*ଚେତନାର ଆଉ ଗୋଟିଏ ଅବସ୍ଥା ଅଛି ବୋଲି ଜ୍ଞାନୀଜନ କହନ୍ତି। ଏହି ଅବସ୍ଥା ବାହ୍ୟ ସଂସ୍ପର୍ଶରୁ ମୁକ୍ତ ଏବଂ ଆନ୍ତରିକ ଭାବନାରୁ ମଧ୍ୟ ମୁକ୍ତ। ଏହି ଅବସ୍ଥା ସମସ୍ତ ଭୌତିକ ଅନୁଭୂତିର ଅତୀତ। ଜ୍ଞାନ, ଜ୍ଞେୟ ଏବଂ ବିଜ୍ଞେୟ ତିନିଗୋଟିକୁ ଜ୍ଞାନୀଜନ ପରମ ସତ୍ୟ ଭାବରେ ବର୍ଣ୍ଣନା କରିଛନ୍ତି ॥୮୮॥*

ସ୍ୱପ୍ନହୀନ ନିଦ୍ରାକୁ ଦର୍ଶାଇବା ପାଇଁ ବୌଦ୍ଧମାନଙ୍କର ଯୋଗାଚାର ମତ ଲୋକୋତ୍ତର ଶବ୍ଦର ବ୍ୟବହାର କରିଛନ୍ତି। ସେହି ଅବସ୍ଥାରେ ସୁଷୁପ୍ତ ଜାଗ୍ରତ ଅବସ୍ଥାର ବିଷୟ ବା ସ୍ୱପ୍ନର ଅନୁଭବ କରେ ନାହିଁ। ମୋଟ ଉପରେ କୌଣସି ପଦାର୍ଥର ସଚେତନ ସଂସ୍ପର୍ଶ ସେ ଆଦୌ ଅନୁଭବ କରେ ନାହିଁ। ଉପରେ ଉଲ୍ଲେଖ କରାଯାଇଥିବା ତିନିଗୋଟି ଅବସ୍ଥା

ଜ୍ଞାନର ସମସ୍ତ ବିଷୟ ଯୋଗାଇଥାଏ। ଲୌକିକ ଘଟଣାରେ ଏହି ତିନିଗୋଟି ଅବସ୍ଥାର ସମସ୍ତ ଅନୁଭୂତି ଏକତ୍ର ଭାବରେ କୌଣସି ଜୀବର ଜୀବନ ଗଠନ କରି ଥାଆନ୍ତି। ନିର୍ବିକଳ୍ପ ଜ୍ଞାନ ବା ଆତ୍ମା ଏହି ଜ୍ଞାନ ଯୋଗାଇ ଥାଆନ୍ତି ଏବଂ ଚେତନାର ଏହି ତିନୋଟି ଅବସ୍ଥାର ପଥ ଏବଂ ଅନୁଭୂତି ଆଲୋକିତ କରି ଥାଆନ୍ତି ଏବଂ ଜ୍ଞାନ ଦେଇ ଥାଆନ୍ତି। ଏହା ଜାଣିଲେ ବେଦାନ୍ତିକ ସାଧନା ପରିପୂର୍ଣ୍ଣ ହୁଏ।

ବେଦାନ୍ତ ଏହି ମହାନ ସତ୍ୟର ଇଙ୍ଗିତ କରେ। ନିଜନିଜ ଭିତରେ ଅସୀମ ତର୍କ କରୁଥିବା ଦର୍ଶନର ଅନ୍ୟସବୁ ମତ ହେଉଛି ଚେତନାର ଏହି ତିନିଗୋଟି ସ୍ତର ସହିତ ତାଦାତ୍ମ୍ୟର ଦୃଷ୍ଟିରୁ ସତ୍ୟଙ୍କର ଧାରଣା। ଏହି ତିନିଗୋଟିର ଅତୀତ ହେବା ହେଉଛି ବେଦାନ୍ତ ରାଜ୍ୟରେ ପ୍ରବେଶ କରିବା। ଏହି ତୂରୀୟ ଅବସ୍ଥା- ନିର୍ବିକଳ୍ପ ଜ୍ଞାନ ହେଉଛି ଅଦ୍ୱୈତ ଅଜ ଆତ୍ମା। ଆତ୍ମାନୁଭବ କରିଥିବା ବ୍ୟକ୍ତି ଅଜ୍ଞାନର ସ୍ଥୁଳ ବିଷୟରୁ (ଜ୍ଞାନରୁ) ଆରମ୍ଭ କରି ବିଜ୍ଞେୟ ପର୍ଯ୍ୟନ୍ତ ସମସ୍ତ ଲକ୍ଷଣ ବର୍ଣ୍ଣନା କରିଛନ୍ତି। ଏହାହିଁ ବ୍ରହ୍ମବିଦ୍ୟା ଶାସ୍ତ୍ରର ପ୍ରସଙ୍ଗ।

**ଜ୍ଞାନେ ଚ ତ୍ରିବିଧେ ଜ୍ଞେୟେ କ୍ରମେଣ ବିଦିତେ ସ୍ୱୟମ୍ ।**

**ସର୍ବଜ୍ଞତା ହି ସର୍ବତ୍ର ଭବତୀହ ମହାଧିୟଃ ॥୮୯॥**

**ଜ୍ଞାନେ** = **ଜ୍ଞାନର**, ତ୍ରିବିଧେ = ତିନି ପ୍ରକାର, ଜ୍ଞେୟେ = ଏବଂ (ତିନି ପ୍ରକାରର)ଜ୍ଞେୟ; କ୍ରମେଣ = କ୍ରମ ଅନୁସାରେ, ବିଦିତେ = ପରିଚିତ, ସ୍ୱୟମ୍ = ସ୍ୱତଃସ୍ଫୁର୍ତ୍ତଭାବେ, ନିଜଦ୍ୱାରା; **ସର୍ବଜ୍ଞତା** = ସର୍ବଜ୍ଞତା, ହି = ପ୍ରକୃତରେ, ସର୍ବତ୍ର = ସର୍ବତ୍ର, ଭବତି = ଲାଭ କରେ; ଇହ = ଏଠାରେ, ଏହି ଜନ୍ମରେ; ମହାଧିୟଃ = ଅତି ବୁଦ୍ଧିମାନ ବ୍ୟକ୍ତି।

*ଜ୍ଞାନ ଏବଂ ତିନି ପ୍ରକାରର ଜ୍ଞେୟ କ୍ରମ ଅନୁସାରେ ଜାଣି ପାରିଲେ ଅତି ବୁଦ୍ଧିମାନ ବ୍ୟକ୍ତି ସ୍ୱତଃସ୍ଫୁର୍ତ୍ତଭାବେ ସର୍ବତ୍ର ଓ ସବୁକିଛି ବସ୍ତୁରେ ଥିବା ଜ୍ଞାନ ଏହି ଜନ୍ମରେ ହିଁ ଲାଭ କରେ ॥୮୯॥*

କାରିକାରେ ଏହି ପ୍ରେରଣା ଦାୟକ ଶ୍ଳୋକଟି ସୌନ୍ଦର୍ଯ୍ୟ ଏବଂ ଐଶ୍ୱର୍ଯ୍ୟରେ ବାସ୍ତବରେ ଅନୁକରଣୀୟ। ଯେଉଁ ଅଭ୍ୟାସ ଦ୍ୱାରା ମାଣ୍ଡୁକ୍ୟ ଉପନିଷଦରେ ନିର୍ଦ୍ଦେଶ କରା ଯାଇଥିବା ପୂର୍ଣ୍ଣତା ଲାଭ କରିହେବ, ଏହା ଆମକୁ ତା'ର ସୂଚନା ଦିଏ। ସାଧକଠାରେ ଥିବା ଅନୁଭବକର୍ତ୍ତା ବା ଜୀବାତ୍ମାକୁ ପ୍ରଥମେ କ୍ରମ ଅନୁସାରେ ଜାଣିବା ପାଇଁ ସାଧକକୁ ଉପଦେଶ ଦିଆଯାଇଛି। ଏହି ଅନୁଭବକର୍ତ୍ତା ଏକ ସମୟରେ ଜାଗ୍ରତ ପୁରୁଷ ହୋଇଥିବାବେଳେ ଅନ୍ୟ ଏକ ସମୟରେ ସ୍ୱପ୍ନଦ୍ରଷ୍ଟା ଏବଂ ଅନ୍ୟଏକ ସମୟରେ ସୁଷୁପ୍ତ

ହୋଇଥାଏ । ଚେତନାର ଏହି ତିନିଗୋଟି କ୍ଷେତ୍ରରେ ମିଛ ଖେଳ ଖେଳୁଥିବା ନିଜ ସମ୍ବନ୍ଧରେ ସଂପୂର୍ଣ୍ଣ ସଚେତନ ହେବା ପାଇଁ ଏବଂ ନିଜ ବିଷୟରେ ଗଭୀର ଜ୍ଞାନ ଲାଭ କରିବା ପାଇଁ ଏଠାରେ ଉପଦେଶ ଦିଆଯାଇଛି । 'ଓଁ' ର 'ଅ' ଉପରେ ଜାଗ୍ରତ 'ଉ' ଉପରେ ସ୍ୱପ୍ନଦ୍ରଷ୍ଟା 'ମ' ଉପରେ ସୁଷୁପ୍ତର ଅଧ୍ୟାସ କରି ଓଁ ଉପାସନାର ଉପାୟର ଆଲୋଚନା କରିବାବେଳେ ଉପନିଷଦ୍ ବିଭାଗରେ ଏହାର ବ୍ୟାଖ୍ୟା କରାଯାଇ ସାରିଛି ।

ଜୋର ଦେବାପାଇଁ ଗୌଡ଼ପାଦ ଏଠାରେ ତାର ପୁନରାବୃତ୍ତି କରିଛନ୍ତି । ଏକାଗ୍ରତା ପାଇଁ ଅନ୍ୟ କୌଣସି ରୂପ ବା ଗୁଣର ବିଷୟ ନଥିବା ଶୁଦ୍ଧ ବେଦାନ୍ତୀ ପାଇଁ ଏହି ସାଧନାର ପରମ ମହତ୍ତ୍ୱ ରହିଛି । ବିବେକ ସହିତ ନିରବଚ୍ଛିନ୍ନ ଭାବେ ଅଭ୍ୟାସ କରୁଥିବା ସାଧକ ତାଠାରେ ଥିବା ଜୀବ ବିଷୟରେ ପୂର୍ଣ୍ଣ ସଚେତନ ହୁଏ । ଏହି ଜୀବ ହିଁ ଜାଗ୍ରତ,ସ୍ୱପ୍ନ ଏବଂ ସୁଷୁପ୍ତ ଅବସ୍ଥାରେ ବିଭିନ୍ନ ଖେଳ ଖେଳେ । ପରିଶେଷରେ ସେ ନିଜ ଶୁଦ୍ଧ ତୂରୀୟ ଅବସ୍ଥାର ଆବିଷ୍କାର କରେ । ଅନୁଭୂତିର ତିନି ଅବସ୍ଥା ବିଷୟରେ ସଂପୂର୍ଣ୍ଣରୂପେ ସଚେତନ ହେବାର ଚେଷ୍ଟା କରିବା ହିଁ ସାଧକକୁ ଅଧିକରୁ ଅଧିକ ବୁଦ୍ଧିମାନ ଏବଂ ପ୍ରକଟ କରିବାର ଏକ ମହତ୍ତ୍ୱପୂର୍ଣ୍ଣ ପ୍ରଶିକ୍ଷଣ । ତାର ମନ ଶାନ୍ତ ଏବଂ ବୁଦ୍ଧି ସୁତୀକ୍ଷଣ ହୋଇଯାଏ । ତିନି ସ୍ତରରେ ଅନୁଭବ କର୍ତ୍ତାକୁ ବୁଝିବାକୁ ଏବଂ ବିବେକ କରିବାକୁ ଗଲେ ଗୋଟିଏ ତୀକ୍ଷ୍ଣ ବୁଦ୍ଧି ଏହି ତିନିଗୋଟି ସ୍ତରରେ ଏକ ସାଧାରଣ ଅବସ୍ଥାର ଆବିଷ୍କାର କରେ । ଏହା ହିଁ ହେଉଛି ଚତୁର୍ଥ ବା ଦେବତ୍ୱର ଅବସ୍ଥା ।

ବୁଦ୍ଧିମତ୍ତା ସହିତ ଧ୍ୟାନ ଅଭ୍ୟାସ କରୁଥିବା ବେଦାନ୍ତୀ, ମୃତ୍ୟୁ ପରେ କୌଣସି ଠାରେ ନୁହେଁ, ଏହିଠାରେ ଏବଂ ବର୍ତ୍ତମାନ ହିଁ ଈଶ୍ୱରତ୍ୱରେ ପଦାର୍ପଣ କରେ । ପୂର୍ଣ୍ଣତା ମୃତ୍ୟୁ ପରର ଅବସ୍ଥା ନୁହେଁ । ତାହା ଏହିଠାରେ ଏବଂ ବର୍ତ୍ତମାନ । ପ୍ରତ୍ୟେକ ଜୀବନ୍ତ ମାନବର ଏହା ଜନ୍ମଗତ ଅଧିକାର । ସାଧକ ଯେଉଁ ପରିମାଣର ଆନ୍ତରିକ ପ୍ରଚେଷ୍ଟା କରି ନିଜକୁ ଉପଯୁକ୍ତ ଭାବରେ ନିଯୋଗ କରିବ, ଈଶ୍ୱରତ୍ୱ ଲାଭ କରିବାର ସମୟ-ସୀମା ତା ଉପରେ ସେତିକି ନିର୍ଭର କରେ । ପୂର୍ଣ୍ଣତାର ପ୍ରସାଦରେ ନିୟମିତତା, ନିଷ୍ଠାପରତା ଏବଂ ଯଥାର୍ଥବୋଧ ହେଉଛି ତିନିଗୋଟି ଭିତ୍ତିପ୍ରସ୍ତର ।

ଶୁଦ୍ଧ-ଚୈତନ୍ୟର ଏହି ତୂରୀୟ ଅବସ୍ଥାରେ ପଦାର୍ପଣ କରି ଆତ୍ମାନୁଭବୀ ମହାତ୍ମା ସ୍ୱାଭାବିକଭାବେ ଆତ୍ମାଙ୍କର ସ୍ୱରୂପ ଲାଭ କରି ଆତ୍ମା ହୋଇ ଯାଆନ୍ତି । ସେ ହିଁ ହେଉଛି ପ୍ରତ୍ୟେକଙ୍କଠାରେ, ସବୁ ସମୟରେ ଏବଂ ସବୁ ସ୍ଥାନରେ ଜ୍ଞାତା ।

**ହେୟଜ୍ଞେୟାପ୍ୟବାକ୍ୟାନି ବିଜ୍ଞେୟାନ୍ୟଗ୍ରୟାଣତଃ ।**

**ତେଷାମନ୍ୟତ୍ର ବିଜ୍ଞେୟାଦୁପଲମ୍ଭସ୍ତ୍ରିଷୁ ସ୍ମୃତଃ ॥୯୦॥**

ହେୟ = ଉପେକ୍ଷା କରିବା ପଦାର୍ଥ, ତ୍ୟକ୍ତ; ଜ୍ଞେୟ = ଜାଣିବା ବା ଅନୁଭବ କରିବା ବସ୍ତୁ; ଆପ୍ୟ = ଗ୍ରହଣୀୟ, ବାକ୍ୟାନି = ଅଫଳପ୍ରସୁ ଚିନ୍ତା, ବିଜ୍ଞେୟାନି = ଯାହା ଭଲଭାବେ ଜାଣିବା ଦରକାର, ଅଗ୍ରୟାଣତଃ = ଏକଦମ ପ୍ରଥମରେ, ତେଷାମ୍ = ସେମାନଙ୍କର, ସେସବୁ ମଧ୍ୟରେ; ଅନ୍ୟତ୍ର = ଅନ୍ୟତ୍ର, ବିଜ୍ଞେୟାତ୍ = ଜାଣିବାକୁ ଥିବା, (ବ୍ରହ୍ମ); ଉପଲମ୍ଭଃ = କେବଳ କଳ୍ପନାରେ ଥାଏ, ତ୍ରିଷୁ = ତିନି, ସ୍ମୃତଃ = ବିଚାର କରାଯାଏ ।

*ସବୁଠାରୁ ଆରମ୍ଭରେ ଯେଉଁ ଚାରିଗୋଟି ଜିନିଷ ଜାଣିବା କଥା ତାହା ହେଲା -(୧)ହେୟ (୨)ଜ୍ଞେୟ, (୩)ଗ୍ରହଣୀୟ, (୪) ଅଫଳପ୍ରସୂ ଭାବନା । ଯାହା ଜ୍ଞେୟ (ଅର୍ଥାତ୍ ବ୍ରହ୍ମ)- ତା ବ୍ୟତୀତ ଅନ୍ୟ ଚାରିଗୋଟି ବିଷୟ କେବଳ କଳ୍ପନାରେ ହିଁ ଥାଏ ॥୯୦॥*

ଏହା ଏକ ଆପାତ ବିରୋଧୀ ସତ୍ୟ ଯେ ନିଜର ଲକ୍ଷ୍ୟସ୍ଥଳରେ ପହଞ୍ଚିବା ପାଇଁ ଉତ୍କଣ୍ଠିତ ସାଧକ ସବୁ କଥା ମନେ ରଖେ, କିନ୍ତୁ ସାଧାରଣତଃ ତାର ସାଧାରଣ ଜ୍ଞାନ ବ୍ୟବହାର କରିବାକୁ ଭୁଲିଯାଏ । ଏହା ହିଁ ଧର୍ମକୁ ଅପାରଗ କରିଛି । ତେଣୁ ଗୁରୁ ଏହା ତାଙ୍କର କର୍ତ୍ତବ୍ୟ ବୋଲି ବିଚାର କରିବେ - ଉଚ୍ଚତମ ଦାର୍ଶନିକ ସତ୍ୟ ସମ୍ବନ୍ଧରେ ଶିଷ୍ୟଙ୍କୁ ସେ ଉପଦେଶ ତ ଦେବେ, ତାସହିତ ଶୁଦ୍ଧ ସାଧାରଣ ଜ୍ଞାନର ଧାରଣା ମନେ ରଖିବା ପାଇଁ ମଝିରେ ମଝିରେ ଉପଦେଶ ଦେବେ, ଯେପରିକି ଶିଷ୍ୟ ବୋକାମି କରି ବସିବେ ନାହିଁ । ଜୀବନରେ ଯେ କୌଣସି ଗୋପନୀୟ ଲକ୍ଷ୍ୟ ହାସଲ କରିବାକୁ ହେଲେ, ତାହା ଘରୋଇ, ରାଜନୈତିକ, ଅର୍ଥନୈତିକ, ଜାତୀୟ ବା ଅନ୍ତର୍ଜାତୀୟ କ୍ଷେତ୍ରରେ କାର୍ଯ୍ୟ ହେଉ ପଛେ - ବ୍ୟକ୍ତିଗତ ବା ସାମୂହିକ ଭାବରେ ହେଉ, ଏହି ଚାରିଗୋଟି ବିଷୟ ସମ୍ବନ୍ଧରେ କାର୍ଯ୍ୟ ଭଲ ଭାବରେ ଜାଣିବା ଦରକାର- ସେମାନେ ତାଙ୍କର ଲକ୍ଷ୍ୟ(ଗନ୍ତବ୍ୟ) ଜାଣିବା ଦରକାର, ତାଙ୍କର ଇପ୍‌ସିତ ଲକ୍ଷ୍ୟ ଲାଭ କରିବା ବିରୁଦ୍ଧରେ କେଉଁସବୁ ମୂଲ୍ୟବୋଧ ରହିଛି ତାହା ଜାଣିବା ଦରକାର, ତାଙ୍କର ଲକ୍ଷ୍ୟ ପୂର୍ଣ୍ଣ କରିବା ପାଇଁ ସେମାନେ କେଉଁ ମୂଲ୍ୟବୋଧର ବିକାଶ କରିବା ଦରକାର ଏବଂ ପରିଶେଷରେ ବର୍ତ୍ତମାନ ତାଙ୍କଠାରେ ଥିବା ସଂସ୍କୃତିର କେଉଁ କୁଗୁଣକୁ ଗଭୀର ଅଭ୍ୟାସ ଦ୍ୱାରା ଅଫଳପ୍ରସୂ କରିବାକୁ ହେବ ତାହା ଜାଣିବା ଦରକାର ।

ବାସ୍ତବରେ ଜୀବନଧାରଣ କରିବାର ସମସ୍ତ ଯୋଜନା, ସ୍ୱାଧୀନତାର ସନନ୍ଦ ଅଭିବୃଦ୍ଧିର କାର୍ଯ୍ୟକ୍ରମ, ସରକାରଙ୍କ ଅଙ୍ଗ - ଏହି ଚାରିଗୋଟି ବିଷୟକୁ ବିଚାର କରିବା କଥା ଏବଂ ଏହା ମଧ୍ୟରୁ ଯେ କୌଣସି ଗୋଟିଏକୁ ଯେଉଁ ପରିମାଣରେ ହେଳା କରାଯିବ ତାହାର କାର୍ଯ୍ୟକଳାପ ସେହି ପରିମାଣରେ ଅସଫଳ ହେବ। ସଫଳତାର ଏହି ଚାରିଗୋଟି ମାର୍ଗକୁ ଯେଉଁ ଯୋଜନା ଦକ୍ଷତାର ସହିତ ସମ୍ୟକରୂପେ ବିଚାରକୁ ନେବ, ତାହା ହିଁ ସଫଳ ହେବ।

ଆଧ୍ୟାତ୍ମିକ ପୂର୍ଣ୍ଣତାର ସାଧକ ଭାବରେ ଏହି ଶ୍ଳୋକଟିକୁ ଆମର ବ୍ୟାପକ ଦୃଷ୍ଟିରୁ ଦେଖିବା ଦରକାର ନାହିଁ, ତୁମମାନଙ୍କର ଦୃଷ୍ଟି ଆକର୍ଷଣ କରିବାକୁ ହିଁ କେବଳ ଇଚ୍ଛାକରି ମୁଁ ଏ ବିଷୟରେ ପ୍ରବଚନ ଦେଉଛି। ତୁମେମାନେ ଭାବିବା ଉଚିତ୍ ନୁହେଁ ଯେ, ଭାରତର ବୃଦ୍ଧ ଦାର୍ଶନିକମାନେ ଥିଲେ ଅପାରଗ ମଣିଷ- ସେମାନେ ସଫଳ ବୈଷୟିକ ଜଗତର ଯୋଜନା କରିପାରୁ ନଥିଲେ। ଭାରତର ସମାଲୋଚକମାନଙ୍କର ବିଶ୍ୱାସର ଏହା ନକଲ; ବିଶେଷ କରି ଆମ ପିଢ଼ିରେ ଯେତେବେଳେ କି ଆମେ ଆମ ସଂସ୍କୃତିର ମହାନତା ବା ପାଶ୍ଚାତ୍ୟ ସଂସ୍କୃତି ର ଉତ୍ତମତା ଆହରଣ କରି ନାହୁଁ। ମାନସିକ ଏବଂ ବୌଦ୍ଧିକ ସ୍ତରରେ ଆମେ ପୃଥିବୀର ସାଂସ୍କୃତିକ କାର୍ଯ୍ୟକଳାପର ପରିତ୍ୟକ୍ତକୁ ହିଁ ଆହରଣ କରୁଛୁ। ତେଣୁ ଆମ ପିଢ଼ିର କୌଣସି ବଂଶମର୍ଯ୍ୟାଦା ନାହିଁ ଏବଂ ସ୍ୱାସ୍ଥ୍ୟ ନାହିଁ; ଶାରୀରିକ, ମାନସିକ ଏବଂ ବୌଦ୍ଧିକ ସ୍ତରରେ ଆମେ ସାଂସ୍କୃତିକ ରୋଗରେ ପୀଡ଼ିତ।

ଆମର କ୍ଷତାକ୍ତ ବ୍ୟକ୍ତିତ୍ୱ ଆମକୁ ରୋଗଗ୍ରସ୍ତ ହୃଦୟ ଏବଂ ବିଦୀର୍ଣ୍ଣ ବୁଦ୍ଧିର ଯୁଗ ଦେଇଛି। ଏହି ଶ୍ଳୋକଟି ଆମକୁ ଏତିକି ଅନ୍ତତଃ ବୁଝାଇ ଦେବ ଯେ, ନିର୍ବିକଳ୍ପ ଆଦର୍ଶ ବିଷୟରେ ଆଲୋଚନା କରୁଥିଲେ ମଧ୍ୟ ଗୌଡ଼ପାଦ ଏଠାରେ ଆମର ଚିନ୍ତାର ଏକ ପରିକଳ୍ପ ଦେଉଛନ୍ତି। ଏହାର ଉପଯୁକ୍ତ ପ୍ରୟୋଗ କଲେ ଏହା ପୀଡ଼ିତ ଜଗତକୁ ଆନନ୍ଦମୟ ଏବଂ ଶାନ୍ତ ଅବସ୍ଥାର ଏକ ବୃହତ୍ତର କ୍ଷେତ୍ର ପାଇଁ ସୁବର୍ଣ୍ଣ ଚାବି ଭାବରେ କାମ କରିବ। ଆମେ ବର୍ତ୍ତମାନ ତାର ଦାର୍ଶନିକ ଦିଗଟି ବିଚାର କରିବା।

ପୂର୍ବରୁ ଦର୍ଶାଯାଇଛି ଯେ ଜୀବନର ଲକ୍ଷ୍ୟ ହେଲା ଚେତନାର ଚତୁର୍ଥ ଅବସ୍ଥା ବା ଈଶ୍ୱର ଚେତନା। ସେହି ଲକ୍ଷ୍ୟରେ ପଦାର୍ପଣ କରିବା ପାଇଁ ଆମେ ଚତୁର୍ଥ ଅବସ୍ଥାର ସିଦ୍ଧାନ୍ତ ବିଷୟରେ ତ ଜାଣିବା, ଏହା ପାଇଁ ଜୀବନର ବିପଜ୍ଜନକ ମୂଲ୍ୟବୋଧକୁ ଆଡ଼େଇ ଦେବାର ଅଭ୍ୟାସ ମଧ୍ୟ କରିବା ଏବଂ ଅଧ୍ୟବସାୟ, ଅଭ୍ୟାସ, ନିରବଚ୍ଛିନ୍ନ ଅନୁରକ୍ତି ମାଧ୍ୟମରେ ସତ୍ୟର ମଣ୍ଡନ କରି କୃତ୍ରିମ ଯୋଗର ଖଣ୍ଡନ କରିପାରିବା। ଜୀବନର ଯେଉଁ

ମୂଲ୍ୟବୋଧର ବିକାଶ କରାଯିବା କଥା, ଅଭ୍ୟାସ ଦ୍ୱାରା ସେ ବିଷୟରେ, ସୁବିବେଚିତ ଆତ୍ମ-ନିୟୋଗ ମାଧ୍ୟମରେ ମନର ବାସନାର ଗଣ୍ଠି କିପରି ଖୋଲିବାକୁ ହେବ, ସେ ବିଷୟରେ ଜାଣିବା ଦରକାର ।

ଚେତନାର ତିନିଗୋଟି ସ୍ତରକୁ ଆଡ଼େଇ ଦେବା କଥା । ଏହି ତିନିଗୋଟି ସ୍ତର ସହିତ ତାଦାତ୍ମ୍ୟ କରି ଆମର ଅହଂ ଭାବର ବିକାଶ ହୁଏ, "ଯେଉଁ ବିଷୟ ଅନୁଭବ କରିବା କଥା" ତାହା ହେଲା ଚତୁର୍ଥ ଅବସ୍ଥା । ଜାଗ୍ରତ ଏବଂ ବୁଦ୍ଧିମତ୍ତାର ସହିତ ନିମ୍ନ ତିନିଗୋଟି ସ୍ତରର ଅତୀତ ହେଲେ ଏହି ଅବସ୍ଥାରେ ପଦାର୍ପଣ କରି ହେବ । ଜ୍ଞାନ, ସରଳତା, ନୀରବତା ଲାଭ କରିବାକୁ ହେବ ଏବଂ ଯେଉଁ ସବୁ ଭାବନାକୁ ଅକାମୀ କରିବାକୁ ହେବ, ତାହା ହେଲା- ଆସକ୍ତି, ଘୃଣା, କାମନା ଇତ୍ୟାଦି ପରି ଆମଠାରେ ଥିବା ପାଶବିକ ପ୍ରବୃତ୍ତି ।

ଶ୍ରୀଶଙ୍କରଙ୍କର ମତରେ 'ଜ୍ଞାନ', ବାଳସୁଲଭ ସରଳତା ଏବଂ ନୀରବତା ହାସଲ କରିବାକୁ ହେବ । ଆଧ୍ୟାତ୍ମିକ ଅନୁଭୂତି ପାଇଁ ଏସବୁକୁ ଅତି ଗୁରୁତ୍ୱପୂର୍ଣ୍ଣ ଅତ୍ୟାବଶ୍ୟକ ସାଧନ ଭାବରେ ଗ୍ରହଣ କରାଯାଏ । ଏଠାରେ 'ଜ୍ଞାନ' ର ଅର୍ଥ ହେଲା - ଭକ୍ତି, ଗୁରୁସେବା ଏବଂ ବାରମ୍ବାର ଗୁରୁବଚନ ଶ୍ରବଣ ମାଧ୍ୟମରେ ବିବେକର ବୌଦ୍ଧିକ କ୍ଷମତାର ବିକାଶ - ପରିଶେଷରେ ଏହି କଥା ଜାଣିବା ପାଇଁ ଯେ, ସମଗ୍ର ଶାସ୍ତ୍ର ଯେଉଁ ଲକ୍ଷ୍ୟସ୍ଥଳ ସୂଚାଉଛନ୍ତି, ତାହା ହେଉଛି ଅଦ୍ୱୈତ ଏବଂ ଶାଶ୍ୱତ । ଏଠାରେ ସରଳତାର ଅର୍ଥ ହେଲା - ଅତି ନ୍ୟୂନ୍ୟ ପରିମାଣରେ ଥିବା ଅହଂକାର, ଗର୍ବ, ଆସକ୍ତି ଏବଂ ଘୃଣାର ବାଳସୁଲଭ ସ୍ଥିତି । ନୀରବତାର ଅର୍ଥ ହେଲା -ପ୍ରକୃତ ଧ୍ୟାନର ବିରଳ ମୁହୂର୍ତ୍ତରେ ଲାଭ କରାଯାଉଥିବା ମନର ଆନ୍ତରିକ ନୀରବତା ।

**ପ୍ରକୃତ୍ୟାଽକାଶବଜ୍‌ଜ୍ଞେୟାଃ ସର୍ବେ ଧର୍ମା ଅନାଦୟଃ ।**
**ବିଦ୍ୟତେ ନ ହି ନାନାତ୍ୱଂ ତେଷାଂ କ୍ୱଚନ କିଞ୍ଚନ ॥୯୧॥**

ପ୍ରକୃତ୍ୟା = (ସେମାନଙ୍କର) ସ୍ୱଭାବ ଦ୍ୱାରା, ଆକାଶବତ୍ = ଆକାଶ ପରି (ଅନାସକ୍ତ); ଜ୍ଞେୟାଃ = ଜାଣିବାକୁ ହେବ, ସର୍ବେ ଧର୍ମାଃ = ସମସ୍ତ ସତ୍ତା (ଜୀବ); ଅନାଦୟଃ = ଅନାଦି, ବିଦ୍ୟତେ = ଦେଖାଯାଏ, ଥାଏ; ହି = ବାସ୍ତବରେ, ନ ନାନାତ୍ୱମ = ନାନା ପ୍ରକାର (ବହୁବିଧତା) ନୁହେଁ; ତେଷାମ୍ = ସେମାନଙ୍କ ମଧ୍ୟରେ, କ୍ୱଚନ = ଯେକୌଣସି ସମୟରେ, କିଞ୍ଚନ = ମୋଟେ ନୁହେଁ।

*ପ୍ରତ୍ୟେକସତ୍ତାର ସ୍ୱରୂପ ହେଲା ଅନାଦି ଏବଂ ଆକାଶ ପରି ନିରାସକ୍ତ । କୌଣସି ସମୟରେ କୌଣସି ମତେ ସେମାନଙ୍କ ଠାରେ ସାମାନ୍ୟତମ ବିବିଧତା ନ ଥାଏ । ॥୯୧॥*

ପରମସତ୍ୟଙ୍କ ଦୃଷ୍ଟିକୋଣରୁ ଅର୍ଥାତ୍ ତୂରୀୟ ଅବସ୍ଥାରୁ ଦେଖିଲେ ଚେତନାର ନିମ୍ନ ତିନୋଟି ସ୍ତରର ଯେଉଁ ମିଥ୍ୟା ଜଗତର ବୋଧ ହୋଇଥାଏ, ସତ୍ୟଙ୍କ ଜଗତରେ ତାର ବୋଧ ହୁଏ ନାହିଁ, ବିଷୟଜଗତ ମିଶିଯାଇ ଅଦ୍ୱୟ ହୋଇ ଯାଆନ୍ତି । ଇନ୍ଦ୍ରିୟ ବିଷୟ, ମାନସିକ ଆବେଗ ଏବଂ ବୌଦ୍ଧିକ ଚିନ୍ତା ନେଇ ଗଠିତ ଦୃଶ୍ୟ-ଜଗତ ହେଉଛି କେବଳ ଆମଠାରେ ଥିବା ଦ୍ରଷ୍ଟା, ଜୀବ ପାଇଁ ଚୈତନ୍ୟ ବା ପରମସତ୍ୟ ମନ ଏବଂ ବୁଦ୍ଧିର ସାଧନ ମାଧ୍ୟମରେ ପ୍ରକ୍ଷେପିତ ହେଲେ ଏହି ଦ୍ରଷ୍ଟା ଉତ୍ପନ୍ନ ହୋଇଥାଏ ।

ପରମସତ୍ୟ ବିଷୟର ଆବରଣରେ ବୋକା ନଶ୍ୱରର ଭୂମିକାରେ ଅଭିନୟ କରନ୍ତି ଏହି ନଶ୍ୱର ପାଇଁ ହିଁ କେବଳ ଦୃଶ୍ୟ ଜଗତ ହେଉଛି ଏକ ଯନ୍ତ୍ରଣାଦାୟକ ସତ୍ୟ, ଏହି ସାଧନର ଅତୀତ ହେଲେ ଦ୍ରଷ୍ଟା ଅଦୃଶ୍ୟ ହୋଇଯାଏ ଏବଂ ଦ୍ରଷ୍ଟା ସହିତ ଦୃଶ୍ୟ ମଧ୍ୟ। ତେଣୁ ଏହି ଶ୍ଳୋକରେ କୁହାଯାଇଛି ଯେ, ଅବିନଶ୍ୱରତା ହେଉଛି ଜୀବମାନଙ୍କର ସ୍ୱସ୍ୱରୂପ, କୌଣସି ପରିଚ୍ଛିନ୍ନତା ସେମାନଙ୍କୁ କଦାପି ଛୁଇଁ ନଥାଏ, ଆକାଶ ଏବଂ ଘଟ ପରି । ଆକାଶ ଏବଂ ଘଟାକାଶର ସାରୂପ୍ୟ ଅଧ୍ୟାୟର ଆରମ୍ଭରେ ବିଶଦ ଭାବେ ଆଲୋଚିତ ହୋଇଛି ।

ଆତ୍ମାଦ୍ୱର ଘନ ଅନୁଭୂତି- ପରମ ସତ୍ୟଙ୍କଠାରେ କୌଣସି ସମୟରେ ବା କୌଣସି ଭାବରେ ବହୁବିଧତାର ସ୍ପର୍ଶ ହିଁ ନାହିଁ। ବହୁବିଧ ଜଗତ, ମନ ଏବଂ ବୁଦ୍ଧିର ପ୍ରତିସରଣ ମାଧ୍ୟମରେ ଗତି କରୁଥିବା ଚୈତନ୍ୟଙ୍କର ଖଣ୍ଡ-ବିଖଣ୍ଡିତ ରୂପ ବ୍ୟତୀତ ଅନ୍ୟ କିଛି ନୁହେଁ।

**ଆଦିବୁଦ୍ଧାଃ ପ୍ରକୃତ୍ୟୈବ ସର୍ବେ ଧର୍ମାଃ ସୁନିଶ୍ଚିତାଃ ।**
**ଯସ୍ୟୈବଂ ଭବତି କ୍ଷାନ୍ତିଃ ସୋଽମୃତତ୍ୱାୟ କଳ୍ପତେ ॥୯୨॥**

ଆଦି = ଆଦି କାଳରୁ, ବୁଦ୍ଧାଃ = ବୁଦ୍ଧ (ଜ୍ଞାନୀ) ବ୍ୟକ୍ତି; ପ୍ରକୃତ୍ୟା ଏବ = ସେମାନଙ୍କ ସ୍ୱରୂପ ଦ୍ୱାରା, ସର୍ବେ ଧର୍ମାଃ = ସମସ୍ତ ଜୀବ (ଆତ୍ମା), ସୁନିଶ୍ଚିତାଃ = ନିର୍ବିକାର, ଅପରିବର୍ତ୍ତନୀୟ; ଯସ୍ୟ = ଯିଏ, ଏବମ୍ = ଏହି ଜ୍ଞାନ ସହିତ, ଭବତି = ରହନ୍ତି, କ୍ଷାନ୍ତିଃ = ବିଶ୍ରାମ ନିଅନ୍ତି, ଶାନ୍ତ ହୁଅନ୍ତି; ସଃ = ସେ, ଅମୃତତ୍ୱାୟ = ଅମୃତତ୍ୱର ବା ପରମସତ୍ୟଙ୍କର ଅନୁଭବ କରି ; କଳ୍ପତେ = ସମର୍ଥ ।

*ସ୍ୱସ୍ୱରୂପରେ ସମସ୍ତ ଜୀବ ଆଦିକାଳରୁ ହିଁ ଜ୍ଞାନୀ ବା ବୁଦ୍ଧ ଏବଂ ସ୍ୱଭାବରେ ସେମାନେ ଅବିକାରୀ । ଏହି ଜ୍ଞାନର ସହିତ ଶାନ୍ତିରେ ରହି ଆଉ ଅଧିକ ଜ୍ଞାନ ଚାହୁଁ ନ ଥିବା ବ୍ୟକ୍ତି ହିଁ ପରମସତ୍ୟଙ୍କର ଅନୁଭୂତି ଲାଭ କରିବା ପାଇଁ ସମର୍ଥ ॥୯୨॥*

ଗୁରୁଙ୍କ ଦ୍ୱାରା ଦିଆ ଯାଇଥିବା ଶାସ୍ତ୍ର-ପ୍ରବଚନରୁ ଜ୍ଞାନ ଲାଭ କରିଥିବା ସାଧକ ଅଚିରେ ଆତ୍ମ-ସନ୍ତୋଷ ଏବଂ ଆସ୍ଥାର ଭାବ ଲାଭ କରିବେ । ଦର୍ଶନର ଅଧ୍ୟୟନ ପରେ ଜଣେ ସାଧକ ତଥାପି ଯଦି ଲକ୍ଷ୍ୟ ଏବଂ ମାର୍ଗ ବିଷୟରେ ସନ୍ଦେହ କରନ୍ତି, ତେବେ ସେ କୌଣସି ଗମ୍ଭୀର ଅଭ୍ୟାସ କରିବା ପାଇଁ ଉପଯୁକ୍ତ ନୁହଁନ୍ତି । ଗୁରୁଙ୍କ ଦ୍ୱାରା ବ୍ୟାଖ୍ୟା କରା ଯାଇଥିବା ଦର୍ଶନର ଲକ୍ଷ୍ୟ ଏବଂ ଉଦ୍ଦେଶ୍ୟ ସମ୍ବନ୍ଧରେ ତାର ବୌଦ୍ଧିକ ସତ୍ତା ପୂର୍ଣ୍ଣ ସନ୍ତୋଷ ଲାଭ କରିବା ହେଉଛି ପରମ ଆବଶ୍ୟକତା । ଗୁରୁଙ୍କର ଯୁକ୍ତି ବା ଯଥାର୍ଥ୍ୟ ପ୍ରତିପାଦନରେ ଯଦି ସନ୍ଦେହ ବା ନିଷ୍ଠାର ଅଭାବ ରହେ, ଆତ୍ମାନୁଭୂତିର ମାର୍ଗ ଅନୁସରଣ କରିବା ପାଇଁ କୌଣସି ଶିଷ୍ୟ ନିଜକୁ ସମ୍ପୂର୍ଣ୍ଣଭାବେ ଅନୁପ୍ରାଣିତ ଅନୁଭବ କରିବ ନାହିଁ ।

ତେଣୁ, ବେଦାନ୍ତ ଶିକ୍ଷ୍ୟ ସର୍ବପ୍ରଥମେ ଗୁରୁଙ୍କ ଦ୍ୱାରା ପ୍ରଦତ୍ତ ପ୍ରବଚନ ବରାବର ଶୁଣେ । ଏହି ପ୍ରବଚନ ଗୁରୁଙ୍କର ବ୍ୟକ୍ତିଗତ ଚିନ୍ତାଧାରାକୁ ନେଇ ନୁହେଁ, ଏହା ହେଉଛି ଶାସ୍ତ୍ରର ପ୍ରବଚନ । ବୁଦ୍ଧିର ସଂପୂର୍ଣ୍ଣ ଦୃଢ଼ ବିଶ୍ୱାସ ହେଲେ ଅଭ୍ୟାସ ଆରମ୍ଭ କରିବା କଥା । ଏହି ଅଭ୍ୟାସ ଅନୁଭୂତିର ନିର୍ଦ୍ଦିଷ୍ଟ ଅବସ୍ଥା ଦେଇ ତାକୁ ପରମ ସନ୍ତୋଷ ଏବଂ ଆନନ୍ଦର ଅବସ୍ଥାକୁ ନେଇଯାଏ । ସେହି ଅବସ୍ଥାରେ ସେ ତାର ହୃଦୟର କନ୍ଦରରୁ ଉଦ୍ୟମ କରିବାର କୌଣସି ଆବଶ୍ୟକତା ଅନୁଭବ କରେ ନାହିଁ । ସେ ହିଁ ଈଶ୍ୱରତ୍ୱ ଅନୁଭବ କରେ ବୋଲି ଧରାଯାଏ ।

ଏଠାରେ ଶ୍ରୀ ଗୌଡ଼ପାଦ ଆଧ୍ୟାତ୍ମିକ ଅନ୍ୱେଷଣର ତିନିଗୋଟି ସ୍ୱତନ୍ତ୍ର ଅବସ୍ଥା ବିଷୟରେ ସୂଚାଇ ଦେଇଛନ୍ତି । ସଂଘର୍ଷର ପ୍ରଥମ ଅବସ୍ଥାରେ ଜଣେ ଆତ୍ମାନୁଭୂତି ସମ୍ପନ୍ନ ଗୁରୁଙ୍କୁ ବାଛି, ତାଙ୍କ ପାଖରୁ ଶ୍ରବଣ କରି, ମନନ ଏବଂ ନିଦିଧ୍ୟାସନ କରିବାକୁ ହେବ । ଶିଷ୍ୟ ଉଚ୍ଚତମ ଧ୍ୟାନାବସ୍ଥାରେ ପଦାର୍ପଣ କଲେ ତୀର୍ଥଯାତ୍ରାର ଦ୍ୱିତୀୟ ଅବସ୍ଥାରେ ପହଞ୍ଚିଯାଏ । ସେଠାରେ ସେ ତୂରୀୟ ଅବସ୍ଥାରେ ଅଧିକରୁ ଅଧିକତର ଦୃଢ଼ ହୋଇ ମନ ଏବଂ ବୁଦ୍ଧିର ଅତୀତ ହୁଏ । ସାଧକ ସାଧ୍ୟର ଅବସ୍ଥାରେ ପଦାର୍ପଣ କରିବା ହେଉଛି ତୃତୀୟ ଅବସ୍ଥା । ଏକ ଲକ୍ଷ୍ୟହୀନ ପରିପୂର୍ଣ୍ଣ ଆନନ୍ଦମୟ ସନ୍ତୋଷର ଅନୁଭୂତି ଲାଭ କରିବା ବ୍ୟତୀତ ଏହି ମୂହୁର୍ତ୍ତର ପରିପୂର୍ଣ୍ଣତା ବା ଆନନ୍ଦ ଅନୁଭବ କରିବା ପାଇଁ ସାଧକର କୌଣସି ପରଶମଣି ଦରକାର ହୁଏ ନାହିଁ । ସେହି ଅବସ୍ଥାକୁ ଜାଣିପାରି ସାଧକ ଆଉ ଅଧିକ ଜ୍ଞାନ ଚାହେଁ ନାହିଁ । ସେ କୃତକୃତ୍ୟତାର ଅବସ୍ଥାରେ ପହଞ୍ଚି ଯାଏ । ତାର ହୃଦବୋଧ ହୁଏ ଯେ, ଯାହା ଜାଣିବା କଥା ମୁଁ ସବୁ ଜାଣି ସାରିଛି । ଯାହା ଲାଭ କରିବା କଥା, ମୁଁ ସବୁ ଲାଭ କରି ସାରିଛି, ଯାହା ସାଧନ କରିବା କଥା, ତାହା ସାଧ୍ୟ କରି ସାରିଛି ।

ଏହିପରି ବ୍ୟକ୍ତି ହିଁ କେବଳ ଅବିନଶ୍ୱର ସତ୍ୟଙ୍କ ପାଖେ ପହଞ୍ଚିବା ପାଇଁ ସମର୍ଥ, ଅର୍ଥାତ୍ ଆତ୍ମାର ଦୃଢ଼ବିଶ୍ୱାସରେ ପ୍ରତିଷ୍ଠିତ ହୋଇ ଏପରି ଭାବରେ ଜଣେ ବଞ୍ଚିବା କଥା । ଆତ୍ମା ସହିତ ପୂର୍ଣ୍ଣ ତାଦାତ୍ମ୍ୟ ସ୍ଥାପନ କରି ଆତ୍ମାରେ ବାସ କରି ପାରୁଥିବା ବ୍ୟକ୍ତି ହିଁ ଅବିନଶ୍ୱରତାର ଅବସ୍ଥା ସାଧ୍ୟ କରିପାରେ ।

**ଆଦିଶାନ୍ତା ହ୍ୟନୁତ୍ପନ୍ନାଃ ପ୍ରକୃତ୍ୟୈବ ସୁନିର୍ବୃତାଃ ।**
**ସର୍ବେ ଧର୍ମାଃ ସମାଭିନ୍ନା ଅଜଂ ସାମ୍ୟଂ ବିଶାରଦମ୍ ।।୯୩।।**

ଆଦି = ଆରମ୍ଭରୁ, ଶାନ୍ତାଃ = ଶାନ୍ତ, ହି = ପ୍ରକୃତରେ, ଅନୁତ୍ପନାଃ = ଅଜ, ପ୍ରକୃତ୍ୟା ଏବ = ସେମାନଙ୍କର ସ୍ୱଭାବବଶତଃ, ସୁନିର୍ବୃତାଃ = ପୂରାପୂରି ନିରାସକ୍ତ, ସଂସାରରୁ ମୁକ୍ତ; ସର୍ବେ ଧର୍ମାଃ = ସବୁ ଜୀବାତ୍ମାମାନେ, ସମ = ସମାନ, ଏକାପରି; ଅଭିନ୍ନାଃ = ଅଭିନ୍ନ, ଅଲଗା ନୁହେଁ; ଅଜମ୍ = ଅଜ, ସାମ୍ୟମ୍ = ସମତା, ବିଶାରଦମ୍ = ଶୁଦ୍ଧତା ।

*ଆରମ୍ଭରୁ ସବୁ ଜୀବସତ୍ତା ଅଛନ୍ତି ଏବଂ ସେମାନଙ୍କର ସ୍ୱରୂପ ଏକା ପରି- ଅଜ ଏବଂ ସଂପୂର୍ଣ୍ଣ ମୁକ୍ତ । ସେମାନେ ସମସ୍ତେ ଏକାପରି ଏବଂ କେହି କାହାଠାରୁ ଭିନ୍ନ ନୁହଁନ୍ତି । ତେଣୁ, ଭିନ୍ନ ଭିନ୍ନ ସତ୍ତା ବାସ୍ତବରେ ଅଜ, 'ସାମ୍ୟତା' ଏବଂ 'ଶୁଦ୍ଧତା' ରେ ପ୍ରତିଷ୍ଠିତ ଆତ୍ମା ବ୍ୟତୀତ ଅନ୍ୟ କିଛି ନୁହଁନ୍ତି ।।୯୩।।*

ଆତ୍ମା-ଆବିଷ୍କାର ଅବସ୍ଥାରେ ଜଣେ ବ୍ୟକ୍ତି ଠିକ୍ କେତେବେଳେ ପଦାର୍ପଣ କରେ, ସେ ବିଷୟରେ ପୂର୍ବ କାରିକାରେ କୁହାଯାଇଛି। ଏକ ସମ୍ପୂର୍ଣ୍ଣ ନୀରବତାର ଅନୁଭୂତି ଲାଭ କଲେ ସାଧକ ଆତ୍ମତ୍ୱ ଅବସ୍ଥାରେ ପଦାର୍ପଣ କରେ। ବାସ୍ତବରେ ତାର ଅନ୍ୱେଷଣ ପରିପୂର୍ଣ୍ଣ ହେବା ମୁହୂର୍ତ୍ତରେ ହିଁ ସେ ପଦାର୍ପଣ କରେ। ଏହି ଶ୍ଳୋକ ବୁଝାଇବାକୁ ଚାହୁଁଛି ଯେ, ପୂର୍ବଶ୍ଳୋକରେ ସୂଚୀତ ହୋଇଥିବା ପୂର୍ଣ୍ଣତାର ଅବସ୍ଥାର ଅର୍ଥ ନୁହେଁ ଏକ ନୂଆ ସ୍ଥିତି ଲାଭ କରିବା, ବରଂ ଏହା ହେଉଛି ନିଜର ସ୍ୱସ୍ୱରୂପର ଆବିଷ୍କାର କରିବାର ଏକ ସଂଘଟଣ।

ଆଧ୍ୟାତ୍ମିକ ସ୍ତରରେ ପଦାର୍ପଣ କରି, ଏହା ସହିତ ଜୀବ ତାର ପୂର୍ଣ୍ଣ ତାଦାତ୍ମ୍ୟ ଆବିଷ୍କାର କଲେ ବୁଝିପାରେ ଯେ ତାଠାରେ ଥିବା ସମସ୍ତ ଇନ୍ଦ୍ରିୟ ଏବଂ ସେମାନଙ୍କ ମାଧ୍ୟମରେ ସେ ବୋଧ କରୁଥିବା ସମସ୍ତ ଜଗତ ଶୁଦ୍ଧ ଆତ୍ମାଙ୍କ ବ୍ୟତୀତ ଅନ୍ୟ କିଛି ନୁହେଁ। ଘନ ଏବଂ ନିର୍ବିକଳ୍ପ ଆତ୍ମାଙ୍କଠାରେ କୌଣସି ସ୍ୱାତନ୍ତ୍ର୍ୟ ନାହିଁ। ମନ ଏବଂ ବୁଦ୍ଧିର ଶୂନ୍ୟତା ମାଧ୍ୟମରେ ପ୍ରକ୍ଷେପିତ ହେଲେ ସତ୍ୟ ହିଁ ବହୁବିଧ ଜଗତ ଭାବରେ ଭ୍ରାନ୍ତ ହୋଇ ଯାଆନ୍ତି।

**ବୈଶାରଦ୍ୟଂ ତୁ ବୈ ନାସ୍ତି ଭେଦେ ବିଚରତାଂ ସଦା।**

**ଭେଦନିମ୍ନାଃ ପୃଥଗ୍‌ବାଦାସ୍ତସ୍ମାତ୍ତେ କୃପଣାଃ ସ୍ମୃତାଃ ॥୯୪॥**

ନ ବୈଶାରଦ୍ୟମ୍ ତୁ ବୈ = ଶୁଦ୍ଧତା (ପୂର୍ଣ୍ଣତା) ମୋଟେ ନାହିଁ; ଅସ୍ତି = ଥାଇପାରେ, ଭେଦେ = ଭେଦରେ, ବହୁବିଧତାରେ; ବିଚରତାମ୍ = ଯେଉଁମାନେ ବିଶ୍ୱାସ କରନ୍ତି, ସଦା = ସର୍ବଦା, ଭେଦେ = ପୃଥକ୍‌ତାରେ, ନିମ୍ନାଃ = (ଧାରଣାରେ) ଛନ୍ଦି ହୋଇ ଥିବା ପୃଥକ୍ ବାଦାଃ = ସମସ୍ତ ପଦାର୍ଥର ପୃଥକତ୍ୱ ପ୍ରତିପାଦନ କରୁଥିବା (ଦ୍ୱୈତବାଦୀ), ତସ୍ମାତ୍ = ତେଣୁ, ତେ = ସେମାନେ, କୃପଣାଃ = ସଂକୀର୍ଣ୍ଣ ମନା (ଆକ୍ଷରିକ- ଦୁର୍ଦ୍ଦଶାଗ୍ରସ୍ତ), ସ୍ମୃତାଃ = ସାଧାରଣତଃ ଧରାଯାଏ।

*ପୃଥକତ୍ୱର ଧାରଣାରେ ବିଶ୍ୱାସ କରୁଥିବା ଲୋକମାନେ ଆତ୍ମାଙ୍କର ବାସ୍ତବିକ ସହଜାତ ଶୁଦ୍ଧତାକୁ କଦାପି ଅନୁମୋଦନ କରି ପାରିବେ ନାହିଁ। ତେଣୁ ବହୁବିଧତାର ଜାଲରେ ଛନ୍ଦି ହୋଇଥିବା ଏବଂ ବସ୍ତୁ ଓ ଜୀବାତ୍ମାର ପୃଥକତ୍ୱ ପ୍ରତିପାଦନ କରୁଥିବା ଲୋକଙ୍କୁ ଅଭାଗା ବା ସଂକୀର୍ଣ୍ଣମନା କୁହାଯାଏ ॥୯୪॥*

ଉପରୋକ୍ତ କଥାରୁ ଏହା ସ୍ପଷ୍ଟ ହେବ ଯେ, ଆତ୍ମାନୁଭୂତି ଲାଭ କରିଥିବା ବ୍ୟକ୍ତି ତାଙ୍କର ଜୀବନ୍ମୁକ୍ତି ଅବସ୍ଥାରେ କୌଣସିମତେ ବିଭିନ୍ନତାର ଧାରଣା ପୋଷଣ କରିବେ

ନାହିଁ, ବରଂ ଭିତରେ, ବାହାରେ, ସର୍ବଦା ସବୁ ସ୍ଥାନରେ ଆତ୍ମାଙ୍କୁ ଚିହ୍ନି ପାରିବେ ଏବଂ ଅନୁଭବ କରିପାରିବେ । ଅନେକତା ଭିତରେ ଥିବା ଏକତାର ସହିତ ଏକ ହୋଇ ସେ ପୂର୍ଣ୍ଣତାର ଜୀବନ ଯାପନ କରନ୍ତି । ଆତ୍ମାନୁଭୂତିର ଏହା ଚରମ ଅବସ୍ଥା ହୋଇଥିବାରୁ ନିର୍ବିକଳ୍ପ ପୂର୍ଣ୍ଣାଙ୍ଗତା ଦୃଷ୍ଟିରୁ ବହୁବିଧତା ଦେଖୁଥିବା ଲୋକମାନଙ୍କୁ ଅଭାଗା ବା ସଂକୀର୍ଣ୍ଣମନା ଭାବରେ ବିଚାର କରାଯିବ ।

ଦ୍ୱୈତବାଦୀଙ୍କ ପାଇଁ ଶ୍ରୀ ଗୌଡ଼ପାଦ ଏଠାରେ ଯେଉଁ 'ଭେଦନିମ୍ନଃ' ପଦ ବ୍ୟବହାର କରିଛନ୍ତି, ସ୍ୱାଭାବିକ ଭାବେ ତାହା ଶକ୍ତିଶାଳୀ ଏବଂ ସ୍ପଷ୍ଟ । ନିର୍ବିକଳ୍ପଙ୍କ ଅନ୍ୱେଷଣ କରୁଥିବା ଜଣେ ଆଧ୍ୟାତ୍ମିକ ସାଧକ ସମସ୍ତ ଆସକ୍ତିରୁ ନିଜକୁ କାଟିଦେବା ପାଇଁ ପ୍ରସ୍ତୁତ ନ ହେଲେ ଏବଂ ମନ ଓ ବୁଦ୍ଧିର ବି ଅତୀତ ହେବା ପାଇଁ ନିଜକୁ ପ୍ରସ୍ତୁତ ନ କଲେ, ଉପନିଷଦର ଗୁରୁମାନେ ଅନୁଭବ କରିଥିବା ଏବଂ ଦୃଷ୍ଟିଗୋଚର କରିଥିବା ପୂର୍ଣ୍ଣାଙ୍ଗତାର ଶିଖରକୁ ପହଞ୍ଚି ପାରିବ ନାହିଁ ।

ସାଧକର 'ସଂକୀର୍ଣ୍ଣ ମନ' ଯୋଗୁଁ ଏହି ସାମର୍ଥ୍ୟ ସ୍ୱାଭାବିକ ହୁଏ ନାହିଁ । ସତ୍ୟର ଅନ୍ୱେଷଣ କରୁଥିବା ସାଧକର ହୃଦୟ ବିଶାଳ ହେବା ଦରକାର । ତାର ମାନସିକ ଏବଂବୌଦ୍ଧିକ ଦୃଷ୍ଟିକୋଣ ସର୍ବଦା ପ୍ରସାରିତ ହେବା କଥା । ବହୁବିଧ ଜଗତ ପ୍ରତି ଆସକ୍ତ ହୋଇ ସ୍ୱସ୍ୱରୂପରୁ ନିଜକୁ ବାସନ୍ଦ କରିଥିବା ବ୍ୟକ୍ତିଙ୍କୁ ସେଥିପାଇଁ ଯଥାର୍ଥରେ 'କୃପଣ' (ଦୁର୍ଭାଗା ଏବଂ ସଂକୀର୍ଣ୍ଣମନା) କୁହାଯାଇଛି ।

ଏହି ଶ୍ଳୋକଟି ବୃହଦାରଣ୍ୟକ ଉପନିଷଦ୍‌ରେ ଗାର୍ଗୀଙ୍କୁ ଯାଜ୍ଞ୍ୟବଲ୍କ୍ୟ କହିଥିବା କଥା ମନେ ପକାଇ ଦିଏ । ସେ କହିଥିଲେ –"ହେ ଗାର୍ଗୀ ! ଅକ୍ଷରଙ୍କୁ ନ ଜାଣି ଏହି ଜଗତରୁ ବିଦାୟ ନେଉଥିବା ବ୍ୟକ୍ତି ହେଉଛି ଅଭାଗା ଏବଂ ସଂକୀର୍ଣ୍ଣମନା ।"

**ଅଜେ ସାମ୍ୟେ ତୁ ଯେ କେଚିଦ୍ ଭବିଷ୍ୟନ୍ତି ସୁନିଶ୍ଚିତାଃ ।**

**ତେ ହି ଲୋକେ ମହାଜ୍ଞାନାସ୍ତଚ୍ଚ ଲୋକୋ ନ ଗାହତେ ॥ ୯୫॥**

ଅଜେ = ଅଜ, ସାମ୍ୟେ = ସର୍ବଦା ଏକାପରି, ତୁ = ଅନ୍ୟ ପକ୍ଷରେ, ଯେ କେଚିତ୍ = ସେହି ଯେଉଁମାନେ, ଭବିଷ୍ୟନ୍ତି = ହେବେ, ସୁନିଶ୍ଚିତାଃ = ସେମାନଙ୍କର ଅବବୋଧରେ ଦୃଢ଼, ତେ = ସେମାନେ, ହି = ବାସ୍ତବରେ, ଲୋକେ = ଏହି ଜଗତରେ, ମହାଜ୍ଞାନାଃ = ମହାଜ୍ଞାନୀ, ତତ୍ = ତାହା (ସତ୍ୟ); ଲୋକଃ ଚ = ସାଧାରଣ ବ୍ୟକ୍ତି, ନ ଗାହତେ = ବୁଝି ପାରିବେ ନାହିଁ।

*ଅଜ ଏବଂ ସର୍ବଦା ଏକାପରି (ଅବିକାରୀ ବା ଶାଶ୍ୱତ)ଆତ୍ମାଙ୍କର ଦୃଢ଼ ଅବବୋଧ ଥିବା ବ୍ୟକ୍ତିଙ୍କୁ ହିଁ କେବଳ ଏହି ଜଗତରେ ମହାଜ୍ଞାନୀ କୁହାଯାଏ। ସାଧାରଣ ବ୍ୟକ୍ତି ତାହାକୁ (ସତ୍ୟଙ୍କୁ) ବୁଝି ପାରିବେ ନାହିଁ ॥୯୫॥*

ଦ୍ୱିପଦ ପ୍ରାଣୀ ଭାବରେ ଜନ୍ମ ଲାଭ କରିଥିବା ପ୍ରତ୍ୟେକଙ୍କର ନିଜର ପ୍ରାପ୍ୟବସ୍ତୁ – ଈଶ୍ୱରତ୍ୱ ଦାବୀ କରିବାର ଜନ୍ମଗତ ଅଧିକାର ଅଛି। ନିଜ ବିଷୟରେ ତାର ସମଗ୍ର ମିଥ୍ୟା ଆତ୍ମକେନ୍ଦ୍ରିକ ଧାରଣା ସମର୍ପଣ କରିଦେଇ ରାଜାଧିରାଜ ହୋଇ ପାରିବା ଉଚ୍ଚତର ଆଧ୍ୟାତ୍ମିକ ରାଜ୍ୟକୁ ନିଜକୁ ଉନ୍ନୀତ କରିବା ପାଇଁ ତାକୁ କୁହାଯାଇଛି। ଋଷିମାନଙ୍କର ଏହି ଘୋଷଣାରେ ସେମାନେ ଆଦୌ ସଙ୍କୋଚ କରି ନାହାଁନ୍ତି। ଧୀରସ୍ଥିର ଭାବରେ ସାଧାରଣ ବ୍ୟକ୍ତିଙ୍କୁ ଆବଶ୍ୟକୀୟ ବିଶେଷ ଅବସ୍ଥାକୁ ଉଠାଇବା ପାଇଁ ହିଁ କେବଳ ଆମ ଶାସ୍ତ୍ରରେ ମଣିଷ ଜାତିକୁ ବର୍ଣ୍ଣ ଏବଂ ଆଶ୍ରମରେ ବିଭକ୍ତ କରା ଯାଇଛି। କୌଣସି ବ୍ୟକ୍ତିର ଜନ୍ମ ସଂଗତି, ବୟସର ଅବସ୍ଥା, ଲିଙ୍ଗ ବା ଶ୍ରେଣୀଭେଦରେ ତାର ସ୍ୱସ୍ୱରୂପ ଲାଭ କରିବା ପାଇଁ ଉପନିଷଦୀୟ ସାହିତ୍ୟ କାହାରିକୁ ବାରଣ କରି ନାହିଁ। ଏପରିକି, ସତ୍ୟଙ୍କର ଏହି ପରମ ଅନୁଭୂତି ପାଇଁ ମହିଳାମାନଙ୍କର ମଧ୍ୟ ସମାନ ଅଧିକାର ଅଛି। ସେମାନଙ୍କୁ କୌଣସି ପ୍ରକାର ବାଧା ଦିଆଯାଇ ନାହିଁ। ପ୍ରାକ୍-ଉପନିଷଦୀୟ ଯୁଗରେହିଁ କେବଳ ସାହିତ୍ୟମାନଙ୍କରେ ମହିଳାମାନଙ୍କୁ ସାଧାରଣଭାବେ ନିନ୍ଦା କରାଯାଇଥିବାର ଆମେ ଦେଖିବାକୁ ପାଉଁ। କିନ୍ତୁ ଉପନିଷଦ୍‌ର ପରବର୍ତ୍ତୀ ଯୁଗରେ ମହିଳା ମାନଙ୍କର ଆଧ୍ୟାତ୍ମିକ ଗତିଶୀଳତା ଏବଂ ବିଚକ୍ଷଣତାର ପ୍ରଶଂସା କରାଯାଇଛି।

ମହିଳାମାନଙ୍କୁ ସମାନ ପଦ ଦେବାରେ ଋଷିମାନେ ଏତେ ଦୂର ଆଗେଇ ଯାଇଛନ୍ତି ଯେ ଉପନିଷଦୀୟ ସାହିତ୍ୟରେ ମଧ୍ୟ କେତେକ ନିର୍ଦ୍ଦିଷ୍ଟ ଅଂଶ ହେଉଛି ଆତ୍ମାନୁଭବୀ ମହିଳା ମାନଙ୍କ ବିଷୟରେ ଏବଂ ଆତ୍ମାନୁଭବୀ ମହିଳାମାନଙ୍କର ଘୋଷଣା। ଯିଏବି

ସତ୍ୟଙ୍କର ଅନୁଭବ କରିପାରିଛି, ସେ ଜୀବନର ଲକ୍ଷ୍ୟରେ ପହଞ୍ଚି ଯାଇଛି ବୋଲି କହି ଶ୍ରୀ ଗୌଡ଼ପାଦ ହିନ୍ଦୁ ସଂସ୍କୃତିର ଏହି ବିଶାଳ ହୃଦୟର ଧାରଣାକୁ ଜୋର ଦେଇଛନ୍ତି।

କିନ୍ତୁ ଜ୍ଞାନୀମାନେ ଲାଭ କରିଥିବା ପୂର୍ଣ୍ଣାଙ୍ଗତାକୁ ସାଧାରଣ ଲୋକ ବୁଝିପାରେ ନାହିଁ ଏବଂ ବୁଝି ପାରିବ ନାହିଁ, କାରଣ ସାଧାରଣ ଯୋଗୀମାନଙ୍କ ପରି ତାମସା କରିବାକୁ ସେ ଜୀବନର ରଙ୍ଗଭୂମିକୁ ଓହ୍ଲାଇ ଆସି ପାରିବେ ନାହିଁ। ସଫଳତାର କୌଣସି ସିଦ୍ଧି ସେ ଦେଖାଇ ପାରନ୍ତି ନାହିଁ।

**ଅଜେଷ୍ୱଜମସଂକ୍ରାନ୍ତଂ ଧର୍ମେଷୁ ଜ୍ଞାନମିଷ୍ୟତେ ।**

**ଯତୋ ନ କ୍ରମତେ ଜ୍ଞାନମସଙ୍ଗଂ ତେନ କୀର୍ତ୍ତିତମ୍ ॥୯୬॥**

ଅଜେଷୁ = ଅଜରେ, ଅଜମ୍ = ଅଜ, ଅସଂକ୍ରାନ୍ତଂ = ଅସମ୍ପର୍କିତ, ଧର୍ମେଷୁ = ଭିନ୍ନ ସତ୍ତା, ଜ୍ଞାନମ୍ = ଜ୍ଞାନ, ଇଷ୍ୟତେ = ପାରମ୍ପାରିକ ଭାବରେ ଗ୍ରହଣ କରାଯାଏ; ଯତଃ = ଯେହେତୁ, ନ କ୍ରମତେ = ଅନ୍ୟ କୌଣସି ପଦାର୍ଥ ସହିତ ସମ୍ପର୍କ ରଖେ ନାହିଁ, ଅପରିଚ୍ଛିନ୍ନ ; ଜ୍ଞାନମ୍ = ଏହି ଜ୍ଞାନ, ଅସଙ୍ଗମ୍ = ସମ୍ପର୍କହୀନ, ତେନ = ତାହା ସହିତ, କୀର୍ତ୍ତୀତମ୍ = କୁହାଯାଏ।

*ଭିନ୍ନ ଭିନ୍ନ ଜୀବ ମାନଙ୍କର ତତ୍ତ୍ୱ ଶୁଦ୍ଧ ଚୈତନ୍ୟ ନିଜେ ଅଜ ଏବଂ କୌଣସି ବାହ୍ୟ ପଦାର୍ଥ ସହିତ ତାଙ୍କର ସମ୍ପର୍କ ନାହିଁ ବୋଲି କୁହାଯାଏ। ଏହି ଜ୍ଞାନ କୌଣସି ପଦାର୍ଥ ସହିତ ସମ୍ପର୍କିତ ହୋଇ ନ ଥିବାରୁ ଅପରିଚ୍ଛିନ୍ନ ବୋଲି କୁହାଯାଏ ॥୯୬॥*

ଏଠାରେ ନୈୟାୟିକମାନଙ୍କର ମତବାଦର ଆଲୋଚନା କରିବାର ଚେଷ୍ଟା କରାଯାଇଛି। ନୈୟାୟିକମାନେ କହନ୍ତିଯେ ଜ୍ଞାନ ହେଉଛି ଆତ୍ମାଙ୍କର ଗୋଟିଏ ଗୁଣ ଏବଂ ମନ ବାହ୍ୟ ପଦାର୍ଥର ସଂସ୍ପର୍ଶରେ ଆସିଲେ ଏହା ଦେଖା ଦେଇଥାଏ। ବାହ୍ୟ ବିଷୟ ଜଗତ ମନର ଏକ ମିଥ୍ୟା ପ୍ରକ୍ଷେପଣ ବୋଲି ପ୍ରମାଣ କରିବାକୁ କାରିକା ଚେଷ୍ଟା କରିଛନ୍ତି। ସାଧାରଣ କଥାବାର୍ତ୍ତାର ଜ୍ଞାନ ଏକ ପରିଚ୍ଛିନ୍ନ ସଚେତନଶୀଳତା ବୋଲି ଆମେ ବୁଝିଥାଉଁ। ମୁଁ କୌଣସି ପଦାର୍ଥ ବିଷୟରେ ସଚେତନ ହେଲେ, ସେ ବିଷୟରେ ମୁଁ ଜାଣିଛି ବୋଲି କହେ। ଜଣେ ସାଧାରଣ ଲୋକ ଦ୍ୱାରା ନିର୍ବିକଳ୍ପ ଜ୍ଞାନ ସାଧାରଣତଃ ବୁଝିହୋଇ ନଥାଏ ବା ଅନୁଭବ କରିହୋଇ ନଥାଏ, କାରଣ ନିଜର ମାନସିକ ପ୍ରକ୍ଷେପିତ ବିଷୟଜଗତ ପ୍ରତି ନିରାସକ୍ତ ହୋଇ ରହିବା ପାଇଁ ତାର ସାମର୍ଥ୍ୟ ନଥାଏ।

ନିର୍ବିକଳ୍ପ ଜ୍ଞାନ ହିଁ କେବଳ ସତ୍ୟ ଏବଂ ଜ୍ଞାନକୁ ଜାଣିବାର ଅନୁଭୂତି ହିଁ ହେଉଛି ସମାଧିର ଅନୁଭୂତି। ନିର୍ବିଷୟ ସଚେତନଶୀଳତା ହେଉଛି ଆତ୍ମା ଏବଂ ଏହି ଅନୁଭୂତି ଲାଭ କରିବା ହିଁ ହେଉଛି ଜୀବନର ପ୍ରକୃତ ସଫଳତା। ଗନ୍ତବ୍ୟ ଏବଂ ମାର୍ଗ, ଏହା ସୂର୍ଯ୍ୟଙ୍କର ଆଲୋକ ଏବଂ ଉତ୍ତାପ ପରି। ବହୁବିଧତା ସୃଷ୍ଟି କରିବା ପାଇଁ ଅପରିଚ୍ଛିନ୍ନ ନିର୍ବିକଳ୍ପ ଜ୍ଞାନ ନିଜେ ଖଣ୍ଡବିଖଣ୍ଡିତ ହୋଇଯିବା ପରି ମନେ ହୁଏ। ଏହା ଦ୍ୱାରା ଦୂଷିତ ହୋଇ ଜୀବମାନେ ଦୁଃଖ ଶୋକ, ହସଖୁସି ମାଧ୍ୟମରେ ନିଜର ଦେବତ୍ୱର ଉପହାସ କରନ୍ତି।

**ଅଣୁମାତ୍ରେଽପି ବୈଧର୍ମ୍ୟେ ଜାୟମାନେଽବିପଶ୍ଚିତଃ।**

**ଅସଂଗତା ସଦା ନାସ୍ତି କିମୁତାଽବରଣଚ୍ୟୁତିଃ ॥୯୭॥**

ଅପି ଅଣୁମାତ୍ରେ = ସାମାନ୍ୟ ଧାରଣା ମଧ୍ୟ, ବୈଧର୍ମ୍ୟେ = ବହୁବିଧତାର (ବ୍ରହ୍ମଙ୍କଠାରୁ ଭିନ୍ନ କୌଣସି ବିଷୟର ଉଦ୍ଭବ); ଜାୟମାନେ = ପୋଷଣ କରିବା, ଅବିପଶ୍ଚିତଃ = ଅଜ୍ଞାନୀ ଦ୍ୱାରା, ଅସଙ୍ଗତା = ଆସକ୍ତିହୀନତା, ଅପରିଚ୍ଛିନ୍ନତା; ସଦା = ସର୍ବଦା, ନ ଅସ୍ତି = ନଥାଏ, କିମ୍ ଉତ = ତେବେ କେଉଁଠାରେ ଅଛି (ଅର୍ଥାତ୍ ନାହିଁ); ଆବରଣ = ଆବରଣ, ଚ୍ୟୁତିଃ = (ଧ୍ୱଂସର) ସମାପ୍ତି।

*ଅଜ୍ଞାନ ଦ୍ୱାରା ପୋଷଣ କରା ଯାଉଥିବା ସାମାନ୍ୟ ଟିକିଏ ବହୁବିଧତାର ଧାରଣା ଅପରିଚ୍ଛିନ୍ନଙ୍କ ପାଖକୁ ତାଙ୍କର ଗତି ପ୍ରତିରୋଧ କରେ, ତେବେ ଆତ୍ମାଙ୍କର ସ୍ୱରୂପକୁ ଘୋଡ଼ାଇ ଦେଉଥିବା ଆବରଣର ବିନାଶ କାହିଁ? ॥୯୭॥*

ଜାଗ୍ରତ ଅବସ୍ଥା ଏବଂ ସ୍ୱପ୍ନାବସ୍ଥା ମଧ୍ୟରେ କୌଣସି ବୁଝାମଣା ସମ୍ଭବ ନୁହେଁ। ଜାଗ୍ରତ-ଜଗତରେ ବାସ କରି ଆମେ ସ୍ୱପ୍ନର ଧନ ଲାଭ କରି ପାରିବା ନାହିଁ। ସେହିପରି ସ୍ୱପ୍ନ ଜଗତର ପରିବେଶକୁ ଆମେ ଜାଗ୍ରତ ଅବସ୍ଥାର ଅନୁଭୂତି ନେଇ ପାରିବା ନାହିଁ। ଆମେ ଜାଗ୍ରତ ଥିବାବେଳେ ସାମାନ୍ୟ ମାତ୍ର ସ୍ୱପ୍ନ ଦେଖା ଦେବ ନାହିଁ।

ସେହିପରି ଏକ ଜୀବ ମନ ଓ ବୁଦ୍ଧିର ଅତୀତ ହୋଇ ଅନନ୍ତ କ୍ଷେତ୍ରରେ ପାଦ ଦେଲେ ବହୁବିଧତାର ତିଳେ ହେଲେ ଧାରଣା ପୋଷଣ କରି ପାରିବ ନାହିଁ - ଅପରିଚ୍ଛିନ୍ନଙ୍କଠାରେ କୌଣସି ପରିଚ୍ଛିନ୍ନତା ପ୍ରବେଶ କରି ପାରିବ ନାହିଁ। କର୍ତ୍ତା ଏବଂ କର୍ମ ସମ୍ପର୍କର ସାମାନ୍ୟ ଟିକିଏ ସଚେତନଶୀଳତା ଥିବା ପର୍ଯ୍ୟନ୍ତ ଆତ୍ମାନୁଭୂତି ସଂପୂର୍ଣ୍ଣ ହେବ ନାହିଁ ଏବଂ କୌଣସି ବ୍ୟକ୍ତି ସତ୍ୟଙ୍କ ଦ୍ୱାରରେ ପ୍ରକୃତରେ ପଦାପର୍ଣ କରି ପାରିଲେ, ଅନନ୍ତ ଜ୍ଞାନ - ଶୁଦ୍ଧ ଚୈତନ୍ୟ ବା ଆତ୍ମାଙ୍କ ଜ୍ଞାନରେ ପ୍ରତିଷ୍ଠିତ ହେଲେ ତାଠାରୁ ତାର

ସ୍ୱରୂପ ମଧ୍ୟରେ କୌଣସି ପ୍ରତିବନ୍ଧକ ନଥିବାର ଜାଣିପାରେ। ତାର ଅଜ୍ଞାନତାରେ ସେ ବରାବର ଏହା ଜାଣିଥିଲା। ସାଧନା ଦ୍ୱାରା ଆତ୍ମାଙ୍କୁ ଉତ୍ପନ୍ନ କରାଯାଏ ନାହିଁ, ନିଜର କଳ୍ପନା ଏବଂ ମିଥ୍ୟା ଧାରଣା ମଧ୍ୟରୁ ହିଁ ଏହାଙ୍କର ଆବିଷ୍କାର କରାଯାଇଥାଏ।

**ଅଲବ୍‌ଧାବରଣାଃ ସର୍ବେ ଧର୍ମାଃ ପ୍ରକୃତିନିର୍ମଳାଃ।**

**ଆଦୌ ବୁଦ୍ଧାସ୍ତଥା ମୁକ୍ତା ବୁଧ୍ୟନ୍ତ ଇତି ନାୟକାଃ ॥୯୮॥**

ଅଲବ୍‌ଧା = ମୁକ୍ତ, ଆବରଣାଃ = ଆବରଣ ବା ଅଜ୍ଞାନର ବନ୍ଧନ, ସର୍ବେ = ସମସ୍ତେ, ଧର୍ମାଃ = ଜୀବମାନେ, ପ୍ରକୃତି = ସ୍ୱଭାବତଃ, ନିର୍ମଳାଃ = ଶୁଦ୍ଧ, ଆଦୌ = ଆଦ୍ୟରୁ, ଆରମ୍ଭରୁ; ବୁଦ୍ଧାଃ = ଜ୍ଞାନୀମାନେ, ତଥା = ଏବଂ, ମୁକ୍ତାଃ = ମୁକ୍ତ, ବୁଧ୍ୟନ୍ତେ = ଜାଣିବା ପାଇଁ ସମର୍ଥ; ଇତି = ତାହା, ନାୟକାଃ = ଜ୍ଞାନୀଜନ।

*ସମସ୍ତ ଜୀବ, ବନ୍ଧନରୁ ସର୍ବଦା ମୁକ୍ତ ଏବଂ ସ୍ୱଭାବରେ ଶୁଦ୍ଧ। ମୂଳରୁ ହିଁ ସେମାନେ ବୁଦ୍ଧ ଏବଂ ମୁକ୍ତ। ତଥାପି ଜ୍ଞାନୀଜନମାନେ – ଲୋକମାନଙ୍କୁ ଆତ୍ମଭାବ 'ଜାଣିବା ପାଇଁ ସମର୍ଥ' ବୋଲି କହନ୍ତି ॥୯୮॥*

ଶ୍ରୀ ଶଙ୍କର ତାଙ୍କର ବ୍ୟାଖ୍ୟାରେ ଗୋଟିଏ ପ୍ରଶ୍ନ ଉଠାଇଛନ୍ତି ଏବଂ ବିରୋଧୀଙ୍କ ପାଇଁ ଏହି ଶ୍ଳୋକଟି ଉତ୍ତର ବୋଲି କହିଛନ୍ତି। ବିରୋଧୀ ପଚାରିଛନ୍ତି: "ପୂର୍ବ କାରିକାରେ କୁହାଯାଇଛି ଯେ, ଆତ୍ମାଙ୍କର ସ୍ୱରୂପକୁ ଢ଼ାଙ୍କି ଦେଇଥିବା ଆବରଣର ବିନାଶ କରିବା ସମ୍ଭବ ନୁହେଁ। ବେଦାନ୍ତୀମାନେ ସ୍ୱୀକାର କରନ୍ତି ଯେ, ଜୀବର ସ୍ୱରୂପ ପ୍ରକୃତରେ ଆବରଣରେ ଢ଼ାଙ୍କି ହୋଇଛି।" ବର୍ତ୍ତମାନ ଆଲୋଚନା କରାଯାଇଥିବା ଏ ଶ୍ଳୋକରେ ସେହି ଆପତ୍ତିର ଉତ୍ତର ଦିଆ ଯାଇଛି।

ପ୍ରତ୍ୟେକ ଜୀବଠାରେ ଥିବା ଆଧ୍ୟାତ୍ମିକ ସତ୍ତା ସର୍ବଦା ଶୁଦ୍ଧ ଏବଂ କୌଣସି ଜଣାଶୁଣା ଅକ୍ଷମତା ତାକୁ କଦାପି ଛୁଇଁ ପାରେ ନାହିଁ। କାରଣ ମନର ମିଥ୍ୟା ସ୍ୱପ୍ନ ଦ୍ୱାରା ହିଁ ଏହାର ଅକ୍ଷମତା ସୃଷ୍ଟି କରା ଯାଇଥାଏ। ସେମାନଙ୍କର ସ୍ୱରୂପ ଶାଶ୍ୱତ, ଶୁଦ୍ଧ ବୋଲି କୁହାଯାଉଥିବାରୁ ସେମାନେ ସ୍ୱରୂପରେ ଶୁଦ୍ଧ, ବୁଦ୍ଧ ଏବଂ ମୂଳରୁ ହିଁ ମୁକ୍ତ।

ଯଦି ଏପରି ହୋଇଥାଏ, ତେବେ ଉପନିଷଦ୍‌ର ଗୁରୁମାନେ କାହିଁକି କହିଛନ୍ତି ଯେ, ପରମସତ୍ୟଙ୍କୁ ଜାଣିବା ପାଇଁ ଜୀବମାନେ ସମର୍ଥ ? ଏହି ଧାରଣାକୁ ଶ୍ରୀଶଙ୍କର ଏକ ସାରୂପ୍ୟ ମାଧ୍ୟମରେ ବୁଝାଇଛନ୍ତି। ଆମର ଦୈନନ୍ଦିନ କାରବାରରେ ଆମେ କହୁ ଯେ ସୂର୍ଯ୍ୟ ଉଦୟ ହୁଅନ୍ତି, ସୂର୍ଯ୍ୟ ଅସ୍ତ ହୁଅନ୍ତି ଏବଂ ସେଇଠି ପାହାଡ଼ ଠିଆ ହୋଇଛି ଇତ୍ୟାଦି।

ଏହି ସମସ୍ତ ଘଟଣାରେ ଆମେ ଜାଣୁ ଯେ, ସୂର୍ଯ୍ୟ ତାଙ୍କର ନିଜ ସ୍ୱରୂପରେ ଉଦୟ ହୁଅନ୍ତି ନାହିଁ ବା ଅସ୍ତ ହୁଅନ୍ତି ନାହିଁ, ବା ପାହାଡ଼ କେବେ ଆନନ୍ଦରେ ଡିଆଁ ଡେଇଁ କରି ନାଚେ ନାହିଁ, ବରଂ ଏହା ସଦା ସର୍ବଦା ଠିଆ ହିଁ ହୋଇଥାଏ। ତଥାପି ଆମର ଦୈନନ୍ଦିନ ଜୀବନର କାର୍ଯ୍ୟକଳାପ ଅନୁଯାୟୀ ଆମେ ଆମର ଆପେକ୍ଷିକ ଅନୁଭୂତିର ଭାଷାରେ ସୂର୍ଯ୍ୟଙ୍କଠାରେ ଉଦୟ ହେବା, ଅସ୍ତ ହେବା, ଗତି କରୁଥିବା, ଉଜ୍ଜଳ ଦିଶୁଥିବା ଇତ୍ୟାଦି ଗୁଣର ଅଧ୍ୟାସ କରୁ। ଯଦିଓ ଜ୍ୟୋତିର୍ବିଜ୍ଞାନରୁ ଆମେ ଜାଣୁଯେ, ସୂର୍ଯ୍ୟ ହେଉଛି ନିରନ୍ତର ଉଦ୍ଭାସିତ, ଉତ୍ତପ୍ତ, ଆପେକ୍ଷିକ ଗତିହୀନ ଏକ ପିଣ୍ଡ।

କିନ୍ତୁ ଆମ ଦୁନିଆର ଭାଷା ଏବଂ ଦୈନନ୍ଦିନ ଅନୁଭୂତିରେ ଆମେ ସୂର୍ଯ୍ୟଙ୍କଠାରେ ଗୁଣର ଆରୋପ କରି କହୁ। ସୂର୍ଯ୍ୟଙ୍କ ଦୃଷ୍ଟିରୁ ଏହା ସବୁ ମିଥ୍ୟା। ସେହିପରି ଏଠାରେ ମଧ୍ୟ, ବିଭିନ୍ନ ଜୀବ ବାସ୍ତବରେ ଶାଶ୍ୱତ ଏବଂ ନିର୍ବିକଳ୍ପ ହୋଇଥିଲେ ମଧ୍ୟ ଅନୁଭୂତି ଲାଭ କରିଥିବା ମହାନ ଗୁରୁମାନେ ଆମକୁ ଆମର ଅଜ୍ଞାନତାର ଭାଷାରେ "ଜୀବମାନେ ତାଙ୍କର ପରମ ଆତ୍ମଭାବ ଜାଣିବା ପାଇଁ ସମର୍ଥ" ପରି ଆଶାବାଦୀ ଭାଷାର ବ୍ୟବହାର ପାଇଁ ବାଧ୍ୟ ହୋଇଛନ୍ତି। ସ୍ୱପ୍ନଦ୍ରଷ୍ଟା ସଂକ୍ରାନ୍ତରେ ଆମେ କହି ପାରିବା ଯେ, ସେ ତାର ନିଜର ଜାଗ୍ରତ ଅବସ୍ଥା ଜାଣିବା ପାଇଁ ସମର୍ଥ।

**କ୍ରମତେ ନ ହି ବୁଦ୍ଧସ୍ୟ ଜ୍ଞାନଂ ଧର୍ମେଷୁ ତାୟିନଃ।**
**ସର୍ବେ ଧର୍ମାସ୍ତଥା ଜ୍ଞାନଂ ନୈତେଦ୍-ବୁଦ୍ଧେନ ଭାଷିତମ୍ ॥୯୯॥**

ନ କ୍ରମତେ = କେବେ ବି ସ୍ପର୍ଶ କରେ ନାହିଁ, ବୁଦ୍ଧସ୍ୟ = ବୁଦ୍ଧଙ୍କର, ଜ୍ଞାନମ୍ = ଜ୍ଞାନ, ଧର୍ମେଷୁ ହି = ମୋଟ ଉପରେ କୌଣସି ବିଷୟ, ତାୟିନଃ = ଯିଏ ସର୍ବଜ୍ଞ; ସର୍ବେ ଧର୍ମାଃ = ସମସ୍ତ ଜୀବ, ତଥା = ସେହିପରି, ଏତଦ୍ ଜ୍ଞାନମ୍ = ଏହି ଜ୍ଞାନ, ବୁଦ୍ଧେନ = ବୁଦ୍ଧଙ୍କ ଦ୍ୱାରା, ନ ଭାଷିତମ୍ = ମତାମତ ନୁହେଁ।

*ପାଣ୍ଡିତ୍ୟରେ ପରିପୂର୍ଣ୍ଣ ଆତ୍ମାନୁଭବୀ ବ୍ୟକ୍ତିଙ୍କର ଜ୍ଞାନକୁ ବିଷୟ କଦାପି ଛୁଇଁ ପାରି ନଥାଏ। ସେହିପରି ସମସ୍ତ ସାମାନ୍ୟ ଜୀବ ଓ ତତ୍ ସହିତ ଜ୍ଞାନକୁ ମଧ୍ୟ କୌଣସି ବିଷୟ କେବେ ଛୁଇଁପାରେ ନାହିଁ। 'ଏହା ଜ୍ଞାନୀଙ୍କର ମତ ନୁହେଁ '॥୯୯॥*

ଏହି ଶ୍ଳୋକରେ ଗୌଡ଼ପାଦ ସମଗ୍ର କାରିକାର ସାରାଂଶ ପ୍ରକାଶ କରିଛନ୍ତି। ସେ କହିଛନ୍ତି ଯେ ଶୁଦ୍ଧ ଜ୍ଞାନ ହେଉଛି ଜ୍ଞାନୀମାନଙ୍କର ସଜୀବ ଅନୁଭୂତି। ଏହି ଶୁଦ୍ଧ ଜ୍ଞାନରେ କୌଣସି ବିଷୟ ନାହିଁ ଏବଂ ଏହି ବିଷୟହୀନ ଜ୍ଞାନ ହିଁ ନିର୍ବିକଳ୍ପ ଜ୍ଞାନ। କିନ୍ତୁ ଏହି

ଶୁଦ୍ଧଚୈତନ୍ୟ ହେଉଛନ୍ତି ଆକାଶ ପରି, ଯାହାକୁ କି ତାଠାରେ ଥିବା ବିଷୟ ଛୁଇଁ ମଧ୍ୟ ପାରେ ନାହିଁ।

ବିଷୟ ଛୁଇଁ ପାରୁ ନଥିବା ଜ୍ଞାନ ଭାବରେ ଉପନିଷଦରେ ଆଲୋଚନା ଏବଂ ବ୍ୟାଖ୍ୟା କରାଯାଇଥିବା ମିଥ୍ୟା ଦୃଶ୍ୟ-ଜଗତର ଏହି କଳ୍ପନା ବୌଦ୍ଧ ଦର୍ଶନ ପରି ଦେଖାଯିବ। ବୌଦ୍ଧଦର୍ଶନ ମଧ୍ୟ ଅନ୍ୟ କୌଣସି ବାହ୍ୟ ବିଷୟକୁ କେବଳ କଳ୍ପନା ଭାବରେ ପ୍ରତ୍ୟାଖ୍ୟାନ କରେ। ଗୌଡ଼ପାଦଙ୍କ ସମୟଟା ଥିଲା ବୌଦ୍ଧଦର୍ଶନର ସମୟ। ତେଣୁ ବେଦାନ୍ତ ବୌଦ୍ଧ ମତ ନୁହେଁ ବୋଲି ତାଙ୍କ ସର୍ତ୍ତ ଯୋଗ କରିବାକୁ ହୋଇଛି। ସାର ରାଧାକ୍ରିଷ୍ଣନ୍ ଯାହା କହିଛନ୍ତି ସେ (ଗୌଡ଼ପାଦ) ବୌଦ୍ଧଧର୍ମର କେତେକ ପଦ ସହିତ ଏହି ଧାରାର ସାଦୃଶ୍ୟ ଥିବାର ଜାଣିଥିବା ପରି ମନେ ହୁଏ। ତେଣୁ ସେ ପ୍ରତିବାଦ କରିଛନ୍ତି - ଏହି ମତାମତ ବୌଦ୍ଧ ନୁହେଁ। (Indian Philosophy vol II 11. 463)

ଗ୍ରନ୍ଥରେ ଏହି ଅଂଶ ସମ୍ପର୍କରେ ଯଥେଷ୍ଟ ବାଦାନୁବାଦ ରହିଛି ଏବଂ ସମାଲୋଚକମାନେ ବିଭିନ୍ନ ମତ ପ୍ରକାଶ କରିଛନ୍ତି। ବିଭିନ୍ନ ସମାଲୋଚକମାନେ ଏହି ଅଂଶକୁ ବିଭିନ୍ନ ଅର୍ଥ ଏବଂ ତାତ୍ପର୍ଯ୍ୟ ଦେଇଛନ୍ତି। ଶ୍ରୀ ଗୌଡ଼ପାଦ ଏଠାରେ କହିଛନ୍ତି ଯେ, ତାଙ୍କ ଦର୍ଶନ ବୁଦ୍ଧ ଦର୍ଶନ ନୁହେଁ। ପ୍ର. ଭଟ୍ଟାଚାର୍ଯ୍ୟଙ୍କ ମତରେ ଏହାର ଅର୍ଥ ହେବ "ବୁଦ୍ଧ କିଛି କହିନାହାଁନ୍ତି"। କେତେକ ବୌଦ୍ଧ ଲେଖକଙ୍କ ପାଇଁ ଏହାର ଅର୍ଥ ହେଲା ବୁଦ୍ଧ ଶୂନ୍ୟତା କଥା କହିଛନ୍ତି। ଅନ୍ୟ କେତେକ ବୌଦ୍ଧ ଲେଖକଙ୍କ ପାଇଁ ଏହାର ଅର୍ଥ "ବୁଦ୍ଧ କିଛି କହି ନାହାଁନ୍ତି - କାରଣ ଏହାକୁ ସହଜ ଜ୍ଞାନରେ ବୁଝିବା କଥା, ଏବଂ ସ୍ପଷ୍ଟ ଭାବରେ ବ୍ୟାଖ୍ୟା କରିବା କଥା ନୁହେଁ। ପୂର୍ବୋକ୍ତ ବୌଦ୍ଧ ମତବାଦ 'ଶୂନ୍ୟବାଦ' ରେ ପଦାର୍ପଣ କରିଥିବା ବେଳେ ପରବର୍ତ୍ତୀ ନିର୍ବିକଳ୍ପବାଦୀ ହୋଇ ରହିଗଲେ।

ଯାହାହେଲେ ବି, ବିଜ୍ଞାନାତୀତ ଭାବେ କହିଲେ ବୌଦ୍ଧ ଦର୍ଶନ ତାର ତର୍କବିଦ୍ୟାରେ ବେଦାନ୍ତର ନିକଟବର୍ତ୍ତୀ। ତଥାପି ଉଭୟଙ୍କ ମଧ୍ୟରେ ଏକ ସୂକ୍ଷ୍ମ ପ୍ରଭେଦ ରହିଛି ଏବଂ ତାହା ହେଉଛି ଉତ୍ତମକୁ ଅତୁଳନୀୟରେ ପରିବର୍ତ୍ତନ କରିବାର ପ୍ରଭେଦ। ସଂକ୍ଷେପରେ ଆମେ କହି ପାରିବା ଯେ, ନିରାସକ୍ତ ହୋଇ ନିଷ୍ପାପର ଭାବରେ ଉଭୟ ଦର୍ଶନର ଅଧ୍ୟୟନ କରିଥିବା ତୁଳନାତ୍ମକ ଦର୍ଶନର ଜଣେ ଛାତ୍ର ଏହି ସିଦ୍ଧାନ୍ତରେ ପଦାର୍ପଣ କରିବ ଯେ, ନିର୍ବିକଳ୍ପ ପରମସତ୍ୟ ବୋଲି ବୁଦ୍ଧ କେବେ ବି ଶିକ୍ଷା ଦେଇ ନାହାଁନ୍ତି; ଯଦିଓ ବିଭିନ୍ନ ମହାଯାନ ବୌଦ୍ଧ ମତ କହେ ଯେ, ତାଙ୍କର ଶିକ୍ଷା ଅଦ୍ୱୈତବାଦର ନିର୍ବିକଳ୍ପ ବ୍ରହ୍ମ ବା ଆତ୍ମାର ତତ୍ତ୍ୱ ସହ ସମାନ।

**ଦୁର୍ଦର୍ଶମତିଗମ୍ଭୀରମଜଂ ସାମ୍ୟଂ ବିଶାରଦମ୍ ।**

**ବୁଦ୍ଧ୍ୱା ପଦମନାନାତ୍ୱଂ ନମସ୍କୁର୍ମୋ ଯଥାବଲମ୍ ॥୧୦୦ ॥**

ଦୁର୍ଦର୍ଶମ୍ = ବୁଝିବା ପାଇଁ କଷ୍ଟକର, ଅତି = ଅତି, ଗମ୍ଭୀରମ୍ = ନିଗୁଢ଼, ଅଜମ୍ = ଅଜ, ସାମ୍ୟମ୍ = ସାମ୍ୟ, ସର୍ବଦା ଏକାପରି; ବିଶାରଦମ୍ = ଶୁଦ୍ଧ, ପବିତ୍ର ; ବୁଦ୍ଧ୍ୱା = ଆତ୍ମାନୁଭବ କରି, ପଦମ୍ = (ପରମସତ୍ୟଙ୍କ) ଅବସ୍ଥା ; ଅନାନାତ୍ୱମ୍ = ନାନାତ୍ୱରୁ ମୁକ୍ତ; ନମଃ କୁର୍ମଃ = ଆମେ ନମସ୍କାର କରୁ; ଯଥା = ଯଥା, ଯେପରି ; ବଲମ୍ = ଆମର ସାମର୍ଥ୍ୟ।

*ପରମସତ୍ୟ ହେଉଛନ୍ତି ଅଜ, ସର୍ବଦା ଏକାପରି, ଶୁଦ୍ଧ (ଜ୍ଞାନମୟ) ଏବଂ ନାନାତ୍ୱରୁ ମୁକ୍ତ। ସେହି ପରମପଦ ଅନୁଭବ କରି ଆମେ ତାଙ୍କୁ ସର୍ବତୋଭାବେ ପ୍ରଣାମ କରୁଛୁ ॥୧୦୦॥*

ପ୍ରସଙ୍ଗ ବର୍ତ୍ତମାନ ଶେଷ ହେଲା। ପରମାତ୍ମାଙ୍କର ଯେଉଁ ସବୁ ଗୁଣ ଏଠାରେ ବର୍ଣ୍ଣନା କରା ଯାଇଛି, ପୂର୍ବରୁ ତାର ଆଲୋଚନା କରାଯାଇଛି। ଆତ୍ମାନୁଭବ କରିବାହିଁ ହେଉଛି ଆତ୍ମାଙ୍କର ମହାନ ଉପାସନା। ପରମସତ୍ୟ ବା ଗୁରୁ ହୋଇପାରିବା ହିଁ ହେଉଛି ତାଙ୍କ ପ୍ରତି ମହାନ ଭକ୍ତି । ପ୍ରାର୍ଥନା ହେଉଛି ପ୍ରାର୍ଥନାର ଆଦର୍ଶ ସହିତ ନିଜକୁ ଲୟବଦ୍ଧ କରିବାର ପ୍ରଚେଷ୍ଟା। ଏହି ମାନସିକ ଏବଂ ବୌଦ୍ଧିକ ସାମଞ୍ଜସ୍ୟ ବ୍ୟତୀତ କେବଳ ଉଚ୍ଚାରିତ ପ୍ରାର୍ଥନା ନିଜ ପାଇଁ ଏବଂ ପଡୋଶୀ ପାଇଁ ଅତି ବେଶୀରେ ଏକ ଉପଦ୍ରବ। ଆତ୍ମାନୁଭୂତି ହିଁ ଉପନିଷଦୀୟ ସାଧକର ମହାନ ସମ୍ଭାବ୍ୟ ଭକ୍ତି ବୋଲି ଶ୍ରୀ ଗୌଡ଼ପାଦ ତାଙ୍କର ଅନ୍ତିମ ଶ୍ଳୋକରେ ଜୋର ଦେଇ କହିଛନ୍ତି।

ସର୍ବବ୍ୟାପୀ, ନାନାତ୍ୱରୁ ମୁକ୍ତ ଆତ୍ମାରେ ପରମାତ୍ମାଭାବ ଅନୁଭବ କରିବା ପରେ ଭକ୍ତି, ପ୍ରେମ ବା ସମ୍ମାନ କରିବାର କୌଣସି ସ୍ଥାନ ନାହିଁ, ତଥାପି ନିର୍ବିକଳ୍ପ-ବାଦୀ ଗୌଡ଼ପାଦ ପରମସତ୍ୟାଙ୍କୁ ଅତି ପ୍ରଶଂସା କରି ସେହି ଆତ୍ମାଙ୍କୁ ହିଁ ପ୍ରଣାମ କରିଛନ୍ତି। ଯେଉଁ କର୍ମକାଣ୍ଡୀୟ ବିଧାନ ଦ୍ୱାରା ଜଣେ ପରମ ଆତ୍ମାଙ୍କୁ - ନିଜର ଆତ୍ମାକୁ -ପ୍ରଣାମ କରି ପାରିବ, ତାହା ହେଉଛି, ଯେତେଦୂର ସମ୍ଭବ, ନିଜର ଶରୀର, ମନ ଏବଂ ବୁଦ୍ଧିରୁ ନିରାସକ୍ତ ରହିବାର ଚେଷ୍ଟା କରିବା ଏବଂ ତାଦ୍ୱାରା ଆମର ଶାଶ୍ୱତ ସ୍ୱରୂପ, ସଚ୍ଚିଦାନନ୍ଦ ବ୍ୟତୀତ ଅନ୍ୟ କିଛି ନୁହେଁ ବୋଲି ପୁନରାବିଷ୍କାର କରିବା ।

ଅସଙ୍ଗୋଽହମ୍ ଅସଙ୍ଗୋଽହମ୍ ଅସଙ୍ଗୋଽହମ୍ ପୁନଃ ପୁନଃ।

ସଚ୍ଚିଦାନନ୍ଦରୂପୋଽହମ୍ ଅହମେବାହମବ୍ୟୟଃ ॥

। ଶ୍ରୀ ଗୁରୁଦେବାୟ ନମଃ ।



## ସ୍ୱାମୀ ଚିନ୍ମୟାନନ୍ଦ

ସ୍ୱାମୀ ବିବେକାନନ୍ଦଙ୍କ ପରେ ପାଶ୍ଚାତ୍ୟ ଜଗତରେ ବେଦାନ୍ତ ଜ୍ଞାନର ପ୍ରଚାର ଓ ପ୍ରସାର କରିବାରେ ସୁଖ୍ୟାତି ଅର୍ଜନ କରିଥିବା ପୂଜ୍ୟ ଗୁରୁଦେବ ସ୍ୱାମୀ ଚିନ୍ମୟାନନ୍ଦ (୧୯୧୬-୧୯୯୩) ମାନବ ସମାଜ ନିମନ୍ତେ ଏକ ସୁସମୃଦ୍ଧ ଐତିହ ଛାଡ଼ି ଯାଇଛନ୍ତି । ଜୀବନର ବାସ୍ତବ ଅଭିପ୍ରାୟକୁ ହୃଦୟଙ୍ଗମ କରି, ସେ ଚାରି ଦଶନ୍ଧି ଧରି ପ୍ରବଳ ଉର୍ଜାର ସହ ଅକ୍ଳାନ୍ତ ପ୍ରଚେଷ୍ଟା ଦ୍ୱାରା ବେଦାନ୍ତ ଦର୍ଶନର ପ୍ରଚାର ଓ ପ୍ରସାର କରିଛନ୍ତି । ସେ ଏକାଧାରରେ ଜଣେ ସ୍ୱାଧୀନତା ସଂଗ୍ରାମୀ, ତେଜସ୍ୱୀ ବକ୍ତା, ଦାର୍ଶନିକ, ଚିନ୍ତାଶୀଳ ସୁଲେଖକ, ମାନବ ସମାଜର ପଥପ୍ରଦର୍ଶକ, ଦେଶପ୍ରେମୀ ସନ୍ନ୍ୟାସୀ ଓ ଆଧାତ୍ମିକ ଗୁରୁ ଥିଲେ । ବିଶ୍ୱ ଦରବାରରେ ଭାରତୀୟ ବୈଦିକ ସଂସ୍କୃତି ଓ ଐତିହର ସେ ଜଣେ ଅନୁପମ ପ୍ରତିନିଧି ।

ଦେଶ ବିଦେଶରେ ପରିବ୍ୟାପ୍ତ ଆଧାତ୍ମିକ ସଂଗଠନ 'ଚିନ୍ମୟ ମିଶନ' ଏହି ମହାନ ସନ୍ଥଙ୍କ ଦ୍ୱାରା ପ୍ରଜ୍ୱଳିତ ଜ୍ଞାନଦୀପ୍ତ ମଶାଲକୁ ବହନ କରୁଅଛି ।

ମାଣ୍ଡୁକ୍ୟ ଉପନିଷଦ୍‌ରେ ମାତ୍ର ବାରଟି ମନ୍ତ୍ର ଅଛି । ପ୍ରମୁଖ ଉପନିଷଦ୍‌ମାନଙ୍କ ମଧ୍ୟରେ କ୍ଷୁଦ୍ରତମ ହୋଇଥିଲେ ମଧ୍ୟ ଏହା ସମସ୍ତ ଉପନିଷଦ୍‌ମାନଙ୍କର ସାରତତ୍ତ୍ୱକୁ ବହନ କରୁଅଛି ।

ଜାଗ୍ରତ, ସ୍ୱପ୍ନ ଓ ସୁଷୁପ୍ତି- ମଣିଷ ମନର ଏହି ତିନୋଟି ଅବସ୍ଥା ଏଥିରେ ବିସ୍ତୃତ ଭାବରେ ଆଲୋଚନା କରାଯାଇଅଛି । ଏହି ଉପନିଷଦ୍ ଏକସ୍ୱରରେ ଘୋଷଣା କରେ ଯେ ପରମ ସତ୍ୟ କେବଳ ଅଦ୍ୱୈତ ଓ ନିର୍ଗୁଣ ।

ଏଥିରେ ଏକାକ୍ଷର ପ୍ରଣବ ମନ୍ତ୍ର 'ଓଁ' ର ତିନୋଟି ପାଦ- ଅ, ଉ, ମ ଉପରେ କିପରି ଉପାସନା କରିବାକୁ ହୁଏ, ତାହା ଶିକ୍ଷା ଦିଆଯାଇଅଛି ଏବଂ ଅ, ଉ, ମ ପଛରେ ଥିବା ଦାର୍ଶନିକ ତତ୍ତ୍ୱକୁ ମଧ୍ୟ ଆଲୋଚନା କରାଯାଇଅଛି । ମୁକ୍ତିକୋପନିଷଦ୍ ଅନୁସାରେ ଏହି ଉପନିଷଦ୍, ସମସ୍ତ ୧୦୮ ଉପନିଷଦ୍‌ର ସାରତତ୍ତ୍ୱକୁ ବହନ କରୁଅଛି ।

CHINMAYA PRAKASHAN
BRINGING KNOWLEDGE TO LIGHT
The Publications Division of
Central Chinmaya Mission Trust




₹ 170/- • UPANIṢAD